# ପେରିୟାରଙ୍କ ରଚନା

ଜଣେ କ୍ରାନ୍ତିକାରୀ ସଂସ୍କାରକଙ୍କ ବିଚାର ଓ ଜୀବନ- ଆଲେଖ୍ୟ



ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ପୁସ୍ତକ ଭବନ, ଭୁବନେଶ୍ୱର

Digitized by srujanika@gmail.com

# ପେରିୟାରଙ୍କ ରଚନା

ଜଣେ କ୍ରାନ୍ତିକାରୀ ସଂସ୍କାରକଙ୍କ ବିଚାର ଓ ଜୀବନ- ଆଲେଖ୍ୟ

ମୂଳଲେଖା

**ପେରିୟାର ଇ.ଭି. ରାମସ୍ୱାମୀ**

ଅନୁବାଦ

**ଧନେଶ୍ୱର ସାହୁ**




ପ୍ରକାଶକ :

**ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା**

**ଭୁବନେଶ୍ୱର**

Digitized by srujanika@gmail.com

# PERIYARANKA RACHANA

Published under the centrally sponsored scheme of Production of books and literature in regional language at the University level by the Commissioner for Scientific and Technical Terminology, Ministry of Human Resource Development, (Dept. of Higher Education) Govt. of India, New Delhi.

*Collected Works of Periyar*

*By* **Periyar E.V.R.**

*Translated by* **Dhaneswar Sahoo**

*Reviewed by* **Dr. Pramod Kumar Parida**

*Published by* : Odisha State Bureau of Text Book Preparation and Production, Pustak Bhawan, Bhubaneswar, Odisha, India

**First Edition** : 2013

**Publication No.** 501

**ISBN-81-8005-279-6**

© All rights reserved by the Odisha State Bureau of Textbook Preparation and Publication, Bhubaneswar. No part of this book may be reproduced in any form or by any means without permission in writing from the publisher.

*Printed at* **Odisha Printing Works,**
Mahammadia Bazar, Cuttack-753002

Price **Rs. 121/-**

Digitized by srujanika@gmail.com

# ଅଗ୍ରଲେଖ

ଭାରତୀୟ ସମାଜ ସଂସ୍କାର ଇତିହାସରେ ପେରିୟାର ଏକ ବିଶିଷ୍ଟ ବ୍ୟକ୍ତିତ୍ୱ । ସ୍ୱାଧୀନତା ସଂଗ୍ରାମୀ, ସମାଜ ସଂସ୍କାରକ ଓ ଆତ୍ମ-ମର୍ଯ୍ୟାଦା ଆନ୍ଦୋଳନର ଜନକ ଭାବେ ସେ ବହୁ କ୍ଷେତ୍ରରେ ତାଙ୍କର ସ୍ୱାକ୍ଷର ରଖି ଯାଇଛନ୍ତି । ତାମିଲନାଡୁର ସାମାଜିକ ଓ ରାଜନୈତିକ କ୍ରାନ୍ତି କ୍ଷେତ୍ରରେ ସେ ଏକ ପ୍ରବାଦ ପୁରୁଷ । ପେରିୟାରଙ୍କ ଇଂରାଜୀ ପୁସ୍ତକ "Collected Works of Periyar E.V.R." ପୁସ୍ତକର ଏହି ପୁସ୍ତକଟି ଓଡିଆ ଅନୁବାଦ ।

ଜଣେ କ୍ରାନ୍ତିକାରୀ ସଂସ୍କାରକ ଓ ମାନବବାଦୀ-ହେତୁବାଦୀ ବିଚାରକଙ୍କର ଜୀବନୀ ଓ ଦର୍ଶନ ବିଷୟରେ ଏହି ପୁସ୍ତକଟି ଓଡିଶାର ସୁଧୀ ପାଠକଙ୍କୁ ଅବଗତ କରାଇପାରିବ । ସାମାଜିକ ନ୍ୟାୟ, ମାନବବାଦ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ବିଷୟରେ ବହିରେ ଯେଉଁ ବିଚାର ବ୍ୟକ୍ତ ହୋଇଛି ତାହା ଜଣେ ସଚେତନ ପାଠକଙ୍କୁ ଅନେକ ନୂତନ ଦିଗଦର୍ଶନ ଦେବ । ପେରିୟାରଙ୍କ ସମସ୍ତ ଲେଖା ତାମିଲ ଭାଷାରେ ହୋଇଥିଲେ ବି ଇଂରାଜୀରେ ମାତ୍ର ଏହି ବହିଟି ଉପଲବ୍ଧ । ଶ୍ରୀ ଧନେଶ୍ୱର ସାହୁ ଇଂରାଜୀ ଭାଷାରୁ ଏହି ବହିଟିକୁ ଅନୁବାଦ କରି ଓଡିଶାର ପାଠକମାନଙ୍କ ପାଇଁ ଏକ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି । ଅନୁବାଦଟି ସାବଲୀଳ ଭାଷାରେ ହୋଇଛି, ଯାହା ପଢିଲେ ଏକ ମୌଳିକ କୃତି ପଢୁଥିବା ଅନୁଭବ ଆସେ । ଅନୁବାଦ ପୁସ୍ତକଟିର ସମୀକ୍ଷା କରି ଡ. ପ୍ରମୋଦ ପରିଡା ଏହି ପୁସ୍ତକ ଓ ଏହାର ଅନୁବାଦ ସମ୍ପର୍କରେ ଉଚ୍ଚ ମତ ପୋଷଣ କରିଛନ୍ତି । "ଓଡିଶା ପାଠ୍ୟ ପୁସ୍ତକ ପ୍ରସ୍ତୁତି ଓ ପ୍ରକାଶନ ସଂସ୍ଥା" ଅନ୍ୟ ଭାଷାର ମୌଳିକ କୃତିମାନଙ୍କୁ ଓଡିଆରେ ଅନୁବାଦ କରି ଆମ ଭାଷାକୁ

Digitized by srujanika@gmail.com

ବିଭିନ୍ନ ସ୍ତରରେ ସମୃଦ୍ଧ କରିବା ପାଇଁ ଲକ୍ଷ୍ୟ ରଖିଛି । ସେହି ପରିପ୍ରେକ୍ଷୀରେ ଏହି ପୁସ୍ତକଟିର ବିଷୟ ବସ୍ତୁ ବେଶ୍ ଗଭୀର ଓ ଚିନ୍ତା ଉଦ୍ରେକକାରୀ । ପେରିୟାରଙ୍କ ଭାବାଦର୍ଶକୁ ଓଡିଶାର ପାଠକମାନଙ୍କ ପାଖରେ ଉପସ୍ଥାପନ କରିବାକୁ ଶ୍ରୀ ଧନେଶ୍ୱର ସାହୁ ଆନ୍ତରିକ ଉଦ୍ୟମ କରିଛନ୍ତି । ମୋର ବିଶ୍ୱାସ ପେରିୟାରଙ୍କ ରଚନା ପୁସ୍ତକଟି ଅଧ୍ୟୟନ କରି ଓଡିଆ ପାଠକଗଣ ପେରିୟାରଙ୍କ ବିଚାର ସ-ର୍କରେ ଅବଗତ ହୋଇପାରିବେ । ମାତୃଭାଷାର ଉନ୍ନତି ସାଧନ ପାଇଁ ଅନୁବାଦକଙ୍କର ଏହି ସାଧୁ ପ୍ରୟାସକୁ ମୁଁ ଧନ୍ୟବାଦ ଜ୍ଞାପନ କରୁଛି ।

ନନ୍ଦିନୀ ତ୍ରିପାଠୀ
ନିର୍ଦ୍ଦେଶକ
ଓଡିଆ ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ଭୁବନେଶ୍ୱର

Digitized by srujanika@gmail.com

# ମୁଖବନ୍ଧ

ଏହି ପୁସ୍ତକଟି Collected Works of Periyar E.V.R. ର ଓଡ଼ିଆ ଅନୁବାଦ । ପେରିୟାରଙ୍କର ନାମ ଥିଲା ଏରୋଡ ଭେଙ୍କଟ ରାମସ୍ୱାମୀ । ଜନ୍ମ ସେପ୍‌ଟେମ୍ବର ୧୭, ୧୮୭୯ ଓ ଦେହାନ୍ତ ଡିସେମ୍ବର ୨୪, ୧୯୭୩ । ପେରିୟାର ଏକ ଉପାଧି । ତାମିଲନାଡୁରେ ତାଙ୍କୁ ଅନେକ "ଥାନ୍ଥାଇ ପେରିୟାର" ବୋଲି ସମ୍ବୋଧିତ କରିଥାନ୍ତି । ତାମିଲ ଭାଷାରେ "ଥାନ୍ଥାଇ" ଅର୍ଥ ଜନକ ଓ ପେରିୟାର ଅର୍ଥ ମହାନ୍ । ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ସେ ସାଧାରଣତଃ ପେରିୟାର ଭାବେ ସୁପରିଚିତ । ଏହି ପୁସ୍ତକ ଶେଷରେ ଥିବା ତାଙ୍କ ଜୀବନର ପ୍ରମୁଖ ଘଟଣାବଳୀରୁ ପାଠକମାନେ ତାଙ୍କ କର୍ମମୟ ଜୀବନର ପରିଚୟ ପାଇପାରିବେ ।

ଭାରତୀୟ ସମାଜ ସଂସ୍କାର ଇତିହାସରେ ପେରିୟାର ଏକ ସୁପରିଚିତ ନାମ । ସ୍ୱାଧୀନତା ସଂଗ୍ରାମୀ, ସମାଜ ସଂସ୍କାରକ, ଆତ୍ମମର୍ଯ୍ୟାଦା ଆନ୍ଦୋଳନର ପ୍ରବକ୍ତା ଓ ଆଧୁନିକ ତାମିଲନାଡୁର ଜନକ ଭାବେ ସେ ପରିଚିତ । ତାଙ୍କୁ ଦକ୍ଷିଣ ଏସିଆର ସକ୍ରେଟିସ୍ କୁହାଯାଏ । ୟୁଏନସ୍କୋ ଆନ୍ତର୍ଜାତିକ ପୁରସ୍କାରର ମାନପତ୍ରରେ ତାଙ୍କ ବିଷୟରେ ଲେଖା ଯାଇଛି - "PERIYAR THE PROPHET OF THE NEW AGE; THE SOCRATES OF SOUTH EAST ASIA, FATHER OF THE SOCIAL REFORM MOVEMENT; AND ARCH ENEMY OF IGNORANCE, SUPERSTITIONS, MEANINGLESS CUSTOMS AND BASE MANNERS." ପେରିୟାର ହେଉଛନ୍ତି ଆଗାମୀ ଯୁଗର ପ୍ରଫେଟ୍, ଦକ୍ଷିଣ ଏସିଆର ସକ୍ରେଟିସ୍, ସାମାଜିକ କ୍ରାନ୍ତି ଆନ୍ଦୋଳନର ଜନକ ଓ ଅଜ୍ଞତା, କୁସଂସ୍କାର, ଅର୍ଥହୀନ ପରଂପରା ଏବଂ ନିକୃଷ୍ଟ ବ୍ୟବହାରର କଠୋର ସମାଲୋଚକ ।

Digitized by srujanika@gmail.com

ପେରିୟାରଙ୍କୁ ୨୭.୦୬.୭୦ ଦିନ ୟୁନେସ୍କୋ ତରଫରୁ ଭାରତର ତତ୍କାଳୀନ ଶିକ୍ଷାମନ୍ତ୍ରୀ ତ୍ରିଗୁଣା ସେନ ଚେନାଇଠାରେ ଆନ୍ତର୍ଜାତିକ ସମ୍ମାନ ପ୍ରଦାନ କରିଥିଲେ ।

ପେରିୟାରଙ୍କର କୌଣସି ଔପଚାରିକ ଶିକ୍ଷା ନଥିଲା । ସ୍କୁଲରେ ମାତ୍ର ପାଞ୍ଚ ବର୍ଷ ପାଠ ପଢି ବାର ବର୍ଷ ବୟସରେ ସେ ଶିକ୍ଷାରୁ ବିଦାୟ ନେଇ ବାପାଙ୍କର କୌଳିକ ବ୍ୟବସାୟରେ ଯୋଗ ଦିଅନ୍ତି । ତେବେ ସେ ନିଜସ୍ୱ ଉଦ୍ୟମରେ ଯାହା ପଢିଛନ୍ତି । ବୃହତ୍ତର ସମାଜ ହିଁ ତାଙ୍କ ପାଇଁ ଶିକ୍ଷାକେନ୍ଦ୍ର ପାଲଟି ଥିଲା । ଏକ ମୁକ୍ତ ମନ, ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ, ବିଚାରଶୀଳ ମାନସିକତା, ନ୍ୟାୟବୋଧ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ତାଙ୍କ ବ୍ୟକ୍ତିତ୍ୱର ସହଜାତ ଗୁଣ ଥିଲା ।

ଯୁବକ ଅବସ୍ଥାରୁ ସେ ସମାଜସେବାରେ ବ୍ରତୀ ହୋଇ ତାଙ୍କ ସହରର ମ୍ୟୁନିସିପାଲିଟି ଚେୟାରମ୍ୟାନ ଓ ବହୁ ସଂଗଠନର ଦାୟିତ୍ୱପୂର୍ଣ୍ଣ ପଦପଦବୀରେ ରହି ଶେଷରେ ସବୁଥିରୁ ବିଦାୟ ନେଇ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେଇ ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଭୂମିକା ନେଇଛନ୍ତି । ତେବେ ଭାରତୀୟ ସମାଜରେ ରହିଥିବା ବହୁ ମନ୍ଦ ବ୍ୟବସ୍ଥା, ଉଚ୍ଚନୀଚ ଭେଦଭାବ, ଜାତିପ୍ରଥା, ଅସ୍ପୃଶ୍ୟତା ପରି ସମାଜିକ କଳଙ୍କକୁ ଦୂର କରିବାକୁ ସେ ସଂଗ୍ରାମୀ ପାଲଟିଛନ୍ତି । ତାମିଲନାଡୁର କଂଗ୍ରେସ ଦଳର ସଂପାଦକ ଓ ସଭାପତି ହୋଇଛନ୍ତି । ପରେ ସେ ସାମାଜିକ କ୍ରାନ୍ତି ଆନ୍ଦୋଳନକୁ ଅଧିକ ଗୁରୁତ୍ୱ ଦେଇ ଏଥିପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଛନ୍ତି । ପରାଧୀନ ବ୍ରିଟିଶ ଭାରତରେ ମାଡ୍ରାସ ଷ୍ଟେଟର ପ୍ରଧାନମନ୍ତ୍ରୀ ହେବାର ଅନୁରୋଧକୁ ଗ୍ରହଣ ନକରି ସେ ସାମାଜିକ ଆନ୍ଦୋଳନରେ ସଂପୃକ୍ତ ରହିବାକୁ ଶ୍ରେୟ ମଣିଛନ୍ତି ।

ସମାଜ ସଂସ୍କାର ଓ ସାମାଜିକ ନ୍ୟାୟ ପାଇଁ ସେ ଜୀବନସାରା ପ୍ରୟାସ କରିଛନ୍ତି । ରାଜନୈତିକ ସ୍ୱାଧୀନତା ପାଇଁ ଆନ୍ଦୋଳନ ବେଳେ ଜନଗଣଙ୍କର ଯେଉଁ ଅକୁଣ୍ଠିତ ସମର୍ଥନ ମିଳିଥାଏ ସାମାଜିକ ନ୍ୟାୟ, ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ଏକ ସମତାଭିତ୍ତିକ ଭେଦଭାବ ରହିତ ସମାଜ ପାଇଁ ଆନ୍ଦୋଳନ

Digitized by srujanika@gmail.com

କ୍ଷେତ୍ରରେ ସେହି ସମର୍ଥନ ମିଳିନଥାଏ । ବରଂ ସାମାଜିକ ନ୍ୟାୟ ଆନ୍ଦୋଳନରେ ସଂପୃକ୍ତି ବେଳେ ବହୁ ବିରୋଧର ସମ୍ମୁଖୀନ ହେବାକୁ ହୋଇଥାଏ । ଭାରତୀୟ ସମାଜର ଏହି ବାସ୍ତବତାକୁ ଗଭୀର ଭାବେ ଅନୁଭବ କରି ସେ ସାମାଜିକ କ୍ରାନ୍ତି ପାଇଁ ଜୀବନବ୍ୟାପୀ ସଂଗ୍ରାମ କରିଛନ୍ତି । ଶିକ୍ଷାର ପ୍ରସାର, ମହିଳା ମାନଙ୍କର ଆତ୍ମ ସମ୍ମାନ ଓ ଜାତିଆଣ ଭେଦଭାବର ବିଲୋପ ପାଇଁ ସେ ତାମିଲନାଡୁରେ ପ୍ରତ୍ୟେକ ଆନ୍ଦୋଳନର ଅଗ୍ରଭାବରେ ରହିଛନ୍ତି । ଗାଆଁ ଗାଆଁ ବୁଲି ଲୋକମାନଙ୍କ ଭିତରେ ସମତାର ବାର୍ତ୍ତା ପ୍ରଚାର କରିଛନ୍ତି । ଆତ୍ମମର୍ଯ୍ୟାଦା ଆନ୍ଦୋଳନ (Self Respect Movement) ନାମରେ ସାମାଜିକ କ୍ରାନ୍ତି ପାଇଁ ପଥ ପ୍ରଦର୍ଶକ ହୋଇଛନ୍ତି । ସମାଜର ଯେଉଁ ସବୁ ପରଂପରା ନୀତିବିରୋଧୀ, ଯୁକ୍ତିବିରୋଧୀ ଓ ମାନବିକତା ବିରୋଧୀ ତାହା ଦୂର କରି ପ୍ରତ୍ୟେକ ବ୍ୟକ୍ତିର ଆତ୍ମସମ୍ମାନ ଓ ଅଧିକାର ପାଇଁ ସାଲିସବିହୀନ ସଂଗ୍ରାମ କରିଛନ୍ତି । ଜାତିବିହୀନ ବିବାହ କରାଇ ଜାତିପ୍ରଥାକୁ ବିଲୋପ କରିବା ପାଇଁ ସେ ସାମାଜିକ ଚେତନା ସୃଷ୍ଟି କରିଛନ୍ତି । ଧାର୍ମିକ ପରଂପରା ନାମରେ ସମାଜର ବହୁ ଘୃଣିତ ପ୍ରଥା ବିରୁଦ୍ଧରେ ଦୃଢ଼ ସ୍ୱର ଉଠାଇଛନ୍ତି ।

ପେରିୟାର ଏକ ନୂତନ ସାମାଜିକ ପ୍ରକଳ୍ପର ସ୍ୱପ୍ନ ଦେଖିଥିଲେ । ଏକ ଜାତିମୁକ୍ତ, ବୈଷମ୍ୟମୁକ୍ତ ଓ ଭେଦଭାବମୁକ୍ତ ସମାଜ ନିର୍ମାଣ ପାଇଁ ସଂସ୍କାରବାଦୀ ଚେତନାର ବିକାଶ ଓ ଅର୍ଥନୈତିକ ପ୍ରଗତିର ଖସଡ଼ା ନେଇ ସେ ଗଭୀର ଚିନ୍ତା ପ୍ରକଟ କରିଥିଲେ । ଆମର ଗ୍ରାମମାନଙ୍କର ଦାରିଦ୍ର୍ୟ, ଅଶିକ୍ଷା, କୁସଂସ୍କାରକୁ କିପରି ବିଲୋପ କରି ଜୀବନର ଗୁଣାତ୍ମକ ମାନ ବୃଦ୍ଧି କରାଯାଇ ପାରିବ ସେ ପାଇଁ ସେ ସର୍ବଦା ଗମ୍ଭୀର ଚିନ୍ତା ପ୍ରକଟ କରି ଆସିଛନ୍ତି । ଏହି ପୃଷ୍ଠଭୂମିରେ ସ୍ୱାଧୀନତାର ବହୁ ପୂର୍ବରୁ ସେ କ୍ଷୁଦ୍ର ପରିବାର; ଜନ୍ମ ନିୟନ୍ତ୍ରଣ, ମହିଳା ସଶକ୍ତିକରଣ ବିଷୟରେ ଚିନ୍ତା କରିଥିଲେ ଓ ଏହି ସବୁ ଭାବନା ଆଣିବାରେ ସେ ଭାରତୀୟ ସମାଜ ସଂସ୍କାର ଇତିହାସରେ ଥିଲେ ପଥ ପ୍ରଦର୍ଶକ । ତାଙ୍କ ବିଚାରରେ ସେ ଯେପରି ଥିଲେ ପ୍ରଗତିଶୀଳ ବ୍ୟକ୍ତିଗତ ଜୀବନରେ ଥିଲେ ସେହିପରି ସମ୍ବେଦନଶୀଳ ।

Digitized by srujanika@gmail.com

ବୈଚାରିକ ମାନଦଣ୍ଡରୁ ଦେଖିଲେ ପେରିୟାର ଥିଲେ ଜଣେ ହେତୁବାଦୀ ଚିନ୍ତାନାୟକ ଓ ମାନବବାଦୀ ଜନନାୟକ। ଗାଆଁ ଗାଆଁ ବୁଲି ସମାଜର ସବୁ ବର୍ଗର ଲୋକମାନଙ୍କ ସହିତ ମତ ବିନିମୟ କରି ସେ ଲୋକମାନଙ୍କ ଭିତରେ ବିଚାରଶୀଳ ଓ ବୈଜ୍ଞାନିକ ମାନସିକତା ସୃଷ୍ଟି କରିବାରେ ପ୍ରୟାସ କରିଛନ୍ତି। ତାଙ୍କର ଶାଣିତ ବ୍ୟଙ୍ଗ, ଯୁକ୍ତିଶୀଳ ଆବେଦନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଯୋଗୁଁ ସେ ତାମିଲନାଡୁର ସାମାଜିକ ଜୀବନ ପ୍ରବାହରେ ଗଭୀର ଆଲୋଡନ ସୃଷ୍ଟି କରିଛନ୍ତି। ରକ୍ଷଣଶୀଳ ଓ ମନୁବାଦୀ ବ୍ୟକ୍ତିଙ୍କର ବହୁ କଟାକ୍ଷ ଓ ସମାଲୋଚନାର ଶରବ୍ୟ ହୋଇଛନ୍ତି, ବନ୍ଦୀ ଜୀବନ ବିତାଇଛନ୍ତି, ତେବେ କୌଣସିଥିରେ ହତୋତ୍ସାହିତ ହୋଇନାହାନ୍ତି। ଏକ ଆଦର୍ଶ ସମାଜ, ଦୁଃଖରହିତ ପ୍ରୀତିପୂର୍ଣ୍ଣ ସାମାଜିକ ଜୀବନ ପାଇଁ ସର୍ବଦା ନିଜର ସଂପୃକ୍ତି ପ୍ରକାଶ କରି ଆସିଛନ୍ତି।

ପେରିୟାରଙ୍କର ବହୁ ଲେଖା ତାମିଲ ଭାଷାରେ ରହିଥିଲେ ବି ମୋ ଜାଣିବାରେ ଇଂରାଜୀରେ ମାତ୍ର ଖଣ୍ଡିଏ ବହି Collected Works of Periyar ରହିଛି। ତାଙ୍କ ଉପରେ ଅନେକ ବହି ରହିଛି। ତେବେ ତାଙ୍କର ନିଜ ଲେଖା ଭାବରେ ଏହି ଖଣ୍ଡିକ ବହି ଇଂରାଜୀରେ ରହିଛି। ପେରିୟାରଙ୍କ ବିଷୟରେ ମୁଁ ଅଶି ଦଶକରୁ ଜାଣିବାର ସୁଯୋଗ ପାଇଥିଲେ ବି ତାଙ୍କ ବହିଟିକୁ ଓଡ଼ିଆରେ ଅନୁବାଦ କରିବାର ଭାବନା କିଛି ବର୍ଷ ତଳେ ମୋର ମନକୁ ଆସିଥିଲା। ସୁଖର କଥା ୨ ବର୍ଷ ତଳେ ମୁଁ ଏହାର ଅନୁବାଦ କାର୍ଯ୍ୟ ହାତକୁ ନେଇଥିଲି। ଇଂରାଜୀ ବହିଟିରେ ୩ ଟି ଭାଗ ରହିଛି। ବହିର ପ୍ରଥମ ଭାଗରେ ୧୨ଟି ପ୍ରବନ୍ଧ ଓ ଦ୍ୱିତୀୟ ଭାଗରେ ପେରିୟାର ଚିନ୍ତନ ଭାବେ ତାଙ୍କର ୧୦ ଟି ପ୍ରବନ୍ଧର ଇଂରାଜୀ ଅନୁବାଦ ରହିଛି, ଯାହାର ଅନୁବାଦ ଏହି ପୁସ୍ତକରେ ସ୍ଥାନ ପାଇଛି। ତୃତୀୟ ଭାଗରେ ପେରିୟାରଙ୍କ ଲେଖାର golden sayings of Periyar ନାମରେ କେତେକ ଉଦ୍ଧୃତି ରହିଛି। ଯାହା ଏହି ପୁସ୍ତକରେ ସ୍ଥାନ ପାଇନାହିଁ। ବିଭିନ୍ନ ପ୍ରସଙ୍ଗ ଉପରେ ଛୋଟ ଛୋଟ ପାରା ଓ ଗୋଟିଏ ଦୁଇଟି ବାକ୍ୟରେ ଥିବା କୋଟେସନ (ଉଦ୍ଧୃତି)

Digitized by srujanika@gmail.com

କୁ ମୁଁ ବିଶେଷ ଗୁରୁତ୍ୱ ଦେଇନାହିଁ । ବହିର ମୁଖ୍ୟ ଭାଗ ଅର୍ଥାତ୍ ୨୨ ଟି ପ୍ରସଙ୍ଗ ଉପରେ ତାଙ୍କ ବିଚାର ବହିରେ ରହିଛି, ଯେଉଁଥିରୁ ତାଙ୍କ ଭାବନା ସଂପର୍କରେ ସ୍ୱଷ୍ଟ ଚିତ୍ର ମିଳି ପାରିବ ।

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଏହି ଅନୁବାଦ ବହିର ପ୍ରକାଶନ ଦାୟିତ୍ୱ ନେଇଥିବାରୁ ମୁଁ ପ୍ରକାଶନ ସଂସ୍ଥାକୁ ମୋର କୃତଜ୍ଞତା ଜଣାଉଛି । ଓଡ଼ିଶା ହେତୁବାଦୀ ସମାଜର ବନ୍ଧୁମାନେ ପେରିୟାରଙ୍କ ବହିଟିକୁ ମୁଁ ଅନୁବାଦ କରୁଥିବା ଜାଣି ମୋତେ ଉତ୍ସାହ ଓ ପ୍ରେରଣା ଦେଇଥିବାରୁ ମୁଁ ସମସ୍ତଙ୍କୁ ଧନ୍ୟବାଦ ଜଣାଉଛି । ଏହି ଅନୁବାଦ ପୁସ୍ତକଟି ଓଡ଼ିଶାର ସୁଧୀ ପାଠକ ମହଲରେ ଆଦୃତ ହେଲେ ମୋର ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

**ଏ୧୨, ଭାଗୀରଥି ବିହାର**
**ଢେଙ୍କାନାଳ**
**ଏପ୍ରିଲ ୧, ୨୦୧୨**

**ଧନେଶ୍ୱର ସାହୁ**
**ଅବସରପ୍ରାପ୍ତ ଅଧ୍ୟାପକ,**
**ଦର୍ଶନ ବିଭାଗ**

Digitized by srujanika@gmail.com

# ସୂଚୀପତ୍ର

## ମୁଖବନ୍ଧ

### - ପ୍ରଥମ ଭାଗ -



### - ଦ୍ୱିତୀୟ ଭାଗ -





Digitized by srujanika@gmail.com

### ପରିଚ୍ଛେଦ - ୧

# ଆତ୍ମସମ୍ମାନ ଆନ୍ଦୋଳନର ଉତ୍ପତ୍ତି

୧୯୨୫ ମସିହାରେ ଆତ୍ମସମ୍ମାନ ଆନ୍ଦୋଳନ ନାମରେ ମୁଁ ଏକ ଆନ୍ଦୋଳନ ଆରମ୍ଭ କଲି, ଏହା ସମସ୍ତଙ୍କୁ ଜଣା। ମୁଁ ଏହା କାହିଁକି ଆରମ୍ଭ କଲି ଏହା କହିବା ଆବଶ୍ୟକ। ଏହି ଆନ୍ଦୋଳନର ଆଭିମୁଖ୍ୟ ଜାଣିବା ପାଇଁ ଅନେକ ଆଗ୍ରହୀ ହୋଇପାରନ୍ତି। ଏହା କହିବା ପୂର୍ବରୁ ମୁଁ ମୋ ସ-ର୍କରେ କିଛି କହିବା ଉଚିତ୍ ହେବ। ତାହାଦ୍ୱାରା ମୁଁ ଯାହା କଲି ତାହା ଯଥାର୍ଥ କି ନୁହଁ ସେ ବିଷୟରେ ସିଦ୍ଧାନ୍ତ କରିହେବ।

ପିଲାବେଳେ ଜାତି ବା ଧର୍ମ ନେଇ ମୋର କୌଣସି ଅନୁଭବ ନ ଥିଲା। କହିବାକୁ ଗଲେ ମୁଁ ସେ ସବୁ ବିଷୟରେ ଆଦୌ କିଛି ଜାଣିନଥିଲି, କିନ୍ତୁ ଯେତେବେଳେ ମୁଁ ପରିସ୍ଥିତିରେ ପଡ଼ି ବାଧ୍ୟ ହେଲି, ମୁଁ ସେ ସବୁ ମାନିବାର ଛଳନା କଲି। ସେହିପରି କୌଣସି ଈଶ୍ୱରଙ୍କ ବିଷୟରେ ମୋର କିଛି ଧାରଣା ନ ଥିଲା। ମୁଁ ଯାହା କିଛି କରୁଥିଲି ଈଶ୍ୱର ସେଥିରେ ସନ୍ତୁଷ୍ଟ ହେବେ ବା କ୍ରୋଧ ପ୍ରକାଶ କରିବେ ସେ ବିଷୟରେ ମୋର କୌଣସି ଧାରଣା ନଥିଲା। ଈଶ୍ୱର ମୋତେ ଦଣ୍ଡ ଦେବେ, ଏ ପ୍ରକାର କୌଣସି ଭୟ ରଖି ମୁଁ କୌଣସି କାର୍ଯ୍ୟକୁ ପ୍ରତ୍ୟାଖ୍ୟାନ କରୁନଥିଲି। ସେହିପରି ଈଶ୍ୱର ମୋ ଉପରେ ସନ୍ତୁଷ୍ଟ ହେବେ, ଏପ୍ରକାର ଭାବନା ରଖି ମୁଁ ମଧ୍ୟ କିଛି କରୁନଥିଲି। ଜାତି, ଧର୍ମ, ଈଶ୍ୱର ଇତ୍ୟାଦି ଭାବନାରେ ମୋର ଯେତେ ଦୂର ମନେପଡ଼େ, ମୋର ଆସ୍ଥାନଥିଲା। ଏ ବିଶ୍ୱାସ ଗୁଡିକ ମୋ ପାଖକୁ କେବେ ଆସିଲା ଓ ମୋଠାରୁ କେବେ ଅପସରି ଗଲା, ତାହା ମୋର ସ୍ମୃତି ଭିତରେ ପ୍ରାୟତଃ ନାହିଁ।

ମୋତେ ଯେତେବେଳେ ୬ବର୍ଷ ହୋଇଥିଲା, ବିଦ୍ୟାଳୟରେ ମୋର ନାମ ଲେଖାଗଲା। ବିଦ୍ୟାଳୟଟି ମୋ ଗ୍ରାମ ଏରୋଡ଼ର ଘର ଠାରୁ ଅଳ୍ପ ଦୂରରେ ଥିଲା।

Digitized by srujanika@gmail.com

ବିଦ୍ୟାଳୟ ପାଖାପାଖି ତେଲ ବ୍ୟବସାୟ କରୁଥିବା କେତେକ ପରିବାର ରହୁଥିଲେ । ତେଲ କଳ ଗୁଡିକ ସେଠାରେ କାର୍ଯ୍ୟ କରୁଥିଲା । ପ୍ଲାଟ୍ ଫର୍ମରେ ରହୁଥିବା କେତେକ ଲୋକ ସ୍କୁଲ୍ ପାଖରେ ବାଉଁଶରୁ କୁଲା , ଡାଲା ଇତ୍ୟାଦି ତିଆରି କରୁଥିଲେ । ସେହି ପାଖରେ କେତେକ ମୁସଲମାନ ପରିବାର ବି ରହୁଥିଲେ । ମୋଟ ଉପରେ ବିଦ୍ୟାଳୟ ପାଖରେ ତେଲିଜାତିର ଲୋକ (ତାମିଲରେ ସେମାନଙ୍କୁ "ଚେଟିଆର" କୁହାଯାଏ) ବାଉଁଶ କାରିଗର ଓ ମୁସଲମାନ ପରିବାର ରହୁଥିଲେ । ସେ ସମୟରେ ଅନ୍ୟ ଜାତିର ଲୋକମାନେ ଏମାନଙ୍କ ଘରୁ କୌଣସି ଖାଦ୍ୟ ଗ୍ରହଣ କରୁନଥିଲେ । ମୋତେ ବିଦ୍ୟାଳୟକୁ ପଠାଇବା ପୂର୍ବରୁ ଏହି ଲୋକମାନଙ୍କ ସାଙ୍ଗରେ ମିଳାମିଶା ନକରିବାକୁ ବାରଣ କରାଯାଇଥିଲା । ସେମାନଙ୍କ ଘରେ ଏପରିକି ପାଣି ପିଇବା ପାଇଁ ମୋତେ ମନା କରାଯାଇଥିଲା । ଯଦି ମୋତେ କେତେବେଳେ ଶୋଷ ଲାଗେ , ତେବେ ଶିକ୍ଷକଙ୍କ ଘରକୁ ଯାଇ ପାଣି ପିଇବାକୁ କୁହାଯାଇଥିଲା । ଶିକ୍ଷକ ଜଣେ ନିରାମିଷାଶୀ ବ୍ୟକ୍ତି ଥିଲେ । ସେ ଥିଲେ "ଓଡୁଭାର" ଜାତିର ଲୋକ । ତାଙ୍କ ଘରକୁ ଯାଇ ମୁଁ ଥରେ ଦୁଇଥର ପାଣି ପିଇଛି । ମୁଁ ଯେତେବେଳେ ତାଙ୍କ ଘରକୁ ପାଣି ପିଇବାକୁ ଯାଏ, ଛୋଟ ଝିଅଟିଏ ଆସି ଏକ ପିତଳ ଗ୍ଲାସ୍ ମାଟି ଉପରେ ରଖିଦିଏ , ଏବଂ ସେଥିରେ ପାଣି ଢାଳିଦିଏ । ମୁଁ ଗ୍ଲାସ୍ ଟିକୁ ପାଟିରେ ନ ଲଗାଇ ହାତରେ ପାଣି ଢାଳି ପିଇବାକୁ ସେ ନିର୍ଦ୍ଦେଶ ଦେଇଥାଏ । ପାଣି ପିଇସାରିବା ପରେ ଗ୍ଲାସ୍‌ଟିକୁ ଲେଉଟାଇ ରଖିଦେବା ପାଇଁ ମୋତେ କହେ । ଏହା ପରେ ସେ ଗ୍ଲାସ୍‌ଟିରେ ପାଣି ଢାଳି ଏହାକୁ ପୁଣି ଥରେ ଧୋଇ ଘରଭିତରକୁ ନେଇଥାଏ ।

ଆମ ଘରେ ଯେହେତୁ ଗ୍ଲାସ୍‌ଟିକୁ ମୁହଁରେ ଲଗାଇ ମୁଁ ପାଣି ପିଉଥିଲି ସେଠାରେ ଏ ପ୍ରକାର ପାଣି ପିଇଲା ବେଳେ ମୁଁ ଖୁବ୍ କମ୍ ପାଣି ପିଇପାରୁଥିଲି । ଅବଶିଷ୍ଟ ପାଣି ମୋ ଦେହସାରା ହୋଇଯାଉଥିଲା । ବେଳେବେଳେ ମୋ ନାକ ଭିତରେ ପାଣି ପଶିଯାଇ ମୋତେ କାଶ ବା ଛିଙ୍କ ହେଉଥିଲା । ଏଥିରେ ସେ ଝିଅଟି ମୋ ଉପରେ ରାଗିଯାଉଥିଲା । ଏହା ପରଠୁ ମୁଁ ଶିକ୍ଷକଙ୍କ ଘରକୁ ଯାଇ ପାଣି ପିଇବାକୁ ଚାହିଁଲି ନାହିଁ ।

Digitized by srujanika@gmail.com

ବଣିଆ ଓ ତେଲି ପିଲାମାନେ ଶିକ୍ଷକଙ୍କ ଘରେ କେବେ ଯାଇ ପାଣି ପିଉନଥିଲେ। ସେମାନେ ଶ୍ରେଣୀରେ ଶିକ୍ଷକଙ୍କ ଅନୁମତି ନେଇ ନିଜ ଘରକୁ ଦୌଡ଼ି କରି ଯାଇ ପାଣିପିଇ ଆସୁଥିଲେ। ଯଦି କାହାର ଘର ଦୂରରେ ଥିଲା, ତେବେ ସେମାନେ ଚେଟ୍ଟିଆରଙ୍କ ଘରେ ପାଣି ପିଉଥିଲେ।

ଦିନେ ମୁଁ ଭାବିଲି ଯେ ମୁଁ ସାଙ୍ଗମାନଙ୍କ ସହ ଯାଇ ଚେଟ୍ଟିଆର ପରିବାରରେ ପାଣି ପିଇବି। ଦିନେ ଯେତେବେଳେ ଚେଟ୍ଟିଆର ସାଥୀଟିଏ ପାଣି ପିଇ ଯିବାକୁ ଶିକ୍ଷକଙ୍କ ଅନୁମତି ଲୋଡିଲା, ମୁଁ ମଧ୍ୟ ଛିଡ଼ା ହୋଇ ଶିକ୍ଷକଙ୍କ ଅନୁମତି ଲୋଡିଲି। ଶିକ୍ଷକ ଆମ ଉଭୟଙ୍କୁ ଅନୁମତି ଦେଲେ। ଆମେ ଉଭୟ ଦୌଡ଼ିବାକୁ ଆରମ୍ଭ କଲୁ। ଶିକ୍ଷକ ମୋତେ ପଚାରିଲେ ତୁ କୁଆଡ଼େ ଦୌଡୁଛୁ? ପାଣି ପିଇବାକୁ ବୋଲି ମୁଁ ଉତ୍ତର ଦେଲି। ଶିକ୍ଷକ ପୁଣି ପଚାରିଲେ ତୁ ତା ସାଙ୍ଗରେ କାହିଁକି ଯାଉଛୁ। ଫଳରେ ମୁଁ ଶିକ୍ଷକଙ୍କ ଘରକୁ ଗଲି, ଫେରିଲା ବେଳେ ମୋ ଦେହ ପୁରା ଓଦା ହୋଇଯାଇଥାଏ। ମୁଁ ପିନ୍ଧିଥିବା ଲୁଗାର କିଛି ଅଂଶ ବି ପାଣିରେ ଭିଜିଯାଇଥାଏ। ତା ପରଠୁ ଚେଟ୍ଟିଆର ସାଥିସାଙ୍ଗରେ ପାଣିପିଇ ଯିବାକୁ ମୁଁ ନିଷ୍ପତ୍ତି କଲି। ସେଥିପାଇଁ ମୁଁ ପୂର୍ବରୁ ପ୍ରସ୍ତୁତି କରିଥାଏ। ମୁଁ ପ୍ରଥମେ ଶ୍ରେଣୀରେ ଛିଡ଼ା ହୋଇ ଏକ କରିଯିବାକୁ ଶିକ୍ଷକଙ୍କ ଅନୁମତି ଲୋଡିଲି। ଶିକ୍ଷକ ଅନୁମତି ଦେଲେ। ମୁଁ ଯାଇ ଶିକ୍ଷକଙ୍କ ଘର ପଛରେ ଛିଡା ହେଲି। "ଚେଟ୍ଟିଆର" ସାଥି ଜଣଙ୍କ ପାଣି ପିଇବାକୁ ଶିକ୍ଷକଙ୍କ ଅନୁମତି ନେଇ ଆସିଲା। ଆମେ ତାଙ୍କ ଘରକୁ ସାଥିହୋଇ ଗଲୁ। ମୁଁ ତାଙ୍କ ଘରେ ପାଣିପିଇ ଫେରିଲି।

ମୁଁ ଗ୍ଲାସ୍‌ରୁ ଘରେ ଯେପରି ପାଣିପିଏ ସେଠାରେ ସେପରି ପାଣିପିଇଲି। ଏହା ଦେଖି ଘରର ଜଣେ ଭଦ୍ର ମହିଳା ତାଙ୍କ ଘରେ ପାଣି ପିଇଥିବା ଯୋଗୁ ମୋତେ ଦଣ୍ଡ ଦିଆଯିବ କି ବୋଲି ପ୍ରଶ୍ନ ପଚାରିଲେ। ମୁଁ କହିଲି ଆମ ଘରେ ମୋତେ କେହି କିଛି କହିବେ ନାହିଁ। ଏହାପରେ ମୋର ସାଥି ପାଲାନିଆପନ୍‌କୁ ଗ୍ଲାସଟିକୁ ଧୋଇ ଦେବାକୁ ସେ କହିଲେ। ମୁଁ ଆଗରେ ସ୍କୁଲ୍‌କୁ ଆସିଲି ଓ ମୋ ପରେ ମୋ ସାଙ୍ଗ ଫେରିଲେ। ଆଉ ଦିନେ କୁଲା, ଡାଲା କରୁଥିବା ଜଣେ ଲୋକଙ୍କ

Digitized by srujanika@gmail.com

ଘରେ ମୁଁ ପାଣି ପିଇଥିଲି । ଆସ୍ତେ ଆସ୍ତେ ସେମାନଙ୍କ ଘରର ଖାଦ୍ୟ ମଧ୍ୟ ବେଳେବେଳେ ଚାଖୁଥିଲି । ଏହି ଘଟଣା ଆମଘର ଲୋକ ଜାଣିଲେ । ଆମ ପରିବାର ଅତ୍ୟନ୍ତ ସ୍ୱଚ୍ଛଳ ଥିଲା । ଆମ ଜାତିର ଲୋକମାନେ ରକ୍ଷଣଶୀଳ ବ୍ରାହ୍ମଣମାନଙ୍କ ପରି ଧର୍ମୀୟ କର୍ମକାଣ୍ଡ କରୁଥିଲେ । ଆମ ପରିବାରରେ ଈଶ୍ୱରୀୟ ବିଧାନ ସ-ର୍କରେ ବହୁସମୟରେ ଆଲୋଚନା ହେଉଥିଲା । ମୋ ବ୍ୟବହାରରେ ମୋ ବାପା ବିଶେଷ ବ୍ୟସ୍ତ ନହେଲେ ମଧ୍ୟ ଏପରି କାର୍ଯ୍ୟ ନକରିବାକୁ ମୋତେ କହୁଥିଲେ । ମୋର ମା କିନ୍ତୁ ଅନ୍ୟମାନଙ୍କ ଘରେ ମୁଁ ଖା ପିଅ କରୁଥିବାରୁ ବହୁତ ଚିନ୍ତିତ ହେଉଥିଲେ । ସେ କିଛି ହଜାଇଲା ପରି ମନ ଦୁଃଖ କରୁଥିଲେ । ତେବେ କୌଣସି କଥା ମୋ ପାଇଁ ପ୍ରତିବନ୍ଧକ ହେଉନଥିଲା । ମୋର ମୁସଲମାନ ସାଙ୍ଗମାନେ ମୋତେ ଯାହା ଦେଉଥିଲେ, ମୁଁ ତାହା ଖାଉଥିଲି । ଏ ଖବର ମଧ୍ୟ ଆମଘରେ ପହଞ୍ଚିଲା । ଏହାପରେ ସେହି ସ୍କୁଲରୁ ମୋର ପାଠ ପଢ଼ା ବନ୍ଦ ହେଲା । ମୋତେ ସେତେବେଳେ ମାତ୍ର ୧୦ବର୍ଷ ହୋଇଥିଲା ।

ଯେଉଁମାନଙ୍କ ସହିତ ମିଶିବାକୁ ମୋତେ ବାରଣ କରାଯାଇଥିଲା, ସେହି ପିଲାମାନେ କିନ୍ତୁ ମୋର ଅତି ପ୍ରିୟ ସାଙ୍ଗ ହୋଇ ଯାଇଥିଲେ । ଯେଉଁମାନଙ୍କୁ ସମାଜରେ ଛୋଟ ଓ ଘୃଣା ଦୃଷ୍ଟିରେ ଦେଖାଯାଉଥିଲା, ସେହିଜାତିର ପିଲାମାନଙ୍କ ସହିତ ମୋର ବନ୍ଧୁତା ହୋଇଥିବାରୁ ଏହା ମୋର ପାଠ ପଢ଼ାରେ ପ୍ରତିବନ୍ଧକ ହେଲା । ସେମାନଙ୍କ ସହିତ ମିଳାମିଶା ଯୋଗୁଁ ମୋତେ ଅନ୍ୟମାନେ ବଦମାସ ବୋଲି ବିଚାର କରୁଥିଲେ । ଏପରିକି ମୋର ଗୋଟିଏ ଗୋଡ଼ରେ ଚେନ ଲଗାଇ କାଠରେ ବାନ୍ଧି ଦିଆଯାଇଥିଲା । ୧୫ଦିନ ପର୍ଯ୍ୟନ୍ତ ଏହା କରାଯାଇଥିଲା । ମୁଁ ଏସବୁ ସତ୍ତ୍ୱେ ମୋ ସାଙ୍ଗମାନଙ୍କ ସହିତ ମିଶୁଥିଲି । ଏହା ପରେ ସେହି ସ୍କୁଲରୁ ମୋର ନାମ କଟାଇ ଏକ ସରକାରୀ ବିଦ୍ୟାଳୟରେ ନାମ ଲେଖାଗଲା । ସେଠାରେ ମାତ୍ର ୨ବର୍ଷ ପଢ଼ିବା ପରେ ମୋର ପାଠପଢ଼ାରେ ଡୋରି ବନ୍ଧାଗଲା । ମୋତେ ସେତେବେଳେ ମାତ୍ର ୧୨ବର୍ଷ ବୟସ ହୋଇଥାଏ । ଏହାପରେ ମୋ ବାପାଙ୍କ ଦୋକାନକୁ ମୋତେ ଯିବାକୁ ପଡ଼ିଲା । ସେଠାରେ ମୋତେ ବ୍ୟାଗ ଗୁଡିକରେ ଚିହ୍ନ

Digitized by srujanika@gmail.com

ଦେବା ଏବଂ ଜିନିଷ ଗୁଡ଼ିକର ନିଲାମ କରିଦେବା କାମଦିଆଗଲା । ମୋର ଅବସର ସମୟରେ ମୁଁ ପୁରାଣମାନଙ୍କ ଉପରେ ଆଲୋଚନାରେ ଆଗ୍ରହ ନେଉଥିଲି । ସେ ସମୟରେ ଆମଘରକୁ କେତେକ ସାଧୁ ଭିକ୍ଷୁ, ସନ୍ନ୍ୟାସୀ ଓ ପୂଜକମାନେ ଆସୁଥିଲେ । ସେମାନଙ୍କୁ ମୋତେ ଆଦୌ ଭଲ ଲାଗୁନଥିଲା । ସେମାନେ ଯାହା କହୁଥିଲେ, ମୁଁ ସେ ସବୁର ବ୍ୟଙ୍ଗ କରୁଥିଲି ଓ ସେମାନଙ୍କୁ ଚିଡାଉଥିଲି । ମୁଁ ଏଣୁତେଣୁ ପ୍ରଶ୍ନ ପଚାରି ସେମାନଙ୍କୁ ଅପ୍ରସ୍ତୁତ କରିଦେଉଥିଲି । ଏହି ସବୁ ଘଟଣା ଅନ୍ୟମାନଙ୍କ ସହ ଆଳାପ ଆଲୋଚନା କରିବାକୁ ମୋତେ ସାହାଯ୍ୟ କରୁଥିଲା । ମୋର ଅବସର ସମୟକୁ ମୁଁ ଏହିପରି ଆଳାପ ଆଲୋଚନା ଭିତରେ ବ୍ୟୟ କରୁଥିଲି ।

ଆମଘରେ ଶୈବ ଓ ବୈଷ୍ଣବ ପର-ରାରେ ପଣ୍ଡିତମାନେ କେତେକ ଧର୍ମୀୟ ପୂଜା ଆରାଧନା କରୁଥିଲେ । ଆମ ପରିବାର ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ ଥିବାରୁ ଏସବୁ ଧର୍ମ କାର୍ଯ୍ୟ ଆମ ଘରେ କରାଯାଉଥିଲା । ମୋର ମା' ଭକ୍ତିଭାବରେ ପୂଜକମାନଙ୍କ କଥା ଶୁଣୁଥିଲେ । ମୋର ବାପା ସେସବୁ କାର୍ଯ୍ୟରେ ସନ୍ତୁଷ୍ଟ ଥିଲେ । କାଳକ୍ରମେ ପୁରାଣ ଓ ଧର୍ମଶାସ୍ତ୍ର ବିଷୟରେ ମୋର ଧାରଣା ସ୍ପଷ୍ଟ ହେବାକୁ ଲାଗିଲା । ମୁଁ ପଣ୍ଡିତମାନଙ୍କୁ ବିଭିନ୍ନ ପ୍ରଶ୍ନ ପଚାରୁଥିଲି । ମୋର ପ୍ରଶ୍ନର ଉତ୍ତର ଦେବା ସେମାନଙ୍କ ପାଖରେ ଜଟିଳ ଥିଲା । ଭିନ୍ନଭିନ୍ନ ପଣ୍ଡିତମାନେ ଭିନ୍ନ ଭିନ୍ନ ଉତ୍ତର ଦେଉଥିଲେ । ଏହା ମୋତେ ଅଧିକ କୌତୂହଳୀ କରୁଥିଲା । ଆମର ପଡ଼ୋଶୀମାନେ ମୋର ବୁଦ୍ଧି ଦେଖି ପ୍ରଭାବିତ ହେଉଥିଲେ । ବେଳେବେଳେ ମୋ ବାପା ମୋର ଏପରି ପ୍ରଶ୍ନକୁ ଯଦିବା ଅନ୍ତରରେ ଭଲ ପାଉନଥିଲେ, ତେବେ ମୋର ବୁଦ୍ଧିକୁ ସେ ପ୍ରଶଂସା କରୁଥିଲେ । ଏସବୁ ଘଟଣାର ସମ୍ମିଳିତ ପ୍ରଭାବରୁ ଆସ୍ତେ ଆସ୍ତେ ଜାତି, ଧର୍ମ, ଈଶ୍ୱର ଓ ଶାସ୍ତ୍ରରୁ ମୋର ବିଶ୍ୱାସ ତୁଟିଯିବାକୁ ଲାଗିଲା ।

ଜଣଙ୍କର ଜୀବନର ଲକ୍ଷ୍ୟ ଓ ଆଦର୍ଶ ତାର ପରିବେଶ ଦ୍ୱାରା ପ୍ରଭାବିତ ଓ ପରିଚାଳିତ ହୋଇଥାଏ ବୋଲି କୁହାଯାଏ । ବ୍ୟକ୍ତିର ଦୃଷ୍ଟିଭଙ୍ଗୀ ତାର ସାମାଜିକ ପରିବେଶ ଦ୍ୱାରା ଗଢ଼ି ଉଠିଥାଏ ବୋଲି ଧାରଣା କରାଯାଏ । କିନ୍ତୁ ମୋ କ୍ଷେତ୍ରରେ ମୋ ପରିବେଶ ଦ୍ୱାରା ମୁଁ ଏତେ ପ୍ରଭାବିତ ହୋଇ ନାହିଁ । ମୋର ପରିବେଶ ଓ

Digitized by srujanika@gmail.com

ସ-ର୍କର ମୁଁ କେବେ ଦାସ ହୋଇନାହିଁ । ଏହାକୁ ମୁଁ ଅଧିକ ସ୍ପଷ୍ଟ କରିବା ଆବଶ୍ୟକ । ମୋର ଯୁବକ ଅବସ୍ଥାରେ ମୋର ଏପରି କେତେକ ସାଙ୍ଗ ଥିଲେ ଯେଉଁମାନେ ପିଆପିଇ କରନ୍ତି । ଏହା ମୁଁ ୨୦ବର୍ଷ ରୁ ୩୦ବର୍ଷ ଭିତରେ ହୋଇଥିବା ସମୟର ଘଟଣା । କେତେକ ସରକାରୀ ଅଫିସର, ଜମିଦାର ଓ ସମ୍ଭ୍ରାନ୍ତ ଶ୍ରେଣୀର ଲୋକ ଯେଉଁମାନେ ମୋ ପ୍ରତି ଶ୍ରଦ୍ଧାବାନ ଥିଲେ, ସେମାନେ ମଧ୍ୟ ପିଆପିଇ କରୁଥିଲେ । କେତେକ ସମୟରେ ମୁଁ ସେମାନଙ୍କ ସହିତ ରାତି କଟାଇ ସକାଳୁ ଫେରୁଥିଲି । ସେଠାରୁ ଫେରି ମୁଁ ଆମ ଦୋକାନକୁ ଯାଉଥିଲି । ସାଙ୍ଗମାନଙ୍କ ସାଥିରେ ପ୍ରତ୍ୟେକ ରାତିରେ ମୁଁ ୪୦/୫୦ ଟଙ୍କା ସେମାନଙ୍କ ପିଆପିଇରେ ଖର୍ଚ୍ଚ କରୁଥିଲି । ସୋଡ଼ା ପାନୀୟ ସହିତ କିଛି ଲିକର ମିଶାଇ ମୁଁ ସମ୍ମାନର ସହିତ ସେମାନଙ୍କୁ ଦେଉଥିଲି । ସେମାନଙ୍କୁ ନିଶା ଧରିବା ପରେ କେହି କେହି ମୋ ଉପରକୁ ଲିକର ପାଟିରୁ ପକାଉଥିଲେ । ଏକଦା ଜଣେ ଡେପୁଟି କଲେକ୍ଟର ଓ ଜଣେ କମିଶନର ମୋତେ ଭିଡି ନେଇ ମୋ ମୁହଁରେ ଜବରଦସ୍ତ ଲିକର ଢାଳିଦେଇଥିଲେ । ଏସବୁ ସତ୍ତ୍ୱେ ଲିକର ପିଇବାକୁ ମୁଁ ସମାନ୍ୟ ଆଗ୍ରହ କରିନାହିଁ । ମୋର ପତ୍ନୀ ମୁଁ ପିଆପିଇ କରୁଥିବି ବୋଲି କେତେବାର ସନ୍ଦେହ ପୋଷଣ କରିଛନ୍ତି । ମୋର ପାଟି ଖୋଲି ମୋର ପାଟିର ବାସ୍ନାରୁ ମୁଁ ପିଉଛି କି ନାହିଁ ବୋଲି ସେ ପରୀକ୍ଷା କରୁଥିଲେ । ଏସବୁ କହିବାର ତାତ୍ପର୍ଯ୍ୟ ହେଉଛି ଯେ ମୋର ସ-ର୍କ ଓ ପରିବେଶ ଦ୍ୱାରା ମୁଁ ପ୍ରଭାବିତ ହେଉନଥିଲି । ମୋର ସାମାଜିକ ପରିବେଶ ମୋତେ ଆଦୌ ପ୍ରଭାବିତ କରୁନଥିଲା । ଏହିପରି ଏକ ସମାଜରେ ରହି ମଧ୍ୟ ମୁଁ ମୋର ବ୍ୟବସାୟରେ ବେଶ୍ ସଫଳ ହେଉଥିଲି । ମୋର ବାପା ମୋ ଉପରେ ବହୁ ଭରସା ରଖୁଥିଲେ । ଏପରିକି ଦୋକାନର ନାମ ଫଳକରୁ ସେ ତାଙ୍କ ନାମକୁ ବାଦ୍ ଦେଇ ମୋ ନାମ ଲେଖୁଥିଲେ । କୌଣସି ଗୁରୁତ୍ୱପୂର୍ଣ୍ଣ ସାଧାରଣ କାର୍ଯ୍ୟରେ ତାଙ୍କର ପ୍ରତିନିଧିତ୍ୱ କରିବା ପାଇଁ ସେ ମୋତେ ପଠାଉଥିଲେ ।

ମନ୍ଦିର ଓ ଦେବସ୍ଥାନ ଇତ୍ୟାଦି କାର୍ଯ୍ୟରେ ମୋ ବାପା ମୋତେ ସଂପୃକ୍ତ କରାଉଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଏହାଦ୍ୱାରା ମୋର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ

Digitized by srujanika@gmail.com

ହେବ। ତାଙ୍କର ବିଶ୍ୱାସ ଥିଲା ଯେ ଏହାଦ୍ୱାରା ମୁଁ ଧର୍ମ ଓ ଈଶ୍ୱରଙ୍କଠାରେ ଆସ୍ଥା ସ୍ଥାପନ କରିବି। କେତେକ ମନ୍ଦିର ଓ ଦେବସ୍ଥାନ କମିଟିରେ ମୋତେ ସ-ାଦକ ଓ ସଭାପତି କରାଯାଇଥିଲା।

ଏହି ପରିସ୍ଥିତିରେ ମୋତେ ଯେଉଁ ଦାୟିତ୍ୱ ଦିଆଯାଉଥିଲା ସେ ସବୁ ଯେଉଁଭଳି ହେବା ଦରକାର, ମୁଁ ସେଭଳି କରିବାକୁ ପ୍ରୟାସ କରୁଥିଲି। ଏପରିକି ମୋର ବିଶ୍ୱାସ ନଥିବା କେତେକ ଘଟଣାରେ ମୁଁ ସାଧୁତା, ନିଷ୍ଠାପରତା ଓ ସଚ୍ଚୋଟତା ଅବଲମ୍ବନ କରୁଥିଲି।

ସମାଜରେ ଜାତିପ୍ରଥା ଓ ଧାର୍ମିକ କୁସଂସ୍କାରର ମୂଳୋତ୍ପାଟନ ପାଇଁ ମୁଁ ଆଗ୍ରହୀ ଥିଲି। ମୁଁ ଯେ ଏସବୁ କରିବା ପାଇଁ ସମର୍ଥ ଏହା ନେଇ ମୋର ସାମର୍ଥ୍ୟ ଉପରେ ମୋର ସନ୍ଦେହ ଥିଲା। ଆମର ଏକ ସୁଖ ଶାନ୍ତିମୟ ପାରିବାରିକ ଜୀବନ ଥିଲା। ଆମର ପରିବାର କାହା ଉପରେ ନିର୍ଭର ନକରି କିଛି ପ୍ରତିଷ୍ଠାଲାଭ କରିଥିଲା। ଗୋଟିଏ ସୁଖମୟ ଜୀବନ ପାଇଁ ପ୍ରକୃତରେ କ'ଣ ଆବଶ୍ୟକ ? ନିଜର ଆଦର୍ଶ ପାଇଁ ସୁସ୍ଥ ଶରୀର, ସଂକଳ୍ପ ଓ କଠିନ ପରିଶ୍ରମ ଯେ ଆବଶ୍ୟକ ଏହା ମୁଁ ଭାବିଲି। ଆଳସ୍ୟ ବା ନିର୍ଭରଶୀଳତାଦ୍ୱାରା କୌଣସି କାର୍ଯ୍ୟ ସାଧନ ହେବା ସମ୍ଭବ ନୁହେଁ ବୋଲି ବିଶ୍ୱାସ ମୋର ଥିଲା।

ଜଣେ ନିଜର ଆଦର୍ଶକୁ ନିଜର ସ୍ୱାର୍ଥ ପାଇଁ ବଳିଦେବା ଠିକ୍ ନୁହେଁ। ନିଜର ଆଦର୍ଶକୁ ରକ୍ଷା କରିବା ପାଇଁ କେତେକ ସ୍ୱାଧୀନତା ସେ ପାଇବା ଆବଶ୍ୟକ। ମୁଁ ଅନୁଭବ କଲି ଯେ ମୋର ସେହି ସ୍ୱାଧୀନତା ଓ ସାମାଜିକ ପ୍ରତିଷ୍ଠା ରହିଛି। ଆଜି ମଧ୍ୟ ମୋର ଏହି ସ୍ୱାଧୀନତା ଥିବା ମୁଁ ଅନୁଭବ କରୁଛି। ନିଜର ଆଦର୍ଶର ରୂପାୟନ ପାଇଁ ଏହାହିଁ ଯଥାର୍ଥ ଦିଗ ବୋଲି ମୁଁ ଚିନ୍ତା କରୁଛି। ମୁଁ ଅନ୍ଧ ଭାବରେ କୌଣସି କାର୍ଯ୍ୟକୁ ଅନୁକରଣ କରିବାକୁ ଚାହିଁ ନାହିଁ।

ମୋର ମୃତ୍ୟୁ ପର୍ଯ୍ୟନ୍ତ ମୋର ଇନ୍ଦ୍ରିୟ ଗୁଡିକ ଯଦି କାର୍ଯ୍ୟ କରୁଥିବେ ତେବେ ମୁଁ ସୁଖର ସହିତ ଏକ ଜୀବନ ବଞ୍ଚିଲି ବୋଲି ଅନୁଭବ କରିବା ସହ

Digitized by srujanika@gmail.com

ସୁଖରେ ମୃତ୍ୟୁବରଣ କରିବି। କୌଣସି ବିଷୟରେ କାହାକୁ ଈର୍ଷା କରିବା କିମ୍ବା କାହା ବିରୁଦ୍ଧରେ ଅଭିଯୋଗ ଆଣିବା ମୁଁ ଉଚିତ୍ ମନେକରେ ନାହିଁ। ବରଂ ନିଜର ସଂକଳ୍ପ ଅନୁଯାୟୀ ନିଜର କାର୍ଯ୍ୟ କରିବାକୁ ମୁଁ ଯଥାର୍ଥ ମନେ କରେ। ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ମୁଁ ନିଜକୁ କୌଣସି ନା କୌଣସି କାର୍ଯ୍ୟରେ ସଂଯୁକ୍ତ ରଖିବାକୁ ଚାହେଁ। କାର୍ଯ୍ୟ ବ୍ୟତୀତ ଜୀବନର କୌଣସି ଅର୍ଥ ନଥାଏ। ମୋ ଜୀବନର ଲକ୍ଷ୍ୟ ମୋ ଦ୍ୱାରା ହିଁ ସ୍ଥିର ହୋଇଥାଏ। ସମାଜରୁ ଅହିତକର ଜାତିପ୍ରଥାକୁ ବିଲୋପ କରିବା ପାଇଁ ମୁଁ ସଂକଳ୍ପ ନେଇଥିଲି। ସେହିପରି ଧାର୍ମିକ କୁସଂସ୍କାର ଓ ଈଶ୍ୱରଙ୍କ ନାମରେ ଶୋଷଣକୁ ଦୂର କରିବାକୁ ମୁଁ ପ୍ରୟାସ କରିଛି। ସମାଜର ମଙ୍ଗଳ ପାଇଁ କାର୍ଯ୍ୟ କରିବାକୁ ମୋ ଜୀବନର ଲକ୍ଷ୍ୟ ବୋଲି ମୁଁ ପ୍ରୟାସ କରିଛି। ସମାଜକୁ ଉନ୍ନତ କରିବା ପାଇଁ ମୋ ପରିସରରେ ଯାହା ସମ୍ଭବ ମୁଁ ତାହା କରିବାକୁ ଚେଷ୍ଟା କରିଛି। ମୋ ଭିତରେ ଯେତେବେଳେ ଏହି ଭାବନା ଦୃଢ଼ହେଲା, ସେତେବେଳେ ମୁଁ ପୂର୍ଣ୍ଣପ୍ରାଣରେ ସମାଜସଂସ୍କାର ପାଇଁ ନିଜକୁ ଉତ୍ସର୍ଗ କରିବାକୁ ଭାବିଲି।

ଏହି ଲକ୍ଷ୍ୟନେଇ ଆତ୍ମସମ୍ମାନ ଆନ୍ଦୋଳନ ମୁଁ ଆରମ୍ଭ କଲି। ସମାଜରୁ ସକଳ ବିଦ୍ୱେଷ ଲୋପ କରିବାକୁ ମୁଁ ଲକ୍ଷ୍ୟ ଭାବରେ ନେଲି। ବ୍ୟକ୍ତିର କୌଣସି ଅଭିଯୋଗ ବା ସ୍ୱାର୍ଥ ଏଥିରେ ସଂଶ୍ଳିଷ୍ଟ ନୁହେଁ। ଏସବୁ ସମାଜରେ ହୁଏତ ରହିଛି। ଯେତେବେଳେ ଲୋକମାନେ ଜୁଆ ଖେଳରେ ମାତନ୍ତି କିମ୍ବା ବିଭିନ୍ନ ଚିନ୍ତା, ଅସନ୍ତୋଷ ବା ଦୁଃଖରେ ମ୍ରିୟମାଣ ହୁଅନ୍ତି ସେତେବେଳେ ସମାଜରେ ମଧ୍ୟ ଖରାପ ପରିବେଶ ଆସିଥାଏ। ପ୍ରତ୍ୟେକ ପ୍ରାଣୀର ଜୀବନରେ ସୁଖ ଦୁଃଖ ରହିବା ଅବଶ୍ୟମ୍ଭାବୀ। ସେହିପରି ଜୀବନରେ କେତେକ ଆହ୍ୱାନ ଆସିବା ମଧ୍ୟ ସ୍ୱାଭାବିକ୍। ଏହିସବୁ ଭାବନାରୁ ମୁଁ ମୋର ଆନ୍ଦୋଳନ ଆରମ୍ଭ କଲି। ଏହାକୁ କେତେକ ନିଷ୍କାମ କର୍ମ ବୋଲି କହିପାରନ୍ତି। ଯାହାର ଅର୍ଥ ହେଉଛି କୌଣସି ଫଳପ୍ରାପ୍ତିର ଆଶା ନରଖି ନିଜର କର୍ତ୍ତବ୍ୟ କରିବା। ଜଣେ ବ୍ୟକ୍ତି କୌଣସି କାର୍ଯ୍ୟ କଲାବେଳେ ସେ ସୁଫଳ ଆଶା କରିବା ସ୍ୱାଭାବିକ। ଏହି ପରିପ୍ରେକ୍ଷୀରେ ତାହାର କେତେକ ଉଦ୍ୟୋଗ ରହିବା ଆବଶ୍ୟକ। କିନ୍ତୁ ବାସ୍ତବରେ ଜଣେ ବ୍ୟକ୍ତି କେଉଁ କାର୍ଯ୍ୟ ହାତକୁ ନେବ

Digitized by srujanika@gmail.com

ତାହା ସେ ମନୋନୀତ କରିଥାଏ । ଆତ୍ମସମ୍ମାନ ଆନ୍ଦୋଳନ କରିବାକୁ ମୁଁ ନିଷ୍ଠତ୍ତିମୂଳକ ଭାବରେ ସ୍ଥିର କଲି । ଏହି କାର୍ଯ୍ୟ କରିବାରେ କେତେବେଳେ ମୁଁ ଭଗ୍ନ ମନୋରଥ ହୋଇନାହିଁ ବରଂ ଏହି କାର୍ଯ୍ୟ କରିବାକୁ ମୁଁ ସର୍ବଦା ଆଗ୍ରହୀ ହୋଇଛି ।

ଆତ୍ମସମ୍ମାନ ଆନ୍ଦୋଳନ କ'ଣ ତାହାର ଦର୍ଶନ ପ୍ରାୟତଃ ସ୍ପଷ୍ଟ । କାର୍ଯ୍ୟ କାରଣ ନିୟମଟି ବିଜ୍ଞମଣ୍ଡଳୀରେ ଗୃହୀତ । କୌଣସି କାର୍ଯ୍ୟ ପଶ୍ଚାତରେ କିଛି କାରଣ ରହିଥାଏ । ଘଟଣାର କାରଣ ଖୋଜିବା ଏକ ବିଚାରଶୀଳ ମନର ପ୍ରକାଶ ମାତ୍ର । ଅପର ପକ୍ଷରେ ଅଜ୍ଞତାର ସହ ବିଶ୍ୱାସ କରିବା ଏକ ଦାସତ୍ୱର ପ୍ରତୀକ କହିଲେ ଅତ୍ୟୁକ୍ତି ହେବନାହିଁ ।

ଆତ୍ମସମ୍ମାନ ଆନ୍ଦୋଳନର ଏହାହିଁ ହେଉଛି ସିଦ୍ଧାନ୍ତ । କୌଣସି କାର୍ଯ୍ୟର ଭଲ ମନ୍ଦ ତାହା କରିବା ପୂର୍ବରୁ ଚିନ୍ତା କରିବା ଆବଶ୍ୟକ । କୌଣସି କାର୍ଯ୍ୟର କାରଣ ଓ ପରିଣାମକୁ ଚିନ୍ତାକରି ସତ୍ୟକୁ ସମ୍ମାନ ଦେବା ଆବଶ୍ୟକ । ଏହାହିଁ ହେଉଛି ଆତ୍ମସମ୍ମାନର ଲକ୍ଷ୍ୟ । ସ୍ୱାଧୀନତା ଓ ଆତ୍ମସମ୍ମାନ ପରସ୍ପର ସହ ଘନିଷ୍ଠ ଭାବେ ସଂଯୋଜିତ । ଯେଉଁମାନେ ଆଜି ସ୍ୱାଧୀନତାର ସପକ୍ଷରେ ଅଛନ୍ତି, ସେମାନେ ଆତ୍ମସମ୍ମାନକୁ ଗୁରୁତ୍ୱ ନଦେବା ଅବାନ୍ତର ମନେହୁଏ । ଆତ୍ମସମ୍ମାନ ବ୍ୟତୀତ ସ୍ୱାଧୀନତାର ମହତ୍ତ୍ୱ ରହିବ ନାହିଁ । ବରଂ ଆତ୍ମସମ୍ମାନ ଆଦର୍ଶ ସ୍ୱାଧୀନତାର ଭାବନା ସୃଷ୍ଟି କରିଥାଏ । ଆତ୍ମସମ୍ମାନକୁ ଗୁରୁତ୍ୱ ନଦେଇ ସ୍ୱାଧୀନତାର ଭାବନା ସମ୍ପୂର୍ଣ୍ଣ ହେବନାହିଁ । ଉଦାହରଣ ସ୍ୱରୂପ-ରାଜନୈତିକ ସ୍ୱାଧୀନତା କଥା ବିଚାରକୁ ନିଆଯାଉ । ରାଜନୀତି କ୍ଷେତ୍ରରେ ମହାତ୍ମାଗାନ୍ଧୀ ଓ ଜବାହାରଲାଲ ହେଉଛନ୍ତି ଦୁଇଜଣ ଜାଜ୍ୱଲ୍ୟମାନ ବ୍ୟକ୍ତି ।

ଗାନ୍ଧୀଙ୍କ ମତରେ ହିନ୍ଦୁ ଧର୍ମ ଓ ପ୍ରାଚୀନ ପଦ୍ଧତିର ନବୀକରଣ ହେଉଛି ସ୍ୱାଧୀନତା । ସେହିପରି ବ୍ରିଟିଶ କବଳରୁ ମୁକ୍ତି ହିଁ ସ୍ୱାଧୀନତା ବୋଲି କୁହାଯାଉଛି । କିନ୍ତୁ ମଣିଷ ସମାଜରେ ଥିବା ଅପରିସୀମ ଦୁଃଖର ବିଲୋପ ନହେଲେ ସ୍ୱାଧୀନତାର କୌଣସି ଅର୍ଥ ରହିବ ନାହିଁ । ଏପରିକି ସ୍ୱାଧୀନତା ପରେ ମଧ୍ୟ ସମାଜରେ ଦୁଃଖ

Digitized by srujanika@gmail.com

ବୈନ୍ୟ ଅଧିକ ହୋଇପାରେ । ବ୍ରିଟିଶ ନାଗରିକମାନେ ଅନେକ ସ୍ୱାଧୀନତା ଉପଭୋଗ କରନ୍ତି ବୋଲି କୁହାଯାଏ । ଏହା ଜଣାଶୁଣା ଯେ ବ୍ରିଟେନ୍‌ର ରାଜା ନିଜର ମନୋନୀତ ଭଦ୍ର ମହିଳାଂକୁ ବିବାହ କରିବା ପାଇଁ ନିଜର ସିଂହାସନ ତ୍ୟାଗ କରିଥିଲେ । ଏଥିରେ ନିର୍ବାଚିତ ପ୍ରତିନିଧିମାନେ କିପରି ଭୂମିକା ନେଇଥିଲେ ତାହା ଜଣାଶୁଣା । ଏହି ପରିସ୍ଥିତିରେ ଗାନ୍ଧୀ କିମ୍ବା ନେହରୁ ଯେଉଁ ସ୍ୱାଧୀନତାର କଥା କହୁଛନ୍ତି , ସେଥିରେ ଆତ୍ମସମ୍ମାନର କ'ଣ ଗୁରୁତ୍ୱ ରହିବ ? ବ୍ରିଟେନ୍‌ର ରାଜା ଗାଦି ରକ୍ଷାକରିବା ପାଇଁ ତାଙ୍କର ବିବାହ କରିବା ସ୍ୱାଧୀନତାକୁ ବଳି ଦେବା ଠିକ୍ ହୋଇଥାନ୍ତା କି? ସ୍ୱାଧୀନତା ସହ ଆତ୍ମସମ୍ମାନ ନ ରହିଲେ ତାର କ'ଣ ମହତ୍ତ୍ୱ ଅଛି ? ମୋଟ ଉପରେ ଆତ୍ମସମ୍ମାନ ଠାରୁ ଅଧିକ କିଛି ମହତ୍ତ୍ୱ ଜୀବନରେ ରହିବା ସମ୍ଭବ ନୁହେଁ ।

ଆତ୍ମସମ୍ମାନ ଆନ୍ଦୋଳନ ଏକ ସାଧାରଣ ପରିସରରେ ଆରମ୍ଭ ହୋଇଥିଲେ ମଧ୍ୟ ଏ କ୍ଷେତ୍ରରେ ଅନେକ ପ୍ରତିବନ୍ଧକ ସୃଷ୍ଟି ହୋଇଛି । ଅନେକ କ୍ଷେତ୍ରରେ ଏହାକୁ ଦବାଇଦେବା ପାଇଁ ବା ଏହାପାଇଁ ଜଟିଳ ସମସ୍ୟା ସୃଷ୍ଟି କରିବା ପାଇଁ କେତେକ ପ୍ରୟାସ କରିନାହାଁନ୍ତି କି ? ଆତ୍ମସମ୍ମାନ ଆନ୍ଦୋଳନ ତାମିଲ୍‌ନାଡୁ, କେରଳ ଓ ଆନ୍ଧ୍ରପ୍ରଦେଶର ସାମାଜିକ ଜୀବନ ପ୍ରବାହରେ ଏକ ଝଡ଼ ସୃଷ୍ଟି କରିଛି । କେତେକ ପଣ୍ଡିତ, ଆଚାର୍ଯ୍ୟ ଓ ସଚେତନ ବ୍ୟକ୍ତି ଏହାଦ୍ୱାରା ପରିବର୍ତ୍ତିତ ହୋଇଛନ୍ତି । ଗାନ୍ଧୀଙ୍କ ବିଚାରରେ ଏହା ମଧ୍ୟ କ-ନ ଆଣିଛି । ଲୋକମାନେ ସ-ତି ଅଧିକାର ଦାବି କରୁଛନ୍ତି । ଉଚ୍ଚ ଜାତି ଓ ନୀଚ ଜାତି ଭିତରେ ଥିବା ବୈଷମ୍ୟ ଦୂର ହେବାକୁ ଆରମ୍ଭ କରିଛି । ବାଇବେଲ ଓ କୋରାନର ଏକ ନୂତନ ବ୍ୟାଖ୍ୟା କରାଯାଉଛି । ଯଦି କଂଗ୍ରେସ ଆତ୍ମସମ୍ମାନ ଆନ୍ଦୋଳନ କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରୁନଥାନ୍ତା, ତେବେ ଏହି ଆନ୍ଦୋଳନ ସମଗ୍ର ଭାରତବର୍ଷରେ ପରିବ୍ୟାପ୍ତ ହୋଇ ସାରନ୍ତାଣି, ଯାହାଦ୍ୱାରା ବ୍ରାହ୍ମଣବାଦର ବିଲୋପ ସମ୍ଭବ ହୋଇଥାନ୍ତା ।

ସାରା ଭାରତରେ ଆମର ଆଦର୍ଶକୁ ପ୍ରସାର କରିବା ପାଇଁ ଲକ୍ଷ୍ୟ ରଖୁଛୁ । ଯୁବକମାନେ ଏହି ଲକ୍ଷ୍ୟ ଦିଗରେ କାର୍ଯ୍ୟ କରିବାକୁ ଆଗ୍ରହ ପ୍ରକାଶ କରୁଛନ୍ତି । ମୁଁ

Digitized by srujanika@gmail.com

ଜୀବନରେ କିଛି ପ୍ରତିବନ୍ଧକର ସମ୍ମୁଖୀନ ହେଲେ ବି ଏହା ଆତ୍ମସମ୍ମାନ ଆନ୍ଦୋଳନ କ୍ଷେତ୍ରରେ ବାଧା ସୃଷ୍ଟି କରିବ ନାହିଁ । ଯୁବକମାନେ ଏହି ଲକ୍ଷ୍ୟକୁ ହାତକୁ ନେବେ ।

## ଆତ୍ମ ସମ୍ମାନ ବନାମ ଈଶ୍ୱର ଓ ଧର୍ମ

ମଣିଷ ସମାଜରେ ସଂଘବଦ୍ଧ ଜୀବନ ପରିପ୍ରେକ୍ଷୀରେ ଧର୍ମର ଭାବନା ସୃଷ୍ଟି ହୋଇଛି । ସାମାଜିକ ଜୀବନ ପ୍ରବାହରେ କେତେକ ନୈତିକ ଆଚରଣକୁ ଧର୍ମ କୁହାଯାଇ ପାରେ । ଆତ୍ମସମ୍ମାନ ଆନ୍ଦୋଳନ ଏହି ପ୍ରକାର ଧର୍ମର ବିରୁଦ୍ଧାଚରଣ କରେ ନାହିଁ । ଧର୍ମକୁ ଯଦି ଈଶ୍ୱର ପ୍ରାପ୍ତିର ମାର୍ଗ ଭାବେ ନିଆଯାଏ ସେଥିରେ ଆମର କିଛି କହିବାର ନାହିଁ । ଧର୍ମକୁ ବ୍ୟକ୍ତିଗତ ସ୍ତରରେ ଆବଦ୍ଧ ରଖିଲେ ସେଥିରେ ବିରୋଧ କରିବାର କିଛି ନାହିଁ । କିନ୍ତୁ ଧର୍ମ ଯଦି ସମାଜରେ ଜ୍ଞାନ ଓ ଆତ୍ମସମ୍ମାନ ପ୍ରତି ବିପଦ ସୃଷ୍ଟି କରେ, ତେବେ ସେ କ୍ଷେତ୍ରରେ ଆମର ପ୍ରତିବାଦ କରିବାର ଅଛି । ବାସ୍ତବରେ ଦେଖିଲେ ଏହା ଲୋକମାନଙ୍କ ଭିତରେ ଉଚ୍ଚନୀଚ ଭେଦଭାବ ସୃଷ୍ଟି କରିବା ସହ ଆତ୍ମସମ୍ମାନକୁ ନଷ୍ଟ କରି ଦେଇଛି । ଏହା ସମାଜରେ ବିଚ୍ଛିନ୍ନତା ଭାବ ଆଣିବା ସହ ବ୍ୟକ୍ତିର ସ୍ୱାଧୀନତାକୁ ବପନ୍ନ କରୁଛି । ଏହି ପୃଷ୍ଠଭୂମିରେ ଆତ୍ମସମ୍ମାନ ଆନ୍ଦୋଳନ ଏହାର ମୁକାବିଲା କରିବ । ପୃଥିବୀରେ ତ ଅନେକ ଧର୍ମ ରହିଛି, ତେବେ ବିଦେଶୀମାନଙ୍କ ଧର୍ମ ବିଷୟରେ ଆମର ଚିନ୍ତା ପ୍ରକଟ କରିବାର ନାହିଁ । ଆମେ କିନ୍ତୁ ଏଠାରେ ଆମର ଧର୍ମ କୁହାଯାଉଥିବା ହିନ୍ଦୁଧର୍ମକୁ ବିଚାରକୁ ନେବା ।

ଭାରତୀୟମାନେ ଏତେ ବିଭାଜିତ ହୋଇ ରହିବାର କ'ଣ କାରଣ ରହିଛି? ଜନମାନସକୁ ଏତେ ଭାବରେ ବିଭକ୍ତ କରିବାରେ ହିନ୍ଦୁଧର୍ମ ଦାୟୀ ନୁହେଁ କି? ଅସଂଖ୍ୟ ଜାତି ପୁଣି ଜାତିମାନଙ୍କ ଭିତରେ ଉଚ୍ଚନୀଚ ଭେଦଭାବ ହିନ୍ଦୁଧର୍ମରୁ ସୃଷ୍ଟି ହୋଇ ନାହିଁ କି? ଆମର ପ୍ରଚୀନ ଶାସ୍ତ୍ରରୁ ଏହାର ଯଥେଷ୍ଟ ପ୍ରମାଣ ମିଳେ । ସମାଜରୁ ଜାତି ପ୍ରଥା ଓ ଅସ୍ପୃଶ୍ୟତା ଦୂର କରିବାକୁ ହେଲେ ପ୍ରଥମେ ଏହାର ଆଧାର ହୋଇଥିବା ଧର୍ମ ଓ ଶାସ୍ତ୍ରକୁ ଦୂର କରିବା ଯଥାର୍ଥ ହେବ ନାହିଁ କି?

Digitized by srujanika@gmail.com

କୌଣସି ଅବ୍ରାହ୍ମଣ ବ୍ୟକ୍ତି ହିନ୍ଦୁଧର୍ମ ଭିତରେ ରହି କିପରି ଅସ୍ପୃଶ୍ୟତାରୁ ଓ ଜାତିଆଣ ବାଛବିଚାରରୁ ମୁକ୍ତ ହୋଇ ପାରିବ ? ସାମାଜିକ ଓ ଅର୍ଥନୈତିକ ସ୍ତରରେ ସକଳ ସୁବିଧା ସୁଯୋଗ ବ୍ରାହ୍ମଣମାନେ ହିଁ ଉପଭୋଗ କରି ଆସିଛନ୍ତି ଓ ଅନ୍ୟମାନେ ଏଥିରୁ ବଞ୍ଚିତ ହୋଇ ରହିଛନ୍ତି । ହିନ୍ଦୁ ଧର୍ମର ଏହି କଥା କହିଲାବେଳେ କେତେକ ଧର୍ମାନ୍ଧ ଲୋକ ପ୍ରତିବାଦର ସ୍ୱର ଉଠାଇବେ । ବାସ୍ତବରେ ଆମର ଏହି ଧର୍ମ କିଛି ଉପକାର କରିଛି କି ? ଧର୍ମର ନିଶା ଆମକୁ ଖରାପ ପଥକୁ ନେଇଛି । ମଦ୍ୟପାନ କଲେ ଏହା ମଦ୍ୟପକୁ ବିପଥଗାମୀ କରିଥାଏ, ଧର୍ମ ସେହିପରି ବ୍ୟକ୍ତିକୁ ଧର୍ମାନ୍ଧତା ଭିତରକୁ ନେଇଥାଏ ।

ଧର୍ମ ଯେ କେବଳ ସାମାଜିକ ସ୍ତରରେ ଉଚ୍ଚ ନୀଚ ଭେଦଭାବ ଆଣିଥାଏ ତାହା ନୁହେଁ, ଏହା ଆର୍ଥିକ ସ୍ତରରେ ମଧ୍ୟ ସାନ ବଡ଼ ଅନେକ ପ୍ରଭେଦ ସୃଷ୍ଟି କରିଥାଏ । ଏହା ଏପରି ଶ୍ରେଣୀ ସୃଷ୍ଟି କରିଥାଏ ଯେଉଁଠି ଗୋଟିଏ ବୃହତ ଶ୍ରେଣୀ ଶ୍ରମ କରି ଉତ୍ପାଦନ କରିବ ଓ ଆଉଗୋଟିଏ ଶ୍ରେଣୀ ବିନା ପରିଶ୍ରମରେ ସେମାନଙ୍କ ଉତ୍ପାଦନର ସୁଫଳ ଉପଭୋଗ କରିବ । ଶ୍ରମଜୀବୀ ଶ୍ରେଣୀକୁ ସ-ତ୍ତିରେ ଅଧିକାର ଦିଆନଯିବା ଏକ ବିଡ଼ମ୍ବନା ନିଶ୍ଚୟ । ମୁଷ୍ଟିମେୟ ବ୍ୟକ୍ତି କୌଣସି ଶ୍ରମ ନକରି ସ-ତ୍ତି ଉପଭୋଗ କରନ୍ତି, ଅଥଚ ଅଗଣିତ ବ୍ୟକ୍ତି ଦରିଦ୍ର ଓ ନିକ୍ଷେପିତ ହୋଇ ରୁହନ୍ତି । ଏହା କାହିଁକି ସୃଷ୍ଟି ହୋଇଛି ? ଧର୍ମ ମଣିଷକୁ ନୀଚ ଜାତି ଓ ଦାସତ୍ୱର ବେଡ଼ି ପିନ୍ଧାଇଛି । ଯେଉଁମାନେ ଧାର୍ମିକ ଭାବନା ଦ୍ୱାରା ଶରୀରଶ୍ରମରୁ ମୁକ୍ତ ହୋଇଛନ୍ତି, ସେହିମାନେ ହିଁ ସମସ୍ତ ଧନ ସ-ତ୍ତିର ଅଧିକାରୀ ହୋଇଛନ୍ତି ଓ ପ୍ରାଚୁର୍ଯ୍ୟ ଭିତରେ ଜୀବନ ବଞ୍ଚୁଛନ୍ତି ।

ପଶୁପକ୍ଷୀ ଓ ଇତର ଜୀବମାନେ ମଣିଷ ଭଳି ବୁଦ୍ଧିମାନ ନୁହଁନ୍ତି, କିନ୍ତୁ ସେମାନଙ୍କ ମଧ୍ୟରେ କୌଣସି ଉଚ୍ଚନୀଚ ଜାତି ସୃଷ୍ଟି ହୋଇନାହିଁ । ଗୋଟିଏ ଶ୍ରେଣୀର ପ୍ରାଣୀମାନଙ୍କ ମଧ୍ୟରେ ଭେଦଭାବ ନାହିଁ । ମଣିଷ କିନ୍ତୁ ବିଚାରଶୀଳ ହୋଇ କେବଳ ଧାର୍ମିକ ଭାବନା ଯୋଗୁ ନିଜଭିତରେ ଉଚ୍ଚ ନୀଚ ବହୁ ଜାତି ସୃଷ୍ଟି କରିଛି । କୁକୁରମାନଙ୍କ ଭିତରେ ବ୍ରାହ୍ମଣ କୁକୁର ବା ମେହେନ୍ତର କୁକୁର ନାହିଁ । ଘୋଡ଼ା,

Digitized by srujanika@gmail.com

ମାଙ୍କଡ଼, ଗଧ ପ୍ରତ୍ୟେକ ଶ୍ରେଣୀ ଭିତରେ କୌଣସି ଭେଦଭାବ ନାହିଁ । କିନ୍ତୁ ମଣିଷମାନଙ୍କ ଭିତରେ ଉଚ୍ଚ ନୀଚ ଭେଦଭାବ କାହିଁକି ରହିଛି ? ଆମର ଧର୍ମ ଆମ ଭିତରେ ଉଚ୍ଚ ନୀଚ ଜାତି ସୃଷ୍ଟି କରିଛି । ହିନ୍ଦୁଧର୍ମ ପ୍ରକୃତରେ ଆମର କଣ ଉପକାର କରିଛି ? ରାମଙ୍କ ସମୟରେ, ଯାହାଙ୍କୁ ଭଗବାନଙ୍କର ଅବତାର ବୋଲି ନିଆଯାଏ, ବି ଉଚ୍ଚ ନୀଚ ଭେଦଭାବ ଥିବା ଜଣାଯାଏ । ହରିଶ୍ଚନ୍ଦ୍ରଙ୍କ ସମୟରେ ଶ୍ମଶାନ ଜଗୁଥିବା ନୀଚ ଜାତି (ପାରିହା) ଲୋକମାନେ ଥିଲେ । ସେତେବେଳେ ନିଜର ପତ୍ନୀଙ୍କୁ ବିକ୍ରି କରିବାର ପର-ରା ମଧ୍ୟ ଥିଲା । ସେ ଯୁଗରୁ ଏ ପର୍ଯ୍ୟନ୍ତ କେତେକ ମନ୍ଦ ବ୍ୟବସ୍ଥା ମଧ୍ୟ ରହି ଆସିଛି । ଲୋକମାନଙ୍କ ବିକାଶ କ୍ଷେତ୍ରରେ ଧର୍ମ କେଉଁଠି ସାହାଯ୍ୟ କରିଛି ? ଧର୍ମ କିପରି କେତେକ ବିଚାରହୀନ ଭାବନା ପ୍ରସାର କରିଆସିଛି, ଦେଖାଯାଉ । କୌଣସି ମୃତ ବ୍ୟକ୍ତିକୁ ଦାହ କରିବା ପରେ ପାଉଁସ ଗୁଡ଼ିକୁ ଜଳାଶୟରେ ଭସାଇ ଦିଆଯାଉଛି । ସେମାନେ ଏହାଦ୍ୱାରା ଜୀବନ୍ୟାସ ପାଇବେ ବୋଲି ବିଶ୍ୱାସ ରହିଛି । ମୃତ ବ୍ୟକ୍ତିର ପରିବାର ଲୋକେ ବ୍ରାହ୍ମଣମାନଙ୍କୁ ଅନ୍ନ, ବସ୍ତ୍ର, ପରିବା, ଜୋତା ଦାନ ଦେଉଛନ୍ତି । ବିଶ୍ୱାସ ଅଛି ଯେ ବ୍ରାହ୍ମଣଙ୍କୁ ଏ ସବୁ ଦାନ ଦେଲେ ମୃତ ବ୍ୟକ୍ତି ଏସବୁ ସ୍ୱର୍ଗରେ ପାଇପାରିବ । ଏସବୁ କରୁଥିବା ଓ ଏଥିରେ ବିଶ୍ୱାସ ଥିବା ଲୋକମାନେ ସେମାନଙ୍କର ସମାନ୍ୟତମ ବିଚାର ବୁଦ୍ଧି ପ୍ରୟୋଗ କରନ୍ତି କି ? ମୃତ ବ୍ୟକ୍ତିକୁ ଅସମ୍ମାନ କରିବାର କଥା କିଏ କହୁନାହିଁ । ପ୍ରଶ୍ନ ହେଉଛି-ଏସବୁ କାହିଁକି ବ୍ରାହ୍ମଣମାନଙ୍କୁ ଦିଆଯିବ ? ବ୍ରାହ୍ମଣର ପାଦତଳେ ଜଣେ କାହିଁକି ପଡ଼ିବ? ବ୍ରାହ୍ମଣର ପାଦ ଧୋଇ ଦେଇ କାହିଁକି ଜଣେ ପାଦଧୁଆ ପାଣି ପାନକରିବ? ଏହା ଯଦି ହିନ୍ଦୁ ଧର୍ମର ପର-ରା ହୁଏ, ତେବେ ଏହି ଧର୍ମର ବିଲୋପ ହେବା ଆବଶ୍ୟକ । ଏହିପରି ଅନେକ କର୍ମକାଣ୍ଡ ଜନିତ ପର-ରା ଆମର ରହିଛି । ନାମକରଣ, ଅନ୍ନ ପ୍ରାସନ, ଗୃହନିର୍ମାଣ ପାଇଁ ଶୁଭଦେବା, ଗୃହ ପ୍ରତିଷ୍ଠା, ବିବାହ ପରି ଅନେକ ବ୍ୟବସ୍ଥାରେ ବ୍ରାହ୍ମଣର ଉପଚାର କଥା ଚିନ୍ତା କରାଯାଉଛି ।

ଅନ୍ୟଧର୍ମ ଓ ଅନ୍ୟ ଦେଶର ଲୋକମାନେ ଏ ପ୍ରକାର ବ୍ୟବହାର ଦେଖାନ୍ତି କି? ଆମର ଜ୍ଞାନ ପ୍ରତି ସମ୍ମାନ ନାହିଁ ବା ଆମର କାର୍ଯ୍ୟ ପ୍ରତି ଆମେ ଲଜ୍ଜିତ

Digitized by srujanika@gmail.com

ନୋହୁଁ । କେଉଁଠି ଅଛି ଆମର ବିଚାରଶୀଳତା ? ମୁଁ ଯେତେବେଳେ ଏ ସବୁ ବିଷୟରେ ଚିନ୍ତା କରିବା ପାଇଁ ଲୋକମାନଙ୍କୁ ନିବେଦନ କରେ, ମୋ ଉପରେ କେତେକ ଅତ୍ୟନ୍ତ ବିରକ୍ତି ପ୍ରକାଶ କରିଥାନ୍ତି । ଆମର ଏହି ଅଧଃପତନ ପାଇଁ କେଉଁମାନେ ଦାୟୀ ? ଆମ ବିପର୍ଯ୍ୟୟର କାରଣ ଧର୍ମ ନା ସରକାର ? ଆଜିର ବିଜ୍ଞାନ ଯୁଗରେ ଆମେ କେତେ କେତେ ଠାକୁର ଓ ସେମାନଙ୍କର କାର୍ଯ୍ୟ ବିଷୟରେ କହିଥାଉ । ଏହା ଯେ ଅସଭ୍ୟତାର ନିଦର୍ଶନ ଏହା କୁହାଯାଇ ପାରେ । ଆମର ପ୍ରତିପକ୍ଷମାନେ ଆମ ବିରୁଦ୍ଧରେ ଏକ ମନ୍ଦ ଉଦ୍ଦେଶ୍ୟ ନେଇ ପ୍ରଚାର କରିଥାନ୍ତି । ଆମକୁ ନିରୀଶ୍ୱରବାଦୀ କହି ନିନ୍ଦିତ କରିବାକୁ ସେମାନେ ପ୍ରୟାସ କରିଥାନ୍ତି ।

ପ୍ରାଚୀନ ସମୟରେ ଅସଭ୍ୟ ଲୋକମାନେ କେତେକେତେ ଈଶ୍ୱରର ପରିକଳ୍ପନା କରିଥିଲେ । ତେବେ ଖ୍ରୀଷ୍ଟିୟାନ ଓ ମୁସଲମାନମାନେ ପ୍ରାଚୀନ ଯୁଗର ଈଶ୍ୱର ଭାବନାରେ କେତେକ ସଂସ୍କାର ଆଣିଛନ୍ତି । ସେମାନଙ୍କ ବିଶ୍ୱାସରେ ଈଶ୍ୱର ଏକ, ଯାହା ମଣିଷ ପ୍ରଜ୍ଞାର ବହିର୍ଭୂତ । ସେମାନଙ୍କ ବିଶ୍ୱାସରେ ଭଲମଣିଷମାନଙ୍କୁ ଈଶ୍ୱର ଭଲଫଳ ଦିଅନ୍ତି ତ ଦୁଷ୍ଟ ଲୋକମାନଙ୍କୁ ସେ ଦଣ୍ଡବିଧାନ କରନ୍ତି । ସେମାନେ କୁହନ୍ତି ଈଶ୍ୱରଙ୍କର ନାମ ବା ରୂପ ନାହିଁ । ସେମାନେ ଈଶ୍ୱରଙ୍କର ମହତ ଗୁଣ ସ-ର୍କରେ କହିଥାନ୍ତି । କେତେକ ଜ୍ଞାନୀ ଲୋକ ଈଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସ କରନ୍ତି ଏବଂ ଭାବନ୍ତି ଯେ ସେମାନଙ୍କ ଈଶ୍ୱର ଗୋଟିଏ ସୁନ୍ଦର ସମାଜ ବିକାଶ ଦିଗରେ ସହାୟକ ହେବେ । କିନ୍ତୁ ହିନ୍ଦୁ ଧର୍ମରେ ବ୍ରାହ୍ମଣମାନଙ୍କ ଦ୍ୱାରା ସୃଷ୍ଟି କରାଯାଇଥିବା ହଜାର ହଜାର ଈଶ୍ୱରଙ୍କ ସ୍ୱରୂପ କଣ ? ହିନ୍ଦୁମାନେ କାହିଁକି ଅସଂଖ୍ୟ ଈଶ୍ୱରଙ୍କୁ ଆରାଧନା କରିବେ ? ଏତେ ଈଶ୍ୱର କେଉଁଠୁ ଆସିଲେ ? ଏହି ଈଶ୍ୱରମାନେ କିପରି ସୃଷ୍ଟି ହୋଇଛନ୍ତି ? ଗାଈ, ଘୋଡ଼ା, ଷଣ୍ଢ, ମାଙ୍କଡ଼, ପଥର, ପକ୍ଷୀ, ଧାତୁ, କାଗଜ ସମସ୍ତଙ୍କୁ ଈଶ୍ୱର କରାଯାଇଛି । ମୁଁ କାଶିରେ ଥିଲାବେଳେ ଦୁଇଟି କୁକୁରକୁ ପୂଜା କରାଯାଉଥିବା ଦେଖିଲି । ପଣ୍ଡିତ କୁକୁର - ଈଶ୍ୱରଙ୍କ ବ୍ୟାଖ୍ୟା କରୁଥାନ୍ତି । ଏହା ହାସ୍ୟାସ୍ପଦ ନୁହେଁ କି ? ପୁନଶ୍ଚ ଈଶ୍ୱରମାନଙ୍କର ପତ୍ନୀ, ରକ୍ଷିତା ଓ ବାରଙ୍ଗନା ବି ଥାନ୍ତି । ଏହି ଈଶ୍ୱରମାନେ ଖାଇବା, ନିଦ୍ରାଯିବା

Digitized by srujanika@gmail.com

ଏପରିକି ସନ୍ତାନ ଜନ୍ମ କରିବା ବିଶ୍ୱାସ କରାଯାଏ। ସେମାନଙ୍କର ବିବାହ ଓ ମୃତ୍ୟୁ ସଂସ୍କାର ମଧ୍ୟ କରାଯାଏ। ଏହି ଈଶ୍ୱରମାନଙ୍କ ପ୍ରତି ସେମାନେ ଯାହା କିଛି ଗୁଣ ଆରୋପ କରି ପାରନ୍ତି। ଏପରିକି ନାରୀମାନଙ୍କୁ ହରଣ କରିବା, ଈଶ୍ୱରମାନେ ବାରଙ୍ଗନାକୁ ଉପଭୋଗକରିବା ଘଟଣାକୁ ନେଇ କେତେକ ପର୍ବ ପାଳିତ ହୋଇଥାଏ। ଏହି ପ୍ରକାର ପର୍ବ ପର୍ବାଣୀରେ କୋଟି କୋଟି ଟଙ୍କା ଖର୍ଚ୍ଚ କରିବା ସହ ଅନେକ ମୂଲ୍ୟବାନ ସମୟ ନଷ୍ଟ କରାଯାଏ। ଥରେ ଚିନ୍ତା କରନ୍ତୁ, ବିଂଶ ଶତାବ୍ଦୀରେ ଏ ସବୁ ଘଟଣା କରିବା କେତେ ଆବଶ୍ୟକ ?

ଏସବୁ କାର୍ଯ୍ୟରେ ଆମେମାନେ ଲଜ୍ଜା ଅନୁଭବ କରିବା ଠିକ୍ ନୁହେଁ କି ! ଆମ୍ଭେମାନେ ଏହି କଥା କହିବାରୁ ଆମକୁ ନିରୀଶ୍ୱରବାଦୀ କହିବା କେତେଦୂର ଠିକ୍ ? ଯଦିବି କୌଣସି ଈଶ୍ୱର ଥାନ୍ତି, ସେମାନେ ଏପ୍ରକାର ହେବା ଯଥାର୍ଥ କି? କୌଣସି ଚିନ୍ତାଶୀଳ ବ୍ୟକ୍ତି ଏସବୁ ଗ୍ରହଣ କରିପାରିବ କି ? ଆମେ କରୁଥିବା ପୂଜା, ବଳିଦାନ, ଠାକୁରଙ୍କ ବିବାହ ପ୍ରକୃତରେ ଈଶ୍ୱର ଆବଶ୍ୟକ କରନ୍ତି କି ? କୌଣସି ଈଶ୍ୱର ଏସବୁ କାର୍ଯ୍ୟକୁ ସ୍ୱୀକୃତି ଦେବେ କି ? ଈଶ୍ୱରଙ୍କୁ ଖେଳନା ମନେକରି ଆମେ ବର୍ଷରେ କେତେ ବାର ସେମାନଙ୍କ ବିବାହ କରୁ। ଏସବୁ କେତେଦୂର ଯଥାର୍ଥ ? ଠାକୁରମାନଙ୍କର କ'ଣ ପ୍ରତି ବର୍ଷ ପତ୍ନୀ ଦରକାର? ତେବେ ବିଗତ ବର୍ଷମାନଙ୍କରେ ସେମାନେ ବିବାହ କରିଥିବା ପତ୍ନୀମାନେ କୁଆଡ଼େ ଗଲେ ? ସେମାନଙ୍କୁ ଈଶ୍ୱରମାନେ ଛାଡ଼ପତ୍ର ଦେଲେ କି ? ସେମାନଙ୍କ ପତ୍ନୀମାନେ ସେମାନଙ୍କୁ ଛାଡ଼ି ଅନ୍ୟ କୁଆଡ଼େ ଗଲେ ନା ମୃତ୍ୟୁବରଣ କଲେ? ଏସବୁ ପ୍ରସଙ୍ଗ ଉପରେ ଆମେ ପ୍ରଶ୍ନ ପଚାରିବା ଠିକ୍ ନୁହେଁ କି? ପ୍ରତିବର୍ଷ ଏତେ ଆଡ଼ମ୍ବରରେ ଈଶ୍ୱରମାନଙ୍କ ବିବାହ କରିବା କ'ଣ ଆବଶ୍ୟକ ଅଛି ? ବିବାହ ସମୟର ଭୋଜି କେଉଁମାନେ ଖାଆନ୍ତି ? ବିଭିନ୍ନ ଜାଗାରେ ଏ ପ୍ରକାର ଉତ୍ସବ କେତେ ପାଳିତ ନ ହେଉଛି, ଏ ସବୁଥିରୁ ଆମେ କ'ଣ ଉପକାର ପାଉଛେ ? ଶିକ୍ଷା କ୍ଷେତ୍ରରେ ଦେଖିଲେ ୯୫% ଭାଗ ଲୋକ ହେଉଛନ୍ତି ନିରକ୍ଷର। ଆନ୍ତର୍ଜାତିକ ଦୃଶ୍ୟପଟରେ ଭାରତ ହେଉଛି ଅତି ଗରିବ ରାଷ୍ଟ୍ର। ଏହି ସ୍ଥିତିରେ ଈଶ୍ୱରଙ୍କ ନାମରେ ଏତେ ସବୁ ଅପବ୍ୟୟ କରିବା କେତେଦୂର ଠିକ୍ ତାହା ଆମେ ଚିନ୍ତା କରିବା ଠିକ୍ ନୁହେଁ କି ?

Digitized by srujanika@gmail.com

କେତେବାର ଗୋଟିଏ ଦିନରେ ଆମେ ଈଶ୍ୱରଙ୍କୁ ପୂଜା କରିଥାଉ ଓ କେତେ ଥର ତାହାଙ୍କୁ ନୈବେଦ୍ୟ ଅର୍ପଣ କରୁ। ଈଶ୍ୱରଙ୍କ ପାଖରେ ଅନ୍ନ ଓ ଅନ୍ୟାନ୍ୟ ସାମଗ୍ରୀ ଆମେ ରଖିଥାଉ। ଯେତେବେଳେ ଲୋକମାନଙ୍କର ଶିକ୍ଷା ନାହିଁ, କାର୍ଯ୍ୟ ନାହିଁ ଓ ଆବଶ୍ୟକ ଖାଦ୍ୟ ନାହିଁ ଆମେ ଈଶ୍ୱରଙ୍କ ନାମରେ କେତେ ଧନ ସ-ତ୍ତି ନଷ୍ଟ ନକରୁଛୁ ? ପ୍ରତିବର୍ଷ ଏକାଦଶୀ, ପୂର୍ଣ୍ଣିମା ଓ ପର୍ବ ପର୍ବାଣୀରେ ଆମେ ଯେତେ ଅର୍ଥ ବ୍ୟୟ କରୁଛୁ ତାହା ଅନ୍ୟମାନଙ୍କ କଲ୍ୟାଣ ଦିଗରେ ବ୍ୟୟ କରିବା ଠିକ୍ ହୁଅନ୍ତା ନାହିଁକି ? ପ୍ରତିବର୍ଷ ପୂଜା ମଣ୍ଡପରେ ହେଉ ବା ତୀର୍ଥ ଯାତ୍ରାରେ ହେଉ ଆମେ ବ୍ୟୟ କରୁଥିବା ଅର୍ଥ ଜନକଲ୍ୟାଣ କାର୍ଯ୍ୟରେ ବ୍ୟୟ କଲେ, ସମାଜର ମଙ୍ଗଳ ହୁଅନ୍ତା ନାହିଁକି ?

ଯଦି ଏହି ଅପବ୍ୟୟ ଗୁଡିକ ବିଷୟରେ ଆମେ ସଚେତନ ହୋଇ ପାରନ୍ତେ, ତେବେ ସମାଜର କେତେ ମଙ୍ଗଳ ନହୁଅନ୍ତା ! ଏସବୁ କରିବା ଦ୍ୱାରା ଆମ ଲୋକମାନଙ୍କର ପ୍ରକୃତରେ କିଛି ଉପକାର ହେଉଛି? ତାକୁ ବନ୍ଦ କରି ଯଦି କୃଷିର ଉନ୍ନତି କରାଯାଆନ୍ତା, ଶିଳ୍ପ ପ୍ରତିଷ୍ଠା କରାଯାଆନ୍ତା ଓ ଶିକ୍ଷାନୁଷ୍ଠାନ ସ୍ଥାପନ ହୁଅନ୍ତା ତେବେ ସମାଜରୁ ନିରକ୍ଷରତା ଓ ବେକାରୀ ସମସ୍ୟା ଦୂର ହୋଇ ପାରନ୍ତା। ବିଦେଶୀମାନେ ଆମକୁ ଯେଉଁ ଭଳି ଶୋଷଣ କରୁଛନ୍ତି ତାହା ମଧ୍ୟ ବନ୍ଦ ହୋଇଯାଆନ୍ତା। ଠାକୁର ପୂଜା ପାର୍ବଣ ନାମରେ ଯାହା ସବୁ କରାଯାଉଛି, ସେଥିରେ ସମାଜର ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ଉପକୃତ ହେଉଛନ୍ତି । ସେମାନେ କୌଣସି କାର୍ଯ୍ୟ ନକରି ସ୍ୱଚ୍ଛଳରେ ଜୀବନ ନିର୍ବାହ କରୁଛନ୍ତି। ସମାଜର ଅଗଣିତ ମଣିଷଙ୍କର ଶ୍ରମଦ୍ୱାରା ଅର୍ଜିତ ସୁଫଳକୁ ମୁଷ୍ଟିମେୟ ଲୋକ ଉପଭୋଗ କରୁଛନ୍ତି। ଅଜ୍ଞତା ଓ ଶୋଷଣର ଜାଲ ବିସ୍ତାରିତ ହୋଇ ରହିଛି।

ଈଶ୍ୱର ଓ ଭକ୍ତି ନାମରେ କିପରି ବିଚାରଶୂନ୍ୟ ଭାବେ ଆମେ କାର୍ଯ୍ୟ କରୁଛୁ ! ଆମ କାନ୍ଧ ଉପରେ ଆମେ କବାଡ଼ିର ଭାରକୁ ବୋହିବାରେ ଲାଗିଛୁ। ଗେରୁଆ ବସ୍ତ୍ର ପିନ୍ଧି କେତେକ ଲୋକ ସାଧାରଣ ରାସ୍ତାରେ ଗଡ଼ିଥାନ୍ତି। କେତେକ ଲୋକ ମୁଣ୍ଡ ଲଣ୍ଡାକରି ଦେହସାରା ପାଉଁଶ ଓ କାଦୁଅ ବୋଳି ହୋଇଥାନ୍ତି। କେତେକ

Digitized by srujanika@gmail.com

ଲୋକ ପିଠିରେ କଣ୍ଟା ଫୋଡ଼ିଥାନ୍ତି । ଅତ୍ୟନ୍ତ ଅପରିଷ୍କାର ପାଣିରେ କିଛି ଲୋକ ସ୍ନାନ କରନ୍ତି । ଏସବୁ କାର୍ଯ୍ୟ ଈଶ୍ୱର ଓ ଭକ୍ତି ନାମରେ ଚାଲେ ।

ପୁନଶ୍ଚ ପଥର ମୂର୍ତ୍ତି ଉପରେ ଘିଅ, କ୍ଷୀର, ଦହି, ମହୁ, ଫଳରସ ଇତ୍ୟାଦି ଢଳାଯାଇଥାଏ । ଏସବୁ ନାଳ ଦେଇ ବୋହିଯାଏ । ଅନେକ ଖାଦ୍ୟ ପଦାର୍ଥ ଏହିପରି ନଷ୍ଟ ହୋଇଥାଏ । ଏହାକୁ ଭକ୍ତିର ନିଦର୍ଶନ ଭାବେ ନେବା ନା ଏକ କୌତୁକ କାର୍ଯ୍ୟ ବୋଲି ଗ୍ରହଣ କରିବା ! କେତେକ ଈଶ୍ୱରଙ୍କର କୋଟିକୋଟି ଟଙ୍କାର ସୁନା ଗହଣା ରହିଛି । ଈଶ୍ୱରଙ୍କ ପରିଧାନ ପାଇଁ ବହୁ ଦାମିକା ପାଟବସ୍ତ୍ର କିଣାଯାଏ । ଈଶ୍ୱର ମନ୍ଦିରରେ କେତେ ଉଚ୍ଚ ପ୍ରାଚୀର ଓ କାନ୍ଥ ରହିଛି । କେତେକ ଈଶ୍ୱରଙ୍କ ପାଇଁ ସୁନା ବା ରୂପାରେ ନିର୍ମିତ ବିମାନ ମାନ ହୋଇଛି । ଏସବୁ ସାଧାରଣ ଲୋକଙ୍କର ସ-ତ୍ତି ନୁହେଁ କି ? ଈଶ୍ୱରଙ୍କ ମୂର୍ତ୍ତି ନିର୍ମାଣରେ ଓ ପୂଜାରେ ଏହିପରି ଆମେ ଅଜସ୍ର ଅର୍ଥ ବ୍ୟୟ କରୁଛୁ । ଶ୍ରମଜୀବୀରୁ ବ୍ରାହ୍ମଣମାନଙ୍କ ପାଖକୁ ଏହି ଅର୍ଥ ହିଁ ଯାଉଛି । ଆମ ମାନଙ୍କର ଏହି ଅର୍ଥ ଦେଇ ସେମାନେ ସ୍ୱଚ୍ଛଳରେ ରହୁଛନ୍ତି ଓ ସେମାନଙ୍କ ଲୋକମାନଙ୍କୁ ଆଇଏସ୍, ବିଚାରପତି, ଦିୱାନ ଭଳି ଉଚ୍ଚ ପଦପଦବୀରେ ଅବସ୍ଥାପନ କରୁଛନ୍ତି । ସେମାନେ ଯଦି ଈଶ୍ୱରଙ୍କ ଆଶୀର୍ବାଦରୁ ଏସବୁ ଲାଭ କରୁଛନ୍ତି, ତେବେ ସେ ପ୍ରକାର ଈଶ୍ୱରଙ୍କ ପାଖରୁ କଣ ଉପକାର ଆସିବ, ଭାବି ବିଚାର କରନ୍ତୁ ।

ମୁସଲମାନମାନେ ବା ଖ୍ରୀଷ୍ଟିଆନ୍‌ମାନେ ଈଶ୍ୱରଙ୍କର ଏହିପରି ପୂଜା ଆରଧନା କରୁଛନ୍ତି କି ? କୌଣସି ବିଚାରଶୀଳ ବ୍ୟକ୍ତି ଏ ପ୍ରକାର ବ୍ୟୟ ବହୁଳ ପୂଜା ଆରାଧନାକୁ ଗ୍ରହଣ କରିବ କି ? ଭକ୍ତି ବା ଆରାଧନାର ମାର୍ଗ କ'ଣ ହେବା ଦରକାର ? ମୁଁ ଯେତେବେଳେ ଏହି ପ୍ରଶ୍ନ ଉଠାଏ, ବ୍ରାହ୍ମଣମାନେ ମୋତେ ନିରୀଶ୍ୱରବାଦୀ ବୋଲି ଆକ୍ଷେପ କରିଥାନ୍ତି । ପୂଜକ ଗୋଷ୍ଠୀ ଓ ତାଙ୍କର ଭଡ଼ାଟିଆମାନେ ଅଜ୍ଞ ଲୋକମାନଙ୍କୁ ଆମ ବିରୁଦ୍ଧରେ ମତେଇ ଦିଅନ୍ତି । ସେମାନେ କୁହନ୍ତି ସେମାନଙ୍କର ଈଶ୍ୱର, ଧର୍ମ ପ୍ରତି ଆମେମାନେ ବିପଦ ସୃଷ୍ଟି କରୁଛେ। ସେମାନଙ୍କର ଈଶ୍ୱରବାଦ ନା ଆମମାନଙ୍କ ନିରୀଶ୍ୱରବାଦ କେଉଁଟା ଯଥାର୍ଥ, ତାହା

Digitized by srujanika@gmail.com

ବିଚାର କରନ୍ତୁ । ଆମ ବିରୁଦ୍ଧରେ ଯାହାକିଛି ଅପପ୍ରଚାର କଲେ ବି ସେମାନେ ଆମକୁ ଦବାଇ ଦେଇ ପାରିବେ ନାହିଁ । ଆମର ବିଚାର ବୁଦ୍ଧିରେ ଯାହା ଠିକ୍ ବୋଲି ଆମେ ଅନୁଭବ କରିବା, ତାହା ଆମେ ନିଶ୍ଚୟ କରିବା । ସେମାନେ ଯେଉଁ ଧର୍ମ ଓ ଈଶ୍ୱର କଥା କହୁଛନ୍ତି ସେସବୁ ମାରତ୍ମକ ରୋଗ ସଦୃଶ । ସେହିରୋଗରୁ ମୁକ୍ତ ନହେଲେ ଆମ ଲୋକମାନେ ସମ୍ମାନର ସହ ବଞ୍ଚି ପାରିବେ ନାହିଁ କିମ୍ବା ଆମଦେଶର ପ୍ରଗତି ସାଧିତ ହେବ ନାହିଁ । ଆମେ ଯାହା ଅନୁଭବ କରୁଛେ, ଆମେ ତାହା କହିବା ଆବଶ୍ୟକ । ଆପଣମାନେ ଏହା ଉପରେ ଭାବନ୍ତୁ ଓ ନିଜର କାର୍ଯ୍ୟପନ୍ଥା ସ୍ଥିର କରନ୍ତୁ । ଆମର କଥାକୁ ଆପଣମାନେ ବିଶ୍ୱାସ କରିବାକୁ ଆମେ ଆପଣଙ୍କୁ ବାଧ୍ୟ କରୁନାହୁଁ । ବ୍ରାହ୍ମଣମାନେ କହିଥାନ୍ତି ଯେ ସେମାନଙ୍କ ପଛାରେ ଗଲେ ସ୍ୱର୍ଗ ପ୍ରାପ୍ତି ହେବ । ଯେଉଁମାନେ ସେମାନଙ୍କ କଥାରେ ନଯିବେ ସେମାନେ ନରକ ପ୍ରାପ୍ତ ହେବେ । ଲୋକମାନେ ଭୁଲ୍ଠିକ୍ ବିଚାର କରି ନିଜର ବିବେକ ଦ୍ୱାରା ପରିଚାଳିତ ହେବାକୁ ଆମେ ଲୋକମାନଙ୍କୁ କହିଥାଉ ।

ମୁଁ ଯେତେବେଳେ ୧୯୨୫ ମସିହାରେ କଂଗ୍ରେସ ଦଳ ଛାଡ଼ିଲି ସେତେବେଳେ ମୋର ଅନୁଭବ ହୋଇଥିଲା ଯେ ଦେଶର ରାଜନୀତିକ ବ୍ୟବସ୍ଥା କେବଳ ବ୍ରାହ୍ମଣମାନଙ୍କ ନିୟନ୍ତ୍ରଣ ଭିତରେ ରହିଛି । ସ୍ୱାଧୀନତା ସଂଗ୍ରାମ ନାମରେ ବ୍ରାହ୍ମଣମାନେ ହିଁ ରାଜନୀତିରେ ଅଗ୍ରଭାଗରେ ରହିଛନ୍ତି । ଏକ ଉତ୍ତମ ସରକାର ଲୋକମାନଙ୍କ ପାଇଁ ପ୍ରତିଷ୍ଠା କରିବା ସେମାନଙ୍କର ଉଦ୍ଦେଶ୍ୟ ନଥିଲା । ସ୍ୱାଧୀନତା ସଂଗ୍ରାମ ପଶ୍ଚାତରେ ସାମାଜିକ କ୍ରାନ୍ତି ପାଇଁ କୌଣସି ଯୋଜନାବଦ୍ଧ କାର୍ଯ୍ୟସୂଚୀ ନଥିଲା । ମୁଁ କିନ୍ତୁ ବ୍ରାହ୍ମଣମାନଙ୍କ ଏକାଧିପତ୍ୟ ଚାହୁଁନଥିଲି । ଈଶ୍ୱର, ଧର୍ମ, ଜାତି ଆଧାରରେ ଅଗଣିତ ଜନଗଣଙ୍କୁ ବିଭ୍ରାନ୍ତ କରି ସେମାନେ ଯେ ସାଧାରଣ ମଣିଷକୁ ଶୋଷଣ କରୁଛନ୍ତି, ତାହା ମୋର ଅନୁଭବକୁ ଆସିଲା । ସୁତରାଂ ମୁଁ ଆତ୍ମସମ୍ମାନ ଆନ୍ଦୋଳନ ଆରମ୍ଭ କରିବାକୁ ନିଷ୍ପତ୍ତି କଲି ଓ ସେଥିପାଇଁ ଅନ୍ୟମାନଙ୍କ ସହଯୋଗ ଲୋଡ଼ିଲି । କଂଗ୍ରେସର ଆଭିମୁଖ୍ୟ ଥିଲା କେବଳ ରାଜନୈତିକ ସଂସ୍କାର । ସାମାଜିକ ସ୍ତରରେ ପରିବର୍ତ୍ତନ ଉପରେ ଏହା କୌଣସି ଗୁରୁତ୍ୱ ଦେଉନଥିଲା । କେତେକ

Digitized by srujanika@gmail.com

ତଥାକଥିତ ରଚନାତ୍ମକ କାର୍ଯ୍ୟକ୍ରମ ମାଧ୍ୟମରେ କଂଗ୍ରେସ କ୍ଷମତା ହାସଲ କରିବାକୁ ଓ ନିଜର ଆଧିପତ୍ୟ ଜାହିର କରିବାକୁ ଚେଷ୍ଟା କରୁଥିଲା । ମୁଁ କିନ୍ତୁ ଏକ ପୃଥକ କାର୍ଯ୍ୟସୂଚୀକୁ ଗୁରୁତ୍ୱ ଦେଉଥିଲି । ସମାଜ ସଂସ୍କାରକୁ ମୁଁ ଅଗ୍ରାଧିକାର ଦେଉଥିଲି । ଈଶ୍ୱର, ଧର୍ମ, ଜାତି, ଶାସ୍ତ୍ର ଜନିତ ବ୍ରାହ୍ମଣ୍ୟବାଦକୁ ଦୂର କରିବାକୁ ମୁଁ ଲକ୍ଷ୍ୟ ଭାବରେ ନେଇ ରାଜନୀତି କ୍ଷେତ୍ରରେ ବ୍ରାହ୍ମଣମାନଙ୍କ ଏକାଧିପତ୍ୟକୁ ବିରୋଧ କରିଥିଲି । ମୋର କାର୍ଯ୍ୟସୂଚୀର ନାନା ଦିଗନ୍ତ ରହିଥିଲା । କାଳକ୍ରମେ ମୋର କାର୍ଯ୍ୟକ୍ରମର ପରିସର ବୃଦ୍ଧି ହେବାକୁ ଲାଗିଲା ଏବଂ ମୋତେ ଅନେକ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେବାକୁ ହେଲା , ମୋର ଏହି କାର୍ଯ୍ୟ ଅତ୍ୟନ୍ତ ଦୂରୁହ ଥିଲା । ମୁଁ ଯେତେବେଳେ ରାଜନୀତିରେ ବ୍ରାହ୍ମଣମାନଙ୍କ ପ୍ରାଧାନ୍ୟକୁ ବିରୋଧ କଲି, ସେମାନେ ସେତେବେଳେ ସାମାଜିକ ସ୍ତରରେ ନିଜକୁ ପ୍ରଭାବଶାଳୀ କରିବାକୁ ଚାହିଁଲେ । ମୁଁ ଯେତେବେଳେ ସେମାନଙ୍କ ସାମାଜିକ ପ୍ରାଧାନ୍ୟକୁ ଆହ୍ୱାନ ଦେଲି, ସେମାନେ ରାଜନୀତି ସ୍ତରକୁ କୌଶଳର ସହ ନିୟନ୍ତ୍ରଣ ଭିତରକୁ ଦେବାକୁ ପ୍ରୟାସ କଲେ । ମୁଁ କିନ୍ତୁ ସାଧାରଣ ଲୋକମାନଙ୍କୁ ଉପଯୁକ୍ତ ସ୍ଥାନ ଦେବା ପାଇଁ ସେମାନଙ୍କର ରାଜନୈତିକ ଓ ସାମାଜିକ ଚେତନା ଜାଗ୍ରତ କରିବାକୁ ପ୍ରୟାସ କଲି । ଏହିକାର୍ଯ୍ୟରେ ମୋତେ ଅନେକ ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡୁଥିଲା । ଏସବୁ ସହିତ ଓ ମୋ ନିଜଲୋକମାନଙ୍କ ଠାରୁ ମୋ ପାଇଁ ମଧ୍ୟ ସମସ୍ୟା ଆସୁଥିଲା । ଯେଉଁମାନେ ମୋର ଅନୁଗାମୀ ହେଉଥିଲେ କାଳକ୍ରମେ ଅନେକ ବିଷୟରେ ସେମାନଙ୍କର ସ୍ୱଚ୍ଛତା ଆସୁଥିଲା ଓ ସାଧାରଣ ଲୋକମାନଙ୍କ ଭିତରେ ସେମାନେ ବେଶ ପରିଚିତ ହେଉଥିଲେ । ତେବେ କେତେକଙ୍କୁ ବିରୋଧୀମାନେ କରଗତ କରିନେଉଥିଲେ । ସେମାନଙ୍କୁ ଆୟୁଧ କରି ମୋତେ ବିରୋଧ କରୁଥିଲେ । ପ୍ରହଲ୍ଲାଦ ଓ ବିଭୀଷଣମାନେ ସବୁ ସମୟରେ ଗୃହଶତ୍ରୁ ହେବା ବେଶ୍ ଜଣାଶୁଣା । ଜନଗଣଙ୍କର ଚାଳିଶ ବର୍ଷ ଧରି ସେବା କରିବା ପରେ ସେମାନଙ୍କ କାର୍ଯ୍ୟର କୌଣସି ଯୁକ୍ତି ସଂଗତ କାରଣ ମୁଁ ଦେଖି ପାରୁନାହିଁ । ବିଗତ ୪୦ବର୍ଷ ଭିତରେ ସାମାଜିକ ସମତା ଦିଗରେ ମୁଁ ଯାହା କିଛି କରିଛି, ତାହାକୁ ବିଜ୍ଞ ଲୋକମାନେ ମୂଲ୍ୟାୟନ କରି ପାରିବେ ।

Digitized by srujanika@gmail.com

ବ୍ରାହ୍ମଣ ଶୂଦ୍ର ଭିତରେ ଥିବା ବିଭେଦ ଓ ବୈଷମ୍ୟ ଆମେ ମନ୍ଦିର, ପୂଜାସ୍ଥଳ, ବିଦ୍ୟାଳୟ, ସର୍ବସାଧାରଣ ରାସ୍ତା, ଭୋଜନାଳୟ ବା ହୋଟେଲ ଇତ୍ୟାଦି କ୍ଷେତ୍ରରେ ଦେଖିପାରିବା । ସମାଜରେ ଏହି ବିଭେଦ କିଏ ସୃଷ୍ଟି କରିଛି-ଆମେ ନା ବ୍ରାହ୍ମଣମାନେ ? ଏହି ସମସ୍ୟା ଉପରେ ଯଦି କେହି ଚିନ୍ତା କରିବେ, ତେବେ ଆମ୍ଭମାନଙ୍କୁ କେହି ସାମ୍ପ୍ରଦାୟିକ ବୋଲି କହିପାରିବେ ନାହିଁ । ଶୂଦ୍ରମାନଙ୍କୁ ଯୁଗଯୁଗ ଧରି ନ୍ୟୂନ କରି ରଖିବା, ନିଜକୁ ଉଚ୍ଚ ବୋଲି ବିଚାର କରିବା କିପରି ଅନ୍ୟାୟ ତାହାକୁ ବ୍ରାହ୍ମଣମାନେ କେବେ ଅନୁଭବ କରନ୍ତି କି ? ଆମେ ସାମାଜିକ ସମତା କଥାକହିବା ସହ ସବୁ ମଣିଷଙ୍କର ଆତ୍ମସମ୍ମାନର କଥା କହୁଛୁ, ଆମର ଏହି ବିଚାରକୁ ସେମାନେ ଭୁଲ୍ ଓ ଏପରିକି ପାପ ବୋଲି ବିଚାର କରୁଛନ୍ତି ।

ବର୍ଣ୍ଣାଶ୍ରମ ଧର୍ମକୁ ଆର୍ଯ୍ୟମାନେ କୌଶଳର ସହ ଆମ ଉପରେ ଲଦି ଦେଇଛନ୍ତି । ଏହା ଅନୁଯାୟୀ ବ୍ରାହ୍ମଣମାନଙ୍କ ଦୃଷ୍ଟିରେ ଆମ୍ଭେମାନେ ହେଲେ ଶୂଦ୍ର ଓ ଅସ୍ପୃଶ୍ୟ । ଏହି ବ୍ୟବସ୍ଥା ଏକ ଈଶ୍ୱରୀୟ ବା ଦୈବୀ ବିଧାନ ବୋଲି ସେମାନେ ପ୍ରଚାର କରିଥାନ୍ତି । ଆମର ଆନ୍ଦୋଳନ ହେଉଛି ଏହି ବୈଷମ୍ୟ ଓ ଅସ୍ପୃଶ୍ୟତା ଜନିତ ଶୂଦ୍ରବାଦର ବିଲୋପ । ଆମର ଏହି କାର୍ଯ୍ୟ ପାଇଁ ସେମାନେ ଆମକୁ ନିରୀଶ୍ୱରବାଦୀ ବୋଲି କହୁଛନ୍ତି । ଆମ ସହିତ କଥାହେବା ଓ ଏପରିକି ଆମକୁ ଦେଖିବା ଏକ ପାପକାର୍ଯ୍ୟ ବୋଲି ସେମାନେ କହିଥାନ୍ତି । ସେମାନଙ୍କ ମତରେ ସେମାନଙ୍କଦ୍ୱାରା ପାଦତଳେ ପଡିବା ବା ସେମାନଙ୍କୁ ସ୍ୱାମୀ କହିବା ସେମାନେ ଅପବିତ୍ର ହେବେ ନାହିଁ । ସେମାନେ ନିଜକୁ ପବିତ୍ର, ପରିଷ୍କାର ଭାବି ପଇତା ପିନ୍ଧିଥାନ୍ତି । ସ୍ନାନ ପରେ ସେମାନେ ପଇତା କାନ୍ଧରେ ପିନ୍ଧି ନିଜକୁ ପବିତ୍ର ମନେ କରନ୍ତି । କୌଣସି ଶୂଦ୍ର ସହ କଥା ହେଲାବେଳେ ସେମାନେ କାନରେ ପଇତା ଦିଅନ୍ତି । ଫଳରେ ସେମାନେ ଅପବିତ୍ର ହେବେ ନାହିଁ, ଏହା କେତେ ଦୂର ଅସାମ୍ପ୍ରଦାୟିକ ?

ସେମାନଙ୍କ ସହିତ କଥା ହେଲାବେଳେ ଆମର ପାଟିରେ ହାତ ବା ଅନ୍ୟ କିଛି ଦେଇ କହିବାକୁ ସେମାନେ କହିଥାନ୍ତି । ଆମ ପାଟିରୁ ବାହାରୁ ଥିବା ଶବ୍ଦ ତାଙ୍କୁ ସ୍ପର୍ଶ କରିବାକୁ ସେମାନେ ବିରୋଧ କରିଥାନ୍ତି । ଏହି ପ୍ରକାର ହଜାର ହଜାର

Digitized by srujanika@gmail.com

ଉଦାହରଣ ଜନ ଜୀବନରୁ ଦିଆଯାଇପାରେ । ଆମର ଏହି ପ୍ରଗତିଶୀଳ ଓ ଆତ୍ମସମ୍ମାନ କାର୍ଯ୍ୟକ୍ରମ ପାଇଁ ସେମାନେ ଆମକୁ ସାମ୍ପ୍ରଦାୟିକ ଓ ନିରୀଶ୍ୱରବାଦୀ କହିଥାନ୍ତି । ଆମମାନଙ୍କର କୌଣସି ମାନବିକ ଅଧିକାର ନାହିଁ । ଆମ ଭିତରୁ ଅଧିକାଂଶ ବ୍ରାହ୍ମଣମାନଙ୍କୁ ଭୟ କରନ୍ତି । ଏସବୁକୁ ଦୂର କରି ଆତ୍ମସମ୍ମାନ ବିଷୟରେ ଲୋକମାନଙ୍କୁ ସଚେତନ କରାଇବା ଆମର କର୍ତ୍ତବ୍ୟ ବୋଲି ମୁଁ ମନେକରେ ।

ଆମ ରାଜନୀତିରେ କ'ଣ ଘଟୁଛି ତାହାକୁ ଲକ୍ଷ୍ୟ କରନ୍ତୁ । କଂଗ୍ରେସ ଆନ୍ଦୋଳନରେ ଉଚ୍ଚ ପଦପଦବୀରେ ଅବସ୍ଥାପିତ ହେବା ପାଇଁ ଏହାକୁ ଜାତୀୟ ଆନ୍ଦୋଳନର ଚିତ୍ର ଦିଆଗଲା । ସେମାନେ ସରକାରରେ ସବୁ ଉଚ୍ଚ ପଦପଦବୀରେ ରହି ଏକହଜାର ଠାରୁ ଦଶହଜାର ପର୍ଯ୍ୟନ୍ତ ଦରମା ନେଉଛନ୍ତି । ସରକାରଙ୍କୁ ସମର୍ଥନ କରି ଓ ସରକାରଙ୍କ ସମର୍ଥନରେ କୋର୍ଟ କଚେରୀ ଶିକ୍ଷାନୁଷ୍ଠାନରେ ସେମାନେ ବଡ଼ ପଦପଦବୀରେ ରହିଛନ୍ତି । ଆମେ ଯେତେବେଳେ କୌଣସି ପଦପଦବୀ ପାଇଁ ଆଶା କରୁଛେ, ଆମେ ସେଥିପାଇଁ ଅଯୋଗ୍ୟ ବୋଲି ସେମାନେ କହୁଛନ୍ତି । ଆମେ ଯେତେବେଳେ ଯୋଗ୍ୟ ହୋଇ ସମାନତାର ଆଶା କରୁଛେ ବା ନିଜକୁ ଯୋଗ୍ୟ କରିବାକୁ ଉଦ୍ୟମ କରୁଛେ ସେମାନେ ଆମକୁ ସାମ୍ପ୍ରଦାୟିକ ଓ ଦେଶ ପ୍ରେମୀ ନୁହଁ ବୋଲି ଆକ୍ଷେପ କରୁଛନ୍ତି ।

ଏହି ପୃଷ୍ଠଭୂମିରେ ଆମ୍ଭେମାନେ ଆମମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଆନ୍ଦୋଳନ ଆରମ୍ଭ କରିବା ଅତ୍ୟନ୍ତ ଆବଶ୍ୟକ ବୋଲି ମୁଁ ମନେ କରୁଛି । ତାହାହେଲେ ଯାଇ ଆମେ ଆମ ସମସ୍ୟାକୁ ସମାଧାନ କରିବାକୁ ସମର୍ଥ ହେବା । ଆମର ପ୍ରତିବନ୍ଧକକୁ ସମାଧାନ କରିବାକୁ ଏକ ଆନ୍ଦୋଳନ ଆବଶ୍ୟକ । ଏହି ଆନ୍ଦୋଳନ ହେଉଛି ଆତ୍ମସମ୍ମାନର ଆନ୍ଦୋଳନ । ଆତ୍ମସମ୍ମାନର ସହ ଆମେ ସ୍ୱାଧୀନତା ହାସଲ କରିବା ଆବଶ୍ୟକ । ଆମେ ସମସ୍ତେ ସମ୍ମିଳିତ ହୋଇ ଏହି ଆନ୍ଦୋଳନର ସଫଳତା ପାଇଁ ଉଦ୍ୟମ କରିବା ଦରକାର । ଏହି ଆନ୍ଦୋଳନରେ ପ୍ରତ୍ୟେକ ନିଜର କାର୍ଯ୍ୟ ସମାପନ କଲେ ଏହା ସଫଳ ହେବ ।



Digitized by srujanika@gmail.com

## ପରିଚ୍ଛେଦ - ୨

# ହିନ୍ଦୁ ଦର୍ଶନର ନିର୍ଯ୍ୟାସ

(ସଲେମ ମହାବିଦ୍ୟାଳୟରେ ୧୯୪୭ରେ ଦେଇଥିବା ଭାଷଣ। କଲେଜର ଅଧ୍ୟକ୍ଷ ରାମସାମି ସେଥିରେ ଅଧ୍ୟକ୍ଷତା କରିଥିଲେ)

**ସଭାପତି ମହୋଦୟ ଓ ବନ୍ଧୁଗଣ :**

ସାଲେମ ମହାବିଦ୍ୟାଳୟର ଦର୍ଶନ ବିଭାଗ ତରଫରୁ ଆପଣମାନଙ୍କୁ ଭାଷଣ ଦେବା ପାଇଁ ମୁଁ ଆମନ୍ତ୍ରିତ ହୋଇଛି। ଆପଣମାନଙ୍କ ଭିତରେ ଛାତ୍ର, ଅଧ୍ୟାପକ ଓ ସ୍ଥାନୀୟ ବିଶିଷ୍ଟ ନାଗରିକମାନେ ରହିଛନ୍ତି। ଏହିପରି ଏକ ସଚେତନ ଶୋତୃ ମଣ୍ଡଳୀକୁ ଭାଷଣ ଦେବା ମୁଁ ସହଜ ମନେକରୁନାହିଁ। ଆପଣମାନଙ୍କର ବିଚାର ପାଖରେ ମୁଁ ମୋର ଭାବନାକୁ ବ୍ୟକ୍ତ କରିବା ଓ ଆପଣମାନଙ୍କୁ ସନ୍ତୁଷ୍ଟ କରିବା କ୍ଷେତ୍ରରେ ମୁଁ କେତେଦୂର ସଫଳ ହେବି ତାହା ଭାବିପାରୁନାହିଁ। ପୁନଶ୍ଚ କୌଣସି ସିଦ୍ଧାନ୍ତ ଓ ଦାର୍ଶନିକ ତତ୍ତ୍ୱ ବିଷୟରେ କହିବା ଯେପରି ଗୁରୁତ୍ୱପୂର୍ଣ୍ଣ ସେପରି ଜଟିଳ ମଧ୍ୟ। କୌଣସି ଦାର୍ଶନିକ ବିଚାର ଉପରେ ଆଲୋଚନା କରିବା ସହଜ ବୋଲି ମୁଁ ଅନୁଭବ କରୁନାହିଁ।

ଦାର୍ଶନିକ ଅନ୍ତଃପ୍ରଜ୍ଞା ଓ ଅଭିବ୍ୟକ୍ତି ଗୁଡିକ ପ୍ରାୟତଃ ସତ୍ୟ ହୋଇଥାଏ। କୌଣସି ପ୍ରସଙ୍ଗକୁ ଯଥାର୍ଥ ଭାବରେ ବିବେଚନା କରିବା ଓ ବୌଧଗମ୍ୟ କରିବା ଆବଶ୍ୟକ। ଆମର ବାସ୍ତବ ଅନୁଭୂତିରୁ ଆମେ ଲାଭ କରୁଥିବା ଜ୍ଞାନ ସହ ଏହା ସମତାଳ ହେଉଥିବା ଆବଶ୍ୟକ। ପ୍ରକୃତି ଠାରୁ ଦର୍ଶନକୁ ଆମେ ପୃଥକ କରିଥାଉ। ସତ୍ୟର ସ୍ୱରୂପ କ'ଣ ତାହା ଜାଣିବା ଜଟିଳ ଅଟେ। ସେହିପରି ଏହା ପଶ୍ଚାତରେ ରହିଥିବା ଦର୍ଶନକୁ ଅବବୋଧ କରିବା ଏତେ ସହଜ ନୁହେଁ। ଏହାକୁ ଏକ ଉଦାହରଣ ଦେଇ ବୁଝାଇଲେ ଠିକ୍ ହେବ। କୌଣସି ବ୍ୟକ୍ତିକୁ ଆମେ ଦେଖିଲେ ତା ପ୍ରସଙ୍ଗରେ ହୁଏତ ଆମେ କିଛି ଧାରଣା କରିଥାଉ। ମଣିଷର ପ୍ରକୃତ ସ୍ୱରୂପ ତାହାଦ୍ୱାରା

Digitized by srujanika@gmail.com

ହୁଏତ ଆମେ ଜାଣିବା ସମ୍ଭବ ନୁହେଁ । ପ୍ରକୃତି ମଣିଷକୁ ଯେପରି କରିଛି, ତାକୁ ବିନା ପରିବର୍ତ୍ତନରେ ଓ ବିନା ପୋଷାକରେ ଆମେ ଦେଖିବା ସମ୍ଭବ କି ? ଆଧୁନିକ ଜୀବନଧାରାରେ ବ୍ୟକ୍ତିକୁ ଯେପରି ଦେଖିବାକୁ ଆମେ ଭଲ ପାଇବା ନାହିଁ । ଯେପରି ଦେଖିବା ଆମ ପାଇଁ ଯେପରି ଅରୁଚିକର ହେବ, ଯେପରି ଘୃଣାଭାବ ସୃଷ୍ଟି କରିବ ।

କୌଣସି ଜିନିଷକୁ ସେହି ପରିସ୍ଥିତିରେ ଦେଖିବା ଅରୁଚିକର ଓ ଅପ୍ରୀତିକର ମନେ ହୋଇପାରେ । ଏହି କାରଣରୁ କେହି କେହି କହିଥାନ୍ତି ଯେ ଦର୍ଶନକୁ ବୁଝିବା ପାଇଁ ମଣିଷ ଗୋଟିଏ ନିର୍ଦ୍ଦିଷ୍ଟ ଅବସ୍ଥାକୁ ଆସିବା ଆବଶ୍ୟକ ।

ଏହି କାରଣ ଯୋଗୁଁ ମୁଁ କହିବାକୁ ଚାହିଁଥିଲି ଯେ ଦର୍ଶନ ସ-ର୍କୀୟ ମୋ ବ୍ୟାଖ୍ୟା କେତେକଙ୍କ ପାଇଁ ଅରୁଚିକର ମନେହୋଇପାରେ । ଆମର ଗୋଟିଏ ପ୍ରବାଦ ଅଛି ଯେ ଅପ୍ରିୟ ସତ୍ୟ କଥା କହିଲେ କେତେକଙ୍କର ଶତ୍ରୁ ହେବାକୁ ପଡ଼େ । ଏହାର ଅର୍ଥ ନୁହେଁ ଯେ ଲୋକମାନେ ମିଥ୍ୟାବାଦୀ ହେବା ଉଚିତ୍ । ଏହାର ତାତ୍ପର୍ଯ୍ୟ ହେଉଛି ସତ୍ୟ ଓ ଦର୍ଶନ ସମାଜରେ ଭିନ୍ନ ନାମ, ରୂପରେ ପ୍ରଚଳିତ ଥାଏ । ବସ୍ତୁତଃ ଅନେକ ସତ୍ୟ ଆମମାନଙ୍କ ପାଇଁ ଆଦୌ ବିଶ୍ୱାସଯୋଗ୍ୟ ହୋଇପାରେ ନାହିଁ ।

କୌଣସି ଦର୍ଶନକୁ ଲୋକମାନଙ୍କ ପାଖରେ ବ୍ୟାଖ୍ୟା କରିବା ଯେପରି ଏକ ସ୍ପର୍ଶକାତର ପ୍ରଶ୍ନ, ସେହିପରି ମଧ୍ୟ ଜଟିଳ । ମୋତେ ଯେତେବେଳେ ଏଠାରେ ସଭାପତି ପରିଚିତ କରାଇଲେ, ସେ କହିଲେ ଯେ ମୁଁ ହେଉଛି ଜଣେ ନିରୀଶ୍ୱରବାଦୀ, ଧର୍ମବିରୋଧୀ ଓ ରାଜନୀତିଜ୍ଞବିରୋଧୀ । ବ୍ୟକ୍ତି ହିସାବରେ ମୁଁ ଜଣେ ସାଧାରଣ ମଣିଷ । ସୁତରାଂ ଦାର୍ଶନିକ ବିଚାର ଓ ସିଦ୍ଧାନ୍ତର ବାସ୍ତବତାକୁ ବ୍ୟାଖ୍ୟା କରିବା ମୋ ପାଇଁ ନିଶ୍ଚୟ କଷ୍ଟକର । ଏ ସତ୍ତ୍ୱେ ଏ କ୍ଷେତ୍ରରେ ମୋ ଅବବୋଧକୁ ବିନୟର ସହ ପ୍ରକାଶ କରିବାକୁ ମୁଁ ପ୍ରୟାସ କରିବି । ମୋ ବିଷୟରେ ସଭାପତି ଦେଇଥିବା କେତେକ ମନ୍ତବ୍ୟ ପୃଷ୍ଠଭୂମିରେ ମୋର ଭାଷଣକୁ ସୀମିତ ରଖିବି ।

ବନ୍ଧୁଗଣ, କୌଣସି ବିଷୟ ଗୁରୁତ୍ୱହୀନ ହୋଇପାରେ ବା ଅତ୍ୟନ୍ତ ମୂଲ୍ୟବାନ ହୋଇପାରେ । ଏହା କାହିଁକି ମୁଁ କହୁଛି ତାହା ବୁଝାଇବା ଆବଶ୍ୟକ । ସାଧାରଣ ମଣିଷମାନଙ୍କ ପାଇଁ ଈଶ୍ୱର, ଧର୍ମ, ରାଜନୀତି ବିଷୟରେ ଚର୍ଚ୍ଚାକରିବା

Digitized by srujanika@gmail.com

ଗୁରୁତ୍ୱପୂର୍ଣ୍ଣ ନୁହେଁ । ଏସବୁ ପଷ୍ଟାତରେ ଥିବା ଭାବନା ସକଳକୁ ସେମାନେ ବିଚାର କରିପାରନ୍ତି ନାହିଁ । କିନ୍ତୁ ବିଜ୍ଞ ଲୋକମାନଙ୍କ ପାଇଁ ଏହି ପ୍ରଶ୍ନ ଗୁଡିକ ବେଶ୍ ଗୁରୁତ୍ୱପୂର୍ଣ୍ଣ । ସେମାନେ ଏହାକୁ ଗମ୍ଭୀରତାର ସହ ବୁଝିବାକୁ ପ୍ରୟାସ କରନ୍ତି ଓ ନିଜର ଅବବୋଧ ନେଇ ସେହି ଭାବନାର ପ୍ରଚାର କରିଥାନ୍ତି ।

ବିଶିଷ୍ଟ ସଙ୍ଗୀତଜ୍ଞମାନଙ୍କର ଗୀତକୁ ସବୁ ଶ୍ରେଣୀର ଲୋକ ଶୁଣିଥାନ୍ତି । ସାଧାରଣ ଲୋକମାନେ ଗାୟକଙ୍କର ଗୀତ ବିଷୟରେ ବେଳେବେଳେ ମନ୍ତବ୍ୟ କରିଥାନ୍ତି ଯେ ତାଙ୍କର ଗୀତ ଈଶ୍ୱରଙ୍କ ପ୍ରଶଂସାଜନିତ ଥିଲା, କିମ୍ବା ସେ କେବଳ ନାରୀମାନଙ୍କ ସ-ର୍କରେ ଲଘୁ ସଂଗୀତ ଗାନ କରିଥିଲେ । ଗୋଟିଏ ସଙ୍ଗୀତ କାର୍ଯ୍ୟକ୍ରମ ଶୁଣିବା ପରେ ସେମାନେ ଏହିପରି କିଛି ମନ୍ତବ୍ୟ ଦେବା ସହ ଗୀତକୁ ଉପଭୋଗ କରିଥାନ୍ତି । କିନ୍ତୁ ସଂଗୀତ ସ-ର୍କରେ ଜଣେ ପ୍ରବୀଣ ବ୍ୟକ୍ତି ଗାଉଥିବା ବ୍ୟକ୍ତିର ତାଳ ଛନ୍ଦ ଠିକ୍ ରହୁଥିଲାକି ନାହିଁ, ବାଦ୍ୟ ଗୁଡିକ ସମତାଳ ଭାବରେ ବାଜୁଥିଲା କି ନାହିଁ, ତାହାକୁ ଲକ୍ଷ କରିଥାନ୍ତି । ଅନ୍ୟ ସଂଗୀତଜ୍ଞଙ୍କ ସଂଗୀତ ସ-ର୍କିତ ବିଜ୍ଞାନ ଯୋଗୁଁ ଗାୟକ ନିଜର କାର୍ଯ୍ୟକ୍ରମ ପରିବେଷଣ କଲାବେଳେ ଅନେକଟା ସଚେତନ ହୋଇ ଗାଇଥାନ୍ତି । ସଙ୍ଗୀତ ଶୁଣୁଥିବା ଜଣେ ସାଧାରଣ ଶ୍ରୋତାର ମତଠାରୁ ସଂଗୀତ ବିଷୟରେ ବୈଷୟିକ ଜ୍ଞାନଥିବା ଜଣେ ବ୍ୟକ୍ତିର ମତ ଗୁରୁତ୍ୱପୂର୍ଣ୍ଣ ହୋଇଥାଇପାରେ । ଏହି ପୃଷ୍ଠଭୂମିରେ ମୋର ବକ୍ତବ୍ୟକୁ ହୁଏତ କେହି ଗୁରୁତ୍ୱହୀନ ମନେକରିପାରନ୍ତି, କିମ୍ବା ଆଉ କେହି ଗମ୍ଭୀରତାର ସହ ବିଚାର କରିପାରନ୍ତି ।

**ଈଶ୍ୱର**

ସଭାପତି ମହୋଦୟ ଈଶ୍ୱରଙ୍କ ସ-ର୍କରେ ଉଲ୍ଲେଖ କରି କହିଲେ ଯେ, ଈଶ୍ୱରଙ୍କ ଇଚ୍ଛାରେ ସବୁକିଛି ପରିଚାଳିତ ହୁଏ । ସେ ସବୁକିଛି କରିପାରନ୍ତି । ଧର୍ମ ସ-ର୍କରେ ସେ କହିଲେ ଯେ ଏହା ମଣିଷ ଓ ଈଶ୍ୱରଙ୍କ ଭିତରେ ଏକ ସେତୁ ସଦୃଶ । ଆଜିର ଏହି ସଭା ଏକ ଧର୍ମସଭା ନୁହେଁ । ଦର୍ଶନ ବିଷୟରେ କେତେକ ସାଧାରଣ କଥା ଆଲୋଚନା କରିବା ଆଜି ସଭାର ଉଦ୍ଦେଶ୍ୟ । ଏହି ପ୍ରସଂଗ ଉପରେ ମୁଁ ମୋର ବକ୍ତବ୍ୟକୁ ସ୍ପଷ୍ଟ ଭାବରେ କହିବାକୁ ଚାହୁଁଛି । ମୋର ମତକୁ ମୁଁ ସ୍ପଷ୍ଟ ଭାବରେ ବୁଝାଇବାକୁ ଲକ୍ଷ୍ୟ ରଖୁଛି ।

Digitized by srujanika@gmail.com

ଅନେକ ଲୋକଙ୍କ ମତରେ ମୁଁ ହେଉଛି ଧର୍ମରେ ବିଶ୍ୱାସ କରୁନଥିବା ଜଣେ ନିରୀଶ୍ୱରବାଦୀ । ଯଦି ମୋ ବିଷୟରେ ନିରୀଶ୍ୱରବାଦୀମାନେ ଏହା କହିଥାନ୍ତେ, ତେବେ ମୁଁ ବେଶ୍ ଆନନ୍ଦିତ ହୋଇଥାନ୍ତି ।

ଈଶ୍ୱରବାଦୀମାନେ ମୋ ବିଷୟରେ ଏହା କହିବାବେଳେ ମୋତେ ସେମାନଙ୍କ ପ୍ରତି ଦୟା ଲାଗେ । ଏହି ଶ୍ରେଣୀର ଲୋକମାନଙ୍କ ଶ୍ରେଣୀରେ ସଂପୃକ୍ତ ହେବାକୁ ମୁଁ ସୁଖୀ ମନେକରିବି ନାହିଁ । ଏହି ସଭାରେ ବାସ୍ତବ ଦର୍ଶନ ବିଷୟରେ ଚର୍ଚ୍ଚା କରିବାକୁ ଲକ୍ଷ୍ୟ ରଖାଯାଇଛି । ସୁତରାଂ ମୁଁ ମୋର ମତକୁ ଯଦି ଠିକ୍ ଭାବରେ ବ୍ୟକ୍ତ ନକରେ, ତେବେ ସତ୍ୟସନ୍ଧାନୀଙ୍କ ପ୍ରତି ମୁଁ ଅନ୍ୟାୟ କରିବି । ଆସ୍ତିକବାଦୀମାନେ ସେମାନଙ୍କର ଅଜ୍ଞତା ଯୋଗୁଁ ମୋତେ ନିରୀଶ୍ୱରବାଦୀ କହିଥାନ୍ତି । ସେମାନଙ୍କର ଦାୟିତ୍ୱ ହୀନତା ଯୋଗୁଁ ମୋତେ ଏପରି କୁହାଯାଇଥାଏ । ଗୋଟିଏ ଉଦାହରଣ ଦେଇ ମୁଁ ଏହାକୁ ବୁଝାଇବାକୁ ଉଚିତ୍ ମନେକରୁଛି ।

ଥରେ ଗୋଟିଏ ଉତ୍ସବକୁ ଜଣେ ବ୍ରାହ୍ମଣ କିଛି ଅର୍ଥପ୍ରାପ୍ତି ଆଶାନେଇ ଆସିଲେ । ସେ କିଛି ସାହାଯ୍ୟ ଭିକ୍ଷା କଲେ । ଗୃହକର୍ତ୍ତା ସମସ୍ତଙ୍କୁ ଯେପରି ଦାନ ଦେଉଥିଲେ, ତାଙ୍କୁ ସେହିପରି ଚାରିଅଣା (ଏକଟଙ୍କାର ଏକ ଚତୁର୍ଥାଂଶ) ଦାନ ଦେଲେ । ବ୍ରାହ୍ମଣ ଜଣଙ୍କ କହିଲେ - "ମୁଁ କେବେ କାହାର ନିନ୍ଦାକରେ ନାହିଁ । ମୋର କୌଣସି ଅହଂକାର ନାହିଁ । ଅର୍ଥପ୍ରତି ମୋର କିଛି ଆଶକ୍ତି ନାହିଁ । ମୁଁ ଏସବୁ ତ୍ୟାଗ କରିଛି । ଚାରିବେଦ ସହ ଦର୍ଶନ ଓ ଅଷ୍ଟାଦଶ ପୁରାଣ ପଢିଥିବା ମୋ ପରି ଜଣେ ବ୍ୟକ୍ତିଙ୍କୁ ଚାରିଅଣା ଦେବା ଆପଣଙ୍କ ପାଇଁ ଠିକ୍ କି? ଆପଣ ଅନ୍ୟମାନଙ୍କୁ ଯାହାଦାନ ଦେଇଛନ୍ତି, ମୋତେ ତାହା ଦେବା ଯଥାର୍ଥ ହେଉଛି କି? ଏହା କ'ଣ ଆପଣଙ୍କ ଧର୍ମ ?

ସେହିପରି ଏହି ଆସ୍ତିକବାଦୀମାନେ ଅନ୍ୟମାନଙ୍କୁ ନିରୀଶ୍ୱରବାଦୀ କହି ନିନ୍ଦା କରିଥାନ୍ତି । ଏହି ଆସ୍ତିକବାଦୀମାନେ କିପରି ଈଶ୍ୱରଙ୍କୁ ବିଶ୍ୱାସ କଲେ ତାଇନ୍ତୁ ଆଲୋଚନା କରିବା ।

ଈଶ୍ୱର ବିଶ୍ୱାସୀ ଲୋକମାନେ କହନ୍ତି-ଈଶ୍ୱର ହେଉଛନ୍ତି ସର୍ବଶକ୍ତିମାନ । ସେମାନଙ୍କ ମତରେ ଈଶ୍ୱର ସବୁଠି ବିଦ୍ୟମାନ । ସେମାନେ ଭାବନ୍ତି ଈଶ୍ୱର ଅଦୃଷ୍ଟ ।

Digitized by srujanika@gmail.com

ସେମାନେ ମତ ଦିଅନ୍ତି ଯେ ଈଶ୍ୱରଙ୍କ ଅନୁମତିରେ ସବୁକିଛି ଘଟୁଛି । ଯଦି ଈଶ୍ୱରଙ୍କ ବିଷୟରେ ଏହା ଚିନ୍ତା କରାଯାଏ, ତେବେ ମୁଁ ସେହି ଈଶ୍ୱରଙ୍କୁ ଅସ୍ୱୀକାର କରୁଛି ।

ବ୍ରାହ୍ମଣମାନେ ଈଶ୍ୱରଙ୍କ ସ-ର୍କରେ ଏହାହିଁ କହିଥାନ୍ତି । ବ୍ରାହ୍ମଣମାନେ କହନ୍ତି, ସେମାନେ ଲୋଭ ତ୍ୟାଗ କରିଛନ୍ତି । ବେଦଶାସ୍ତ୍ର ଉପରେ ସେମାନଙ୍କର ପ୍ରଭୂତ ଜ୍ଞାନ ଥିବା ସେମାନେ ଭାବନ୍ତି । ଅନ୍ୟମାନଙ୍କୁ ତାଙ୍କ ସହ ସମାନ କରି ଚାରିଅଣା ଦିଆଯିବାକୁ ସେମାନେ ଈର୍ଷା ମଧ୍ୟ କରିଥାନ୍ତି । ସବୁ କିଛି ପରିତ୍ୟାଗ କରିଥିବା ଓ ଅର୍ଥପ୍ରତି କୌଣସି ଆସକ୍ତି ନ ରଖିଥିବା ସେମାନେ ପାଟିରେ କହିଲାବେଳେ ବାସ୍ତବରେ ସେମାନେ କାହିଁକି ଚାରିଅଣା ଦକ୍ଷିଣା ସ୍ୱରୂପ ପାଇଲେ ସେଥିରେ ତୁମ୍ବିତୋଫାନ କରିଥାନ୍ତି ।

ବ୍ରାହ୍ମଣମାନେ ସେମାନଙ୍କ କଥାରେ ଆଦୌ ସତ୍ୟତା ରକ୍ଷା କରନ୍ତି ନାହିଁ । ସେମାନଙ୍କ ପ୍ରତି ଆରୋପ କରାଯାଉଥିବା ମହତ ଗୁଣକୁ ସେମାନେ ନିଜକାର୍ଯ୍ୟ ଦ୍ୱାରା ଖଣ୍ଡନ କରିଥାନ୍ତି । ସେମାନଙ୍କ କଥା ଓ କାର୍ଯ୍ୟରେ ଅନେକ ପାର୍ଥକ୍ୟ ରହିଥାଏ । ସେମାନେ ଯେ ପ୍ରକୃତରେ ବ୍ରାହ୍ମଣ ପଦବାଚ୍ୟ ଏହା କୁହାଯାଇ ନପାରେ ।

ସେହିପରି ଈଶ୍ୱର ସର୍ବଜ୍ଞ ଓ ସର୍ବଶକ୍ତିମାନ ବୋଲି ଯେତେବେଳେ ଈଶ୍ୱର ବିଶ୍ୱାସୀମାନେ କୁହନ୍ତି ତାହାକୁ କିଏ କାହିଁ ଅସ୍ୱୀକାର କରିବ । ଜଣେ ସାଧାରଣ ବ୍ୟକ୍ତି ଯଦି ଈଶ୍ୱରଙ୍କୁ ଅସ୍ୱୀକାର କରେ ଏଥିରୁ ଈଶ୍ୱରଙ୍କର ସର୍ବଜ୍ଞତା ବା ସର୍ବବିଦ୍ୟମାନତା ଅସ୍ୱୀକୃତ ହୋଇଥାଏ କି ! ଈଶ୍ୱରଙ୍କୁ ଏହି ସବୁ ଗୁଣରେ ବ୍ରାହ୍ମଣମାନେ ଭୂଷିତ କରିଥାନ୍ତି । ଏଗୁଡିକ ଯେ କେବଳ କାଳ୍ପନିକ ଓ ଆଧାରହୀନ ବିଶ୍ୱାସ ଏହାହିଁ କୁହାଯାଇପାରେ । ଯେଉଁମାନେ ଈଶ୍ୱରଙ୍କୁ ଅବିଶ୍ୱାସ କରନ୍ତି ସେମାନଙ୍କୁ ନିରୀଶ୍ୱରବାଦୀ କୁହାଯାଏ । ଜଣେ ବ୍ୟକ୍ତିଙ୍କୁ ନିରୀଶ୍ୱରବାଦୀ କହିବା ଅର୍ଥହୀନ ଓ ଅଜ୍ଞତାର ପରିଚୟ ।

ଯଦି ପ୍ରକୃତରେ ଈଶ୍ୱରଙ୍କ ସ୍ଥିତିଥାଏ, ତେବେ ଈଶ୍ୱରଙ୍କୁ ଅସ୍ୱୀକାର କରି ଜଣେ ନିରୀଶ୍ୱରବାଦୀ କଣ ଲାଭ କରିପାରେ?

ଈଶ୍ୱର ଯଦି ସର୍ବ ଶକ୍ତିମାନ, ତେବେ ସେ କାହିଁକି ଜଣେ ସାଧାରଣ ମଣିଷକୁ ଏହା ଭାବିବାକୁ ଦେଇଛନ୍ତି? ଯଦି ପ୍ରକୃତରେ ଈଶ୍ୱର ସର୍ବଜ୍ଞ ହୋଇଥାନ୍ତି,

Digitized by srujanika@gmail.com

ତେବେ କୌଣସି ବ୍ୟକ୍ତି ଇଶ୍ୱରଙ୍କୁ ଅସ୍ୱୀକାର କରିପାରୁନଥାନ୍ତା । ଇଶ୍ୱର ତାଙ୍କୁ ଅସ୍ୱୀକାର କରୁଥିବା ନିରୀଶ୍ୱରବାଦୀଙ୍କୁ ସୃଷ୍ଟି କରି ନିଜ ଅଜ୍ଞତାର ପରିଚୟ ଦେଇନଥାନ୍ତେ । ଏହି ସବୁ ପ୍ରସଙ୍ଗ ଉପରେ ଆପଣମାନେ ବିଚାର କରିବା ଆବଶ୍ୟକ । ଯଦି ବାସ୍ତବରେ ଏହି ପ୍ରସଙ୍ଗ ଉପରେ ଆପଣମାନେ ଗମ୍ଭୀର ଭାବରେ ଚିନ୍ତାକରିବେ, ତେବେ ଆପଣମାନେ ଅନୁଭବ କରିବେ ଯେ କାହାକୁ ନିରୀଶ୍ୱରବାଦୀ ବା ଇଶ୍ୱର ଅବିଶ୍ୱାସୀ କହିବା ସ-ୂର୍ଣ୍ଣ ଭ୍ରମାତ୍ମକ ଅଟେ ।

ଯେଉଁମାନେ ଇଶ୍ୱରଙ୍କ ବିଷୟରେ କିଛି ଜାଣନ୍ତି ନାହିଁ, ସେମାନେ ଅନ୍ୟମାନଙ୍କୁ ନିରୀଶ୍ୱରବାଦୀ ବା ଇଶ୍ୱର ଅବିଶ୍ୱାସୀ ବୋଲି କହିଥାନ୍ତି । ତାହାହିଁ ହେଉଛି ନିରୀଶ୍ୱରବାଦ । ପ୍ରକୃତରେ ଆସ୍ତିକବାଦୀମାନେ ନିରୀଶ୍ୱରବାଦୀ ମାନଙ୍କୁ ସୃଷ୍ଟି କରିଛନ୍ତି । ସେମାନଙ୍କର ଅଜ୍ଞତା ଯୋଗୁଁ ନିରୀଶ୍ୱରବାଦର ପ୍ରସାର ହେଉଛି । ଯଦି ପ୍ରକୃତରେ ଇଶ୍ୱରଙ୍କ ଅସ୍ତିତ୍ୱ ଥାନ୍ତା, ତେବେ ଜଣେ ବ୍ୟକ୍ତି କ'ଣ ତାଙ୍କୁ ଅସ୍ୱୀକାର କରିପାରନ୍ତା ? ଜଣେ ମଣିଷ ଆଉ ଜଣେ ମଣିଷ ଇଶ୍ୱରଙ୍କୁ ବିଶ୍ୱାସ କରେନି ବୋଲି କିପରି କହିପାରୁଛି ଆପଣମାନେ ଏହା ଉପରେ ଚିନ୍ତା କରନ୍ତୁ । ଏଥିରୁ ଏହି ସିଦ୍ଧାନ୍ତ ହେଉଛି ଯେ, ନିରୀଶ୍ୱରବାଦ ଓ ନିରୀଶ୍ୱରବାଦୀ ଭାବନା ସକଳ ବ୍ରାହ୍ମଣ ମାନଙ୍କର ଅଜ୍ଞତାରୁ ହିଁ ସୃଷ୍ଟି ହୋଇଛି । କିମ୍ବା ଏହା ମଧ୍ୟ ହୋଇପାରେ ବ୍ରାହ୍ମଣମାନେ ଇଶ୍ୱରଙ୍କ ନାମରେ ବ୍ୟବସାୟ ପାଇଁ ଏହିସବୁ ଧାରଣା ସୃଷ୍ଟି କରିଛନ୍ତି, ଇଶ୍ୱରଙ୍କ ନା ନେଇ ଏକ ଲାଭବାନ ସ୍ଥିତିକୁ ଯିବା ସେମାନଙ୍କର ଉଦ୍ଦେଶ୍ୟ ହୋଇଛି । ଅନ୍ୟମାନେ ଏହି ପ୍ରସଙ୍ଗ ଉପରେ ଏତେ ବ୍ୟସ୍ତ ହେବାର କୌଣସି କାରଣ ନାହିଁ ।

ଇଶ୍ୱର ଭାବନାର ବିଶ୍ଲେଷଣ ଦ୍ୱାରା ଏହା ପଶ୍ଚାତରେ ଥିବା ସମସ୍ତ ଜଟିଳତାକୁ ପ୍ରକାଶ କରିହେବ । ଏହି ପ୍ରତ୍ୟୟଟି ସ-ର୍କରେ ଗବେଷଣା ଦ୍ୱାରା ଏହାର ଯଥାର୍ଥ ସ୍ୱରୂପ ଜାଣି ହେବ । ଯେକୌଣସି ଗବେଷଣାର ଆଭିମୁଖ୍ୟ ହେଉଛି ଏହାର ଯଥାର୍ଥ ତାତ୍ପର୍ଯ୍ୟ କଣ ତାହାକୁ ସ୍ପଷ୍ଟ କରିବା । ଏହି ଭାବନାଟି କଣ ଜିଣିବା ପରେ ଏହା କାହିଁକି ରହିଛି ଓ କିପରି ରହିଛି ତାହା ମଧ୍ୟ ସ୍ପଷ୍ଟ ହୋଇପାରିବ । ଏହା ସହିତ ଏହି ଭାବନା କେଉଁଠାରେ ରହିଛି ଓ ଏହାର ଉତ୍ପତ୍ତି କିପରି ହୋଇଛି,

Digitized by srujanika@gmail.com

ତାହା ମଧ୍ୟ ଏ ସଂପର୍କରେ ଏକ ସ୍ପଷ୍ଟ ଚିତ୍ର ଦେଇପାରିବ । ତେବେ ପ୍ରଥମରେ କୌଣସି ପ୍ରକାରର ପୂର୍ବଧାରଣାର ବଶବର୍ତ୍ତୀ ନହୋଇ ମୁକ୍ତମନରେ ଏହାର ବିଶ୍ଳେଷଣ ଆବଶ୍ୟକ । କୌଣସି ବିଷୟରେ ଅନୁସନ୍ଧିତ୍ସୁ ହେବାଦ୍ୱାରା ଏହାକୁ ଯୁକ୍ତିଶୀଳ ଭାବରେ ଆମେ ଅବବୋଧ କରିପାରିବା । ଦାର୍ଶନିକ ଅନୁସନ୍ଧିତ୍ସା ଓ ଯୁକ୍ତିଶୀଳତା ଭିତରେ ଏକ ସୁସ-ର୍କ ରହିଥାଏ । ପ୍ରକୃତରେ ଏକ ସର୍ବଜ୍ଞ ଓ ସର୍ବଶକ୍ତିମାନ ଇଶ୍ୱରଙ୍କ ଅସ୍ତିତ୍ୱ ସ-ର୍କରେ ଜାଣିବା ପାଇଁ ବିଭିନ୍ନ ପ୍ରଶ୍ନ ଉଠାଇବା ଆବଶ୍ୟକ । କେତୋଟି ମାତ୍ର ପ୍ରଶ୍ନ ଭିତରେ ଏହାକୁ ସୀମିତ ନରଖି ବିଭିନ୍ନ ପ୍ରସଙ୍ଗ ଆଧାରରେ ଏହାର ବିଶ୍ଳେଷଣ ଆବଶ୍ୟକ । ଇଶ୍ୱରଙ୍କ ଉପରେ ଆସ୍ଥା ରଖିଥିବା ଜଣେ ଅନ୍ଧବିଶ୍ୱାସୀ କୌଣସି ପ୍ରଶ୍ନ ପଚାରିବାକୁ ଚାହିଁବେ ନାହିଁ । କୌତୂହଳ ପ୍ରବଣତାକୁ ସେ ସର୍ବଦା ଏଡାଇ ଦେଇଥାନ୍ତି । ଦର୍ଶନ ଉପରେ ଗମ୍ଭୀର ଚର୍ଚ୍ଚା କରୁଥିବା ଜଣେ ବ୍ୟକ୍ତି ବିଶ୍ୱାସର ଊର୍ଦ୍ଧ୍ୱକୁ ଯାଇ ଏହି ଭାବନାର ତର୍କଶୀଳ ଆଧାର ଖୋଜି ଥାଏ । ଅନ୍ଧବିଶ୍ୱାସ ବା ଅଜ୍ଞତାର ଭିତ୍ତି ଉପରେ ଇଶ୍ୱରଙ୍କ ଅସ୍ତିତ୍ୱକୁ ସୀମିତ ରଖିବା ଦର୍ଶନ ଚର୍ଚ୍ଚା କରୁଥିବା ବ୍ୟକ୍ତି ପାଖରେ ସମ୍ଭବ ନୁହେଁ । ଜଣେ ଚେତନଶୀଳ ଓ ବିଚାରଶୀଳ ବ୍ୟକ୍ତିଙ୍କ ପାଇଁ ଇଶ୍ୱର ପ୍ରସଂଗଟି ନାନା ପ୍ରଶ୍ନ ଉଠାଇ ଥାଏ ।ସେ ଏହି ପ୍ରଶ୍ନ ଉଠାଇ ଥାନ୍ତି ଯେ, ଇଶ୍ୱରଙ୍କୁ କାହିଁକି ବିଶ୍ୱାସ କରିବା ? ଇଶ୍ୱରଙ୍କ କଣ ସ୍ଥାନ ଅଛି ? ଇଶ୍ୱର କିଏ ? ଯେଉଁ ମାନେ ଇଶ୍ୱର ବର୍ଣ୍ଣନା ସ-ର୍କରେ ବିଚାର ଆଲୋଚନା କରିଛନ୍ତି, ସେମାନେ ଏହି ପ୍ରଶ୍ନ ଗୁଡିକର ଯଥାଯଥ ଉତ୍ତର ଦେବାକୁ ଉଦ୍ୟମ କରିଥାନ୍ତି ।

ମଣିଷ ଚିନ୍ତାଶୀଳ ପ୍ରାଣୀ, ଗଂଭୀର ଭାବରେ ଚିନ୍ତା କରିବାର ସାମର୍ଥ୍ୟ ମଣିଷର ଅଛି । ମଣିଷ ନିଜର ବିଚାରଶୀଳତା ଦ୍ୱାରା ସତ୍ୟର ସ୍ୱରୂପକୁ ଜାଣିବାକୁ ସମର୍ଥ ହୋଇଥାଏ । ମଣିଷ ନିଜକୁ ପଶୁସ୍ତରକୁ ନେଇ ନ୍ୟୂନ କରିବା ଠିକ୍ ନୁହେଁ । ସେ ସମସ୍ତ ଅନ୍ଧବିଶ୍ୱାସକୁ ବର୍ଜନ କରିବା ଆବଶ୍ୟକ । ତେବେ ମଣିଷ ନିଜର ବିଚାର ବୁଦ୍ଧିକୁ ମନ୍ଦ ଦିଗରେ ବିନିଯୋଗ କରି ଅନେକ ସମସ୍ୟାକୁ ଉଦ୍ରେକ କରାଇଥାଏ । ପୁନଶ୍ଚ କେତେକ ସମସ୍ୟାରୁ ନିଜକୁ ମୁକ୍ତ ରଖିବା ପାଇଁ ସେ ଅନେକ ଇଶ୍ୱରଙ୍କୁ ସୃଷ୍ଟି କରିଛି । ଏଠାରେ କେତେ ପ୍ରଶ୍ନ ଉଠୁଛି ।

Digitized by srujanika@gmail.com

ଶାସକ ଓ ଶାସିତ କାହିଁକି ରହିଛନ୍ତି ?
ଧନୀ ଦରିଦ୍ର ପାର୍ଥକ୍ୟ କାହିଁକି ଅଛି ?
ଉଚ୍ଚଜାତି ନୀଚଜାତି ଭିତରେ ଭେଦଭାବ କାହିଁକି ରହିଛି ?
ଶ୍ରମଜୀବୀ ମଣିଷ ଓ ଶ୍ରମଭୀରୁ ମଣିଷ କେଉଁଥିପାଇଁ ଅଛି ?
ଦାସ ଓ ପ୍ରଭୁ ପ୍ରଭେଦ କିପରି ହୋଇଛି ?
ଭିକାରି ଓ ମାଲିକ ପ୍ରଭେଦ କେଉଁଥିପାଇଁ ଅଛି ?

ଆପଣମାନେ ଏହି ସମସ୍ୟା ଉପରେଁ ଚିନ୍ତା କରନ୍ତୁ । ଈଶ୍ୱରଙ୍କୁ କାହିଁକି ସୃଷ୍ଟି କରାଯାଇଛି? ଏସବୁ ସାମାଜିକ ବୈଷମ୍ୟକୁ ରକ୍ଷା କରିବାକୁ ଈଶ୍ୱରଙ୍କୁ ସୃଷ୍ଟି କରାଯାଇଛି ବୋଲି ଆପଣମାନେ ଭାବୁନାହାନ୍ତି କି ?

ଏହି ସବୁ ପ୍ରଶ୍ନରୁ ଏପ୍ରସଂଗ ମଧ୍ୟ ଆସୁଛି । ଈଶ୍ୱର ମଣିଷ ପାଇଁ କଣ କରୁଛନ୍ତି? ମଣିଷର ମଙ୍ଗଳ ପାଇଁ ଈଶ୍ୱର ଏପର୍ଯ୍ୟନ୍ତ କିଛି କରିଛନ୍ତି କି? ମନ୍ଦ ଓ ଅଶୁଭକୁ ସୁରକ୍ଷା ଦେବା ପାଇଁ ଈଶ୍ୱର ନାହାନ୍ତି କି? ଏ ପ୍ରକାର ଈଶ୍ୱରଙ୍କର ଆମ ପାଇଁ କ'ଣ ଆବଶ୍ୟକତା ରହିଛି? ସମାଜରେ ଶାନ୍ତି, ପ୍ରେମ ଓ ସନ୍ତୋଷର ଅଭାବ ପାଇଁ ପ୍ରକୃତରେ କିଏ ଦାୟୀ ? ବୁଦ୍ଧିମାନ ମଣିଷ ଯଦି ହତାଶା ଓ ନୈରାଶ୍ୟ ଭିତରେ ମୃତ୍ୟୁ ବରଣକରେ, ତେବେ ସେଥିପାଇଁ କିଏ ସେ ଦାୟୀ? ଏହି ପରିସ୍ଥିତି ପାଇଁ ଈଶ୍ୱର ବିଶ୍ୱାସ ଦାୟୀ ନୁହେଁ କି? ମଣିଷର ଅଜ୍ଞତାକୁ ଯଦି ଏସବୁ ପାଇଁ ଦାୟୀ କରାଯାଏ, ତେବେ ମଣିଷ ଭିତରେ ବୁଦ୍ଧି ଓ ବିଚାରଶୀଳତା କାହିଁକି ରହିଛି? ଆମେ କ'ଣ କହିପାରିବା କି ଅଜ୍ଞଭାବରେ କାମ କରିବା, ଅନ୍ଧ ଭାବରେ ବିଶ୍ୱାସ କରିବା ଓ ମୂର୍ଖ ଭାବରେ ବ୍ୟବହାର କରିବା ପାଇଁ ମଣିଷ ଭିତରେ ବୁଦ୍ଧି ଓ ବିଚାରଶୀଳତା ରହିଛି ! ମଣିଷର ବୁଦ୍ଧି ଥିବା ସତ୍ତ୍ୱେ ମଣିଷ ସ୍ୱଭାବରେ ଅନେକ ମନ୍ଦଗୁଣ ରହିଛି । ସେ ଅନେକ ଦୁଷ୍ଚିନ୍ତାର ସମ୍ମୁଖୀନ ହୋଇଥାଏ । ଅନେକ ପ୍ରତିକୂଳସ୍ଥିତିର ସେ ସମ୍ମୁଖୀନ ହୁଏ । ଅନ୍ୟକୁ ଘୃଣା କରେ । ସେ ଅନ୍ୟ ପ୍ରତି ବେଳେକେ ବିଶ୍ୱାସଘାତକତା କରେ । ଏ ସବୁ ସ୍ୱଭାବ ଦେଖାଉଥିବା ବ୍ୟକ୍ତି ଯେ ବିଚାରଶୀଳ ନୁହେଁ ଏହା ଆମେ କହିପାରିବା ।

Digitized by srujanika@gmail.com

କେହି କେହି ମଣିଷ ମନ୍ଦ ସ୍ୱଭାବର ଆଚରଣ ଦେଖାଇଥାନ୍ତି, ଯାହାକି ପଶୁ ପାଖରେ ମଧ୍ୟ ଦେଖାଯାଏ ନାହିଁ । ଏହାକୁ ଆମେ ଈଶ୍ୱର ସୃଷ୍ଟ କହିପାରିବା କି ? ଈଶ୍ୱର ବିଶ୍ୱାସରୁ ସେ ଏପରି ମନ୍ଦ ସ୍ୱଭାବ ଦେଖାଇବା ସମ୍ଭବ କି? ଈଶ୍ୱରଙ୍କୁ ବିଶ୍ୱାସ କରୁଥିବାରୁ କିମ୍ବା ଈଶ୍ୱରଙ୍କ ଶକ୍ତିକୁ ଠିକ୍ ଭାବରେ ଅବବୋଧ କରୁନଥିବାରୁ ମଣିଷ ଏପ୍ରକାରର ଖରାପ ଆଚରଣକରେ କି ? ଯଦି ଏସବୁ ପ୍ରସଙ୍ଗକୁ ଆଲୋଚନା କରି ଏହାର ଉତ୍ତର ସମାଧାନ ଦେବାକୁ ସମର୍ଥ ହୋଇପାରିବା ନାହିଁ, ତେବେ ବିଚାରଶୀଳତାର କ'ଣ ଉଦ୍ଦେଶ୍ୟ ରହିବ?

ଈଶ୍ୱରଙ୍କୁ ଆମେ କାହିଁକି ଗ୍ରହଣ କରିବା ? ପ୍ରାକୃତିକ ଭାବରେ ମଣିଷ ଈଶ୍ୱର ଭାବନା ପାଇଛି କି ? ମଣିଷ ଈଶ୍ୱରଙ୍କୁ ବିଶ୍ୱାସ କରିବା ପାଇଁ କେଉଁଠୁ ପ୍ରେରଣା ପାଇଛି? ଯଦି ଈଶ୍ୱରଙ୍କୁ କେହି ସୃଷ୍ଟି କରିନାହିଁ, ତେବେ ସେ କାହିଁକି ସମସ୍ତଙ୍କ ପାଖରେ ଅଦୃଶ୍ୟ ହୋଇଛନ୍ତି ! ଯେଉଁମାନେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଘୋଷଣା କରୁଛନ୍ତି, ସେମାନେ ଈଶ୍ୱରଙ୍କ ସ୍ୱରୂପକୁ ଭିନ୍ନ ଭିନ୍ନ ଭାବରେ ବିଶ୍ଳେଷଣ କରିଥାନ୍ତି । ତାଙ୍କୁ ନାନା ନାମ ରୂପ ଦେଇ ତାଙ୍କୁ ସ୍ୱୀକାର କରାଯାଏ । ଈଶ୍ୱରଙ୍କ ଶକ୍ତି, କାର୍ଯ୍ୟ ଓ ବ୍ୟବହାର ଭିତରେ ଏତେ ପାର୍ଥକ୍ୟ ଓ ବିରୋଧାଭାସ କାହିଁକି ପ୍ରତୀତ ହୋଇଥାଏ ?

ଯଦି ଈଶ୍ୱର ଏକ ସୃଷ୍ଟ ଭାବନା, ତେବେ ତାଙ୍କୁ କାହିଁକି ସୃଷ୍ଟି କରାଯାଇଛି? କେଉଁ ଉଦ୍ଦେଶ୍ୟରେ ସୃଷ୍ଟି କରାଯାଇଛି? ତାଙ୍କ ସ୍ରଷ୍ଟାମାନେ ତାଙ୍କ କାର୍ଯ୍ୟରେ ସଫଳ ହୋଇଛନ୍ତି କି? ସେ ଯେଉଁ ଉଦ୍ଦେଶ୍ୟରେ ସୃଷ୍ଟି ହୋଇଛନ୍ତି, ଈଶ୍ୱର ସେ ସବୁ ସମସ୍ୟାର ସମାଧାନ କରିଛନ୍ତି କି? ଈଶ୍ୱରଥାନ୍ତୁ ବା ସୃଷ୍ଟି ହୋଇଥାନ୍ତୁ ଲୋକମାନେ କିପରି ତାଙ୍କର ଇଚ୍ଛା ଓ ନିର୍ଦ୍ଦେଶ ବିରୋଧରେ ଯିବା ସମ୍ଭବ ହେବ ?

ଈଶ୍ୱର ସର୍ବଶକ୍ତିମାନ ବୋଲି କୁହାଯାଏ । ସେ ସର୍ବବିଦ୍ୟମାନ ବୋଲି ବିଶ୍ୱାସ ରହିଛି । ପୃଥିବୀରେ ସବୁ କିଛି ତାଙ୍କଦ୍ୱାରା ନିୟନ୍ତ୍ରିତ ବୋଲି ପ୍ରଚାର କରାଯାଏ । ଯଦି ବାସ୍ତବରେ ଏଗୁଡ଼ିକ ସତ୍ୟ, ତେବେ ମୋତେ କୁହନ୍ତୁ ଈଶ୍ୱର

Digitized by srujanika@gmail.com

ପ୍ରକୃତରେ କଣ କରିଛନ୍ତି ? ପ୍ରକୃତରେ ଦେଖିଲେ ମଣିଷ ହିଁ ସବୁ କରିଆସିଛି। ଏପରିକି ମଣିଷ ଈଶ୍ୱରଙ୍କୁ ଅସ୍ୱୀକାର କରିପାରୁଛି। ଏହା କରି ସେ ତାର ଦୁନିଆକୁ ନିଜେ ଗଢି ତୋଳିଛି। ଏପରିକି ଯାହା ମଣିଷ ସ୍ୱାର୍ଥର ମୁଖ୍ୟ ପରିପନ୍ଥୀ, ସେ ପ୍ରକାର ଅନେକ ଘଟଣା ଘଟୁନାହିଁ କି? ଯାହା ସମାଜ ପାଇଁ ନା ଦରକାର ନା ହିତକାରୀ, ସେ ସବୁ ମଧ୍ୟ ସଂସାରରେ ଘଟି ଚାଲିଛି। ଈଶ୍ୱରଙ୍କ ଠାରେ ଏତେ ବିଶ୍ୱାସକରି ସୁଦ୍ଧା ସେ କେଉଁ କାର୍ଯ୍ୟ କରୁଛନ୍ତି ? ତାହା ଆମେ ଦେଖିବାକୁ ସମର୍ଥ ନୁହଁ। ଧର୍ମପ୍ରାଣ ଲୋକମାନେ ଯାହା କିଛି କରୁଛନ୍ତି, ସେଥିରେ ଅନେକ ଦୋଷତ୍ରୁଟି ପରିଲକ୍ଷିତ ହୋଇଥାଏ। କୌଣସି କଥା ସୁନ୍ଦର ଓ ନିଖୁଣ ଭାବରେ ହେବା ଦେଖାଯାଏ ନାହିଁ। ମଣିଷର ବିନା ପ୍ରୟାସରେ କୌଣସି କିଛି ହୋଇପାରେ ନାହିଁ। ଆମ ଜୀବନରେ ଈଶ୍ୱରଙ୍କୁ ନେଇ ଗର୍ବ କରିବାର କୌଣସି ଅବକାଶ ନାହିଁ। ଅପର ପକ୍ଷରେ ମଣିଷ ନିଜର ପ୍ରୟାସ ଓ କଠିନ ଶ୍ରମଦ୍ୱାରା ଅନେକ ଅଦ୍ଭୁତ କଥା କରିବାରେ ସମର୍ଥ ହୋଇଛି। ବିଶ୍ୱରେ ଯଦି ସୁଖମୟ ପରିବେଶ ଓ ମଣିଷ ପାଇଁ ନିରାପଦ ପରିସ୍ଥିତି ସମ୍ଭବ, ତାହା କେବଳ ମଣିଷର ଉଦ୍ୟମ ଯୋଗୁଁ ସମ୍ଭବ ହେବ। ମଣିଷର ପ୍ରୟାସ ଦ୍ୱାରା ସଂସାର ପ୍ରୀତିମୟ ହୋଇପାରିବ, ଏପରିକି ମଣିଷ ଚେଷ୍ଟା କଲେ ଯାଇ ଈଶ୍ୱରଙ୍କ ପୀଠ ସ୍ଥଳ ଗୁଡିକ ସୁରକ୍ଷିତ ରହିପାରିବ।

## ଧର୍ମ

ଏବେ ଧର୍ମ ପ୍ରସଙ୍ଗରେ ଆଲୋଚନା କରାଯାଉ। ସ୍ମୃତି ଲୋକମାନଙ୍କ ମତରେ ଧର୍ମମାନ ଲୋକମାନଙ୍କଦ୍ୱାରା ସୃଷ୍ଟି କରାଯାଇଛି। ସମାଜରେ ଭଲଲୋକ ଓ ମନ୍ଦଲୋକ ଥିବା ଆମେ ଦେଖୁ। ଏହି ମାନଦଣ୍ଡରେ ସମାଜର ଜନଗଣଙ୍କୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ, ଯଥା ଯେଉଁମାନେ ସମାଜରେ ସେବା ପ୍ରଦାନ କରନ୍ତି ଓ ଯେଉଁମାନେ ନିଜର ସ୍ୱାର୍ଥ ସିଦ୍ଧି ଦିଗରେ ଲାଗିଥାନ୍ତି। ସମାଜର ଜନଗଣଙ୍କୁ ଦିବ୍ୟଶକ୍ତିରେ ଅଧିକାରୀ ହୋଇଥିବା ଓ ଅଧିକାରୀ ହୋଇନଥିବା ଶ୍ରେଣୀରେ ବିଭକ୍ତ କରାଯାଏ ନାହିଁ। ଏପ୍ରକାର ବିଭାଜନର କୌଣସି ଅର୍ଥ ହିଁ ନାହିଁ। କୌଣସି ବ୍ୟକ୍ତିଙ୍କର ଦୈବୀଶକ୍ତି ଅଛି କହିବା ପଶ୍ଚାତ୍‌ରେ କୌଣସି

Digitized by srujanika@gmail.com

ପ୍ରମାଣଗତ, ଯୁକ୍ତିଶୀଳ ଓ ଅନୁଭୂତିମୂଳକ ଆଧାର ନାହିଁ । ଯେ କୌଣସି ଧର୍ମର ପୃଷ୍ଠଭୂମିରେ ଏହା କୁହାଯାଏ ଯେ ଦିବ୍ୟଶକ୍ତିର ଉପସ୍ଥିତି ଯୋଗୁଁ ଧର୍ମ ସୃଷ୍ଟି ହୋଇଛି । ବରଂ ଏହା ସ୍ପଷ୍ଟ ରୂପେ କୁହାଯାଇପାରେ ଯେ କେତେକ ପ୍ରାଜ୍ଞବ୍ୟକ୍ତି ସମାଜପ୍ରତି ଗଭୀର ଅନୁଶୀଳନରୁ ଧର୍ମର ଭାବନା ଦେଇଛନ୍ତି । ଦର୍ଶନ ଉପରେ ଗବେଷଣା କରୁଥିବା ଏହିପରି ଏକ ସିଦ୍ଧାନ୍ତରେ ପହଞ୍ଚିବା ସତ୍ୟ ମନେ ହୁଏ । ତେବେ ଦର୍ଶନର ଗବେଷଣା କହିଲେ ପ୍ରକୃତରେ କ'ଣ ବୁଝାଏ ?

ତାମିଲ୍‌ର ପ୍ରାଚୀନ ଗ୍ରନ୍ଥ 'କୁରାଲ' ଉପରେ ଲେଖିଥିବା ମୁଖବନ୍ଧରେ ଜଣେ ବିଶିଷ୍ଟ ଗବେଷକ କହିଛନ୍ତି ଯେ ମିଥ୍ୟା ସବୁବେଳେ ମିଥ୍ୟା, ମିଥ୍ୟାମୁକ୍ତ ସତ୍ୟ ସର୍ବଦା ସତ୍ୟ । ଯାହା ମିଥ୍ୟା ତାହା ଦିନେ ନିଶ୍ଚୟ ବିଲୋପ ହେବ । ସତ୍ୟ ନିଶ୍ଚୟ ଦିନେନା ଦିନେ ଜନମାନସରେ ଗୃହୀତ ହେବ । ବୈଜ୍ଞାନିକ ଗବେଷଣା ଓ ଅନୁସନ୍ଧିତ୍ସା ଦ୍ୱାରା ମିଥ୍ୟାର ସ୍ୱରୂପ ଦୂରୀଭୂତ ହେବ । ଯେକୌଣସି ଗବେଷଣାର ଉଦ୍ଦେଶ୍ୟ ହେଉଛି ସତ୍ୟରେ ଉପନୀତ ହେବା । ଗବେଷଣା ଆଧାରରେ ମିଥ୍ୟାଠାରୁ ସତ୍ୟକୁ ପୃଥକ୍ କରିବା ଗବେଷଣାର ଉଦ୍ଦେଶ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ଯଦି ଏହି ପନ୍ଥାରୁ ବିଚ୍ୟୁତ ହୋଇ ମିଥ୍ୟାକୁ ସତ୍ୟର ଆବରଣ ସ୍ୱୀକୃତି ଦିଆଯାଏ, ଏହା ଅସତ୍ୟ ଓ ମିଥ୍ୟାର ଭାବନା ସୃଷ୍ଟି କରିବ । ଦାର୍ଶନିକ ଗବେଷଣା ମିଥ୍ୟାକୁ ଋଦ୍ଧିମନ୍ତ କରିବ ଏହା ମଣିଷର ବିଚାରଶୀଳତାକୁ ନ୍ୟୂନ କରିଦେବ ।

ଧର୍ମକୁ ମଣିଷ ପାଇଁ କାହିଁକି ସୃଷ୍ଟି କରାଯାଇଛି ଯଦି ଏହା ଉପରେ ବିବେଚନା କରାଯାଏ, ଧର୍ମପ୍ରାଣ ଲୋକମାନେ ଉତ୍ତର ଦେବେ ଯେ ମଣିଷକୁ ଈଶ୍ୱରଙ୍କ ସହ ସଂଯୋଜିତ କରିବା ପାଇଁ ଧର୍ମମାନଙ୍କୁ ସୃଷ୍ଟି କରାଯାଇଛି । ସେମାନେ ଏକଥା ମଧ୍ୟ କହିଥାନ୍ତି ଯେ ସ୍ୱର୍ଗ ରାଜ୍ୟରେ ପହଁଞ୍ଚିବା ପାଇଁ ଧର୍ମମାନଙ୍କର ଉତ୍ପତ୍ତି ହୋଇଛି । ଆଜିର ସଭାପତି ଏହାର ମଧ୍ୟ ସୂଚନା ଦେଇଛନ୍ତି । ବୈଜ୍ଞାନିକ ଅନୁସନ୍ଧିତ୍ସା ଓ ଦାର୍ଶନିକ ଗବେଷଣା ଏହି ସିଦ୍ଧାନ୍ତକୁ ସମର୍ଥନ କରୁଛ କି? ଏହା ଯଦି ସତ୍ୟ ଯେ ଦିବ୍ୟ ବ୍ୟକ୍ତିମାନେ ମଣିଷକୁ ଧର୍ମପ୍ରାଣ କରିବା ପାଇଁ ଧର୍ମମାନ ସୃଷ୍ଟି କରିଛନ୍ତି , ତେବେ ଏଥିରୁ ସର୍ବଶକ୍ତିମାନ ଈଶ୍ୱରଙ୍କର ଦୁର୍ବଳତା ପ୍ରକାଶିତ

Digitized by srujanika@gmail.com

ହେଉଛି । କାରଣ ଏହାର ତାତ୍ପର୍ଯ୍ୟ ହେବ ମଣିଷ ଈଶ୍ୱରଙ୍କ ସହିତ ସଂଯୋଜିତ ହେବାପାଇଁ ଅନ୍ୟମଣିଷ ବା ଦିବ୍ୟ ପୁରୁଷଙ୍କର ଆବଶ୍ୟକତା କରିଥାଏ । ପ୍ରକୃତରେ ଏହି ସ-ର୍କର ତାତ୍ପର୍ଯ୍ୟ କ'ଣ ହୋଇପାରେ?

ଏହା ଯଦି ସତ୍ୟ ଯେ ଈଶ୍ୱର ସର୍ବବିଦ୍ୟମାନ, ସର୍ବଶକ୍ତିମାନ ଓ ଜଗତର ସମସ୍ତ କାର୍ଯ୍ୟର ନିୟନ୍ତ୍ରକ, ତେବେ ତାଙ୍କ ସହିତ ମଣିଷର ସମ୍ବନ୍ଧ ପାଇଁ ମଧ୍ୟସ୍ଥିମାନଙ୍କର କ'ଣ ଆବଶ୍ୟକତା ରହିଛି? ଉଦ୍ଭିଦ, ପ୍ରାଣୀ, ପଶୁପକ୍ଷୀ, ଜୀବାଣୁ ଇତ୍ୟାଦିଙ୍କୁ ଈଶ୍ୱରଙ୍କ ସହିତ କିଏ ସଂପର୍କିତ କରାଇଛି? ବିଚାରବୋଧ ନଥିବା ଏହି ଜୀବମାନଙ୍କୁ କିପରି ସଂପର୍କିତ କରାଯାଇଛି? ସେମାନେ କୌଣସି ଈଶ୍ୱରଙ୍କୁ ଆବଶ୍ୟକ କରନ୍ତି ନାହିଁ। ଈଶ୍ୱରଙ୍କ ସ-ର୍କରେ କୌଣସି ଧାରଣା ସେମାନଙ୍କର ନାହିଁ। ସେମାନେ କୌଣସି ମଧ୍ୟସ୍ଥି ବା ଧର୍ମର ଆବଶ୍ୟକ କରନ୍ତି ନାହିଁ। କିନ୍ତୁ ମଣିଷ ବିଚାରଶୀଳ ହୋଇ ମଧ୍ୟ ଈଶ୍ୱରଙ୍କୁ ଜାଣିବା ପାଇଁ କୌଣସି ଦିବ୍ୟ ପୁରୁଷ ବା ଧର୍ମର ଆବଶ୍ୟକତା ପଡେ । ଈଶ୍ୱରଙ୍କ ସହ ସମ୍ବନ୍ଧ ସ୍ଥାପନ ପାଇଁ ମଣିଷକୁ ଦିବ୍ୟ ପୁରୁଷର ସାହାଯ୍ୟ ନେବାକୁ ହୋଇଥାଏ । ଆପଣମାନେ ଏହା ବିଷୟରେ କ'ଣ ଚିନ୍ତା କରୁଛନ୍ତି? ଦର୍ଶନ ଉପରେ ଗବେଷଣା କରୁଥିବା ବା ଯୁକ୍ତିଶୀଳ ହୋଇଥିବା ବ୍ୟକ୍ତିଙ୍କ ପାଇଁ ଏହା ଗ୍ରହଣଶୀଳ କି ?

ସମାଜରେ ଭଲଲୋକ, ଜ୍ଞାନୀଲୋକ ଓ ସମ୍ବେଦନଶୀଳ ଲୋକମାନଙ୍କୁ ଆପଣମାନେ ସହଜରେ ଚିହ୍ନଟ କରିପାରିବେ । କିନ୍ତୁ ଦିବ୍ୟଶକ୍ତି ଥିବା ଲୋକମାନଙ୍କୁ ବାହାର କରିବା ସମ୍ଭବ କି ? ପୁନଶ୍ଚ ଯଦି ବିଶ୍ୱାସ କରାଯାଏ ଯେ ଦିବ୍ୟ ପୁରୁଷ ମାନଙ୍କୁ ଈଶ୍ୱର ସୃଷ୍ଟି କରିଛନ୍ତି, ତେବେ ଏହା ଅନ୍ୟାୟ ଓ ଅବିଶ୍ୱାସଯୋଗ୍ୟ କଥା ହେବ। ଯଦିବି ଗ୍ରହଣ କରାଯାଏ ଯେ ଈଶ୍ୱର ଏହି ଦିବ୍ୟ ବ୍ୟକ୍ତିମାନଙ୍କୁ ସୃଷ୍ଟି କରିଛନ୍ତି, ତେବେ ଅନ୍ୟ ବ୍ୟକ୍ତିମାନଙ୍କୁ କିଏ ସୃଷ୍ଟି କରିଛନ୍ତି ବୋଲି ପ୍ରଶ୍ନ ଉଠିବ। ଯଦି ଈଶ୍ୱର ସବୁ ମଣିଷଙ୍କୁ ସୃଷ୍ଟି କରିଛନ୍ତି ବୋଲି ଧରାଯିବ, ତେବେ ସେ କାହିଁକି କୋଟି କୋଟି ସାଧାରଣ ମଣିଷଙ୍କୁ ସୃଷ୍ଟିକରି ସେମାନେ ଈଶ୍ୱରଙ୍କୁ ଜାଣିବା ପାଇଁ କେତେକ ମୁଷ୍ଟିମେୟ ଦିବ୍ୟ ପୁରୁଷଙ୍କୁ ସୃଷ୍ଟିକଲେ? ଏପରି କରିବା ଯଥାର୍ଥ ହୋଇଛି କି ? ଈଶ୍ୱର ମଣିଷ ଜାତିକି ସୃଷ୍ଟିକରିବା ପାଇଁ ଏତେ ପରିଶ୍ରମ କଲାପରେ ସେ

Digitized by srujanika@gmail.com

କିପରି ଓ କାହିଁକି ଏତେ ବିଭେଦ ସୃଷ୍ଟି କରିଛନ୍ତି। ସେ କ'ଣ ସମସ୍ତଙ୍କୁ ସରଳ ଓ ସମାନ କରି ଗଢିବା ଠିକ୍ ହୋଇନଥାନ୍ତା?

ଏହା କୁହାଯାଇପାରେ କି ଈଶ୍ୱର ନିଜର ଇଚ୍ଛାରୁ ଓ ଆନନ୍ଦରୁ ଏପରି କରିଛନ୍ତି। ଏହାକୁ କେତେକ ଅନ୍ଧଭାବରେ ବିଶ୍ୱାସ କରିପାରନ୍ତି। ଆମେତ ଆଜି ଦର୍ଶନ ସମ୍ପର୍କରେ ଆଲୋଚନା କରୁଛେ। ସୁତରାଂ ଆମର ଆଲୋଚନାର ପରିସରରୁ ତାହାକୁ ବାଦ୍ ଦେବା ଠିକ୍ ହେବ ନାହିଁ। କୌଣସି ବିଷୟର ଗଭୀରକୁ ଯିବା ଯଥାର୍ଥ ହେବ। ଯେତେବେଳେ ଦର୍ଶନ ସମ୍ପର୍କରେ ଆଲୋଚନା କରାଯାଏ, ସେତେବେଳେ ଯେକୌଣସି ପ୍ରସଙ୍ଗରେ ଜିଜ୍ଞାସୁ ହେବା ଓ ପ୍ରଶ୍ନ ପଚାରିବା ଯଥାର୍ଥ ମନେହୁଏ। ଈଶ୍ୱର, ଧର୍ମ ଓ ସେସବୁ ଦର୍ଶନ ଉପରେ ପ୍ରଶ୍ନ ପଚାରିବା ଆମର କର୍ତ୍ତବ୍ୟ ବୋଲି ମୁଁ ମନେକରେ। ଈଶ୍ୱର ଧର୍ମ ଦର୍ଶନ ପରିସରର ବିଷୟ ହୋଇଥିବାରୁ ସେ ସବୁର ବ୍ୟାଖ୍ୟା ଯଥାର୍ଥ ମନେହୁଏ। ଅନ୍ୟ ପ୍ରସଙ୍ଗ ଉପରେ ହୁଏତ ଏତେ ଗମ୍ଭୀର ଚର୍ଚ୍ଚା ଆବଶ୍ୟକ ନହୋଇ ପାରେ। କାରଣ ଅନ୍ୟ ପ୍ରସଙ୍ଗ ଉପରେ ଅଧିକାଂଶ ପ୍ରତ୍ୟୟ ସ୍ୱବ୍ୟାଖ୍ୟା ମୂଳକ ମନେହୁଏ। ସୁନା, ତମ୍ବା, ରୂପା ବା ଅନ୍ୟ ଧାତୁମାନଙ୍କ ଉପରେ ଏପରି ଜଟିଳ ପ୍ରଶ୍ନ ପଚାରିବା ବା ଗମ୍ଭୀର ଆଲୋଚନା କରିବା ଉଚିତ୍ ମନେହୁଏ ନାହିଁ। କୌଣସି ଧାତୁମାନଙ୍କ କ୍ଷେତ୍ରରେ ସେମାନଙ୍କୁ ବିନା ପର୍ଯ୍ୟବେକ୍ଷଣରେ ଆମେ ବ୍ୟବହାର କରିନଥାଉ। ଅପର ପକ୍ଷରେ ଈଶ୍ୱର, ଧର୍ମ, ସଂପର୍କିତ ଦର୍ଶନ ବିଷୟରେ ଆଲୋଚନା କଲାବେଳେ, ଯାହା ଆଜିର ଆଲୋଚନା ବିଷୟ, କେତେକ ଗମ୍ଭୀର ଚର୍ଚ୍ଚା କରିବାକୁ ହୋଇଥାଏ। ଏକ୍ଷେତ୍ରରେ ତର୍କ ଓ ବିଚାରଶୀଳତାର ଆଧାର ଉପରେ ନିର୍ଭର କରିବାକୁ ହୋଇଥାଏ। ତାହାଦ୍ୱାରା ସେ ସବୁ ପ୍ରସଙ୍ଗର ସତ୍ୟ ଉନ୍ମୋଚିତ ହୋଇଥାଏ। ଯଦି ଧର୍ମ, ଈଶ୍ୱର ପ୍ରସଙ୍ଗ ଉପରେ ଯୁକ୍ତିଶୀଳ ପ୍ରଶ୍ନ ପଚାରିବାକୁ ବାରଣ କରାଯାଏ, ତେବେ ସେସବୁ ନେଇ ପ୍ରଶ୍ନ ଜଣା ପଡିନଥାଏ। ଧର୍ମ, ଈଶ୍ୱର ନାମରେ କାଳ୍ପନିକ ଭାବନାର ବଶବର୍ତ୍ତୀ ହୋଇ ହୁଏତ କେହି ଶାଶ୍ୱତ ଜୀବନର କଳ୍ପନା କରିପାରନ୍ତି। ମିଥ୍ୟାର ଆଧାର ଉପରେ କେତେ କେତେ କଳ୍ପନା କରାଯାଇପାରେ। ସେପରି ସ୍ଥଳେ ଈଶ୍ୱର ଓ ଧର୍ମ କୁସଂସ୍କାର ପ୍ରସାର ଦିଗରେ ସାଧନ ମାତ୍ର ହେବେ। ଏହି କାରଣ ଯୋଗୁଁ

Digitized by srujanika@gmail.com

ଏସବୁ ପ୍ରସଙ୍ଗ ଉପରେ ଚିନ୍ତା କରିବାକୁ ମୁଁ ଆପଣମାନଙ୍କୁ ନିବେଦନ କରୁଛି। ଈଶ୍ୱରଙ୍କ ଉପଲବ୍ଧି ପାଇଁ କୌଣସି ମଧ୍ୟସ୍ଥି ଆବଶ୍ୟକ କି? ଏହା ବିଚାର କରାଯାଉ।

ପୁନଶ୍ଚ ଯଦି ଈଶ୍ୱରାନୁଭୂତି ଓ ଈଶ୍ୱରପ୍ରାପ୍ତି କୌଣସି ଧର୍ମ ମାଧ୍ୟମରେ ସମ୍ଭବ, ତେବେ ଅସଂଖ୍ୟ ଧର୍ମ କାହିଁକି ରହିଛି? ଧର୍ମ ଓ ଦିବ୍ୟ ବ୍ୟକ୍ତିଙ୍କ ପାଇଁ କିଛି ସୀମା ରହିଛି କି ନାହିଁ? ଦିବ୍ୟ ବ୍ୟକ୍ତିଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ଧର୍ମ ମାନଙ୍କ ମଧ୍ୟରେ ଏତେ ବିରୋଧ, ଭିନ୍ନରୂପତା ଓ ପାର୍ଥକ୍ୟ କାହିଁକି ରହିଛି? ଧର୍ମ ମାନଙ୍କ ଭିତରେ ଏତେ ସଂଘର୍ଷ କେଉଁଥି ପାଇଁ ହେଉଛି? ଧର୍ମକୁ ଆଧାର କରି ଏପରି ଗଣହତ୍ୟା କିପରି ଘଟୁଛି? ଧର୍ମଗତ କାରଣ ଯୋଗୁଁ ମଣିଷ ସମାଜରେ ଏତେ ଦୁଃଖ ଓ ଯନ୍ତ୍ରଣା କିପରି ହେଉଛି? ଏହା କୁହାଯାଇପାରେ ଯେ କୌଣସି ଦିବ୍ୟ କାରଣ ଯୋଗୁଁ ସେଗୁଡିକ ଘଟୁନାହିଁ, ମଣିଷର ଅଜ୍ଞତା ଯୋଗୁଁ ସେସବୁ ହେଉଛି। ଏହି ଯୁକ୍ତି ଯଥାର୍ଥ ମନେ ହୁଏ ନାହିଁ। ବିଚାର ବୁଦ୍ଧି ଥିବା ମଣିଷ କାହିଁକି ଅନ୍ୟକୁ ବୁଝିପାରୁନାହିଁ? ଏକ ବିଚାରଶୀଳ ପ୍ରାଣୀ ଯଦି ଅନ୍ୟ ପ୍ରତି ଘୃଣା ଓ ବିଦ୍ୱେଷ ପୋଷଣ କରୁଛି, ଯାହାର ପରିଣାମରୁ ସାମ୍ପ୍ରଦାୟିକ ଦଙ୍ଗା ଓ ଅଶାନ୍ତି ସୃଷ୍ଟି ହେଉଛି ତେବେ ସେହି ମଣିଷ ଏକ ଅଦୃଶ୍ୟ ଈଶ୍ୱରଙ୍କୁ କିପରି ଅନୁଭବ କରିପାରିବ? ଈଶ୍ୱର ତ ସାଧାରଣ ମଣିଷ ପାଇଁ ଅଦୃଶ୍ୟ ଓ ଅବୋଧଗମ୍ୟ ବୋଲି କୁହାଯାଏ। ସେପରି ଈଶ୍ୱରଙ୍କୁ ମଣିଷ କିପରି ଜାଣିବାକୁ ସମର୍ଥ ହେବ? ଏହା ଉପରେ ଭାବନ୍ତୁ। ଧର୍ମ ମାନଙ୍କୁ ସୃଷ୍ଟି କରିଥିବା ବ୍ୟକ୍ତିମାନେ ଯେତେବେଳେ ପରସ୍ପର ଭିତରେ ଏତେ ଦ୍ୱନ୍ଦ୍ୱ, ସଂଘର୍ଷ, ସାମ୍ପ୍ରଦାୟିକ ତିକ୍ତତା ସୃଷ୍ଟି କରୁଛନ୍ତି, ସେତେବେଳେ ସେମାନଙ୍କୁ କିପରି ଦିବ୍ୟ ବ୍ୟକ୍ତିତ୍ୱ ଭାବରେ ଗ୍ରହଣ କରାଯିବ?

ସମାଜରେ ରହିଥିବା ଏତେ ବିଦ୍ୱେଷ, ପାର୍ଥକ୍ୟ ଓ ଅସଂହତି ଧର୍ମମାନଙ୍କ ଯୋଗୁଁ ସୃଷ୍ଟି ହୋଇ ନାହିଁକି? ସମାଜରେ ଘୃଣାଭାବ, ଶୋଷଣ ଓ ଠକାମି ଧର୍ମମାନଙ୍କ ଯୋଗୁଁ ବୃଦ୍ଧି ପାଉନାହିଁକି ?

ଏହି ପରିପ୍ରେକ୍ଷୀରେ ଧର୍ମମାନଙ୍କୁ ଦିବ୍ୟଶକ୍ତି ସମ୍ପନ୍ନ ବ୍ୟକ୍ତିମାନେ ସୃଷ୍ଟି କରିଥିଲେ ବୋଲି ଆମେ କିପରି ବିଶ୍ୱାସ କରିବା? ଧର୍ମର ଦ୍ରଷ୍ଟା ମାନଙ୍କୁ ଦିବ୍ୟ

Digitized by srujanika@gmail.com

ବ୍ୟକ୍ତି ଭାବରେ ଚିତ୍ରଣ କରାଯାଇଥିବାରୁ ସେହି ଧାରାରେ ପରବର୍ତ୍ତୀ ସମୟରେ କେତେକ ବ୍ୟକ୍ତିଙ୍କୁ ଦିବ୍ୟ ବ୍ୟକ୍ତିତ୍ୱର ମାନ୍ୟତା ଦିଆଯାଇଛି । ସେହି ବ୍ୟକ୍ତିମାନଙ୍କର ସଂଖ୍ୟା ଦିନକୁ ଦିନ ବଢିଚାଲିଛି । ବୁଦ୍ଧ, ଯିଶୁଖ୍ରୀଷ୍ଟ, ମହମ୍ମଦ, ନୟନମାର, ସ୍ୱାମୀ, ମହାତ୍ମା, ବାବା ମାନଙ୍କୁ ଦିବ୍ୟ ପୁରୁଷ ଭାବେ ଚିତ୍ରଣ କରାଯାଉଛି । ଏପଟେ ଧର୍ମ ମାନଙ୍କ ଭିତରେ ନାନା ସାମ୍ପ୍ରଦାୟିକ ବିଦ୍ୱେଷ, ସଂଘର୍ଷ ଓ ମତପାର୍ଥକ୍ୟ ସୃଷ୍ଟି ହେଉଛି ।

ହେତୁବାଦୀ ବିଚାରଶୀଳତାର ବିକାଶଦ୍ୱାରା କିଛି ସଚେତନତା ବୃଦ୍ଧି ହୋଇଛି । ଅନେକ ଲୋକ ମୁକ୍ତ ମନନେଇ ବିଚାରଶୀଳ ଭାବେ ବିଭିନ୍ନ କଥାକୁ ଆଲୋଚନା କରୁଛନ୍ତି । ପରିଣାମତଃ ଦିବ୍ୟ ପୁରୁଷ ଓ ଚମତ୍କାରିତା କ୍ଷେତ୍ର ପ୍ରତି ସନ୍ଦେହ ଦୃଢୀଭୂତ ହେବାରେ ଲାଗିଛି । ଦିବ୍ୟ ପୁରୁଷ ମାନେ ଜନଗଣଙ୍କର ସ୍ୱାଧୀନତା ପାଇଁ କଣ କରିଛନ୍ତି? କେଉଁ ଦିବ୍ୟ ବ୍ୟକ୍ତି ବିଶ୍ୱାସ ଦ୍ୱାରା ଈଶ୍ୱର ପ୍ରାପ୍ତ ହୋଇଛନ୍ତି ? ସାମ୍ପ୍ରତିକ ଯୁଗରେ କୌଣସି ବ୍ୟକ୍ତିଙ୍କୁ ଦିବ୍ୟପୁରୁଷ ଭାବରେ ଗ୍ରହଣ କରିବାକୁ କେହି ପ୍ରସ୍ତୁତ ନୁହଁନ୍ତି । କେଉଁଠି ହେଲେ କୌଣସି ଦିବ୍ୟପୁରୁଷ ସୃଷ୍ଟି ହେଉ ନାହାନ୍ତି । ଈଶ୍ୱର, ଧର୍ମ ନେଇ ମଣିଷର ଜିଜ୍ଞାସା ଯେତିକି ବୃଦ୍ଧି ପାଉଛି, ସେ ସବୁ କିପରି ମଣିଷର କଳ୍ପନା ପ୍ରସୂତ ତାହା ସ୍ପଷ୍ଟ ହୋଇ ଉଠୁଛି । ମଣିଷ ଯେତିକି ସତ୍ୟର ଉଦ୍‌ଘାଟନ କରୁଛି ଈଶ୍ୱର ଧର୍ମ ମଣିଷ ଠାରୁ ସେତିକି ଦୂରେଇ ଯାଉଛି । ଧର୍ମ, ଈଶ୍ୱର ଜନିତ ଦାର୍ଶନିକ ପ୍ରଶ୍ନମାନଙ୍କ ଉପରେ ମୋର ବ୍ୟାଖ୍ୟା ଆପଣମାନଙ୍କୁ ଆଶ୍ଚର୍ଯ୍ୟ ଲାଗିପାରେ । ମୋର ମତଠାରୁ ଆପଣ ମାନଙ୍କ ମତ ପୃଥକ ମଧ୍ୟ ହୋଇପାରେ ।

ମଣିଷ ସମାଜ ପାଇଁ ଈଶ୍ୱର, ଧର୍ମ ଏତେ ଗୁରୁତ୍ୱ ପୂର୍ଣ୍ଣ ବୋଲି ଯେତେବେଳେ ବରାବର କୁହାଯାଉଛି, ସେତେବେଳେ ଧର୍ମ ଓ ଈଶ୍ୱରଙ୍କୁ ନେଇ ସମାଜରେ ଏତେ ଅସଂଗତି ଓ ବିଦ୍ୱେଷ କାହିଁକି ହେଉଛି? ଯଦି ସେ ସବୁ ମଣିଷ ପାଇଁ ଅତ୍ୟନ୍ତ ଉପଯୋଗୀ, ତେବେ ସେଗୁଡିକର ପ୍ରସାର ପାଇଁ ଏତେ ପ୍ରଚାର କାହିଁକି ହେଉଛି? ତଥା କଥିତ ପୂଜକ ଶ୍ରେଣୀର ଲୋକମାନେ ସେଗୁଡିକର ପ୍ରଚାର, ପ୍ରସାର ପାଇଁ ଏତେ ଯୋଜନାବଦ୍ଧ ଭାବେ କାହିଁକି ଉଦ୍ୟମ କରୁଛନ୍ତି? ଏସବୁ

Digitized by srujanika@gmail.com

କ୍ଷେତ୍ରରେ କଣ ଏତେ ଆବଶ୍ୟକତା ରହିଛି? ଏସବୁରୁ କଣ ପରିଣତି ଆସୁଛି? ଏଥିରୁ କେଉଁମାନେ ଲାଭମାନ ହେଉଛନ୍ତି?

ଯିଶୁଖ୍ରୀଷ୍ଟ ଓ ମହମ୍ମଦ ଯେଉଁମାନେ ନିସ୍ୱାର୍ଥପର ଥିଲେ ଓ ଏତେ ତ୍ୟାଗ ସ୍ୱୀକାର କରିଥିଲେ କଣ ପ୍ରକୃତରେ ଈଶ୍ୱର, ଧର୍ମ ବିଷୟରେ ଠିକ୍ ଭାବରେ ବୁଝିନଥିଲେ କି? ଆଜି ଧର୍ମକୁ ଯେଉଁ ଭଳି ଭାବରେ ପ୍ରଚାର କରାଯାଉଛି, ସେ ସବୁ ଠିକ୍ ବୋଲି ଆମେ ଭାବିବା କି?

ବନ୍ଧୁଗଣ, ଈଶ୍ୱରଙ୍କୁ ଯଦି ସର୍ବଶକ୍ତିମାନ ଓ ଜଗତର ସବୁକିଛିର ନିୟନ୍ତ୍ରକ ଭାବେ ନିଆଯାଏ, ତେବେ ମଣିଷ ସ୍ୱାଧୀନ ଭାବରେ ନା ଈଶ୍ୱରଙ୍କୁ ଦେଖିପାରୁଛି ନା ଅନୁଭବ କରିପାରୁଛି। କେବଳ ପୂଜକ ଶ୍ରେଣୀର ଲୋକମାନେ ବା ତଥାକଥିତ ଦିବ୍ୟ ପୁରୁଷମାନେ ତାଙ୍କ ବିଷୟରେ ପ୍ରଚାର କରି ଚାଲିଛନ୍ତି। ଈଶ୍ୱର ସେହି ପ୍ରଚାରକ ମାନଙ୍କ ଉପରେ ନିର୍ଭରଶୀଳ ହୋଇଛନ୍ତି। ଧର୍ମ ବିଷୟରେ ମଧ୍ୟ ସେହି କଥା କୁହାଯାଇପାରେ। ଧର୍ମମାନେ ମନକୁ ମନ ସୃଷ୍ଟି ହୋଇ ନାହାଁନ୍ତି, ସେମାନଙ୍କୁ ମଧ୍ୟ କେତେକ ସୃଷ୍ଟି କରିଛନ୍ତି। ଧର୍ମମାନଙ୍କର କେତେକ ନୀତିନିୟମ ଦ୍ୱାରା ପରିଚାଳିତ ହେବାକୁ ମଣିଷକୁ ବେଳକେ ବାଧ୍ୟ କରାଯାଇଛି।

## ତାର୍କିକ ପରିଣତି

ସମାଜ ପାଇଁ ଧର୍ମ ଓ ଈଶ୍ୱର ଅନେକ ଅସ୍ପଷ୍ଟତା ଆଣିଛନ୍ତି। ଯେଉଁମାନେ ଏଗୁଡିକ ସୃଷ୍ଟି କରିଛନ୍ତି ବା ପ୍ରଚାର କରୁଛନ୍ତି ସେମାନେ ଉଦ୍ଦେଶ୍ୟ ରଖି ଏହା କରୁଛନ୍ତି। ଅନ୍ୟମାନେ କିପରି ସେମାନଙ୍କ ଭାବନାକୁ ସମର୍ଥନ କରିବେ ସେଥିପାଇଁ ଅନେକ ପ୍ରଚାର କରୁଛନ୍ତି। ସେମାନଙ୍କ ଏହି ପ୍ରଚାରକୁ ସ୍ପଷ୍ଟ ଭାବରେ ବୁଝିବା ଆବଶ୍ୟକ।

ତେବେ ସବୁ ଦିବ୍ୟ ବ୍ୟକ୍ତିଙ୍କର ଉଦ୍ଦେଶ୍ୟକୁ ଆମେ ମନ୍ଦ କହିପାରିବା ନାହିଁ। ସମସ୍ତ କାର୍ଯ୍ୟକୁ ଆମେ ମଧ୍ୟ ସନ୍ଦେହ କରିବା ଠିକ୍ ନୁହେଁ। ଯିଶୁଖ୍ରୀଷ୍ଟ ବା ମହମ୍ମଦ ଯାହା କହିଛନ୍ତି ସେଥିରେ ଯେ ମହନୀୟତା ନାହିଁ ତାହା ଆମେ ଭାବିବା

Digitized by srujanika@gmail.com

ଠିକ୍ ନୁହେଁ । ସବୁ ଦିବ୍ୟ ପୁରୁଷମାନେ ନିଜ ସ୍ୱାର୍ଥ ପାଇଁ ଏହା କରିଛନ୍ତି, ଏହା ମଧ୍ୟ ଯଥାର୍ଥ ନୁହେଁ । ଧର୍ମ, ଈଶ୍ୱର ଯେହେତୁ କେବଳ ମଣିଷମାନଙ୍କ ପାଇଁ ସୃଷ୍ଟି କରାଯାଇଛି, ସେ ସବୁ ଯେ ମଣିଷ ହିତ ପାଇଁ ଉଦ୍ଦିଷ୍ଟ ଆମେ ଏହା ପ୍ରାୟ ବିଶ୍ୱାସ କରିଛେ । ଧର୍ମ ବା ଈଶ୍ୱର କୌଣସି ଇତରପ୍ରାଣୀ ପାଇଁ ସୃଷ୍ଟି ହୋଇନାହିଁ । ଅପରପକ୍ଷରେ ସମାଜରେ ରହୁଥିବା ଓ ବିଚାରବୁଦ୍ଧି ସଂପନ୍ନ ହୋଇ ଥିବା ମଣିଷ ମାନଙ୍କ ପାଇଁ ହିଁ ଏସବୁ ସୃଷ୍ଟି କରାଯାଇଛି ।

ପ୍ରାଣୀମାନେ ସାଧାରଣତଃ ନିଜର ହିତ କାମନା କରିଥାନ୍ତି । ନିଜର ଇଚ୍ଛା ପୂରଣ ପାଇଁ ସେମାନେ ଚେଷ୍ଟା କରିଥାନ୍ତି । ଏହା ପ୍ରାଣୀମାନଙ୍କର ପ୍ରାକୃତିକ ପ୍ରବୃତ୍ତି । ପ୍ରାଣୀ ଜଗତରେ ଏକ ଶ୍ରେଣୀର ପ୍ରାଣୀ ଅନ୍ୟ ଶ୍ରେଣୀର ସୁଖ ପାଇଁ ବ୍ୟସ୍ତତା ପ୍ରକାଶ କରନ୍ତି ନାହିଁ ।

ମଣିଷ ଅନ୍ୟପ୍ରାଣୀ ତୁଳନାରେ ବୁଦ୍ଧିମାନ । କିନ୍ତୁ ମଣିଷ ଯଦି ଅପରିସୀମ ସ୍ୱାର୍ଥ ଦ୍ୱାରା ପରିଚାଳିତ ହୁଏ, ଏହା ଅନ୍ୟମାନଙ୍କ ପାଇଁ ବିପତ୍ତିର କାରଣ ହୋଇଥାଏ । ଏହା ମଧ୍ୟ ସମାଜ ପାଇଁ ହିତକର ମନେ ହୁଏ ନାହିଁ । ଈଶ୍ୱର ଓ ଧର୍ମ ଭାବନାର ଉତ୍ପତ୍ତି ପାଇଁ ଏହି କାରଣ ଦିଆଯାଇ ପାରେ । ମଣିଷ ଯଦି ସମାଜ ପ୍ରତି ଉତ୍ତରଦାୟୀ ମନୋଭାବ ଆଣେ, ତେବେ କୌଣସି ଈଶ୍ୱର ବା ଧର୍ମର ଆବଶ୍ୟକତା ପଡେନାହିଁ । ମଣିଷ ନିଜର ଅନୁଭୂତିରୁ ଓ ପ୍ରକୃତିରୁ ଏହା ଜାଣିଥାଏ । ମଣିଷ ସମାଜରେ ଅନ୍ୟମାନଙ୍କ ସହ ରହେ । ଯେହେତୁ ସେ ଏକ ବୃହତ୍ତର ସମାଜର ଅଙ୍ଗବିଶେଷ, ତେଣୁ ତା ଉପରେ ବିଭିନ୍ନ ସ୍ତରରୁ କେତେକ ପ୍ରତିବନ୍ଧକ ବା କଟକଣା ଆରୋପ କରାଯାଇଥାଏ । ସମାଜର ସ୍ଥିରତା ପାଇଁ ବ୍ୟକ୍ତି ଉପରେ ଏହି କଟକଣା କରାଯାଇଥାଏ । ନହେଲେ ସମାଜରେ ବିଶୃଙ୍ଖଳା ବ୍ୟାପକ ହୋଇଥାଏ କିମ୍ବା ଲୋକମାନେ ପଶୁତୁଲ୍ୟ ବ୍ୟବହାର କରିଥାନ୍ତି । ସମାଜର ବୃହତ୍ତର ହିତ ପାଇଁ ମଣିଷକୁ କେତେକ କ୍ଷେତ୍ରରେ ନିଜର ପ୍ରକୃତି ବିରୁଦ୍ଧରେ ଯାଇ ଜୀବନଧାରଣ କରିବାକୁ ହୁଏ । ଅତୀତର ବିଚାରଶୀଳ ବିଜ୍ଞ ବ୍ୟକ୍ତିମାନେ ସମ୍ଭବତଃ ଏହି ଉଦ୍ଦେଶ୍ୟ ନେଇ ଈଶ୍ୱର ଓ ଧର୍ମର ସୃଷ୍ଟି କରିଛନ୍ତି ।

Digitized by srujanika@gmail.com

ଏହାକୁ ସ୍ପଷ୍ଟ ଭାବରେ ବୁଝିବାକୁ ହେଲେ ଶାସକ, ସରକାର, ଆଇନ, ଦଣ୍ଡ ସଂହିତା ଅନୁଷ୍ଠାନ ମାନଙ୍କୁ ସ୍ପଷ୍ଟ ଭାବରେ ବୁଝିବା ଆବଶ୍ୟକ। ଏସବୁ ନରହିଲେ ସମାଜରେ ଶାନ୍ତି, ନିରାପତ୍ତା ଓ ଆଇନ ଶୃଙ୍ଖଳା ରହିପାରିବ ନାହିଁ। ଏସବୁ ଥିବାରୁ ଆମେ ଅନ୍ତତଃ ଏହି ପ୍ରକାରର ଜୀବନ ବଞ୍ଚିବାକୁ ସମର୍ଥ ହୋଇପାରିଛେ। ଜନଗଣ ଏକତ୍ର ବାସକରିବା ପାଇଁ ଏଗୁଡିକ ଆବଶ୍ୟକ। ତେବେ ଏହାଠାରୁ ଯେ ଅଧିକ କିଛି ଆବଶ୍ୟକ ନାହିଁ, ଏହା ଆମେ କହିପାରିବା ନାହିଁ। ସମାଜରେ ଶାନ୍ତିପୂର୍ଣ୍ଣ ଅବସ୍ଥା ରହିବାକୁ ହେଲେ ଅନେକ କିଛି ଆବଶ୍ୟକ ହୋଇଥାଏ। କେବଳ ଆଇନ ପ୍ରୟୋଗ କରି ସବୁ ବିଷୟ ହାସଲ କରିହୁଏ ନାହିଁ। ସମାଜରେ ବ୍ୟକ୍ତି ମାନଙ୍କ ଭିତରେ ପାରସ୍ପରିକ ଶ୍ରଦ୍ଧା ଓ ସାହାଯ୍ୟ ମନୋଭାବ ରହିବା ଉଚିତ୍। ଲୋକମାନଙ୍କ ଭିତରେ ଶୃଙ୍ଖଳା, ଶ୍ରଦ୍ଧା, ଦୟାଭାବ, ସାଧୁତା ଓ କୃତଜ୍ଞତାଭାବ ରହିବା ଦରକାର। ସେମାନେ ପରସ୍ପରର ହିତ ଚିନ୍ତା କରିବା ସହ ଅନ୍ୟାୟକୁ ବିରୋଧ କରିବା ଉଚିତ୍। ଅନ୍ୟର ଉପାର୍ଜନକୁ କେହି ଆତ୍ମସାତ୍ କରିବା ଯଥାର୍ଥ ନୁହେଁ।

ଏସବୁ ସହ ଅନେକ କିଛି କେବଳ ଆଇନ ଦ୍ୱାରା ହାସଲ କରିହେବ ନାହିଁ। ସଂକ୍ଷେପରେ କହିଲେ ଯଦି ମଣିଷକୁ ପ୍ରାକୃତିକ ସ୍ୱାଧୀନତା ଭିତରେ ବଞ୍ଚିବାକୁ ଛାଡିଦିଆଯାଏ, ସେ ଶୃଙ୍ଖଳିତ ହୋଇପାରିବ ନାହିଁ। ଅନ୍ୟର ଅହିତ ସାଧନରୁ ସେ ନିବୃତ୍ତ ହେବନାହିଁ। ସୁତରାଂ କେତେକ ଆଇନ ଶୃଙ୍ଖଳା ସମାଜ ପାଇଁ ଆବଶ୍ୟକ। ଲୋକମାନେ ଯେପରି ଶୃଙ୍ଖଳାକୁ ମାନିବେ ସେଥିପାଇଁ ଈଶ୍ୱର ଭାବନାକୁ ସୃଷ୍ଟି କରାଯାଇଥିଲା। ଏକ ନିର୍ଦ୍ଦିଷ୍ଟ ଧାରାରେ କାର୍ଯ୍ୟ କରିବା ପାଇଁ ଉଦ୍ଦେଶ୍ୟ ରଖି ଲୋକମାନେ ଈଶ୍ୱର, ଧର୍ମ ସୃଷ୍ଟି କରିଥିଲେ। ଏହାଛଡା ଏସବୁ ସୃଷ୍ଟି ପଶ୍ଚାତ୍‌ରେ ଅନ୍ୟ କିଛି କାରଣ ରହିଛି କି ? ଈଶ୍ୱର ଓ ଧର୍ମନାମରେ ଲୋକମାନଙ୍କୁ ଏହି ଭୟ ଦିଆଯାଇଥିଲା ଯେ ଯେଉଁମାନେ ଈଶ୍ୱର ଓ ଧର୍ମ ନିର୍ଦ୍ଦେଶିତ ପନ୍ଥାରେ ଜୀବନ ପରିଚାଳିତ କରିବେ, ସେମାନେ କେବଳ ସ୍ୱର୍ଗପ୍ରାପ୍ତ ହେବେ। ଈଶ୍ୱରଙ୍କ ନାମରେ ଏହି ପ୍ରଚାର ସାଧାରଣ ଲୋକମାନଙ୍କୁ ଈଶ୍ୱରଙ୍କୁ ପ୍ରାର୍ଥନା କରି ତାଙ୍କର ଆଶୀର୍ବାଦ

Digitized by srujanika@gmail.com

ଭିକ୍ଷା ପାଇଁ ପ୍ରେରଣା ଦେଇଥିଲା । କୌଣସି ଶାସକଙ୍କର ଆଇନ୍ ଓ ଦଣ୍ଡଠାରୁ ମଣିଷର ଲୋଭ ଓ ଭୟ ଜନିତ ମାନସିକତା ଅଧିକ ଶକ୍ତିଶାଳୀ ମନେହୁଏ । ଈଶ୍ୱର ଓ ଧର୍ମ ଏହି ଦୃଷ୍ଟିରୁ ସମାଜପାଇଁ ଉପକାରୀ ମନେହୁଏ । ଅନ୍ୟ ଗୋଟିଏ ପ୍ରସଙ୍ଗ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଯାହାକୁ ମୁଁ ଏଠାରେ ଆଲୋଚନା କରିବାକୁ ଚାହୁଁଛି । ସମ୍ପ୍ରତି ବିଜ୍ଞାନର ଯେଉଁଭଳି ଅଭୂତପୂର୍ବ ବିକାଶ ହେଉଛି, ସେହିପରି ଧାର୍ମିକ ପ୍ରଚାର ମଧ୍ୟ ଅସମ୍ଭବ ଭାବେ ବୃଦ୍ଧି ପାଉଛି । ଏହାର କାରଣ କ'ଣ ବୋଲି ପ୍ରଶ୍ନ ଉଠିପାରେ? ସଂକ୍ଷେପରେ କହିବାକୁ ଗଲେ ସମ୍ପ୍ରତି ଧାର୍ମିକ ପ୍ରଚାରର ଆବଶ୍ୟକତା ଏବେ ଅଧିକ ଅନୁଭୂତ ହେଉଛି । ଏହା ପଛରେ ନାନା କାରଣ ରହିଛି । ବ୍ୟକ୍ତିଗତ ସଂପତ୍ତି ମାଲିକାନା ଅଧିକାର ଏବେ ଯଥେଷ୍ଟ ବଢିଛି । ସମାଜରେ ସାମ୍ପ୍ରଦାୟିକତାର ବାତାବରଣ ବୃଦ୍ଧି ପାଉଛି । ଉଚ୍ଚ ନୀଚ ଜନିତ ଭେଦଭାବ ବଢୁଥିବାର ଲକ୍ଷଣ ଦେଖାଯାଉଛି । ଶୋଷଣ ଓ ଆଧିପତ୍ୟ ବିରୋଧରେ ଆନ୍ଦୋଳନ ମଧ୍ୟ ବୃଦ୍ଧି ପାଇବାରେ ଲାଗିଛି । ନ୍ୟାୟ ଓ ସମତାର ଅଧିକାର ନେଇ ଦାବି ମଧ୍ୟ ହେଉଛି । ଏସବୁକୁ ଆଇନ ଦ୍ୱାରା ବନ୍ଦ କରି ହେବ ନାହିଁ । ଗୋଟିଏ ଜଟିଳ ପରିସ୍ଥିତି ଦ୍ରୁତ ଗତିରେ ସମାଜରେ ମୁଣ୍ଡ ଟେକୁଛି । କୌଣସି ଶାସକ ଏହି ସମୟର ବିପଦ ଗୁଡିକୁ କେବଳ ଆଇନ ଦ୍ୱାରା ନିୟନ୍ତ୍ରଣ କରିହେବ ବୋଲି ଆତ୍ମସନ୍ତୋଷ ଲାଭକରି ପାରିବେନାହିଁ । ଉଚ୍ଚ ଜାତିର ଲୋକମାନେ ଶାସକ ଓ ଆଇନ୍ ସୃଷ୍ଟି କରିଛନ୍ତି । ଯେଉଁମାନେ ଆଇନ୍‌କୁ ଉଲଂଘନ କରିବେ, ସେମାନଙ୍କ ବିରୋଧରେ ଆଇନ୍ ତା ବାଟରେ ଯିବ । ତେବେ ଯଦି ସମାଜର ଗରିବ ନିଷ୍ପେସିତ ଓ ଦଳିତ ଲୋକମାନେ ବ୍ୟବସ୍ଥା ବିରୋଧରେ ବିପ୍ଳବ କରିବେ, ସେତେବେଳେ ଶାସକ ଓ ଆଇନ ରହିପାରିବ ନାହିଁ । ଏକ ବିଶୃଙ୍ଖଳିତ ପରିସ୍ଥିତିରେ ଆଇନ୍ କାର୍ଯ୍ୟକାରୀ ହେବା ସମ୍ଭବ ନୁହେଁ । ଆନ୍ଦୋଳନକାରୀମାନେ ଦଣ୍ଡପ୍ରତି କୌଣସି ଭୟ ରଖିବେନାହିଁ । ଏପରି ଏକ ଅପ୍ରାକୃତିକ ପରିସ୍ଥିତିରେ ସେତେବେଳେ ନିଜର ସୁରକ୍ଷା ପାଇଁ ଈଶ୍ୱର, ଧର୍ମ ବେଶ୍ ସହାୟକ ହେବ । ସଂପନ୍ନ ଲୋକମାନେ ସାଧାରଣ ଲୋକମାନଙ୍କୁ ନିୟନ୍ତ୍ରଣ ଭିତରେ ରଖିବା ପାଇଁ ଈଶ୍ୱରଙ୍କୁ ସୃଷ୍ଟି କରିଛନ୍ତି । ଈଶ୍ୱର ଭାବନା ଯୋଗୁଁ ସମାଜରେ ଧନୀ

Digitized by srujanika@gmail.com

ଦରିଦ୍ର ଭେଦଭାବ ରହିଆସିଛି । ସେହିପରି ସମାଜରେ ଯଦି ଧର୍ମ ନଥାନ୍ତା , ତେବେ ଉଚ୍ଚଜାତି ଓ ନୀଚ ଜାତି ଭେଦଭାବ ମଧ୍ୟ ସମାଜରେ ରହିନଥାନ୍ତା ।

ଧନୀଲୋକମାନଙ୍କର ସ୍ୱାର୍ଥକୁ ସୁରକ୍ଷା ଦେବା ପାଇଁ ଈଶ୍ୱର, ଧର୍ମକୁ ସୃଷ୍ଟି କରାଯାଇଛି । ସମାଜରେ ଶୋଷଣକାରୀ ଉଚ୍ଚଜାତି ମହନ୍ତ, ମହାଜନ, ସାମନ୍ତ ମାନଙ୍କର ସ୍ୱାର୍ଥସିଦ୍ଧି ପାଇଁ ଏସବୁ ଭାବନାକୁ ସୃଷ୍ଟିକରା ହୋଇଛି । ଈଶ୍ୱର ଓ ଧର୍ମ ଭାବନା ଯୋଗୁ ଏସବୁ ଉଚ୍ଚ ଓ ସାମନ୍ତ ବର୍ଗ ଓ ସେମାନଙ୍କ ବ୍ୟବସ୍ଥା ବଳବତ୍ତର ରହିଛି । ଈଶ୍ୱର ଓ ଧର୍ମନାମରେ ସାମାଜିକ ବ୍ୟବସ୍ଥାକୁ ନିୟନ୍ତ୍ରଣ ଭିତରେ ରଖିବା ସମ୍ଭବ ହୋଇଛି ଯାହା ଆଇନ ଦ୍ୱାରା ସମ୍ଭବ ନୁହେଁ । ଧର୍ମ ଦ୍ୱାରା ସାମାଜିକ ନିୟନ୍ତ୍ରଣ ସହଜ ମନେ ହୋଇଛି ।

ସ୍ପଷ୍ଟ ଭାବରେ କହିବାକୁ ଗଲେ ଏକ ପ୍ରାକୃତିକ ବ୍ୟବସ୍ଥା ବିରୁଦ୍ଧରେ ଯିବାକୁ ହେଲେ ଈଶ୍ୱର ଓ ଧର୍ମ ବେଶ୍ ଦରକାରୀ ଅଟେ । ଲୋକମାନେ ଅପ୍ରାକୃତିକ ଭାବେ ଓ ଅସ୍ୱାଭାବିକ ଭାବେ ଜୀବନଧାରଣ କରିବାକୁ ଦିବ୍ୟ ପୁରୁଷ ମାନେ ଏ ସବୁ ସୃଷ୍ଟି କରିଛନ୍ତି । ଏହି କାରଣ ଯୋଗୁଁ ସେମାନେ ଅଧିକରୁ ଅଧିକ ଈଶ୍ୱର ଓ ଧର୍ମ ମାନଙ୍କୁ ସୃଷ୍ଟି କରିଛନ୍ତି ।

ଯଦି ସମାଜରୁ ଜାତି ପ୍ରଥା ଓ ସକଳ ଭେଦଭାବ ବ୍ୟବସ୍ଥାକୁ ଆମେ ନଷ୍ଟ କରିବାରେ ସଫଳ ହୋଇ ପାରିବା, ତେବେ ଏହି ଅଗଣିତ ଈଶ୍ୱର ଗୁଡିକ ଓ ଧାର୍ମିକ ପର-ରାମାନ ଅର୍ଥହୀନ ହୋଇଯିବ । ସୁତରାଂ ଈଶ୍ୱର ଓ ଧର୍ମ ନାମରେ ଯେଉଁ ଦର୍ଶନ ଆମକୁ କୁହାଯାଇଛି, ତାହା ଅପାଂକ୍ତେୟ ମନେହୁଏ ।

## ମଣିଷର ସ୍ୱରୂପ

ଈଶ୍ୱର ଓ ଧର୍ମ କାହିଁକି ସୃଷ୍ଟି ହୋଇଥିଲା ବର୍ତ୍ତମାନ ବିଚାର କରାଯାଉ । କାହାର ମଙ୍ଗଳ ପାଇଁ ସେସବୁ ସୃଷ୍ଟି କରାଯାଇଛି ? ଏସବୁକୁ ସୃଷ୍ଟି କରିବା ପଶ୍ଚାତରେ ଦିବ୍ୟବ୍ୟକ୍ତି ମାନଙ୍କର କ'ଣ ଉଦ୍ଦେଶ୍ୟ ରହିଛି? ମଣିଷ କେଉଁ ବୁଦ୍ଧିଦ୍ୱାରା ପରିଚାଳିତ ହୋଇ ଏସବୁ ସୃଷ୍ଟି କରିଛି ?

Digitized by srujanika@gmail.com

ଈଶ୍ୱର ଧର୍ମ ଭଳି ଦ୍ୱିଜମାନେ ଆଉ ଏକ ଭାବନା ସୃଷ୍ଟି କରିଛନ୍ତି । ତାହା ହେଉଛି ସେମାନଙ୍କ ଭାଷାରେ ଆତ୍ମା । ସେମାନେ କହନ୍ତି ଆତ୍ମାକୁ ଦେଖି ହେବ ନାହିଁ, ସ୍ପର୍ଶ କରିହେବ ନାହିଁ କିମ୍ବା ଅନୁଭବ ମଧ୍ୟ କରିହେବ ନାହିଁ। ସେହି ଆତ୍ମା ଭାବନାଟି କ'ଣ ଆଲୋଚନା କରାଯାଉ।

ମଣିଷର ଆତ୍ମାର ସ୍ୱରୂପ କି ପ୍ରକାରର? ଜଗତରେ ଜୀବିତ ଓ ଜଡ ବହୁ ଜିନିଷ ରହିଛି। ସକଳ ସତ୍ତାମାନଙ୍କୁ ଗତିଶୀଳ ବା ସ୍ଥିର ବୋଲି ଆମେ ଦେଖୁ। ଜଗତରେ ପ୍ରତ୍ୟେକଙ୍କର ରୂପ ଓ ସ୍ଥିତି ନେଇ ପ୍ରତ୍ୟେକଙ୍କୁ ଆମେ ନାମକରଣ କରିଛୁ। କୌଣସି ବସ୍ତୁର ଅଂଶମାନଙ୍କୁ ଯଦି ପୃଥକ୍ କରାଯାଏ, ତେବେ ଅଂଶ ମାନଙ୍କର ବିଭିନ୍ନ ନାମ ରହିପାରେ, ତା ଦ୍ୱାରା ମୂଳ ବସ୍ତୁଟି ତାର ନିଜସ୍ୱ ରୂପ ବା ଆକାର ହରାଇଥାଏ। ମଣିଷ ସେହିଭଳି ଆକାରଥିବା ଏକ ପ୍ରାଣୀ।

ଆକାର ଦୃଷ୍ଟିରୁ ମଣିଷମାନେ ସମାନ ଦେଖାଯାଆନ୍ତି । ମଣିଷର ଯେକୌଣସି ଅଙ୍ଗକୁ ନିର୍ଦ୍ଦିଷ୍ଟ ନାମ ଦିଆଯାଇଛି। କୌଣସି ଗୋଟିଏ ଅଙ୍ଗକୁ ସ୍ପର୍ଶ କଲେ ଏହା ଜଣଙ୍କର ମୁଣ୍ଡ, ହାତ, ଗୋଡ, ଛାତି ବା ଅନ୍ୟ କିଛି ହୋଇପାରେ। ଆମର ମୁଣ୍ଡ ଭିତରେ ଆମର କେଶ, ମୁହଁ ଓ ବେକ ଇତ୍ୟାଦି ଯେପରି ରହିଛି, ଅନ୍ୟ ପ୍ରାଣୀ ମଧ୍ୟରେ ମଧ୍ୟ ସେପରି ରହିଛି। ବସ୍ତୁ ଜଗତରେ ପ୍ରତ୍ୟେକ ବସ୍ତୁ ବିଭିନ୍ନ ଅଂଶର ସମାହାର ମାତ୍ର। ପ୍ରତ୍ୟେକ ଅଂଶର ଗୁଣ ବା କାର୍ଯ୍ୟ ମଧ୍ୟ ଅଲଗା। ବିଭିନ୍ନ ଅଙ୍ଗ ମାନଙ୍କ ଦ୍ୱାରା ସଂଯୋଜିତ ସତ୍ତାଟିର ଗୋଟିଏ ନିର୍ଦ୍ଦିଷ୍ଟ ରୂପରହିବା ସହ ତାହା ଗୋଟିଏ ନାମ ଦ୍ୱାରା ସୂଚିତ ହୋଇ ଥାଏ। ଜଣେ କାଠମିସ୍ତ୍ରୀ କାଠ ବା ଲୁହାରୁ ବିଭିନ୍ନ ବସ୍ତୁ ନିର୍ମାଣ କରିଥାଏ। କାଠରୁ ନିର୍ମିତ ହୋଇଥିବା ବସ୍ତୁଗୁଡିକ ବିଭିନ୍ନ ନାମରେ ସୂଚିତ ହୋଇଥାନ୍ତି। ଜଣେ ବଢେଇ ଏକା ଉପାଦାନରୁ ଚଉକି, ଟେବୁଲ୍, ବେଞ୍ଚ୍, ଖଟ, ଚକ, ଶଗଡ ଇତ୍ୟାଦି ନାନା ବସ୍ତୁ ନିର୍ମାଣ କରିପାରେ। ମଣିଷ ସେହିପରି ନାନା ଉପାଦାନରେ ଗଢି ଉଠିଛି। ମଣିଷର ଗତିଶୀଳତା ରହିଛି। ପ୍ରକୃତିରେ ମଣିଷ ଭଳି ଗତିଶୀଳ ଥିବା ଅନେକ ପ୍ରାଣୀ ଅଛନ୍ତି। ମଣିଷ ପରି ଗାଈ, ବଳଦ, ଗଧ, ଘୋଡା, ହାତୀ, ଘୁଷୁରି, ସାପ, ପକ୍ଷୀ, କୀଟପତଙ୍ଗ ରହିଛନ୍ତି।

Digitized by srujanika@gmail.com

ପ୍ରତ୍ୟେକ ଜୀବିତ ପ୍ରାଣୀର ଶରୀର ବିଭିନ୍ନ ଉପାଦାନର ସମଷ୍ଟି । ଏ କ୍ଷେତ୍ରରେ ଇତର ପ୍ରାଣୀ ଓ ମନୁଷ୍ୟ ଭିତରେ ବିଶେଷ ପ୍ରଭେଦ ନାହିଁ, ତେବେ ମଣିଷ ଅନ୍ୟ ପ୍ରାଣୀ ମାନଙ୍କ ଠାରୁ ଉନ୍ନତ କାହିଁକି? ମଣିଷ ନିଜକୁ ଭାଷା ମାଧ୍ୟମରେ ବ୍ୟକ୍ତ କରିପାରୁଛି ଓ ନିଜର ମନର ଭାବନାକୁ ଅନ୍ୟ ପାଖରେ ପ୍ରକାଶ କରିପାରୁଛି । ପ୍ରତ୍ୟେକ ଜୀବପାଖରେ ହୁଏତ କିଛି ବୈଶିଷ୍ଟ୍ୟ ରହିଛି । କେତେକ ପକ୍ଷୀ ବହୁ ଉଚ୍ଚ ଆକାଶରେ ଉଡିପାରନ୍ତି ବା ସୁନ୍ଦର ବସା ବାନ୍ଧି ପାରନ୍ତି ।

ମଣିଷ ପାଖରେ ସେପରି କିଛି ମହନୀୟତା ହୁଏତ ନଥାଇ ପାରେ, ତେବେ ମଣିଷ ଚିନ୍ତା କରିପାରେ ଓ ନିଜର ଚିନ୍ତା ଅନୁଯାୟୀ କାର୍ଯ୍ୟ କରିଥାଏ । ମଣିଷର ଏହି ବିଚାରଶୀଳତା ଯୋଗୁଁ ସେ ଅନ୍ୟ ଜୀବ ଠାରୁ ଉତ୍କୃଷ୍ଟ ମନେ ହୁଏ ।

ବିଚାରଶୀଳତା ଓ ଚିନ୍ତା କରିବାର ସାମର୍ଥ୍ୟ ମଣିଷ ପାଖରେ ହିଁ ଦେଖାଯାଏ । କିନ୍ତୁ ଏପରି କେତେକ ପ୍ରାଣୀ ଅଛନ୍ତି ଯେଉଁମାନେ ଶାରୀରିକ ସାମର୍ଥ୍ୟ ଦୃଷ୍ଟିରୁ ମଣିଷଠାରୁ ଅଧିକ ଶକ୍ତିଶାଳୀ । ସେମାନଙ୍କର ଏହି ସାମର୍ଥ୍ୟ ଅନ୍ୟ ପ୍ରାଣୀମାନଙ୍କ ପାଇଁ ବା ମଣିଷ ପାଇଁ ଅଧିକ ଉପଯୋଗୀ ହୋଇଥାଏ କି? ମଣିଷ ଯେହେତୁ ଚିନ୍ତା କରିବାକୁ ସମର୍ଥ ସେ ଜୀବନକୁ ଶୃଙ୍ଖଳିତ କରିବା ପାଇଁ ଈଶ୍ୱର, ଧର୍ମ ଭାବନାକୁ ସୃଷ୍ଟି କରିଛି । ଏହି ଭାବନା ସବୁ କରିଥିବା ବ୍ୟକ୍ତିମାନେ କହିଥାନ୍ତି ଯେ ଏସବୁ ବ୍ୟତୀତ ମଣିଷ ଜୀବନ ଠିକ୍ ଭାବରେ ପରିଚାଳିତ ହୋଇପାରିବ ନାହିଁ । ମୋ ବିଚାରରେ ମଣିଷର ଚିନ୍ତାଶକ୍ତି ତାକୁ ନିଜ ବିଷୟରେ ଅଧିକ ଚିନ୍ତାଗ୍ରସ୍ତ କରାଉଛି । ମଣିଷର ଇଚ୍ଛାର ସୀମାନାହିଁ, ସେ ଅନ୍ୟମାନଙ୍କୁ ଈର୍ଷା ମଧ୍ୟ କରିଥାଏ, ଅନ୍ୟ ମାନଙ୍କ ପ୍ରତି ସେ ଅସୂୟା ଭାବପ୍ରକାଶ କରିଥାଏ । ଏପରିକି ତାହାର ଚିନ୍ତା କରିବାର ସାମର୍ଥ୍ୟ ଯୋଗୁଁ ସେ ଅନ୍ୟମାନଙ୍କୁ ଶୋଷଣ କରେ, ନ୍ୟୂନ ଦୃଷ୍ଟିରେ ଦେଖେ, ଘୃଣାକରେ ଓ ଏପରିକି ଠକିଥାଏ ।

ମଣିଷ ବିଚାରଶୀଳ ହେଲେ ମଧ୍ୟ ସେ ଯେ ମନ୍ଦକାର୍ଯ୍ୟ କରିବ ନାହିଁ, ଏହା କହି ହେବନାହିଁ । ପଶୁଜଗତରେ କେତେକ ପ୍ରାଣୀ ଅନ୍ୟପ୍ରାଣୀଙ୍କର ଜୀବନକୁ ନଷ୍ଟ କରିଦେଇଥାନ୍ତି । ମଣିଷ ସେହିପରି ଅନ୍ୟର ଦୁଃଖର କାରଣ ମଧ୍ୟ ହୋଇ ପାରେ । ମଣିଷ ଚିନ୍ତାକରିବା ବା ବିଚାରଶୀଳ ହେବାର ସାମର୍ଥ୍ୟ ପାଇଥିଲେ ମଧ୍ୟ ସେ ଅନ୍ୟ ପାଇଁ ଦୁଃଖର କାରଣ ହୋଇପାରେ ।

Digitized by srujanika@gmail.com

କେତେକ ବ୍ୟକ୍ତି ନିଜକୁ ଅନ୍ୟଠାରୁ ବଡ ଭାବିଥାନ୍ତି । କିଏ ସୁନ୍ଦର ଛବି ଆଙ୍କିପାରୁଛି, କିଏ କବିତା ଲେଖିପାରୁଛି, ବା କିଏ କିଛି ସୁନ୍ଦର ବସ୍ତୁ ନିର୍ମାଣ କରୁଛି, ବା ଅନ୍ୟ କେହି ଏକ ଦୂରସ୍ଥାନକୁ ଯାଇ ଏକା ଦିନରେ ଫେରିପାରୁଛି । ପ୍ରତ୍ୟେକ ବ୍ୟକ୍ତିର ପ୍ରତ୍ୟେକ ପ୍ରାଣୀ ଭଳି କିଛି ମହତ୍ତ୍ୱ ରହିଛି । ଜଣେ ମଣିଷକୁ ଆମେ କିପରି ବଡ କହିପାରିବା ? ଜଣେ ବ୍ୟକ୍ତି ଧୂର୍ତ୍ତ ଭାବରେ କାର୍ଯ୍ୟ କରିପାରୁଥିବାରୁ ତାହାକୁ ବଡ଼ କହିପାରିବା କି ?

ସବୁ ପ୍ରାଣୀମାନଙ୍କ ଚରିତ୍ରରେ ଓ କାର୍ଯ୍ୟରେ ଆମେ କେତେକ ସାମଞ୍ଜସ୍ୟ ଦେଖିଥାଏ । ପ୍ରକୃତିରେ ଆମେ ଏହି ଦୃଷ୍ଟିରୁ ସେମାନଙ୍କୁ ସମାନ ଭାବିଥାଏ । ଜନ୍ମ, ଜୀବନ ଧାରଣ, ସନ୍ତାନ ସୃଷ୍ଟି ଓ ମୃତ୍ୟୁ କ୍ଷେତ୍ରରେ ସମସ୍ତ ପ୍ରାଣୀମାନଙ୍କ ଭିତରେ ଆମେ ଯଥେଷ୍ଟ ସାମଞ୍ଜସ୍ୟ ଥିବା ଲକ୍ଷ୍ୟ କରିଥାଉ, କିନ୍ତୁ ସମାଜରେ ମଣିଷ ବ୍ୟକ୍ତିର କିଛି ବୈଶିଷ୍ଟ୍ୟ ଥିବା କୁହାଯାଏ ।

ବିଭିନ୍ନ ବ୍ୟକ୍ତିଙ୍କୁ ଭିନ୍ନ ଭିନ୍ନ ଗୁଣ ଆରୋପ କରାଯାଏ । କେତେକଙ୍କୁ ଆମେ ଭଲଲୋକ କହି ଆଦର କରୁ ତ ଅନ୍ୟ କେତେକଙ୍କୁ ମନ୍ଦ ବ୍ୟକ୍ତିକହି ଆଦର କରିନଥାଉ । କେତେକଙ୍କର ସ୍ୱଭାବକୁ ଆମେ ରୁକ୍ଷ ବୋଲି ଭାବିଥାଉ, ଅନ୍ୟ କେତେକଙ୍କ ଚରିତ୍ରଙ୍କୁ ଆମେ ସମ୍ମାନ କରୁ । ସମାଜରେ କେତେକ ବ୍ୟକ୍ତି ସାଧୁ, ଦୟାଳୁ, ମିତବ୍ୟୟୀ ଓ ଅନ୍ୟ କେତେକ ବିପରୀତ ଗୁଣର ଅଧିକାରୀ । କେତେକ ଦୟାଳୁ ତ ଅନ୍ୟ କେତେକ ଅତ୍ୟାଚାରୀ । କେତେକ ବିଶ୍ୱସ୍ତ ତ ଅନ୍ୟ କେତେକ ବିଶ୍ୱାସଘାତକ । କେତେକ ଜ୍ଞାନୀ, ଅନ୍ୟ କେତେକ ଅଜ୍ଞ ଓ କେହି ଅନୁସନ୍ଧିତ୍ସୁ ତ ଅନ୍ୟ କେହି ଅନ୍ଧବିଶ୍ୱାସୀ । ଏହି ପରି ବିଭିନ୍ନ ପରସ୍ପରବିରୋଧୀ ଗୁଣ ଆମେ କାହିଁକି ଅନ୍ୟମାନଙ୍କୁ ଆରୋପ କରୁ? ମଣିଷ ମଣିଷ ଭିତରେ ଏହି ପାର୍ଥକ୍ୟର କାରଣ କ'ଣ ହୋଇପାରେ? ମଣିଷ ନିଜ ସ୍ୱଭାବ ପାଇଁ ନିଜେ କେତେ ଦୂର ଦାୟୀ, ସେମାନଙ୍କର କାର୍ଯ୍ୟ ଓ ସ୍ୱଭାବ ପାଇଁ ସେମାନଙ୍କୁ ନିଜେ କେତେ ଦୂର ଦାୟୀ କରାଯାଇ ପାରିବ ? ଏହା ଏକ ଜଟିଳ ପ୍ରଶ୍ନ ଓ ଏହା ଉପରେ ଚିନ୍ତା କରିବା ପାଇଁ ମୁଁ ଆପଣ ମାନଙ୍କୁ ନିବେଦକ କରୁଛି ।

Digitized by srujanika@gmail.com

ଗୋଟିଏ କୁକୁର ସ୍ୱଭାବରେ ଆମେ କଣ ଦେଖୁ? ଏହାପ୍ରାୟ ପ୍ରଭୁଭକ୍ତ ଓ ନିଜର ପାଳନକର୍ତ୍ତା ପ୍ରତି ଅତ୍ୟନ୍ତ ବିଶ୍ୱସ୍ତ। ଗୋଟିଏ ଶିଆଳ ଦେଖିବାକୁ ଗୋଟିଏ କୁକୁର ପରି କିନ୍ତୁ ଏହାର ଚରିତ୍ର ? ଗୋଟିଏ କୁକୁରର ସ୍ୱଭାବ ଓ ଗୋଟିଏ କୋକିଶିଆଳର ସ୍ୱଭାବ ଭିତରେ ଅନେକ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ। ଏହା ପଛରେ କ'ଣ କାରଣ ଅଛି ? ଏପରିକି ଅନେକ କୁକୁରଙ୍କ ଭିତରେ ଅନେକ ପାର୍ଥକ୍ୟ ଆମେ ଦେଖୁଥାଉ। କେତେକ କୁକୁର କାମୁଡା ସ୍ୱଭାବର, ଅନ୍ୟ କେତେକ ଆଦୌ କାମୁଡା ନୁହଁନ୍ତି। କେତେକ ନିଜର ପ୍ରଭୁ ପ୍ରତି ଅନୁଗତ। ଅନ୍ୟ କେତେକ ସେପରି ନୁହଁନ୍ତି। କେତେକ କୁକୁର ଖାଦ୍ୟ ଲୁଚାଇ ଖାଆନ୍ତି। ଅନ୍ୟ କେତେକ ତାଙ୍କର ପୋଷକ ଦେଲେ ଯାଇ ଖାଇବେ। କେତେକ ଭାରି ବୁଦ୍ଧିମାନ ଓ ଅନ୍ୟ କେତେକ ସେପରି କିଛି ବୁଦ୍ଧି ଦେଖାଇ ପାରନ୍ତି ନାହିଁ। ଏହି ସବୁ ପାର୍ଥକ୍ୟର କ'ଣ କାରଣ ଅଛି? ଏହି ପାର୍ଥକ୍ୟ କ'ଣ ପ୍ରାକୃତିକ ? ପ୍ରାଣୀ ମାନଙ୍କ ଭିତରେ ଦେଖାଯାଉଥିବା ପାର୍ଥକ୍ୟ କ'ଣ ସେମାନଙ୍କର ଶାରୀରିକ ଉପାଦାନ ବା ଅନ୍ୟ କୌଣସି ଜନ୍ମଗତ କାରଣ ଯୋଗୁଁ ହୋଇଥାଏ?

ଗୋଟିଏ ଷଣ୍ଢ ତାର ଶିଂଗରେ ଅନ୍ୟକୁ ଭୁଷିଥାଏ, ଅନ୍ୟ ଷଣ୍ଢଟିଏ ମାଡଖାଇଲେ ମଧ୍ୟ ପ୍ରତିକ୍ରିୟା ଦେଖାଏ ନାହିଁ। ଗୋଟିଏ ହାତୀ ଶୀଘ୍ର ପୋଷା ମାନିଥାଏ, ଓ ଯେ କୌଣସି ଆଦେଶକୁ ପାଳନ କରେ। ଅନ୍ୟ ହାତୀ ଆଦୌ ପୋଷା ମାନେ ନାହିଁ ଓ ଏପରିକି ସୁଯୋଗ ପାଇଲେ ମାରିଦେଇପାରେ। ପ୍ରାଣୀମାନଙ୍କର ଏହି ବ୍ୟବହାରରେ ଏହି ପାର୍ଥକ୍ୟ କାହିଁକି ଦେଖାଯାଏ? ଏହି ପାର୍ଥକ୍ୟ ଜନ୍ମଗତ ନା ସେମାନଙ୍କ ଶାରୀରିକ ଅଙ୍ଗବିନ୍ୟାସର ପରିଣାମ?

ମଣିଷ ସ୍ୱଭାବକୁ ଦେଖନ୍ତୁ। କେତେକ ମଣିଷ କାହିଁକି ଚୋର, ଅକୃତଜ୍ଞ, ଅତ୍ୟନ୍ତ ସ୍ୱାର୍ଥପର ଓ ମିଥ୍ୟାବାଦୀ ? ମଣିଷ ଠାରେ କାହିଁକି ଏହି ଅକୃତଜ୍ଞ ଓ ସ୍ୱାର୍ଥପର ସ୍ୱଭାବ ରହିଛି? ମଣିଷର ବ୍ୟବହାର, ଚରିତ୍ର ଓ କାର୍ଯ୍ୟକଳାପ ଭିତରେ ଏତେ ପାର୍ଥକ୍ୟ କାହିଁକି ଦୃଷ୍ଟି ଗୋଚର ହୁଏ?

ଗୋଟିଏ ବଂଶୀକୁ ଦେଖନ୍ତୁ। ଜଣେ ବାଦ୍ୟକାର ବଂଶୀର କଣା ପାଖରେ ତାର ମୁହଁ ରଖି ବିଭିନ୍ନ ସ୍ୱର ସୃଷ୍ଟି କରିପାରେ। ବଂଶୀରେ ଥିବା ବିଭିନ୍ନ ଗୁହା

Digitized by srujanika@gmail.com

ଯୋଗୁଁ ବଂଶୀ ବାଦକ ବିଭିନ୍ନ ସ୍ୱର ସୃଷ୍ଟି କରିଥାଏ । ସେହିଭଳି ଜଣେ ପ୍ରାଣୀ ବା ଜଣେ ବ୍ୟକ୍ତି ହେଉ ସେମାନଙ୍କର ଶାରୀରିକ ଗଠନ, ମସ୍ତିଷ୍କ ଇତ୍ୟାଦି କାରଣ ଯୋଗୁଁ ସ୍ୱଭାବରେ ଏତେ ଭିନ୍ନତା ପରିଲକ୍ଷିତ ହୋଇଥାଏ । ପ୍ରାଣୀର ଶାରୀରିକ ଓ ମାନସିକ ଗଠନ ହିଁ ତାର ଭାବନାକୁ ପରିଚାଳିତ କରିଥାଏ ।

ମଣିଷ ଭିତରେ ଚିନ୍ତାକରିବାର ସାମର୍ଥ୍ୟ ଥିଲେ ମଧ୍ୟ ସେ ଯଥାର୍ଥ ଭାବରେ କାର୍ଯ୍ୟ କରିନଥାଏ, ସେହିପରି ମଣିଷର କାର୍ଯ୍ୟ ପାଇଁ ତାକୁ ନିନ୍ଦିତ କରିବା ଯଥାର୍ଥ ମନେ ହୁଏ ନାହିଁ ।

ମଣିଷ ଅନ୍ୟର ସ୍ୱରୂପକୁ ଠିକ୍ ଭାବରେ ବୁଝିବା ପାଇଁ ହୁଏତ ଅବକାଶ ପାଏନାହିଁ । ଆମେ ଯେପରି ଆମର ଦୃଷ୍ଟିଶକ୍ତି ଦ୍ୱାରା ଅନ୍ୟର ରୂପର ଧାରଣା କରୁ ବା ଆମର ଶ୍ରବଣ ଶକ୍ତି ଦ୍ୱାରା କୌଣସି ଶବ୍ଦକୁ ଧାରଣାକରୁ, ସେହିପରି ଆମର ମାନସିକ ସାମର୍ଥ୍ୟ ଆଧାରରେ କେତେକ ଭାବନା ଆଣିଥାଉ । ଆମ ଶରୀରର କୋଷ, ମସ୍ତିଷ୍କ, ସ୍ନାୟୁ ମାଂସପେଶୀରେ ସଂଚାଳନ ଇତ୍ୟାଦିର ପରିଣାମରୁ ଆମ ଭିତରେ ବିଭିନ୍ନ ଆବେଗ ସୃଷ୍ଟି ହୋଇଥାଏ । ବିଜ୍ଞତା, ବନ୍ଧୁତା,କୌତୂହଳତା ପରି ଗୁଣ କିମ୍ବା ହସ, କାନ୍ଦ, ରାଗ, ପ୍ରତିହିଂସା ଇତ୍ୟାଗି ଆବେଗ ଗୁଡିକ ଆମର ଶାରୀରିକ ଓ ମାନସିକ ସ୍ତରରୁ ନିଷ୍ପନ୍ନ ହୋଇଥାଏ । ସୁତରାଂ ମଣିଷର ସମସ୍ତ କାର୍ଯ୍ୟ କଳାପ ଓ ବ୍ୟବହାର ପାଇଁ ମଣିଷକୁ ପ-ୂର୍ଣ୍ଣ ଦାୟୀ କରିବା ହୁଏତ ଯଥାର୍ଥ ମନେ ହୋଇନପାରେ ।

ପ୍ରାଣୀ ଜଗତରେ ଆମେ ଦେଖୁଛେ କୁକୁର ମାନେ ଅନୁଗତ, ବିରାଡିମାନେ ଗୋପନରେ କାର୍ଯ୍ୟ କରିବାକୁ ଆଗ୍ରହୀ । ପେଚାମାନେ ରାତ୍ରୀ କାଳରେ ଦେଖିବାକୁ ସମର୍ଥ । ଇଗଲମାନେ ଅତି ଉଚ୍ଚରୁ ଦେଖିବାକୁ ସମର୍ଥ । ପ୍ରତ୍ୟେକ ପ୍ରାଣୀ ଭିତରେ ଏହି ସାମର୍ଥ୍ୟ ତାର ଶାରୀରିକ କୋଷ ଓ ମାନସିକ ସ୍ୱଭାବ ଉପରେ ପ୍ରାୟତଃ ନିର୍ଭରଶୀଳ । ପ୍ରାଣୀର ସ୍ୱଭାବ ତାର ଶରୀର, କୋଷ, ସ୍ନାୟୁ, ମସ୍ତିଷ୍କ ଇତ୍ୟାଦିର ପରିଣାମ ।

କୁକୁଡାମାନେ ପୋକଯୋକ ମାନଙ୍କୁ ଖାଉଥିବାରୁ ଈଶ୍ୱର କଣ ସେମାନଙ୍କୁ ଦଣ୍ଡ ଦିଅନ୍ତି? ବିରାଡି ମୂଷାକୁ ମାରିଦେଉଥିବାରୁ ସେ କ'ଣ ଈଶ୍ୱର ପାଖରେ

Digitized by srujanika@gmail.com

ଦଣ୍ଡିତ ହୁଏ । ଇଗଲମାନେ ବତକ ଓ କୁକୁଡାମାନଙ୍କୁ ଝାଂି ନେଉଥିବାରୁ ସେମାନଙ୍କୁ ଈଶ୍ୱର ଦଣ୍ଡ ଦିଅନ୍ତି କି ? ଯଦି ସେମାନଙ୍କୁ ଈଶ୍ୱର ଦଣ୍ଡ ଦେବାକୁ ସମର୍ଥ, ଉଇମାନେ କାଠମାନଙ୍କୁ ନଷ୍ଟ କରୁଥିବାରୁ ସେମାନେ ଦଣ୍ଡପାଇବା ଈଶ୍ୱରଙ୍କ ସୃଷ୍ଟିରେ ଠିକ୍ ନୁହେଁ କି? ଲୁହାକୁ ଜଳୀୟ ଅଂଶ କଳଙ୍କି ଲଗାଇ ନଷ୍ଟ କରୁଥିବାରୁ ସେ ସବୁକୁ ବି ଈଶ୍ୱର ଦଣ୍ଡଦେବା ଆବଶ୍ୟକ ।

ବନ୍ଧୁଗଣ, ମଣିଷର ଶାରୀରିକ ଗଠନ ଓ ତାର କାର୍ଯ୍ୟକାରିତା ନେଇ ମୁଁ ଆପଣମାନଙ୍କୁ ଏସବୁ କଥା କହିଲି । ବର୍ତ୍ତମାନ ଆତ୍ମା ଭାବନାଟିକୁ ଆଲୋଚନା କରିବି ।

## ଆତ୍ମା

ଆମେ ଯେତେବେଳେ ଶରୀର ଓ ଏହାର ଅଙ୍ଗ ବିଷୟରେ ଆଲୋଚନା କରୁଥିଲେ ସେତେବେଳେ ଆତ୍ମା ସମ୍ପର୍କରେ ଉଲ୍ଲେଖ କରିବାର କୌଣସି ଅବକାଶ ନଥିଲା । ଶରୀରର କେତେକ ଅଙ୍ଗ ଆମେ ଦେଖିପାରେ, ସ୍ପର୍ଶ କରିପାରେ ଆମ ଅନୁଭୂତି ସାହାଯ୍ୟରେ ଶରୀରରେ ଥିବା ଅଙ୍ଗମାନଙ୍କୁ ଆମେ ଅନୁଭବ କରୁ କିମ୍ବା ଜାଣିବାକୁ ସମର୍ଥ ହେଉ । ଏହାହିଁ ଆମ ବିଚାରରେ ଗ୍ରହଣ ଯୋଗ୍ୟ ହୋଇଥାଏ । ଆମେ କିନ୍ତୁ ଯେତେବେଳେ ଆତ୍ମା ବିଷୟରେ ଆଲୋଚନା କରୁ, ତାହା ବିଷୟରେ ଆମର କୌଣସି ଅନୁଭୂତି ମୂଳକ ଧାରଣା ନଥାଏ । ଆତ୍ମା ସମ୍ପର୍କରେ ଆମର ସ୍ମୃତି ଭିତରେ କିମ୍ବା କୌଣସି ଯୁକ୍ତିଶୀଳ ଆଧାର ଥିବା ଜଣାଯାଏ ନାହିଁ ।

ଆତ୍ମାଭାବନା କେବଳ ଏକ ବିଶ୍ୱାସ ଓ ପ୍ରାୟତଃ ଏକ ଅନ୍ଧବିଶ୍ୱାସ । ଏହା ପଶ୍ଚାତ୍‌ରେ ନା ଅଛି ଅନୁଭବ ନା ଅଛି କୌଣସ ଯୁକ୍ତି, ତେବେ ଆତ୍ମାଟି କଣ? ଈଶ୍ୱର ଯେପରି ମଣିଷର ଏକ କଳ୍ପନା, ଆତ୍ମା ମଧ୍ୟ ସେହିପରି ଏକ କଳ୍ପନା । ଈଶ୍ୱରଙ୍କର ଯେପରି କୌଣସି ରୂପ ବା ଆକାର ନାହିଁ, ଆତ୍ମାର ମଧ୍ୟ ସେହିପରି କୌଣସି ରୂପ ବା ଆକାର ନାହିଁ । ଈଶ୍ୱର ଯେପରି ଅଦୃଶ୍ୟ ଓ ଅସ୍ପୃଶ୍ୟ ଆତ୍ମା ମଧ୍ୟ ସେହିଭଳି ଆମ ଇନ୍ଦ୍ରିୟାତୀତ । ଈଶ୍ୱରଙ୍କର ଯେପରି କୌଣସି ଶାରୀରିକ ଅଙ୍ଗନାହିଁ, ଆତ୍ମାର ମଧ୍ୟ ସେପରି କୌଣସି ଶାରୀରିକ ଅସ୍ତିତ୍ୱ ନାହିଁ ।

Digitized by srujanika@gmail.com

ଜଣେ ଈଶ୍ୱରଙ୍କୁ ନା କେବଳ ବୁଝିପାରିବ ନା ତାଙ୍କୁ ଅନୁଭବରେ ଆଣିପାରିବ। କେହି ଈଶ୍ୱରଙ୍କ ଶକ୍ତି ବିଷୟରେ ଜାଣିପାରିବ ନାହିଁ। କୌଣସି ଯୁକ୍ତିଶୀଳ ଆଧାର କିମ୍ବା କୌଣସି ଗ୍ରହଣ ଯୋଗ୍ୟ ପ୍ରଣାଳୀରେ ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରତିଷ୍ଠା କରାଯିବା ସମ୍ଭବ ନୁହେଁ। ଈଶ୍ୱର ଭାବନା ଯେଉଁପରି, ଆତ୍ମାଭାବନା ମଧ୍ୟ ସେହିପରି। ଆତ୍ମାଭାବନା କେଉଁଥିପାଇଁ ସୃଷ୍ଟି ହୋଇଛି? ଆମର ଏ ଭାବନା ଦରକାର କି? ଏହି ଭାବନା ଦ୍ୱାରା କିଏ ଉପକୃତ ହେଉଛି? ଏହି ପ୍ରଶ୍ନ ଗୁଡିକର ଉତ୍ତର କୌଣସି ସ୍ତରରୁ ମିଳିପାରିବ ନାହିଁ। ଆପଣଙ୍କୁ କେବଳ ଏହା ବିଶ୍ୱାସ କରିବାକୁ ହେବ।

ଆତ୍ମା ବୋଲି ଯେ କୌଣସି ବସ୍ତୁନାହିଁ ଏହାହିଁ ଆପଣମାନଙ୍କୁ ବିଶ୍ୱାସ କରିବାକୁ ହେବ। ଆମକୁ କୁହାଯାଇଛି ଆତ୍ମାବିଷୟରେ କେବଳ କୌଣସି ପ୍ରଶ୍ନ ନ ପଚାରି ବିଶ୍ୱାସ କର।

କେତେକ ପରିସ୍ଥିତିରେ ଧର୍ମ ଭାବନା ଯେପରି ସୃଷ୍ଟି ହୋଇଛି ସେହି ପରିସ୍ଥିତିରେ ଆତ୍ମାକୁ ଓ ଈଶ୍ୱରଙ୍କୁ ମଧ୍ୟ ସୃଷ୍ଟି କରାଯାଇଛି। ଧର୍ମ, ଈଶ୍ୱର ବିଷୟରେ କେତେକ ଲୋକ ଗୁଡିଏ ବିଶ୍ୱାସ ପୋଷଣ କରନ୍ତି। ସେଗୁଡିକ କେବଳ ଅନ୍ଧ ବିଶ୍ୱାସ ମାତ୍ର। ଯେଉଁ ମାନେ ଈଶ୍ୱର, ଧର୍ମ ଭାବନାକୁ ଗ୍ରହଣ କରନ୍ତି ନାହିଁ, ସେମାନେ ମୁଖ୍ୟତଃ ଅନୁସନ୍ଧିତ୍ସୁ ଓ ବିଚାରଶୀଳ ଦୃଷ୍ଟିକୁ ଗ୍ରହଣ କରିଥାନ୍ତି। ସୁତରାଂ ଯୁକ୍ତିଶୀଳ ଆଧାର ଅଭାବରେ ସେମାନେ ଈଶ୍ୱର ଓ ଆତ୍ମାରେ ବିଶ୍ୱାସ କରନ୍ତି ନାହିଁ। ଏହି ପରିପ୍ରେକ୍ଷୀରେ ଆତ୍ମା ଭାବନାଟି କଣ ତାହା ବିଚାର କରାଯାଉ। ଶରୀର, ମୁଖ, କାନ, ନାକ, ଆଖି, ଆମର ପଞ୍ଚଇନ୍ଦ୍ରିୟ। ଚିନ୍ତା କରିବା, କହିବା, କାର୍ଯ୍ୟକରିବା ଏହା ସାହାଯ୍ୟରେ ଆମେ କରୁ । ଯାହା ଇନ୍ଦ୍ରିୟ ଦ୍ୱାରା ଗ୍ରାହ୍ୟ ନୁହେଁ କିମ୍ବା ଯୁକ୍ତିଦ୍ୱାରା ଗ୍ରହଣ ଯୋଗ୍ୟ ନୁହେଁ ତାହାକୁ ଆମେ ସତ୍ୟ ବୋଲି ଗ୍ରହଣ କରିପାରିବା ନାହିଁ। କେତେକ କହନ୍ତି ଈଶ୍ୱର ବିଚାରବୁଦ୍ଧିର ଊର୍ଦ୍ଧ୍ୱରେ। କିନ୍ତୁ ଏହା ସତ୍ୟର ଊର୍ଦ୍ଧ୍ୱରେ କି? ଯାହା କୌଣସି ଆଧାରରେ ସତ୍ୟ ବୋଲି ସ୍ୱୀକୃତ ହୋଇପାରୁ ନାହିଁ, ତାହାକୁ ସତ୍ୟର ଊର୍ଦ୍ଧ୍ୱରେ ଗ୍ରହଣ କରିବା କେତେ ପ୍ରାସଙ୍ଗିକ ହେବ ? ତାହା ଦ୍ୱାରା ସତ୍ୟ ଧାରଣାଟି ସ-ମ୍ପୂର୍ଣ୍ଣ ଅର୍ଥଶୂନ୍ୟ ହୋଇଯିବ।

Digitized by srujanika@gmail.com

ଆତ୍ମା ଶବ୍ଦଟି ଏକ ତାମିଲ୍ ଶବ୍ଦ ନୁହେଁ। ସୁତରାଂ ତାମିଲମାନେ କିମ୍ବା ଦ୍ରାବିଡମାନେ ଆତ୍ମା ବିଷୟରେ କୌଣସି ଧାରଣା ପୋଷଣ କରୁନଥିଲେ। କେବଳ ଉତ୍ତର ଭାରତୀୟ ଭାଷାରେ ଆତ୍ମାଶବ୍ଦର ବ୍ୟବହାର ଥିବା ଦେଖାଯାଏ। ଇଂରାଜୀରେ ଥିବା ସୋଲ୍ ଭାବନାର ଯଥାର୍ଥ ବ୍ୟାଖ୍ୟା ଆତ୍ମାନୁହେଁ। ଯାହାକୁ ଉତ୍ତର ଭାରତରେ ଆତ୍ମା କୁହାଯାଉଛି, ତାହା ସୋଲ୍‌ର ଅର୍ଥ ନୁହେଁ।

ଶରୀରରେ ଥିବା ବିଭିନ୍ନ ଅଙ୍ଗର ବିଭିନ୍ନ କାର୍ଯ୍ୟ ରହିଛି। ଶରୀର ସହ ସଂଯୁକ୍ତ ଆତ୍ମାର କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ ନାହିଁ। ଶରୀର ଅଙ୍ଗମାନଙ୍କର ଯେପରି ଅନୁଭବ ବା ପ୍ରତ୍ୟକ୍ଷ କରିବା ଶକ୍ତି ରହିଛି, ଆତ୍ମାର ସେପରି କିଛି ଅଛି କି? ଶରୀରର ଅଙ୍ଗ ପ୍ରାକୃତିକ ଉପାୟରେ କିଛିକାର୍ଯ୍ୟ କରିଥାଏ। ଆତ୍ମା କି କାର୍ଯ୍ୟ କରେ? ଏହାର ସ୍ୱରୂପ କ'ଣ ଓ ଏହା ଶରୀରରେ କେଉଁଠି ଥାଏ? ଆତ୍ମା ଅପ୍ରାକୃତିକ, ଅଦରକାରୀ ଓ ଶରୀର ସହିତ ତାର କୌଣସି ସମ୍ବନ୍ଧ ହିଁ ନାହିଁ।

ପ୍ରଶ୍ନହେବ, ଗୋଟିଏ ଯନ୍ତ୍ର କିପରି ଚାଲେ ? ଯନ୍ତ୍ରର ବିଭିନ୍ନ ଅଂଶ ଗୁଡିକ ସମାହାର ହେଲେ ଏହା କ୍ରିୟାଶୀଳ ହୋଇଥାଏ। ଗୋଟିଏ ଘଣ୍ଟାକୁ ଦେଖନ୍ତୁ। ଏହା ଆମକୁ ସମୟର ସୂଚନା ଦିଏ। ଆଲାରାମ ବଜାଇ ଆମକୁ ସଚେତନ କରାଏ, ଏହା ଏପରି କାର୍ଯ୍ୟ କରିବା ପଶ୍ଚାତ୍‌ରେ ଏହାର ଅଙ୍ଗ ଗୁଡିକର ଏକ ବିନ୍ୟାସ ଥିବା ଦେଖାଯାଏ। ବିଭିନ୍ନ ଅଂଶ ଗୁଡିକର ସୁବିନ୍ୟାସରୁ ଏହା କାର୍ଯ୍ୟରତ ହୋଇଥାଏ। ଘଣ୍ଟାଟିକୁ ଯଦି ଆମେ ବ୍ୟାଖ୍ୟା କରିବା, ତେବେ ଏହାର ବିଭିନ୍ନ ଅଂଶ ଥିବା ଆମେ ଦେଖିବା । ସେହି ଅଂଶ ଗୁଡିକ ଗୋଟିଏ ଶୃଙ୍ଖଳିତ ବିନ୍ୟାସଦ୍ୱାରା କାର୍ଯ୍ୟକରିବା ଆମେ ଅନୁଭବ କରିବା। ଘଣ୍ଟା ବିଷୟରେ ଆଉ କିଛି କହିବା ସମ୍ଭବ କି ? ଘଣ୍ଟା ଭିତରେ ଏକ ଅଶରୀର ଆତ୍ମା ବା ଚେତନା ରହିଛି, ଯାହାଦ୍ୱାରା ଏହା କାର୍ଯ୍ୟକରୁଛି କହିବା ଅର୍ଥପୂର୍ଣ୍ଣ କି ? ଯଦି ଏପରି କେହି ବିଶ୍ୱାସ କରେ, ତାହା ଏକ ଅନ୍ଧବିଶ୍ୱାସ ହେବନାହିଁ କି !

ଏହି ଅବସରରେ ମୋର ଗୋଟିଏ ଅନୁଭୂତି ଆପଣମାନଙ୍କୁ କହୁଛି। ପ୍ରାୟ ୫୦ ବର୍ଷତଳେ ଗାଁରୁ ଜଣେ ଲୋକ ଆମ ଦୋକାନକୁ ଆସିଲେ । ଦୋକାନରେ

Digitized by srujanika@gmail.com

କାଛରେ ଟଙ୍ଗା ଯାଇଥିବା ଗୋଟିଏ ବଡ ଘଣ୍ଟାକୁ ସେ ଚାହିଁଲେ। ଘଣ୍ଟା ଭିତରେ ଥିବା ଦୋଳାୟମାନ ପେଣ୍ଡୁଲମ୍‌ଟିକୁ ସେ ନିରେଖିଲେ। ଏଥିରୁ ଯେଉଁ ସ୍ୱର ଆସିଲା ତାକୁ ଶୁଣି ସେ ଆଶ୍ଚର୍ଯ୍ୟ ହେଲେ। ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ଏହା ପଛରେ କେଉଁଠି ମଣିଷ ରହି ପେଣ୍ଡୁଲମ ହଲାଉଛି ଓ ଏପରି ସ୍ୱର ସୃଷ୍ଟି କରୁଛି? ମୁଁ ତାଙ୍କୁ ଥଟ୍ଟାରେ କହିଲି କାଛ ପଛକରେ ଲୋକ ରହି ଏହା କରୁଛି। ମୁଁ ଯାହା କହିଲି ସେ ତାହା ବିଶ୍ୱାସ କଲେ ଏବଂ ମୋତେ ସମ୍ମାନର ସହ କହିଲେ ତୁମେତ ମହାଜନ ଲୋକ, ତୁମ ପରି ମହାଜନମାନେ ଯେ କୌଣସି ଲୋକ ରଖି ଏହା କରିପାରିବେ।

ସେହି ଗାଆଁ ଲୋକଟି ବିଷୟରେ ମୁଁ ଏକଥା କାହିଁକି କହିଲି? ମୋର କହିବାର ଉଦ୍ଦେଶ୍ୟ ହେଉଛି ଯେଉଁମାନେ ଈଶ୍ୱର, ଧର୍ମ ଓ ଆତ୍ମାରେ ବିଶ୍ୱାସ କରନ୍ତି, ସେମାନେ ସେହି ଗ୍ରାମର ଲୋକଟି ଭଳି ଯିଏକି ଘଣ୍ଟା ପଛରେ କେହି ଲୋକ ଥିବା ବିଶ୍ୱାସ କରୁଥିଲା । ଅନେକ ଯନ୍ତ୍ର ବା କଳ ସାହାଯ୍ୟରେ ଏପରି ଅଦ୍ଭୁତ କାର୍ଯ୍ୟ କରିହେବ ଯାହା ମଣିଷ ମଧ୍ୟ କରିପାରିବ ନାହିଁ। ତେବେ କୌଣସି ଯନ୍ତ୍ର ପଛରେ କୌଣସି ଆତ୍ମା ନାହିଁ। କିନ୍ତୁ ମଣିଷମାନେ ମଣିଷର ଆତ୍ମା ଥିବା କଥାକୁ କୌଣସି ଆଧାର ନଥାଇ ବିଶ୍ୱାସ କରିଥାନ୍ତି।

ଖ୍ରୀଷ୍ଟଧର୍ମ ବା ଇସ୍‌ଲାମ ଧର୍ମରେ ଆତ୍ମା ଆଉ ପୂନର୍ଜନ୍ମର କଥା କୁହାଯାଏ ନାହିଁ। ବୌଦ୍ଧମାନେ ଆତ୍ମାର ଅସ୍ତିତ୍ୱକୁ ମନା କରିଥାନ୍ତି। ମୂଳ ଦ୍ରାବିଡ ମାନେ ଆତ୍ମାର ସ୍ଥିତିରେ କୌଣସି ବିଶ୍ୱାସ ରଖିନଥିଲେ। ତେବେ ଆତ୍ମାର ଭାବନା କିପରି ଆମ ଭିତରେ ପ୍ରସାରିତ ହେଲା? ଆତ୍ମାର ଅସ୍ତିତ୍ୱ ସ - ର୍କରେ ଦିଆଯାଉଥିବା କାରଣ କେତେ ଦୂର ଯୁକ୍ତିସଙ୍ଗତ? ଆତ୍ମାପରି ଏକ କାଳ୍ପନିକ ଭାବନାର ଯେ କିଛି ଆଧାର ନାହିଁ, ଏହା କୁହାଯାଇପାରେ। ଆତ୍ମାର ଏହି କଳ୍ପନା ହିନ୍ଦୁଧର୍ମର ଏକ ବୈଶିଷ୍ଟ୍ୟ । ଦେଖିବାକୁ ଗଲେ ଆତ୍ମା ବୋଲି ପ୍ରକୃତରେ କୌଣସି ସତ୍ତା ହିଁ ନାହିଁ। ଗୋଟିଏ ଧର୍ମର ପ୍ରଚାର ପାଇଁ ଏହି ଭାବନାକୁ ସୃଷ୍ଟି କରାଯାଇଛି। ଗୋଟିଏ ମିଥ୍ୟାକୁ ପ୍ରସାର ପାଇଁ ଅନେକ ଗୁଡିଏ ମିଥ୍ୟାର ଆଶ୍ରୟ ନିଆଯାଇଥାଏ। ଆତ୍ମା, ସ୍ୱର୍ଗ, ନର୍କ, ଭାଗ୍ୟ, କର୍ମଫଳ ପରି ଗୁଡିଏ କାଳ୍ପନିକ କାହାଣୀ ଧର୍ମ ସହିତ ସଂଶ୍ଲିଷ୍ଟ ହୋଇ ରହିଛି।

Digitized by srujanika@gmail.com

ଯେକୌଣସି ବ୍ୟକ୍ତିକୁ ଦେଖନ୍ତୁ, ପ୍ରତ୍ୟେକଙ୍କର ଜନ୍ମ ଓ ବୃଦ୍ଧି ହୁଏ। ଶାରୀରିକ ବିକାଶ ସହ ସେ ତାର ସାମର୍ଥ୍ୟ ନେଇ ବିଭିନ୍ନ କାର୍ଯ୍ୟ କରେ। ଶେଷରେ ମଣିଷ ମୃତ୍ୟୁ ମୁଖରେ ପଡେ। ମୃତ ବ୍ୟକ୍ତିକୁ ପୋଡିଦିଆଯାଏ ବା ପୋତି ଦିଆଯାଏ। ସଂସାରରେ ସେ ସବୁଦିନ ପାଇଁ ଲୁଚିଯାଏ। ଏହା ହିଁ ପ୍ରତ୍ୟେକ ମଣିଷ ପାଖରେ ଘଟେ, ତେବେ ମଣିଷକୁ ନେଇ ଏତେ ସବୁ କଳ୍ପନା କାହିଁକି ହୋଇଛି? ଧର୍ମର ଏତେ ଗୁଡିଏ ଆଧାରହୀନ ଭାବନାକୁ ଲୋକମାନେ କାହିଁକି ଅନ୍ଧ ଭାବରେ ବିଶ୍ୱାସ କରୁଛନ୍ତି?

ଯେଉଁମାନେ ଆତ୍ମାର ଭାବନା ସୃଷ୍ଟି କରିଛନ୍ତି, ସେମାନେ ଏହାକୁ କିପରି ପ୍ରତିଷ୍ଠା କରିବେ? କୁହାଯାଏ ଆତ୍ମା ଅଣୁଠାରୁ ମଧ୍ୟ କ୍ଷୁଦ୍ର । ଏହା ଅତ୍ୟନ୍ତ କ୍ଷୁଦ୍ର ଓ ସୂକ୍ଷ୍ମ ହୋଇଥିବାରୁ ଅପ୍ରତ୍ୟକ୍ଷ ବୋଲି ବିଶ୍ୱାସ ଦିଆଯାଏ। ଜଣେ ବ୍ୟକ୍ତିର ସମସ୍ତ କାର୍ଯ୍ୟ ଓ ଭାବନାର ପରିଣାମ ଆତ୍ମା ପାଇଥାଏ ବୋଲି ବିଶ୍ୱାସ କରାଯାଏ। କୁହାଯାଏ ଭଲ କାର୍ଯ୍ୟର ସୁଫଳ ପାଇଁ ଆତ୍ମାକୁ ଭଲ ଫଳ ମିଳିଥାଏ। ଯଦି ଆମେ କହିବା ଯେ କୌଣସି ଜନ୍ମ ହୋଇନଥିବା ଲୋକ ତାର କାର୍ଯ୍ୟ ପାଇଁ ଦଣ୍ଡ ପାଉଛି; ଏହା ଯେପରି ଅବିଶ୍ୱାସନୀୟ, ସେହିପରି ଯାହାର ଅସ୍ତିତ୍ୱ ନାହିଁ ସେ ଭଲ ଫଳ ପାଇବା ଅବାନ୍ତର ମନେ ହୁଏ। ଏହି ତୁଳନାରୁ କେଉଁ କଥାଟି ସ୍ପଷ୍ଟ ହେଉଛି?

ଯଦି ଗୋଟିଏ ଘଣ୍ଟା ଠିକ୍ ସମୟ ରଖୁନାହିଁ ତେବେ ଏହା କାହାର ତ୍ରୁଟି ଯୋଗୁଁ ହେଉଛି? ଏହାକୁ ତିଆରି କରିଥିବା ଲୋକର ଏହା ତ୍ରୁଟି ହୋଇପାରେ, କିମ୍ବା ଘଣ୍ଟାଟିକୁ ବ୍ୟବହାର କରୁଥିବା ଲୋକଟି ଘଣ୍ଟାର ଯତ୍ନ ନେବାର ଅବହେଳା ଯୋଗୁଁ ହୁଏତ ଘଣ୍ଟାଟି ଠିକ୍ ସମୟ ରଖୁନାହିଁ। ମୋଟ ଉପରେ ଘଣ୍ଟାଟି ସହିତ ସଂପୃକ୍ତ ବ୍ୟକ୍ତିର ତ୍ରୁଟି ବା ଅବହେଳା ଯୋଗୁଁ ଘଣ୍ଟାଟିର ସମୟ ଠିକ୍ ରହୁନାହିଁ। ଏହାଛଡା ଯଦି କେହି ଘଣ୍ଟାର ଆତ୍ମା କଥା ଭାବେ, ତେବେ ତାହା ହାସ୍ୟାସ୍ପଦ ହେବ। ସେହିପରି ଆତ୍ମାର ସ୍ଥିତି, ସ୍ୱରୂପ, ଲକ୍ଷଣ ବିଷୟରେ କୌଣସି ଆଧାରଗତ ତଥ୍ୟ ନଥାଇ ଆତ୍ମାର ଭାବନା ଆଣି ବ୍ୟକ୍ତି ଜୀବନର ସୁଖ ଦୁଃଖକୁ ବୁଝିବା ଅବାନ୍ତର ମନେହୁଏ। ଏହା ଯେ ସଂପୂର୍ଣ୍ଣ ଏକ ଠକାମି, ଏହା କହିବା ଭୁଲ୍ ହେବ

Digitized by srujanika@gmail.com

କି? ସେହିପରି ଜଣେ ବ୍ୟକ୍ତିର କାର୍ଯ୍ୟ, ସୁଖଦୁଃଖ ସହ ତାର ଅସ୍ତିତ୍ୱହୀନ ଆତ୍ମାକୁ ଯୋଡିବା ଏକ ପ୍ରତାରଣା ପୂର୍ଣ୍ଣ କାର୍ଯ୍ୟ ନୁହେଁ କି !

ମଣିଷର ଆତ୍ମା କେଉଁଠି ଅଛି ? ଜୀବିତ ପ୍ରାଣୀମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ କ'ଣ? କେତେକ ପରିବା, ବୃକ୍ଷ ଓ ଗୁଳ୍ମ ମାନଙ୍କର ଉଦାହରଣ ନିଅନ୍ତୁ। ଯାହାର ଜନ୍ମ ହୁଏ କାଳକ୍ରମେ ତାର ବିଲୟ ହୁଏ। ଆମେ ଦେଖୁ ଜୀବନଥିବା କୌଣସି ସତ୍ତା କିଛି ସମୟ ବଞ୍ଚି ପରିଶେଷରେ ମୃତ୍ୟୁ ମୁଖରେ ପଡେ। ପ୍ରତ୍ୟେକର ଜୀବନ ଓ କାର୍ଯ୍ୟ ତାର ଶାରୀରିକ ଗଠନ ଓ ଅଭିବୃଦ୍ଧି ଉପରେ ନିର୍ଭର କରିଥାଏ। ଯେ କୌଣସି ଜୀବିତ ସତ୍ତାର କାର୍ଯ୍ୟ ତାର ଶାରୀରିକ ବିକାଶ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ।

ମଣିଷର ବ୍ୟବହାରକୁ ଦେଖି ଆମେ କେତେକଙ୍କୁ ଭଲ ବା ମନ୍ଦ ବୋଲି ବିବେଚନା କରିଥାଉ। ଗୋଟିଏ ଆତ୍ମା ମନ୍ଦ କାର୍ଯ୍ୟ କରିବାକୁ ବା ଯନ୍ତ୍ରଣା ଜର୍ଜରିତ ହେବାକୁ କାହିଁକି ସୃଷ୍ଟି ହୋଇଛି ! ଏପରି କୌଣସି ସାର୍ବଜନୀନ ମାନଦଣ୍ଡ ଅଛିକି, ଯାହା ସାହାଯ୍ୟରେ କେଉଁ କାର୍ଯ୍ୟ ଭଲ ବା ମନ୍ଦ ତାହା ନିର୍ଦ୍ଧାରିତ ହୋଇପାରିବ? ତେବେ ଭଲ କାର୍ଯ୍ୟ କରିଥିବା ଆତ୍ମାମାନେ ମୃତ୍ୟୁ ପରେ ଭଲ ଫଳ ପାଇବେ ବୋଲି କିପରି କୁହାଯିବ? ମନ୍ଦ କାର୍ଯ୍ୟ ପାଇଁ ଆତ୍ମା ଦଣ୍ଡିତ ହେବ, କଥାକୁ କିପରି ବିଶ୍ୱାସ କରାଯିବ? ଏହି କଥାଗୁଡିକ କେତେ ଅବାନ୍ତର ତାହା ଭାବି ଦେଖନ୍ତୁ। ଆତ୍ମାର ଅସ୍ତିତ୍ୱ ବା କାର୍ଯ୍ୟ ଇତ୍ୟାଦି ଭାବନା ପଶ୍ଚାତରେ କିଛି ପ୍ରମାଣ କେହି ଦେଇ ପାରିବ କି? ସେହିପରି ଆତ୍ମା ଭଲ କାର୍ଯ୍ୟଦ୍ୱାରା ମୋକ୍ଷ ପ୍ରାପ୍ତ ହୁଏ କହିବା କଥାକୁ କିପରି ବିଶ୍ୱାସ କରାଯିବ? ଆତ୍ମା ସଂପର୍କୀୟ ଏହି ସବୁ ବିଶ୍ୱାସ ଗୁଡିକ ମିଥ୍ୟା ଓ ଅବାନ୍ତର। ଆତ୍ମା ଭାବନାର କଳ୍ପନା ସଂପୂର୍ଣ୍ଣ ଆଧାରହୀନ।

ଶୂନ୍ୟରେ ଘର ତୋଳିବା ଯାହା, ଆତ୍ମା ଭାବନା ଠିକ୍ ସେହିପରି। ନିଜର କୌଣସି ଆସବାବ ପତ୍ର ବା ସଂପତ୍ତିର ସୂଚନା ଦେବା ପାଇଁ ଏସବୁ 'ମୋର' ମୋ ନିଜର ଭଳି କଥା ଆମେ କହିଥାଉ। ସେହିପରି ମୋର ଆତ୍ମା କହିଲା ବେଳେ "ମୋର" କେବଳ ଏକ ଭାଷାଗତ ସୂଚନା। ମୁଁ, ମୋର, ମୋ ନିଜର କୌଣସି ଆତ୍ମାକୁ ସୂଚନା କରେ ନାହିଁ। ଆତ୍ମା ବୋଲି ଏକ ସ୍ୱତନ୍ତ୍ର ସତ୍ତା କିଛି ନାହିଁ।

Digitized by srujanika@gmail.com

ଜୀବନ ବା ପ୍ରାଣ ସହ କେତେକ ଆତ୍ମାକୁ ସଂଶ୍ଲିଷ୍ଟ କରିଥାନ୍ତି । ଜୀବନକୁ ଆତ୍ମା ସହ ବା ଆତ୍ମାକୁ ଜୀବନ ସହ କେତେକ ମଧ୍ୟ ସଂଶ୍ଲିଷ୍ଟ କରି ଉଭୟକୁ ଏକା ଭାବିଥାନ୍ତି । ଜୀବନର କିଛି ସ୍ୱତନ୍ତ୍ରତା ଥିବା ବି କେତେକ ଗ୍ରହଣ କରନ୍ତି ନାହିଁ । ସେହିପରି ଜୀବନ ସ୍ୱାଧୀନ ଭାବେ କ୍ରିୟାଶୀଳ ବୋଲି କେତେକ ଧାରଣା କରନ୍ତି ।

ଏହି ଅବସରରେ ଜୀବନ ଭାବନାଟିକୁ ଆମେ ଆଲୋଚନା କରିବା ।

## ଜୀବନ/ପ୍ରାଣ

ପ୍ରାଣ ଏକ ବସ୍ତୁନୁହେଁ । ଯାହା ଏକ ବସ୍ତୁ ତାହା ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଗତିଶୀଳ ହୋଇ ପାରିବ । ପ୍ରାଣକୁ ଆମେ କାର୍ଯ୍ୟରତ ଏକ ଯନ୍ତ୍ର ସହ ତୁଳନା କରିପାରିବା । ଗୋଟିଏ ମେସିନ୍‌ର କାର୍ଯ୍ୟକାରିତା ଦ୍ୱାରା ତାର ବିଭିନ୍ନ ଅଂଶ କାର୍ଯ୍ୟରତ ହୋଇଥାଏ । ସେହିପରି ପ୍ରାଣର କ୍ରିୟାଶୀଳତା ଅର୍ଥ ଶରୀରର ବିଭିନ୍ନ ଅଂଶର କାର୍ଯ୍ୟକାରିତାକୁ ବୁଝାଏ । ଶରୀର କାର୍ଯ୍ୟକାରୀ ହେବାକୁ ହେଲେ ପ୍ରାଣର ଶକ୍ତି ଆବଶ୍ୟକ ହୁଏ । ପ୍ରାଣର ଏହି ଶକ୍ତି ଆମେ ଖାଉଥିବା ଖାଦ୍ୟରୁ ସୃଷ୍ଟି ହୋଇଥାଏ । ଶରୀର ଓ ଏହାର ଅଙ୍ଗମାନଙ୍କର ଗଠନ ପ୍ରଣାଳୀ ଯେପରି ହେଉନା କାହିଁକି ବିନା ଖାଦ୍ୟରେ ଶରୀର କ୍ରିୟାଶୀଳ ହୋଇ ପାରିବନାହିଁ । ସୁତରାଂ ଆମେ ଖାଉଥିବା ଖାଦ୍ୟର ପରିଣାମରୁ ପ୍ରାଣ ଶକ୍ତି ଅର୍ଜନ କରେ, ଯାହା ଦ୍ୱାରା ଶରୀର କ୍ରିୟାଶୀଳ ହୋଇଥାଏ ।

ଶରୀରର କୌଣସି ଅଙ୍ଗର କ୍ଷତି ହେବାଦ୍ୱାରା ପ୍ରାଣ ବି ଚାଲିଯାଇପାରେ । ଖାଦ୍ୟ ନଖାଇଲେ ଜୀବନ ରହିବ ନାହିଁ । ବିନା ଖାଦ୍ୟରେ ଶରୀର କାର୍ଯ୍ୟ କରିପାରିବ ନାହିଁ । ଏକ ଗତିଶୀଳ ବ୍ୟକ୍ତିର ଶାରୀରିକ କ୍ରିୟାଶୀଳତା ଯୋଗୁଁ ତାହା ଜୀବିତ ବୋଲି ଆମେ କହୁ । ଶାରୀରିକ କ୍ରିୟାଶୀଳତା ବନ୍ଦ ହୋଇ ଗଲେ ଶରୀର ମୃତ୍ୟୁମୁଖରେ ପଡେ । ଏଠାରେ ମୃତ୍ୟୁର ଅର୍ଥ କଣ ହୋଇପାରେ ? ଯେତେବେଳେ ଆମେ ଶ୍ୱାସପ୍ରଶ୍ୱାସ ନେବାକୁ ଅସମର୍ଥ ହେଉ, ସେତେବେଳେ ଆମର ଫୁସ୍‌ଫୁସ୍ ତାର ସମସ୍ତ କ୍ରିୟାଶୀଳ ଶକ୍ତି ହରାଇ ବସେ । ଯେତେବେଳେ ଆମର ଫୁସ୍‌ଫୁସ୍

Digitized by srujanika@gmail.com

ଅଚଳ ହୋଇଯାଏ, ମଣିଷ ନିଶ୍ୱାସପ୍ରଶ୍ୱାସ ନେଇପାରେ ନାହିଁ । ପରିଣାମତଃ ସେ ମୃତ୍ୟୁମୁଖରେ ପଡେ ।

ମଣିଷର ଏହି ଜୀବନୀ ଶକ୍ତିଯୋଗୁଁ ନିଜର ଏହା ଅଛି ତାହା ଅଛି ବୋଲି ସେ କହେ । ଏହା ମୋର ଅଛି, ମୁଁ ଏହାର ମାଲିକ ଭାବନା ତା ମନକୁ ଆସିଥାଏ । ଇତର ପ୍ରାଣୀମାନେ ସେମାନଙ୍କ ସ୍ଥିତି ବିଷୟରେ ପ୍ରବୃତ୍ତିଗତ ଭାବେ କେତେକ କଥା ଜାଣିବାକୁ ସମର୍ଥ ହୋଇଥାନ୍ତି ।

ଆପଣଙ୍କର ଯଦି ଏକ କୁକୁର ଅଛି ଓ ଆପଣ ତାକୁ ଏକ ନାମରେ ଡାକନ୍ତି, ତେବେ ସେହି ନାମରେ ଡାକିଲେ ସେ ଆପଣଙ୍କ ପାଖକୁ ଆସିଥାଏ । ଅନେକ କୁକୁର ଆମର ଆଦେଶକୁ ବୁଝିପାରନ୍ତି ଓ ସେପରି କାର୍ଯ୍ୟ ମଧ୍ୟ କରିଥାନ୍ତି । ଅନେକ ପ୍ରାଣୀ ନିଜର ରହିବା ଜାଗା, ବସା, ଶିଶୁମାନଙ୍କୁ ଓ ଏପରିକି ଦୂରଜାଗାମାନଙ୍କ ବିଷୟରେ ଜାଣିପାରନ୍ତି । ଜଣେ ବ୍ୟକ୍ତିକୁ ଯଦି ଆପଣ ପ୍ରାଣ ବା ଆତ୍ମା କହିଲେ ସେ କଣ ବୁଝନ୍ତି ପଚାରିବେ, ତେବେ ସେ ଏହାର କୌଣସି ଉତ୍ତର ଦେଇପାରିବେ ନାହିଁ । ଏହାର କାରଣ କ'ଣ? ଆତ୍ମା ଯେହେତୁ ଶରୀରର ଏକ ଅଙ୍ଗ ନୁହେଁ, ତେଣୁ ସେ ଆତ୍ମା ବିଷୟରେ କହିବା ସମ୍ଭବ ହୁଏନାହିଁ । ଖାଦ୍ୟ ଗ୍ରହଣ ଦ୍ୱାରା ଶରୀରରେ ଯେଉଁ ରାସାୟନିକ କ୍ରିୟା ପ୍ରତିକ୍ରିୟା ହୁଏ ତାହାର ପରିଣାମରୁ ଶରୀରରେ ବିଭିନ୍ନ ପରିବର୍ତ୍ତନ ହୋଇଥାଏ । ସେ ବିଷୟରେ ଜଣେ ସାଧାରଣ ବ୍ୟକ୍ତି ଅବଗତ ନୁହେଁ । ମଣିଷ କିପରି ବଢୁଛି ବା ବିଭିନ୍ନ ଅନୁଭୂତି ଲାଭ କରୁଛି ତାହା ବୁଝାଇବା ଜଟିଳ ମନେ ହୁଏ । ଚୂନ ସହ କୁଙ୍କୁମ ମିଶାଇଲେ ଲାଲ ରଙ୍ଗ ସୃଷ୍ଟି ହୋଇଥାଏ । ନୀଳରଙ୍ଗ ସହ ପିତ ରଙ୍ଗର ମିଶ୍ରଣରୁ ସବୁଜ ରଙ୍ଗର ଉତ୍ପତ୍ତି ହୁଏ । ଅମ୍ଳଜାନ ଓ ଉଦ୍‌ଜାନର ରାସାୟନିକ ମିଶ୍ରଣରୁ ଜଳ ସମ୍ଭବ ହୁଏ । କେତେକ ରାସାୟନିକ ବସ୍ତୁର ମିଶ୍ରଣରୁ ବିଷ ବାହାରି ଥାଏ । କେତେକ ରାସାୟନିକ ବସ୍ତୁକୁ ଉତ୍ତପ୍ତ କରିବା ଦ୍ୱାରା କଠିନ ହୁଏ କିମ୍ବା ବାଷ୍ପ ହୋଇ ଚାଲିଯାଏ । ବିଭିନ୍ନ ବସ୍ତୁ ମାନଙ୍କର ମିଶ୍ରଣ ପ୍ରକ୍ରିୟାରୁ ସେଥିରେ ନାନା ପରିବର୍ତ୍ତନ ଆସିଥାଏ । ପ୍ରକୃତିର କେତେକ ଶୃଙ୍ଖଳାକୁ ଆମେ ପ୍ରାକୃତିକ ନିୟମ ବୋଲି କହୁ । ପ୍ରାକୃତିକ ନିୟମ ଆଧାରରେ ସଂଘଟିତ ହେଉଥିବା ପରିବର୍ତ୍ତନକୁ ଆମେ ବିଭିନ୍ନ ନାମରେ

Digitized by srujanika@gmail.com

ସୂଚିତ କରିଥାଉ । ଗୋଟିଏ ବାଦ୍ୟଯନ୍ତ୍ରର ଉଦାହରଣ ନିଅନ୍ତୁ । ସେଥିରେ କିଛି ଚାଳନାଦ୍ୱାରା ସେଥିରୁ ବିଭିନ୍ନ ସ୍ୱର ଓ ରାଗ ଆସିଥାଏ । ସେହି ଶବ୍ଦ ଶୁଣି ପ୍ରକୃତିରେ ସୃଷ୍ଟି ହେଉଥିବା କୌଣସି ଶବ୍ଦକୁ ଆମେ ଏକ ପ୍ରାକୃତିକ ଶବ୍ଦଭାବେ ନେଉ, କିନ୍ତୁ ଏକ ବାଦ୍ୟଯନ୍ତ୍ରର ଠିକ୍ ଚାଳନାଦ୍ୱାରା କୌଣସି ରାଗ ସୃଷ୍ଟି ହୋଇଥାଏ । ଆପଣମାନେ ପଲ୍ଲବୀ, ଅନୁପଲ୍ଲବୀ ଓ ଚରଣମ୍ ରାଗର ଗୀତ ମାନଙ୍କୁ ଶୁଣନ୍ତି । ଏହା କିପରି ଶୁଣନ୍ତି? ବାଦ୍ୟଯନ୍ତ୍ରର ଯଥାର୍ଥ ପରିଚାଳନା ଦ୍ୱାରା ଏସବୁ ରାଗ ଉତ୍ପତ୍ତି ହୋଇଥାଏ । ବାଦ୍ୟଯନ୍ତ୍ରରୁ ବାହାରୁଥିବା ଶବ୍ଦ ବା ରାଗରୁ କୌଣସି ଆତ୍ମାନୁଭୂତି ଆସିନଥାଏ ।

ଶରୀରର ବିଭିନ୍ନ କ୍ରିୟାଶୀଳତା ଯୋଗୁ ଆମେ କହିବା, ଚିନ୍ତାକରିବା, ଦେଖିବା, ଶୁଣିବା, ଆଦେଶ ଦେବା, କାନ୍ଦିବା, ଗୀତଗାଇବା, ଦୌଡିବା, କଳିକରିବା, ଉଦ୍ଭାବନ କରିବା ଇତ୍ୟାଦି ନାନା ଶାରୀରିକ ଓ ମାନସିକ କାର୍ଯ୍ୟ କରିଥାଏ । ବିଭିନ୍ନ କାର୍ଯ୍ୟ କରିବା ପାଇଁ ମଣିଷ ଶରୀରର ଅଙ୍ଗ ଭିତରେ ସୁନ୍ଦର ସୁବିନ୍ୟାସ ରହିଛି । ଆମେ ଯଦି ଏହାକୁ ବୁଝିବା, ତେବେ ଆତ୍ମା ଓ ପ୍ରାଣ ଯେ ଏକ ସ୍ୱତନ୍ତ୍ର ସତ୍ତା ଏହା କେବେହେଲେ ଭାବିବା ନାହିଁ । ଏସବୁ କେବଳ ଭ୍ରମାତ୍ମକ ଧାରଣା ଓ କୁସଂସ୍କାର ।

ଆତ୍ମା ଭାବନାର ଉତ୍ପତ୍ତି କିପରି ହେଲା, ସେ ସ-ର୍କରେ ଆପଣ ଯଦି ଅନୁସନ୍ଧିତ୍ସୁ ହେବେ, ତେବେ ଆପଣ ଜାଣିବେ ଯେ ଏହା ଧର୍ମ ଓ ଇଶ୍ୱର ପରି ଭାବନାରୁ ସୃଷ୍ଟି ହୋଇଛି ।

କେତେକଙ୍କ ବିଶ୍ୱାସ ଅନୁଯାୟୀ କେବଳ ମଣିଷ ମାନଙ୍କର ଆତ୍ମା ରହିଛି । ଅଥଚ ଇତର ପ୍ରାଣୀମାନଙ୍କର ଆତ୍ମାନାହିଁ । କେତେକ ବେଦାନ୍ତୀ ଯେଉଁମାନେ ବେଦଉପରେ ପାରଦର୍ଶିତା ରଖିଛନ୍ତି କହିଥାନ୍ତି, ଯେ ଇଶ୍ୱର, ଆତ୍ମା, ପ୍ରାଣ ଇତ୍ୟାଦି କେବଳ ଏକ ଅନୁଭବ । କେତେକ ସମୟରେ ଦର୍ଶନକୁ ବେଦାନ୍ତ ସହିତ ମିଶାଇ ଦିଆଯାଏ । ବେଦାନ୍ତୀ ମାନେ ସାଧାରଣତଃ କହିଥାନ୍ତି ଯେ ପ୍ରଥମେ ନିଜକୁ ବୁଝେ ସେ ଇଶ୍ୱରଙ୍କୁ ବୁଝିପାରିବ । ଏହି କଥାର ତାତ୍ପର୍ଯ୍ୟ କଣ? ଯଦି ମଣିଷ ନିଜର ସ୍ୱରୂପ ଓ ନିଜର ଅସ୍ମିତାକୁ ବୁଝିପାରିବ, ତେବେ ସେ ଇଶ୍ୱରଙ୍କୁ ମଧ୍ୟ ଜାଣିପାରିବ ।

ମଣିଷର କାମନା ରହିବା ସ୍ୱାଭାବିକ । ବେଳେବେଳେ ମଣିଷ ନିଜ ଇଚ୍ଛାର ଦାସ ପାଲଟି ଯାଏ । ସମାଜରେ ସେ ଭଲ କାମ କରେ, ମନ୍ଦକାମ ମଧ୍ୟକରେ ।

Digitized by srujanika@gmail.com

ମଣିଷ କିପରି ଭଲକାର୍ଯ୍ୟ କରିବ, ସେଥିପାଇଁ କାଳ୍ପନିକ ଆତ୍ମା, ପ୍ରାଣ, ଭାବନାର ସୃଷ୍ଟି ହୋଇଥିଲା। ମଣିଷ କିପରି ଭଲକାର୍ଯ୍ୟରେ ଆଗ୍ରହୀ ହେବ ସେଥିପାଇଁ ତାକୁ ଏହି ବିଶ୍ୱାସ ଦିଆଯାଉଥିଲା ଯେ, ସେ ଯଦି ମନ୍ଦକାର୍ଯ୍ୟରେ ପ୍ରବୃତ୍ତ ହୁଏ, ତେବେ ସେ ମୃତ୍ୟୁପରେ ଭୟଙ୍କର ଦଣ୍ଡ ପାଇବ। ଏହାବି ଗୋଟିଏ ଆଧାରହୀନ ବିଶ୍ୱାସ ବା ମିଥ୍। ଏହାର ତାର୍କିକ ପରିଣାମ ହେବ ଯିଏ କୌଣସି ମନ୍ଦକାର୍ଯ୍ୟ କରିବ ନାହିଁ ସିଏ କୌଣସି ଈଶ୍ୱରଙ୍କୁ ଭୟକରିବାର ଅବକାଶ ନାହିଁ। ସ୍ୱର୍ଗ, ନର୍କ, ଈଶ୍ୱର ଭାବନା ଗୁଡିକ ଭୟ ଓ ଉତ୍କଣ୍ଠାରୁ ଯେ ସୃଷ୍ଟି ହୋଇଛି, ଏହା ମନେ ହୁଏ।

ପ୍ରତ୍ୟେକ ପ୍ରାଣୀ ଭଲକାର୍ଯ୍ୟ ଓ ମନ୍ଦକାର୍ଯ୍ୟ କରିବା ସ୍ୱାଭାବିକ। ଯେ ପର୍ଯ୍ୟନ୍ତ ଜଣେ ଜୀବିତ, ଜଣଙ୍କର ଶାରୀରିକ କ୍ରିୟାରୁ ଜଣେ ବିଭିନ୍ନ କାର୍ଯ୍ୟ କରିବାକୁ ଅବସର ପାଇଥାଏ। ଫଳତଃ ତାର କାର୍ଯ୍ୟକୁ ଭଲ ବା ମନ୍ଦ ବୋଲି କୁହାଯାଏ। ତେବେ କେତେକ କାର୍ଯ୍ୟକୁ କେତେକ ଭଲ କହିବା ବେଳେ ସେହି କାର୍ଯ୍ୟକୁ ଅନ୍ୟମାନେ ମନ୍ଦ ବିବେଚନା କରିଥାନ୍ତି।

ମଣିଷର ଜୀବନକୁ ଭଲ ଦିଗରେ ପରିଚାଳିତ କରିବା ପାଇଁ ଈଶ୍ୱର, ଧର୍ମ ଓ ଆତ୍ମା ଭାବନାର ସୃଷ୍ଟି ହୋଇଥିଲା।

କେତେକ ସ୍ୱାର୍ଥପର ଲୋକ ଅନ୍ୟମାନଙ୍କୁ ଶୋଷଣ କରିବା ପାଇଁ ଏସବୁ ଆଧାରହୀନ ବିଶ୍ୱାସ ଲୋକମାନଙ୍କ ଭିତରେ ପ୍ରଚାର କରିଛନ୍ତି।

ମୋ ମତରେ ମଣିଷ ଏକ ନିସ୍ୱାର୍ଥପର ଜୀବନ ଅତିବାହିତ କରିବା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ।

ଆଜିର ସଭାରେ ମୁଁ ଯେଉଁ ସବୁ କଥା କହିଲି ତାହାମୋର ବ୍ୟକ୍ତିଗତ ମତ। ମୁଁ ଯାହା କହିଲି ଆପଣମାନେ ତାକୁ ଗ୍ରହଣ କରି ନେବା ମୁଁ କହୁନାହିଁ।

ଆପଣମାନେ ନିଜର ବିଚାର ବୁଦ୍ଧି ପ୍ରୟୋଗ କରି ଠିକ୍ ଭୁଲ୍ ସ୍ଥିର କରିବା ଉଚିତ୍।

ଆପଣମାନେ ଏସବୁ ଉପରେ ଗମ୍ଭୀର ଚିନ୍ତା ବ୍ୟକ୍ତ କରନ୍ତୁ।

ଧନ୍ୟବାଦ।



Digitized by srujanika@gmail.com

## ପରିଚ୍ଛେଦ - ୩

# ମନୁସଂହିତା

(ଅବ୍ରାହ୍ମଣମାନଙ୍କ ପାଇଁ ଏକ ଅନ୍ୟାୟ ଶାସ୍ତ୍ର)

ମନୁ ଧର୍ମଶାସ୍ତ୍ର ବା ମନୁସଂହିତା ହେଉଛି ଉଚ୍ଚଜାତି ବ୍ରାହ୍ମଣ ମାନଙ୍କ ଅସ୍ତ୍ର । ଏହାର ଦୁଇଟି ଉଦ୍ଦେଶ୍ୟ ରହିଛି । ପ୍ରଥମରେ ଏହା ସାହାଯ୍ୟରେ ବ୍ରାହ୍ମଣମାନେ ନିଜକୁ ଅନ୍ୟମାନଙ୍କ ଠାରୁ ଉଚ୍ଚ ବୋଲି ଭାବିଥାନ୍ତି , ଏବଂ କୌଣସି କର୍ମ ନକରି ସୁଖରେ ଜୀବନଯାପନ କରନ୍ତି । ଯେଉଁମାନେ ଭୂମିପୁତ୍ର ସେମାନଙ୍କୁ ଶୂଦ୍ର କହି ଦାସତ୍ୱର ବେଡି ପିନ୍ଧାଇଛନ୍ତି । ଅବ୍ରାହ୍ମଣମାନେ ଆତ୍ମସମ୍ମାନ ଓ ରୁଚିସ-ନ୍ନ ଜୀବନରୁ ବଞ୍ଚିତ ହୋଇ ରହିଛନ୍ତି । ଦ୍ୱିତୀୟରେ ମନୁସଂହିତାରେ ଥିବା ନିର୍ଦ୍ଦେଶନାମାଦ୍ୱାରା ଅନ୍ୟାୟକୁ ସମସ୍ତଙ୍କ ଉପରେ ଲଦି ଦିଆଯାଇଛି । ଯେତେବେଳେ ଏହି ପ୍ରକାରର ଏକ ସାମାଜିକ ବ୍ୟବସ୍ଥାକୁ ସ୍ଥାୟୀ କରାଯାଇଛି , ସେତେବେଳେ ସରକାର, ବିଚାରାଳୟ, ସାମ୍ବିଧାନିକ ବ୍ୟବସ୍ଥା ସବୁ ସ୍ତରରେ ବ୍ରାହ୍ମଣମାନେ ନିଜର ଆଧିପତ୍ୟ ବିସ୍ତାର କରି ରହିଛନ୍ତି । ଏହି ବ୍ୟବସ୍ଥାଦ୍ୱାରା ଅବ୍ରାହ୍ମଣମାନଙ୍କୁ ସବୁଦିନ ପାଇଁ କିପରି ଦାସ କରି ରଖାଯିବ, ତାହା ମନୁସଂହିତା ଜରିଆରେ ପ୍ରୟାସ କରାଯାଇଛି । ମନୁସଂହିତା ବିଧିବିଧାନକୁ ପ୍ରାୟ ଗତ ୩୦୦୦ ବର୍ଷ ଧରି ସମାଜରେ ପ୍ରଚଳନ କରାଯାଇ ଆସିଛି ।

ଶୂଦ୍ର ରାଜାମାନେ ଓ ଏପରିକି ଅନ୍ୟ ଶାସକମାନେ ମନୁଙ୍କ ନିୟମ ଦ୍ୱାରା ଶାସନ କରି ଆସୁଛନ୍ତି ବୋଲି ଗର୍ବ ଅନୁଭବ କରିଥାନ୍ତି । ଫଳତଃ ବ୍ରାହ୍ମଣମାନେ ଅନ୍ୟ ଅବ୍ରାହ୍ମଣଙ୍କ ଉପରେ ନିଜର ପ୍ରଭୁତ୍ୱ ବିସ୍ତାର କରିବା ପାଇଁ ନିରାପତ୍ତା ପାଇଛନ୍ତି । ସାମାଜିକ ମନ୍ଦ ବ୍ୟବସ୍ଥାଟି ଏହିପରି ହଜାର ହଜାର ବର୍ଷ ଧରି ସମାଜରେ ଚଳି ଆସୁଛି ।

Digitized by srujanika@gmail.com

ବ୍ରିଟିଶ ଶାସନର ଆଗମନଦ୍ୱାରା ରାଜତନ୍ତ୍ର ପଛକୁ ହଟିଛି । ପାଶ୍ଚାତ୍ୟ ଦେଶର୍ ଅପରାଧ ଆଇନ ଅନୁଯାୟୀ ଭାରତ ବର୍ଷରେ ଅପରାଧ ମୂଳକ ଦଣ୍ଡ ସଂହିତାରେ କେତେକ ପରିବର୍ତ୍ତନ ହୋଇଛି । ଅନ୍ୟାନ୍ୟ ସମସ୍ତ ଦେୱାନୀ ବା ନାଗରିକ ଅଧିକାର ସମ୍ବନ୍ଧୀୟ ଆଇନକ୍ଷେତ୍ରରେ ମନୁସଂହିତା ଆଧାରିତ ହିନ୍ଦୁ ଆଇନ୍ ପ୍ରଚଳିତ ହୋଇଛି ।

ମନୁସଂହିତା ଭିତ୍ତିକ ଏକ ନିୟମ ବ୍ୟବସ୍ଥା ସମାଜରେ ନ୍ୟାୟ ପ୍ରଚଳନ କରିପାରିବ କି? କେବଳ ଗୋଟିଏ ଗୋଷ୍ଠୀକୁ ସୁଯୋଗ ଦେବାଦ୍ୱାରା କେଉଁ ନ୍ୟାୟ ପ୍ରତିଷ୍ଠା ହୋଇ ପାରିବ? ଏହି ଅନ୍ୟାୟ ବ୍ୟବସ୍ଥାକୁ ଆମେ କାହିଁକି ସହିଯିବା? ବିଚାରାଳୟ ଓ ବିଚାରପତିମାନେ ମନୁସଂହିତା ଆଧାରରେ ଦେବା ବିଚାରକୁ ଆମେ କାହିଁକି ସ୍ୱୀକୃତି ଦେବା?

ପୃଥିବୀରେ ଏପରି କେଉଁ ଦେଶ ଅଛି ଯେଉଁଠି ସେଠିକାର ଭୂମିପୁତ୍ରମାନଙ୍କୁ ଅଶୋଭନୀୟ ଭାବରେ ନ୍ୟୂନ କରାଯାଇଛି? କେଉଁ ସ୍ଥାନରେ ଶ୍ରମିକଶ୍ରେଣୀ ମାନଙ୍କୁ ମୁଷ୍ଟିମେୟ ଲୋକ ଏପରି ପଦଦଳିତ କରି ରଖିଛନ୍ତି? ଏପରି କେଉଁ ରାଜ୍ୟ ଅଛି ଯେଉଁଠି ଗୋଟିଏ ସରକାର ଓ ତାର ଆଇନ ବ୍ୟବସ୍ଥା ସମାଜର ଅଗଣିତ ମଣିଷଙ୍କ ପ୍ରତି ହେଉଥିବା ଅନ୍ୟାୟ ପ୍ରତି ସ୍ପର୍ଶକାତରଶୂନ୍ୟ ହୋଇ ରହିଛି? ଆପଣମାନେ ଏପରି କେଉଁଠି ଲୋକମାନଙ୍କୁ ମୁଷ୍ଟିମେୟ ଲୋକଙ୍କର ବଶ୍ୟତା ସ୍ୱୀକାର କରି ଅମାନବୀୟ ଭାବେ ବଞ୍ଚିବା ଦେଖିଛନ୍ତି କି? ଏପରି ସ୍ୱାର୍ଥପର ଓ ଅନ୍ୟାୟକୁ ଜାବୁଡିକି ଧରିଥିବା ଲୋକମାନଙ୍କୁ ଆପଣ କେଉଁଠି ପାଇବେ କି ?

ଏହି ପ୍ରଶ୍ନଉପରେ ତାମିଲସମାଜ ଚିନ୍ତାକରିବା ଆବଶ୍ୟକ। ଆମର ସ୍ୱାଧୀନତା, ଅଧିକାର ଓ ଆତ୍ମମର୍ଯ୍ୟାଦା ପ୍ରତିଷ୍ଠା କରିବାକୁ ହେଲେ ଆମର ଜନ୍ମ ସହ ସଂଶ୍ଳିଷ୍ଟ ଉଚ୍ଚନୀଚ ଜନିତ ଭେଦଭାବ ଓ ଅମର୍ଯ୍ୟାଦା ଦୂରହେବା ଆବଶ୍ୟକ। ଆପଣମାନଙ୍କୁ ଏହି ଅସ୍ୱାଭାବିକ ସାମାଜିକ ବ୍ୟବସ୍ଥା ସ-ର୍କରେ ଚିନ୍ତାକରିବା ପାଇଁ ମୁଁ ନିବେଦନ କରୁଛି । ଯୁଗ ଯୁଗ ଧରି ଆମକୁ ଦିଆଯାଇଥିବା ଅସମ୍ମାନ ବିଷୟରେ ଚିନ୍ତାକଲେ ଆପଣମାନେ ବ୍ୟଥିତ ହେବାସହ ଏହାକୁ ବଦଳାଇବାକୁ ନିଶ୍ଚିତ ଆଲୋଡିତ ହେବେ ।

Digitized by srujanika@gmail.com

ସମାଜର ବୟସ୍କ ଲୋକମାନଙ୍କୁ ଛାଡନ୍ତୁ । ଭବିଷ୍ୟତ ଯୁବପୀଢିଙ୍କ ଉପରେ ନିର୍ଭର କରେ । ମୁଁ ଏହା କହିବାର ଉଦ୍ଦେଶ୍ୟ ହେଉଛି ଆମର ଯୁବକମାନେ ଠିକ୍ ବାଟରେ ଚିନ୍ତା କରିବେ ଓ ବିଜ୍ଞତାର ସହ ସାମାଜିକ ପରିବର୍ତ୍ତନ୍ ପାଇଁ ପ୍ରୟାସୀ ହେବେ ।

## ମନୁସ୍ମୃତି ର ସୃଷ୍ଟି :

ମନୁସ୍ମୃତି ଅନୁଯାୟୀ ଏହାର ରଚୟିତା ହେଉଛନ୍ତି ବ୍ରହ୍ମା । ସେ ଏହି ସବୁ ନିୟମ କରି ପ୍ରଥମ ଋଷି ବିହୁଙ୍କୁ ଦେଲେ । ବିହୁ ଏହାକୁ ମାରିଚଙ୍କୁ ପ୍ରଦାନ କଲେ । (ପ୍ରଥମ ଖଣ୍ଡ ଶ୍ଳୋକ-୫୮ ମନୁସ୍ମୃତି)
ଏହାପରେ ମନୁସ୍ମୃତି ଅନ୍ୟ ଋଷିମାନଙ୍କ ଦ୍ୱାରା ଜ୍ଞାତ ହେଲା ।

## ବ୍ରହ୍ମାଙ୍କ ଆଚରଣ :-

୧) ପରମ ଶିବ ଓ ପାର୍ବତୀଙ୍କର ବିବାହ ବ୍ରହ୍ମାଙ୍କ ଦ୍ୱାରା ସ-ାଦିତ ହେଲା । ପାର୍ବତୀ ଯଜ୍ଞ କୁଣ୍ଡର ଚାରିପାଖରେ ବୁଲିବା ପୂର୍ବରୁ ତାଙ୍କ ବସ୍ତ୍ରରୁ ଗୋଟିଏ ମୁଣ୍ଡ ଶଙ୍କର ବାମହାତରେ ଧରିଥିଲେ । ଏହାଦ୍ୱାରା ବ୍ରହ୍ମା ପାର୍ବତୀଙ୍କର ଜଙ୍ଘଦେଶ ଦେଖି ପାରିଲେ । ଏହା ଦ୍ୱାରା ବ୍ରହ୍ମା କାମାଶକ୍ତ ହେଲେ । ବ୍ରହ୍ମାଙ୍କର ସ୍ଖଳନକୁ ଏକ ପାତ୍ରରେ ଅଗ୍ନିକୁଣ୍ଡ ପାଖରେ ରଖିଲେ । ଏହାଦ୍ୱାରା ଅଗସ୍ତି ଜନ୍ମ ନେଲେ ।

୨) ଯେତେବେଳେ ପାର୍ବତୀ ପୁଣି ଅଗ୍ନିକୁଣ୍ଡର ଚାରିପାଖରେ ବୁଲିଲେ, ବ୍ରହ୍ମା ପୁନଶ୍ଚ ତାଙ୍କର ଶାରୀରିକ ଅଙ୍ଗଦେଖି କାମାଶକ୍ତ ହେଲେ । ତାଙ୍କର ସ୍ଖଳନକୁ ସେ ସବୁଜ ବୃକ୍ଷରାଜି ପାଖରେ ପକାଇ ଦେଲେ । ଏଥର ଅନେକ ଋଷି ତତ୍କ୍ଷଣାତ୍ ଜନ୍ମ ନେଲେ । ସେମାନଙ୍କ ଭିତରୁ ଉଲକିଲିୟାଁଥ ଅନ୍ୟତମ ।

୩) ବିବାହ ଶେଷରେ ବ୍ରହ୍ମା ସେ ସ୍ଥାନ ଛାଡି ଚାଲିଗଲା ବେଳେ ତାଙ୍କର ପୁନଶ୍ଚ ସ୍ଖଳନ ହେଲା । ଏଥର ଏହାକୁ ଗୋଟିଏ ଶ୍ମଶାନର ପାଉଁଶ ଉପରେ ପକାଇ ଦେଲେ । ସେଥିରୁ ପୁରିବନନ ନାମକ ଏକ ଅସୁରର ଜନ୍ମହେଲା ।

Digitized by srujanika@gmail.com

୪) ଏହାପରେ ବ୍ରହ୍ମା ଶ୍ମଶାନରେ ପଡିଥିବା ହାଡମାନଙ୍କୁ ସଂଗ୍ରହ କଲେ ଓ ସଂଗୃହୀତ ହାଡଗଦା ଉପରେ ତାଙ୍କର ବୀର୍ଯ୍ୟ ପକାଇଲେ । ଏହାପରେ ତତ୍କ୍ଷଣାତ୍ ଏକ ସାହସୀ ଓ ବଳଶାଳୀ ସାଲ୍ଲିୟାନ ଜନ୍ମ ହେଲା ।

୫) ବ୍ରହ୍ମା ଶ୍ମଶାନଛାଡିବା ପୂର୍ବରୁ ତାଙ୍କର ସ୍ଖଳନ ଭୂମିଉପରେ ପଡିଗଲା । ହଠାତ୍ ସେଠାକୁ ଆସିଥିବା ଗୋଟିଏ ପକ୍ଷୀ ତାହା ଖାଇବାରୁ ପକ୍ଷୀଟି ଗର୍ଭଧାରଣ କରି ଶକୁନି ନାମକ ଏକ ବ୍ୟକ୍ତିକୁ ଜନ୍ମ ଦେଲା ।

୬) ବ୍ରହ୍ମା ଏହାପରେ ଗୋଟିଏ ପୁଷ୍କରିଣୀ ନିକଟକୁ ଗଲେ । ସେଠାରେ ସେ ସାମାନ୍ୟ ଅଂଶ ପାଣିରେ ପକାଇଲେ । ଗୋଟିଏ ବେଙ୍ଗ ଏହା ଖାଇ ଏକ କନ୍ୟା ସନ୍ତାନକୁ ଜନ୍ମ ଦେଲା । ତାହାର ନାମ ହେଉଛି ମନ୍ଦୋଦରୀ ।

୭) ବ୍ରହ୍ମା ଶେଷରେ ଗୋଟିଏ ପୁଷ୍କରିଣୀର ପଦ୍ମ ଫୁଲ ଉପରେ ତାଙ୍କର ସ୍ଖଳନ ପକାଇଲେ । ପଦ୍ମ ଫୁଲଟି ଗର୍ଭଧାରଣ କରି ପଦ୍ମାନାମରେ ଏକ ଶିଶୁ କନ୍ୟା ଜନ୍ମ ଦେଲା ।

୮) ବ୍ରହ୍ମା ନିଜର କନ୍ୟା ପଦ୍ମାକୁ ଦେଖି ତା ରୂପରେ ଆକୃଷ୍ଟ ହେଲେ । ନିଜ କନ୍ୟାସହ ବ୍ରହ୍ମା ସହବାସ କାମନା କଲେ । ଗୋଟିଏ ଝିଅ ନିଜର ପିତାଙ୍କ ସହ କିପରି ସହବାସ କରିବ? ପଦ୍ମାମନା କଲା । ବ୍ରହ୍ମା ଆଶା ନହରାଇ ତାକୁ ବେଦରୁ ଉଦ୍ଧୃତି ଦେଇ ବୁଝାଇବାକୁ ଲାଗିଲେ । ବ୍ରହ୍ମା କହିଲେ ଯେ ସନ୍ତାନ ଜନ୍ମ ଉଦ୍ଦେଶ୍ୟରେ ଯେ କୌଣସି ସମୟରେ, ଯେକୌଣସି ସ୍ଥାନରେ ଓ ଯାହା ସହିତ ଶାରୀରିକ ସ-ର୍କ ରଖାଯାଇପାରେ ।

ଉପର ଉଦ୍ଧୃତି ହେଉଛି, ଯାହା ବ୍ରହ୍ମା ନିଜର କନ୍ୟା ପଦ୍ମାଙ୍କୁ କହିଥିଲେ । ଏହାର ତାତ୍ପର୍ଯ୍ୟ ହେଉଛି ସନ୍ତାନ ଜନ୍ମ ଉଦ୍ଦେଶ୍ୟରେ ଜଣେ ନିଜର ଭଉଣୀ ବା କନ୍ୟାସହ ମଧ୍ୟ ସ-ର୍କ ରଖିପାରେ । ଏହାହିଁ ଶାସ୍ତ୍ର ବଚନ ।

୯) ବ୍ରହ୍ମା ବେଦରୁ ଉଦ୍ଧୃତି ଦେଇ ନିଜ ଝିଅକୁ ସମ୍ମତ କରାଇଲେ ଓ ତାକୁ ଉପଭୋଗ କଲେ । ବ୍ରହ୍ମାଙ୍କର ଶୁକ୍ର ତାଙ୍କ ଝିଅର ଗର୍ଭାଶୟରେ ପଡିଲା, କିନ୍ତୁ ବ୍ରହ୍ମା କୌଣସି ଅଜ୍ଞାତ କାରଣରୁ ତାହା ଝିଅର ଗର୍ଭାଶୟରୁ ବାହାର କରି ଆଣିଲେ ।

Digitized by srujanika@gmail.com

୧୦) ବ୍ରହ୍ମାଙ୍କର କାମୁକତା ଓ ବ୍ୟବହାର ଦେବ-ଦେବତାଙ୍କର ରାଜାଙ୍କ ପାଖରେ ପହଞ୍ଚିଲା । ଏହାପରେ ଇନ୍ଦ୍ର ତିଳୋତ୍ତମା ନାମକ ଏକ ନୃତ୍ୟନିପୁଣା ଅପସରାଙ୍କୁ ବ୍ରହ୍ମାଙ୍କ ପାଖକୁ ପଠାଇଲେ । ସେ ଆକାଶର ଚାରିଦିଗରେ ଏକାଥରକେ ନୃତ୍ୟ କରିବାକୁ ଲାଗିଲେ । ଏହାପରେ ବ୍ରହ୍ମା ତାଙ୍କର ଆଉ ଚାରୋଟି ମୁଣ୍ଡ ସୃଷ୍ଟି କରି ଏହି ନୃତ୍ୟକୁ ଉପଭୋଗ କଲେ । ତିଳୋତ୍ତମାଙ୍କ ରୂପରେ ବ୍ରହ୍ମା ଅଭିଭୂତ ହୋଇ ତାଙ୍କୁ ପ୍ରେମ ପାଇଁ ତାଙ୍କ ପଛରେ ଚାଲିବାକୁ ଲାଗିଲେ । ବ୍ରହ୍ମାଙ୍କର କାମୁକ ଭାବକୁ ଈଶ୍ୱର ଦେଖି ତାଙ୍କର ଗୋଟିଏ ମୁଣ୍ଡ କାଟି ଦେଲେ ।

୧୧) ଏହାପରେ ବ୍ରହ୍ମା ଜଙ୍ଗଲରେ ଘୂରିବାକୁ ଲାଗିଲେ । ଗୋଟିଏ ବୁଦାମୂଳେ ସେ ଏକ ମାଈ ଭାଲୁ ଦେଖିଲେ ଓ ତାହା ସହ ପ୍ରେମ କରିବାକୁ ଚାହିଁଲେ । ବ୍ରହ୍ମା ସେହି ମାଈ ଭାଲୁ ସହ ରତି କଲେ ଓ ଭାଲୁ ମୁଣ୍ଡ ଯୁକ୍ତ ତାଙ୍କର ଏକ ସନ୍ତାନ ଜନ୍ମ ହେଲା । ସେହି ପୁତ୍ରର ନାମ ଜମ୍ବୁ ବଦନ ।

୧୨) ଏହାପରେ ଉର୍ବଶୀ ନାମକ ଏକ ବାରଙ୍ଗନାଙ୍କ ସହ ବ୍ରହ୍ମାଙ୍କର ସାକ୍ଷାତ ହେଲା । ବ୍ରହ୍ମା ତାଙ୍କୁ ବିମୋହିତ କଲେ ଓ ତାଙ୍କ ସହ ପ୍ରେମ କଲେ । ନିଜ କନ୍ୟାଙ୍କ ଗର୍ଭରୁ ବାହାର କରି ଆଣିଥିବା ଶୁକ୍ରକୁ ସେ ଉର୍ବଶୀଙ୍କ ଗର୍ଭାଶୟରେ ଛାଡିଦେଲେ । ବ୍ରହ୍ମା ଓ ଉର୍ବଶୀଙ୍କର ଯେଉଁ ସନ୍ତାନ ଜନ୍ମ ହେଲା ତାଙ୍କର ନାମ ହେଲା ବଶିଷ୍ଠ । ଏହି ସବୁ ଗୌରବାବହ କାର୍ଯ୍ୟ କରି ଦେବତା ବ୍ରହ୍ମା ବଶିଷ୍ଠଙ୍କୁ ତାଙ୍କର ଶକ୍ତି ପ୍ରଦାନ କଲେ ଓ ତପସ୍ୟା କରିବାକୁ ଚାଲିଗଲେ ।

## ବେଦ ଓ ଶାସ୍ତ୍ର ରଚନା କରିଥିବା ମୁନି ଋଷି ଗଣ

ଋଷିମାନଙ୍କର ଜନ୍ମକାହାଣୀ ଅପ୍ରାକୃତିକ, ଅବୋଧ୍ୟ ଓ ଅଶ୍ଲୀଳ । ମୁଁ କେତୋଟି ଉଦାହରଣ ଦେଉଛି-

| ଋଷି | କାହାଠାରୁ ଜନ୍ମ |
|---|---|
| କଳାଇକୋଟୁ ଋଷି | ହରିଣ |
| କୌଶିକ | କୁସୁମ |
| ଜମ୍ବୁକର | ଶିଆଳ |
| ଗୌତମ | ଷଣ୍ଢ |
| ବାଲ୍ମୀକି | ବ୍ୟାଧ |

Digitized by srujanika@gmail.com

| | |
|---|---|
| ଅଗସ୍ତି | ନାଆ (ଭେସେଲ) |
| ବ୍ୟାସ | ମତ୍ସ୍ୟ କନ୍ୟା |
| ବଶିଷ୍ଠ | ଉର୍ବଶୀ |
| ନାରଦ | ମତ୍ସ୍ୟ କନ୍ୟା |
| କାଦନସଲିୟର | ବିଧବା |
| ମଡଙ୍କର | ଚମାର କନ୍ୟା |
| ମନ୍ଦଭିୟର | ବେଙ୍ଗ |
| ଶଙ୍କିଆର | ପରିଆ କନ୍ୟା |
| କଙ୍ଗୟୋର | ଗଧ |
| ସୌନଗର | କୁକୁର |
| ଗଣଧର | ପେଚା |
| ସଗର | ଶୁଆ |
| ଜମ୍ବୁବନ୍ତ | ଭାଲୁ |
| ଅଶ୍ୱଥମା | ଘୋଡା |

ଋଷିମାନଙ୍କର ମହାନତା ଓ ଜନ୍ମବୃତ୍ତାନ୍ତ ଏଥିରୁ ଅନୁମେୟ। ଆଦିମ ସମାଜର ଲୋକମାନେ ଆମଠାରୁ ଅଧିକ ବୁଦ୍ଧିମାନ କି? ଆମ ପୂର୍ବପୁରୁଷ ଓ ଋଷିମାନଙ୍କର ଇତିହାସ ଅମର୍ଯ୍ୟାଦାଜନକ ଓ ନୈରାଶ୍ୟପୂର୍ଣ୍ଣ। ଆମର କ୍ଷୟଶୀଳତା ଓ ଅସମ୍ମାନଜନକ ସ୍ଥିତି ପାଇଁ ସେମାନେ ହିଁ ଦାୟୀ। ବର୍ତ୍ତମାନ ଅନ୍ୟ କେତେକ ଦେବଦେବୀଙ୍କ ବିଷୟରେ ଆଲୋଚନା କରିବା।

ମହାବିଷ୍ଣୁ ଓ ପରମେଶ୍ୱର ଉଭୟ ପୁରୁଷ। ସେମାନେ ପ୍ରେମରେ ପଡିଲେ ଓ ଏକ ସନ୍ତାନକୁ ଜନ୍ମ ଦେଲେ ଯାହାଙ୍କୁ ରକ୍ଷଣଶୀଳ ହିନ୍ଦୁମାନେ ଏପର୍ଯ୍ୟନ୍ତ ପୂଜା କରୁଛନ୍ତି।

ମହାବିଷ୍ଣୁ ଅନ୍ୟ ଜଣେ ବ୍ରହ୍ମ ଋଷି ନାରଦଙ୍କ ସହ ପ୍ରେମରେ ସଂପୃକ୍ତ ହେଲେ ଓ ଜଣେ ନୁହଁ ବରଂ ଷାଠିଏ ଜଣ ଶିଶୁଙ୍କୁ ଜନ୍ମଦେଲେ। ବ୍ରହ୍ମ ଋଷିଙ୍କର ଷାଠିଏ ସନ୍ତାନଙ୍କ ନାମରେ ପ୍ରଭାବଙ୍କର ଷାଠିଏ ବର୍ଷର ନାମକରଣ କରାଯାଇଛି।

Digitized by srujanika@gmail.com

ଏହି ପ୍ରକାର କାହାଣୀ କେବଳ ମହାବିଷ୍ଣୁଙ୍କ ପାଖରେ ସୀମିତ ନୁହେଁ। ମହାବିଷ୍ଣୁଙ୍କର ପତ୍ନୀ ମହାଲକ୍ଷ୍ମୀଙ୍କ ନାମରେ ମଧ୍ୟ ଅନେକ ଅବାନ୍ତର କଥା ରହିଛି। ଲକ୍ଷ୍ମୀ ଏକ ସୁନ୍ଦର ଘୋଡା ଦେଖିଲେ ଓ ତତ୍‌କ୍ଷଣାତ୍ ଘୋଡାର ପ୍ରେମରେ ପଡିଲେ। ସର୍ବଜ୍ଞ ବିଷ୍ଣୁ ଏହା ଜାଣିପାରିଲେ। ବିଷ୍ଣୁ ଲକ୍ଷ୍ମୀଙ୍କୁ ଏକ ଘୋଟକ କରିଦେଲେ ଓ ନିଜେ ଏକ ଘୋଡା ହୋଇଗଲେ। ଏହାପରେ ସେମାନେ ପ୍ରେମ କଲେ, କିନ୍ତୁ ସେମାନେ କୌଣସି ଅଶ୍ୱଶାବକକୁ ଜନ୍ମ ନ ଦେଇ ଏକ ମଣିଷ ଶିଶୁକୁ ଜନ୍ମଦେଲେ। ତାଙ୍କର ନାମ ଏକ ବିରାନ।

ଦେବତାମାନଙ୍କର ରାଜା ଇନ୍ଦ୍ର (ତାମିଲ ଭାଷାରେ ଦେଭେନ୍ଦିରନ)ଙ୍କ ବିଷୟରେ କଣ କୁହାଯାଇଛି ତାହାର ସତ୍ୟତା ବିଷୟରେ ଆଲୋଚନା କରାଯାଉ। ଏକଦା ରାଜା ଇନ୍ଦ୍ର ଜଣେ ଋଷିଙ୍କ ପତ୍ନୀ ପରିଷଦମଙ୍କୁ ଦେଖିଲେ। ଇନ୍ଦ୍ର ତାଙ୍କ ସହ ପ୍ରେମ କରିବାକୁ ଚାହିଁଲେ। ଇନ୍ଦ୍ର ପରିଷଦମଙ୍କୁ ବହୁତ ଭଲ ପାଆନ୍ତି ବୋଲି କହିଲେ। ମହିଳା ଜଣଙ୍କ କହିଲେ ଯେ ସେ ନା ଇନ୍ଦ୍ରଙ୍କୁ ଭଲ ପାଆନ୍ତି, ନା ସେ ତାଙ୍କ ସ୍ୱାମୀଙ୍କ ସହ ବିଶ୍ୱାସ ଘାତକତା କରିପାରିବେ। ଇନ୍ଦ୍ର ହତାଶ ହୋଇ ତାଙ୍କୁ ଉପଭୋଗ କରିବାକୁ ସ୍ଥିର କଲେ। କିଛି ଦିନ ପରେ ଋଷି ଅଶ୍ୱମେଧ ଯଜ୍ଞ କଲେ। ଏକ ଧାର୍ମିକ କର୍ମକାଣ୍ଡ ଏଥିରେ କରିବାକୁ ହୁଏ। ଅଶ୍ୱର ଲିଙ୍ଗ ପରିଷଦଙ୍କ ଗର୍ଭାଶୟରେ ପ୍ରବେଶ କରିବାକୁ ପଡ଼େ। ଇନ୍ଦ୍ର ଏହାକୁ ଏକ ସୁଯୋଗ ମନେ କରି ଅଶ୍ୱର ଲିଙ୍ଗ ଭିତରେ ପ୍ରବେଶ କରି ତାଙ୍କର ବହୁଦିନର ଅଭିଳାଷ ପୂରଣ କଲେ। ପରିଷଦମଙ୍କ ଇଚ୍ଛା ବିରୁଦ୍ଧରେ ଇନ୍ଦ୍ର ତାଙ୍କୁ କଳୁଷିତ କଲେ।

ମୁଁ ସଂଯମତାର ସହ ବ୍ରହ୍ମା, ଋଷି, ଦେବତା, ଦେବତାଙ୍କ ରାଜା ଇନ୍ଦ୍ରଙ୍କ ଏହି କାହାଣୀ ବିଷୟରେ ସୂଚନା ଦେଲି। ଏଗୁଡିକ ପୌରାଣିକ ରଚନାରୁ ସଂଗ୍ରହ କରି ଦିଆଯାଇଛି।

ହିନ୍ଦୁ ଆଇନ ଆଧାରରେ ହାଇକୋର୍ଟ ଗୁଡିକ ବିଭିନ୍ନ କେସ ବିଷୟରେ ରାୟ ଦେଉଛନ୍ତି। ମନୁଙ୍କ ପ୍ରବର୍ତ୍ତିତ ନିୟମ ଓ ବିଭିନ୍ନ ଋଷିମାନଙ୍କର ନ୍ୟାୟ ବିଷୟରେ ଥିବା ବକ୍ତବ୍ୟ ଆଧାରରେ ଯେହେତୁ ନ୍ୟାୟବିଧାନ ଜନିତ ରାୟ ଦିଆଯାଉଛି ମୁଁ ଏସବୁ ପ୍ରସଙ୍ଗକୁ ଉଦ୍ଧାର କରୁଛି। ଆପଣମାନେ ଏ ବିଷୟରେ ବିଚାର କରିବାକୁ ମୁଁ ଚାହୁଁଛି।

Digitized by srujanika@gmail.com

କୌଣସି ଏକ ବିଷୟର ସମାଧାନ ନେଇ ହିନ୍ଦୁମାନଙ୍କର କିଛି ସମସ୍ୟା ହେଲେ ସେମାନେ ଧର୍ମଶାସ୍ତ୍ରକୁ ଉଲ୍ଲେଖ କରିଥାନ୍ତି । ବିଶେଷତଃ ମନୁସଂହିତାରେ ଥିବା ବିଚାରକୁ ଆଧାର କରି କୌଣସି ନିଷ୍ପତ୍ତିମୂଳକ ସମାଧାନ କରାଯାଇଥାଏ ।

ଶାସକଙ୍କ ଦ୍ୱାରା ନିର୍ବାଚନ ଉପଦେଷ୍ଟା ପରିଷଦ ବା ପ୍ରିଭି କାଉନସିଲ ସଂପର୍କରେ ସେମାନଙ୍କର ସୁଚିନ୍ତିତ ମନ୍ତବ୍ୟ ଦେଇ କହିଛନ୍ତି "ମନୁସଂହିତା ଯେତେ ପ୍ରାଚୀନ ଓ ଅପାଂକ୍ତେୟ ହେଲେ ମଧ୍ୟ ଏହା ଆଧାରରେ ଦିଆଯାଉଥିବା ନ୍ୟାୟ ହିଁ ଚୂଡାନ୍ତ । ମନୁ ସଂହିତା ଆଧାରରେ ଭାରତୀୟ ସମ୍ବିଧାନ ମଧ୍ୟ ରୂପରେଖ ନେବା ଆବଶ୍ୟକ ।"

ତାମିଲନାଡୁ ସରକାର ମନ୍ଦିରରେ ସବୁ ଜାତିର ଲୋକମାନେ ଯୋଗ୍ୟତାନୁଯାୟୀ ପୂଜକ ହେବାର ଅଧିକାର ନେଇ ଯେଉଁ ପଦକ୍ଷେପ ନେଇଥିଲେ, ତାହାକୁ ସୁପ୍ରିମ କୋର୍ଟ ନାକଚ କରିଦେବା ଦ୍ୱାରା ଏଥିରୁ ସୂଚିତ ହେଉଛି ଯେ ମନୁଙ୍କ ନିୟମ ଅଦ୍ୟାବଧି ପ୍ରଭାବ ବିସ୍ତାର କରି ରହିଛି । ତାମିଲନାଡୁର ନିର୍ବାଚିତ ଲୋକ ପ୍ରତିନିଧିମାନେ ଯେଉଁ ନିୟମ ପାସ କରିଥିଲେ ତାହାକୁ କ୍ଷତିକାରକ ଓ ମନୁଙ୍କ ନିୟମର ପରିପନ୍ଥୀ ବୋଲି ଅସିଦ୍ଧ ଘୋଷଣା କରାଗଲା ।

ତେବେ ମନୁସଂହିତାରେ ଥିବା ନିୟମ ଗୁଡିକ କେତେ ଦୂର ନ୍ୟାୟସଂଗତ ତାହା ବିଷୟରେ ଆମେ ଆଲୋଚନା କରିବା । ବିଚାରାଳୟମାନେ ମନୁଙ୍କ ନିୟମ ଆଧାରରେ କେସମାନଙ୍କର ଫଇସଲା କରିବାବେଳେ ସେହି ନିୟମମାନ ଯେ ଗୋଟିଏ ନିର୍ଦ୍ଦିଷ୍ଟ ଶ୍ରେଣୀର ସ୍ୱାର୍ଥସିଦ୍ଧି ପାଇଁ ଉଦ୍ଦିଷ୍ଟ ଏହା ଭୁଲି ଯାଇଥାନ୍ତି ।

**ସୃଷ୍ଟି:**

ମନୁ ଧର୍ମଶାସ୍ତ୍ର ବ୍ରହ୍ମା ପ୍ରଥମେ ସୃଷ୍ଟିକରି ପରେ ତାହାକୁ ଋଷିମାନଙ୍କୁ ବ୍ୟକ୍ତ କରିଥିଲେ । (୧/୫୯)

**ନିରୀଶ୍ୱରବାଦୀ:**

ବେଦ ଓ ଧର୍ମଶାସ୍ତ୍ରକୁ ପ୍ରଶ୍ନ କରାଯାଇ ପାରିବ ନାହିଁ ବା ଏହା ଉପରେ କୌଣସି ବିତର୍କ ହୋଇ ପାରିବ ନାହିଁ । ଯେ ଏହାକୁ ପ୍ରଶ୍ନ କରିବେ ତାଙ୍କୁ ଜଣେ ନିରୀଶ୍ୱରବାଦୀ ବୋଲି ବିଚାର କରାଯିବ ।

Digitized by srujanika@gmail.com

ବେଦକୁ ଅସ୍ୱୀକାର କରୁଥିବା ବ୍ୟକ୍ତିକୁ ଈଶ୍ୱରଙ୍କ ନିନ୍ଦୁକ ନିରୀଶ୍ୱରବାଦୀ ଭାବେ ଗ୍ରହଣ କରାଯିବ।

ବ୍ରାହ୍ମଣମାନେ ମନୁଙ୍କ ଧର୍ମଶାସ୍ତ୍ର ବିଷୟରେ କାହାକୁ ଶିକ୍ଷା ଦେବେ ନାହିଁ।

ଜୁଆଡ଼ି, ଅଭିନେତା, ବାଦ୍ୟକାର, ମନ୍ଦଲୋକ, ବେଦ ବା ସ୍ମୃତି ଗ୍ରନ୍ଥର ଲଂଘନ କରୁଥିବା, କର୍ମକାଣ୍ଡ ପାଳନ କରୁନଥିବା, ନିଜର ବୃତ୍ତି ପରିବର୍ତ୍ତନ କରୁଥିବା ଓ ନିଶା ସେବନ କରୁଥିବା ବ୍ୟକ୍ତିମାନଙ୍କୁ ରାଜା ରାଜ୍ୟରୁ ନିର୍ବାସନ କରିଦେବେ।

(୯/୨୨୬)

**ଜନ୍ମରୁ ଜାତି:**

ସଂସାରକୁ ରକ୍ଷା କରିବା ପାଇଁ ବ୍ରହ୍ମା ଚାରି ବର୍ଣ୍ଣର ଲୋକ ସୃଷ୍ଟି କରିଛନ୍ତି। ବ୍ରାହ୍ମଣମାନଙ୍କୁ ମୁହଁରୁ, କ୍ଷତ୍ରିୟମାନଙ୍କୁ ବାହୁରୁ, ବୈଶ୍ୟମାନଙ୍କୁ ଜଂଘରୁ ଓ ଶୂଦ୍ରମାନଙ୍କୁ ପାଦରୁ ସୃଷ୍ଟି କରି ସେମାନଙ୍କର ବୃତ୍ତି ନିର୍ଦ୍ଧାରଣ କରିଛନ୍ତି।

(୧/୮୭)

ବ୍ରାହ୍ମଣମାନେ ବ୍ରହ୍ମାଙ୍କ ମୁଖରୁ ସୃଷ୍ଟି ହୋଇଥିବା ଯୋଗୁଁ ସେମାନେ ସବୁ ବର୍ଣ୍ଣ ଭିତରେ ଶ୍ରେଷ୍ଠ, ସୁତରାଂ ସେମାନେ ଅନ୍ୟ ସବୁ ବର୍ଣ୍ଣର ଲୋକମାନଙ୍କ ଠାରୁ ଦାନ ଗ୍ରହଣ କରିବେ ଓ ସମସ୍ତ ସଂପଦର ଅଧିକାରୀ ରହିବେ। (୧/୧୦୦)

**ଭିକ୍ଷାଗ୍ରହଣରେ ଗର୍ବ :**

ବ୍ରାହ୍ମଣମାନେ ଭିକ୍ଷା କଲେ ମଧ୍ୟ ସେମାନେ ନିଜର ଅର୍ଥ ହିଁ ଭୋଗ କରୁଛନ୍ତି। ବ୍ରାହ୍ମଣମାନଙ୍କର ଦୟାରୁ ଅନ୍ୟମାନେ ଖାଦ୍ୟ, ବସ୍ତ୍ର ଓ ସଂପତ୍ତିର ଯାହା ଅଧିକାରୀ ହେବେ। (୧/୧୦୧)

ବ୍ରାହ୍ମଣର କାର୍ଯ୍ୟ ଯଦି ବି ଶୂଦ୍ର କରେ, ତେବେ ଜଣେ ଶୂଦ୍ର କେବେ ହେଲେ ବ୍ରାହ୍ମଣ ହୋଇପାରିବ ନାହିଁ। ତେବେ ବ୍ରାହ୍ମଣର କାର୍ଯ୍ୟ ଶୂଦ୍ର କରିବାର ଅଧିକାର ପାଇବ ନାହିଁ।

Digitized by srujanika@gmail.com

ଜଣେ ବ୍ରାହ୍ମଣ ଯଦି ଶୂଦ୍ରର କାର୍ଯ୍ୟ କରେ ତଥାପି ମଧ୍ୟ ଜଣେ ବ୍ରାହ୍ମଣ ଶୂଦ୍ର ସ୍ତରକୁ ଆସିବ ନାହିଁ। ଜଣେ ଉଚ୍ଚ ଜାତିର ବ୍ରାହ୍ମଣ ଯାହା କାର୍ଯ୍ୟ କଲେ ମଧ୍ୟ ସେ ଉଚ୍ଚ ଜାତିରେ ଜନ୍ମ ହୋଇଥିବା ହେତୁ ନ୍ୟୂନ ହୋଇପାରିବ ନାହିଁ।

(୧୦/୭୩)

**ବ୍ରାହ୍ମଣ- ଆମିଶାଷୀ**

ସମସ୍ତ ପ୍ରକାରର ସୁଖାଦ୍ୟ, ସ୍ୱାଦିଷ୍ଟ, ମିଷ୍ଟାନ୍ନ, ପାନୀୟ, ବ୍ରାହ୍ମଣମାନେ ଭକ୍ଷଣ କରିବେ। (୫/୨୨୭)

ବ୍ରାହ୍ମଣ ନିଜର ସୁନ୍ଦର ସ୍ୱାସ୍ଥ୍ୟ ପାଇଁ ଯେ କୌଣସି ପ୍ରାଣୀର ମାଂସ ପ୍ରତ୍ୟେକ ଦିନ ଖାଇପାରିବେ। ମାଂସ ଭକ୍ଷଣ କରିବା କ୍ଷେତ୍ରରେ ବ୍ରାହ୍ମଣମାନଙ୍କ ପାଇଁ କୌଣସି ଦୋଷ ନାହିଁ। (୫/୩୦)

ମୃତ ପୂର୍ବପୁରୁଷଙ୍କ ସୁଖ ପାଇଁ ପିଣ୍ଡ ଦେବାକୁ ବିଭିନ୍ନ ନିର୍ଦ୍ଦେଶ ମନୁ ସଂହିତାରେ ଦିଆଯାଇଛି। ପୂର୍ବପୁରୁଷଙ୍କର ସୁଖ ପାଇଁ କେତେ ଦିନ ପାଇଁ କେଉଁ ପଶୁ ବା ପକ୍ଷୀଙ୍କର ମାଂସ ଦିଆଯିବ ତାହା ବ୍ରହ୍ମା ସୂଚାଇଛନ୍ତି। ତାହାର ବିବରଣୀ ଏଠାରେ ପ୍ରଦତ୍ତ ହେଲା।

୧. ଧାନ, ଚାଉଳ, ଜଳ, ଡାଲି, ଫଳ ଓ ପରିବା ମୃତ ଆତ୍ମା ମାନଙ୍କୁ ଏକ ମାସ ସୁଖ ଦେଇଥାଏ।

୨. ମୃତ ଲୋକଙ୍କୁ ମାଛ ଦୁଇ ମାସ ପାଇଁ ସୁଖ ଦେଇଥାଏ।

୩. ହରିଣ ମାଂସ ମୃତ ଲୋକଙ୍କୁ ତିନି ମାସ ସୁଖ ଦେଇଥାଏ।

୪. ଛେଳିମାଂସ ମୃତଲୋକକୁ ଚାରି ମାସ ସୁଖ ଦେଇଥାଏ।

୫. ପକ୍ଷୀ ମାଂସ ମୃତଲୋକକୁ ପାଞ୍ଚ ମାସ ସୁଖ ଦେଇଥାଏ।

୬. ଧଳା ଖାସିର ମାଂସ ମୃତଲୋକକୁ ଛମାସ ସୁଖ ଦେଇଥାଏ।

୭. ବଲଗା ହରିଣର ମାଂସ ମୃତ ଲୋକକୁ ସାତ ମାସ ସୁଖ ଦେଇଥାଏ।

୮. ସମ୍ବରର ମାଂସ ମୃତ ଲୋକକୁ ଆଠ ମାସ ସୁଖ ଦେଇଥାଏ।

Digitized by srujanika@gmail.com

୯. କଳିଆମାର ମାଂସ ମୃତଲୋକକୁ ନଅ ମାସ ସୁଖ ଦେଇଥାଏ।
୧୦. ଝିଙ୍କି, ଘୁଷୁରି, ମଇଁଷିର ମାଂସ ମୃତ ଲୋକକୁ ଦଶ ମାସ ସୁଖ ଦେଇଥାଏ।
୧୧. ଠେକୁଆ, କଇଁଛର ମାଂସ ମୃତଲୋକକୁ ଏଗାର ମାସ ସୁଖ ଦେଇଥାଏ।
୧୨. ଗାଈର କ୍ଷୀର, ଦହି, ଘିଅ ମୃତ ଲୋକକୁ ଏକ ବର୍ଷ ସୁଖ ଦେଇଥାଏ।
୧୩. ଖାସିର ମାଂସ ମୃତ ଲୋକକୁ ବାର ବର୍ଷ ସୁଖ ଦେଇଥାଏ।
୧୪. ପ୍ରତ୍ୟେକ ଋତୁରେ ଫଳୁଥିବା ପରିବା, ରୋହିମାଛ, ଲାଲ ରଙ୍ଗର ମେଣ୍ଢାର ମାଂସ, ଉଚ୍ଚ ଜମିରେ ଉତ୍ପାଦିତ ଧାନର ଭାତ ମୃତ ଲୋକକୁ ଚିରଦିନ ସୁଖ ଦେବ।

ପୂର୍ଣ୍ଣିମା ଯିବାର ଦ୍ୱାଦଶ ଦିବସରେ ଯଦି ମହୁ ଓ କ୍ଷୀରୀ ମୃତ ଲୋକକୁ ଦିଆଯାଏ ତେବେ ଏହା ତାକୁ ପୂର୍ଣ୍ଣ ତୃପ୍ତି ଦେଇଥାଏ। (୩/୨୬୭-୨୭୩)

ଶୁଦ୍ଧିକ୍ରିୟାର ବ୍ରାହ୍ମଣ ଭୋଜନରେ ଯଦି କୌଣସି ବ୍ରାହ୍ମଣ ତାଙ୍କୁ ଦିଆ ଯାଇଥିବା ମାଂସ ଖାଇବାକୁ ମନା କରନ୍ତି ତେବେ ସେ ଏକୋଇଶି ଥର ଗାଈ ଜନ୍ମ ନେବେ। (୫/୩୫)

ଉତ୍ସବ ଜନିତ କର୍ମକାଣ୍ଡ ପାଳନ ବେଳେ ଶୂଦ୍ର ଗୃହ ବାହାରେ ରହିବା ଆବଶ୍ୟକ। (୩/୨୪୨)

ନାମକରଣ:

ସୁନ୍ଦର ଓ ପବିତ୍ର ନାମ କେବଳ ବ୍ରାହ୍ମଣମାନଙ୍କୁ ଦିଆଯିବ। ସାହସ ଓ ବୀରତ୍ୱର ନାମ କ୍ଷତ୍ରିୟକୁ ଦିଆଯିବ ଓ ବୈଶ୍ୟମାନଙ୍କର ନାମ ବସ୍ତୁମାନଙ୍କ ନାମ ଅନୁଯାୟୀ ଦିଆଯିବା ବିଧେୟ।

ଅସମ୍ମାନସୂଚକ ଓ ନିମ୍ନ ନାମରେ ଶୂଦ୍ରମାନଙ୍କୁ ଡକାଯିବ। ଶୂଦ୍ରମାନଙ୍କର ନାମ ଶେଷରେ ଦାସ' ଯୋଡାଯିବ। (୨/୩୧,୩୨)

ବ୍ରାହ୍ମଣର ପଇତା ସୂତାରେ, କ୍ଷତ୍ରିୟର ପଇତା ଝୋଟରେ ଓ ବୈଶ୍ୟର ପଇତା ଛେଳିର ଚୁଳରେ ପ୍ରସ୍ତୁତ ହେବ।

(୨/୪୪)

Digitized by srujanika@gmail.com

**ଘୁଷୁରି ଓ ଶୂଦ୍ର :**

କୌଣସି ଖାଦ୍ୟ କିପରି ଅପବିତ୍ର ଓ ଅଭୋଜ୍ୟ ହୋଇଥାଏ, ତାହା ହେଲା-

୧. ଏହାକୁ କୌଣସି ଘୁଷୁରି ଛୁଇଁ ଦିଏ

୨. ଏହା ଉପରେ କୁକୁଡା ଉଡିକରି ଯାଏ

୩. ଯେତେବେଳେ ଏହାକୁ କୁକୁର ମାରାକରେ

୪. ଏହାକୁ କୌଣସି ଶୂଦ୍ର ଛୁଇଁ ଦିଏ।

(୩/ ୨୪୧)

ଯଦି କୌଣସି ବ୍ୟକ୍ତି କୌଣସି ଉତ୍ସବ ପରେ ଶୂଦ୍ରକୁ ଖାଇବାକୁ ଦିଏ ତେବେ ସେ ନରକ ପ୍ରାପ୍ତ ହୁଏ। ସେଠାରେ ସେହି ମୂର୍ଖ ଦଣ୍ଡ ପାଇଥାଏ। ସେଠାରେ ସେ ମୁଣ୍ଡ ତଳକୁ କରି ପାଦ ଉପରକୁ କରି ବଞ୍ଚେ। (୩/ ୨୪୯)

ଯଦି ଶୂଦ୍ର ଖାଇଥିବା ବା ଛୁଇଁଥିବା ଖାଦ୍ୟ ଜଣେ ବ୍ରାହ୍ମଣ ଭୋଜନ କରେ ତେବେ ସେହି ରାତିରେ ବ୍ରାହ୍ମଣ ପତ୍ନୀଙ୍କ ସହ ସହବାସ କରିବେ। ମୃତ ଭ୍ରୂଣଟି ପତ୍ନୀଙ୍କ ଉଦରରେ ଗୋଟିଏ ମାସ ରହିବ। (୩/ ୨୫୦)

ଶୂଦ୍ରମାନେ ସାତ ଶ୍ରେଣୀର। ସେମାନେ ହେଲେ

୧. ଯେ ଯୁଦ୍ଧରେ ପଛ ଘୁଞ୍ଚା ଦିଏ।

୨. ଯୁଦ୍ଧ ବନ୍ଦୀ

୩. ଭକ୍ତି ସହ ଯିଏ ବ୍ରାହ୍ମଣକୁ ସେବାକରେ

୪. ଏକ ବେଶ୍ୟା ପୁତ୍ର

୫. ଦାସ, ଯାହାକୁ କ୍ରୟ କରାଯାଏ

୬. ପୋଷ୍ୟପୁତ୍ର ହୋଇଥିବା ବ୍ୟକ୍ତି

୭. ଯେ ପେଶାଦାର ଭାବେ ଶ୍ରମିକ

**ଶୂଦ୍ରର କର୍ତ୍ତବ୍ୟ :**

ଜଣେ ଶୂଦ୍ର ନିଜର ମୋକ୍ଷ ପାଇଁ ବା ନିଜର ବଞ୍ଚିବାର ସାଧନ ପାଇଁ ବ୍ରାହ୍ମଣକୁ ପୂଜା କରିଥାଏ। ବ୍ରାହ୍ମଣଠାରୁ ସମସ୍ତେ ନ୍ୟୁନ ଏହା ସେ ପ୍ରକାଶ୍ୟରେ ସମସ୍ତଙ୍କୁ କହିବା ଆବଶ୍ୟକ। (୧୦/ ୧୨୨)

Digitized by srujanika@gmail.com

କ୍ଷତ୍ରିୟମାନେ ଯଦି କର୍ମକାଣ୍ଡ ନ କରନ୍ତି ବା ବ୍ରାହ୍ମଣଙ୍କୁ ପୂଜା କରିବାରେ ଉପେକ୍ଷା କରନ୍ତି, ସେମାନେ ଶୂଦ୍ର ବୋଲି ବିବେଚିତ ହେବେ। (୧୦/୪୩)

କୌଣସି ସମାରୋହରେ ବ୍ରାହ୍ମଣମାନେ ପ୍ରଥମେ ଭୋଜନ କରିବେ। ସେମାନେ ଭୋଜନ ସାରିବା ପରେ ଯାହା ବଳକା ରୁହେ ତାହାକୁ ଅନ୍ୟମାନେ ଖାଇବେ। ବ୍ରାହ୍ମଣମାନେ ନୂଆ ଲୁଗା କେବଳ ପିନ୍ଧିବେ ଓ ତାହା ପୁରୁଣା ହୋଇଗଲେ ତାହା ଅନ୍ୟମାନେ ନେଇ ପିନ୍ଧିବେ। ଜଣେ ଶୂଦ୍ର ବ୍ରାହ୍ମଣ ଠାରୁ ପୁରୁଣା ଓ ଚିରା ଲୁଗା ନେଇ ପିନ୍ଧିବ। (୮/୧୨୫)

ରାଜା ବ୍ରାହ୍ମଣମାନଙ୍କର ସେବା କରିବାକୁ ଶୂଦ୍ରମାନଙ୍କୁ ନିର୍ଦ୍ଦେଶ ଦେବେ। ଯଦି କୌଣସି ଶୂଦ୍ର ଏଥିରେ ଅସମ୍ମତ ହୁଏ ତେବେ ରାଜା ତାଙ୍କୁ ଦଣ୍ଡ ଦେବେ। (୧୦/୨୩୫)

ବ୍ରାହ୍ମଣ ଶୂଦ୍ରଠାରୁ କାର୍ଯ୍ୟ ହାସଲ କରିବେ, ସେ ପାଇଁ ସେ ପାରିଶ୍ରମିକ ଦେଇପାରନ୍ତି ବା ଦେଇ ନପାରନ୍ତି। ବ୍ରାହ୍ମଣମାନଙ୍କର ସେବା ପାଇଁ ବ୍ରହ୍ମା ଶୂଦ୍ରମାନଙ୍କୁ ସୃଷ୍ଟି କରିଛନ୍ତି।

(୮/୪୧୩)

ବିନା ଦ୍ୱିଧାରେ ଶୂଦ୍ରମାନେ ଅନ୍ୟ ସମସ୍ତ ଲୋକଙ୍କୁ ସେବା ପ୍ରଦାନ କରିବେ। ଶୂଦ୍ର ନିଜର ସେବା ପାଇଁ କିଛି ପାରିଶ୍ରମିକ ପାଇପାରନ୍ତି। (୧/୯୧)

**ଶୋଷଣ :**

ଯେଉଁ ଶୂଦ୍ର ଯଜ୍ଞ ପାଇଁ ବ୍ୟୟ ନ କରିବ ତାହାର ସଂପତ୍ତିକୁ ଅସୁରର ସଂପତ୍ତି ବୋଲି ନିଆଯିବ। ତାହାର ସଂପତ୍ତିକୁ ଲୁଟ କରାଯିବ। (୭/୨୪୮)

ଶୂଦ୍ରଠାରୁ ସପତ୍ତି ଯୋର ଯବରଦସ୍ତ ଭାବେ ନେଇ ନିଆଯିବ। ଏଥିପାଇଁ ଶୂଦ୍ର ସମ୍ମତିର ଆବଶ୍ୟକତା ନାହିଁ ବା ଏଥିରେ କୌଣସି ଦ୍ୱିଧା ରହିବା ଆବଶ୍ୟକ ନାହିଁ। (୧୧/୧୩)

ଜଣେ ଶୂଦ୍ରର ଅର୍ଥ ଉପାର୍ଜନ କରିବାର ସାମର୍ଥ୍ୟ ଥିଲେ ମଧ୍ୟ ସେ ନିଜ ପରିବାରର ଆବଶ୍ୟକତା ଠାରୁ ଅଧିକ ଅର୍ଥ ଉପାର୍ଜନ କରିବ ନାହିଁ। ଯଦି ଶୂଦ୍ର

Digitized by srujanika@gmail.com

ଏହି ନିୟମ ନମାନେ ତେବେ ସେ ବ୍ରାହ୍ମଣ ବିରୋଧୀ ବୋଲି କୁହାଯିବ ଓ ସେ ପାଇଁ ସେ ଦଣ୍ଡିତ ହେବ। (୧୧/୧୨୯)

**ଶୂଦ୍ରଙ୍କ ଦଣ୍ଡବିଧାନ:**

ଜଣେ ଶୂଦ୍ର ବ୍ରାହ୍ମଣ ବିରୁଦ୍ଧରେ କହିଲେ ତାର ଜିଭକାଟି ଦିଆଯିବ। (୮/୨୭୦)

ଯଦି ଜଣେ ଶୂଦ୍ର କୌଣସି ବ୍ରାହ୍ମଣଙ୍କର ନାମ ଧରି ଡାକିବ, ବ୍ରାହ୍ମଣ ଜାତି ବିଷୟରେ କହିବ ବା ବ୍ରାହ୍ମଣକୁ ତିରସ୍କାର କରିବ ତେବେ ଏକ ଦଶ ଇଞ୍ଚ ଲୁହାକୁ ନିଆଁରେ ପକାଇ ଶୂଦ୍ର ପାଟିରେ ଚେଙ୍କି ଦିଆଯିବ। (୮/୨୭.୧)

ଯଦି କୌଣସି ଶୂଦ୍ର କୌଣସି କାର୍ଯ୍ୟ କରିବା ପାଇଁ ବ୍ରାହ୍ମଣଙ୍କୁ ଆଦେଶ ଦେବ, ତେଲ ଗରମ କରି ତାର ପାଟି ଓ କାନରେ ଢଳାଯିବ। (୮/୨୭୨)

ଯଦି କୌଣସି ଶୂଦ୍ର ବ୍ରାହ୍ମଣର କେଶ, ଦାଡି, ଗୋଡ଼, ବେକ, ଲିଙ୍ଗକୁ ଆଘାତ ଦେବ, ତାର ହସ୍ତ ଛେଦନ କରାଯିବ। (୮/୨୮୩)

ବ୍ରାହ୍ମଣ ବସିଥିବା ସ୍ଥାନରେ ଯଦି ଶୂଦ୍ର ବସେ, ତେବେ ତାରପିଚାରେ ଗରମ ଚେଙ୍କ ଦିଆଯିବା ସହ ତାକୁ ଗ୍ରାମରୁ ବିତାଡିତ କରାଯିବ। (୮/୨୮୧)

ଯଦି ଜଣେ ଶୂଦ୍ର ହାତରେ ବା ବାଡିରେ କୌଣସି ବ୍ରାହ୍ମଣକୁ ଆଘାତ କରେ, ବ୍ରାହ୍ମଣର ଯେଉଁ ଜାଗାରେ ମାଡ ବସିଥାଏ ଶୂଦ୍ରର ସେହି ସ୍ଥାନରେ ପ୍ରହାର କରାଯିବ। ସେ ହାତରେ ମାଡ ଦେଇଥିଲେ ତାହାର ହାତ କାଟି ଦିଆଯିବ। ସେ ଗୋଡରେ ମାଡ ଦେଇଥିଲେ ତାହାର ଗୋଡ କାଟି ଦିଆଯିବ।

(୯/୨୨୪,୨୪୮)

ବ୍ରାହ୍ମଣର ଜିନିଷ ଶୂଦ୍ର ନେଲେ ବା ଅପହରଣ କଲେ ଶୂଦ୍ରକୁ ଶାରୀରିକ ଯନ୍ତ୍ରଣା ଦେଇ ଦେଇ ମରାଯିବ। (୯/୨୪୮)

ଜଣେ ଶୂଦ୍ର ଯଦି ନିଜର ବୃତ୍ତି ଛାଡି ଅନ୍ୟର ବୃତ୍ତି ଗ୍ରହଣ କରିବାକୁ ପ୍ରୟାସ କରେ, ତେବେ ରାଜା ତାର ସମସ୍ତ ସଂପତ୍ତି ବାଜ୍ୟାପ୍ତ କରିବା ସହ ତାକୁ ରାଜ୍ୟରୁ ବହିଷ୍କାର କରିବେ। (୧୦/୯୬)

Digitized by srujanika@gmail.com

ଜଣେ ଅବ୍ରାହ୍ମଣ ଯଦି ଜଣେ ବ୍ରାହ୍ମଣ ମହିଳାଙ୍କୁ ବଳତ୍କାର କରନ୍ତି, ତେବେ ତାଙ୍କୁ ମୃତ୍ୟୁ ଦଣ୍ଡ ଦିଆଯିବ । (୮/୩୫୯)

ଯଦି ଜଣେ ଶୂଦ୍ର ଏକ ବ୍ରାହ୍ମଣ କନ୍ୟାକୁ ଧର୍ଷଣ କରିବ, ତେବେ ତାର ଯୌନାଙ୍ଗକୁ ଛେଦନ କରାଯିବ । ଯଦି ଜଣେ ବ୍ରାହ୍ମଣ ପରିବାରରେ କୌଣସି କନ୍ୟାକୁ ବଳତ୍କାର କରିବ, ତେବେ ଶୂଦ୍ରର ଶରୀରକୁ ଖଣ୍ଡ ଖଣ୍ଡ କରି ଦିଆଯିବ ଓ ତାର ସମସ୍ତ ସଂପତ୍ତିକୁ ବାଜ୍ୟାପ୍ତ କରାଯିବ । (୮/୩୭୪)

ଶୂଦ୍ର ମୁହଁରୁ ଶପଥ ଦ୍ୱାରା ସତ୍ୟ ବାହାର କରିବାକୁ ହେଲେ ତାର ହାତରେ ତତଲା ଲୁହା ଧରାଯିବା ଦରକାର ବା ତାକୁ ପାଣିରେ ବୁଡାଇବା ଆବଶ୍ୟକ । (୮/୧୧୪)

ଯଦି ଶୂଦ୍ରର ହାତ ନ ପୋଡେ ବା ସେ ପାଣିରେ ନ ମରେ ତେବେ ଯାଇ ଶୂଦ୍ରର କଥା ସତ ବୋଲି ଗ୍ରହଣ କରାଯିବ । (୮/୧୧୫)

ଶୂଦ୍ରମାନେ ଯେଉଁ ରାଜ୍ୟରେ କେବଳ ଭୃତ୍ୟ ବା ଦାସ ଭାବେ ରହିବେ ସେହି ରାଜ୍ୟ ବ୍ରାହ୍ମଣଙ୍କର ରହିବାର ଉପଯୁକ୍ତ ସ୍ଥାନ । (୨/୨୪)

ଯେଉଁଠି ଶୂଦ୍ରଶାସନ କରେ, ସେଠାରେ ବ୍ରାହ୍ମଣ ବାସ କରିବ ନାହିଁ । ଚଣ୍ଡାଳମାନଙ୍କ ବାସସ୍ଥାନ ନିକଟରେ ବ୍ରାହ୍ମଣ ରହିବ ନାହିଁ । (୪/୬୧)

**ଶୂଦ୍ରଙ୍କର ଅଧିକାର ନାହିଁ :**

ଶୂଦ୍ରଙ୍କୁ ଶାସ୍ତ୍ର ଶିକ୍ଷା ଦିଆଯାଇ ପାରିବେ ନାହିଁ । ବ୍ରାହ୍ମଣମାନେ କେବଳ ନିଜର ଶିଷ୍ୟ ବା ଅନୁଗାମୀ ଛଡା ଅନ୍ୟ କାହାକୁ ଖାଦ୍ୟ ଦେବେ ନାହିଁ । ହୋମର ପଦାର୍ଥ କୌଣସି ଶୂଦ୍ରକୁ ଦିଆଯିବ ନାହିଁ । ବ୍ରାହ୍ମଣଙ୍କୁ ଅସ୍ୱୀକାର କରୁଥିବା କୌଣସି ବ୍ୟକ୍ତିଙ୍କ ଘରେ କୌଣସି ପୂଜା ବା କର୍ମ ବ୍ରାହ୍ମଣ କରିବେ ନାହିଁ । (୪/୮୦)

ଶୂଦ୍ରର ଶବକୁ ଦକ୍ଷିଣ ଦିଗ ଦେଇ ନିଆଯିବ । କ୍ଷତ୍ରିୟର ଶବକୁ ଉତ୍ତର ଦିଗ ଦେଇ ନିଆଯିବ । ବୈଶ୍ୟର ଶବକୁ ପଶ୍ଚିମ ଦିଗ ଦେଇ ନିଆଯିବ । କେବଳ ବ୍ରାହ୍ମଣର ଶବକୁ ପୂର୍ବ ଦିଗ ଦେଇ ନିଆଯିବ । (୫/୯୨)

Digitized by srujanika@gmail.com

**ବ୍ରାହ୍ମଣ ନିୟମ:**

ପ୍ରତ୍ୟେକ ଦିନ ସକାଳେ ରାଜା ବ୍ରାହ୍ମଣମାନଙ୍କୁ ଓ ବେଦ, ଶାସ୍ତ୍ରର ପ୍ରଚାରକ ମାନଙ୍କୁ ସ୍ୱାଗତ କରିବେ । ସେ ବ୍ରାହ୍ମଣଙ୍କର ସମସ୍ତ ଆବଶ୍ୟକତାକୁ ପୂରଣ କରିବା ସହ ବ୍ରାହ୍ମଣଙ୍କ ନିର୍ଦ୍ଦେଶାନୁଯାୟୀ ରାଜ୍ୟ ଶାସନ କରିବେ । (୭/୩୭)

ଯେଉଁ ରାଜ୍ୟରେ ବେଦଜ୍ଞ ଓ ବ୍ରାହ୍ମଣମାନେ ଖାଦ୍ୟ ପାଇଁ ଅଭାବରେ ରହିବେ, ସେ ରାଜ୍ୟ ଧ୍ୱଂସ ପ୍ରାପ୍ତ ହେବ । (୭/୧୩୪)

ଯଦି ମନୁ ସଂହିତାରେ ଲେଖାଥିବା ନିୟମ (ବର୍ଣ୍ଣାଶ୍ରମ ଧର୍ମ) ଅନୁଯାୟୀ ରାଜ୍ୟ ଶାସନ ଜଣେ ରାଜା କରିବେ ନାହିଁ, ତେବେ ମନ୍ତ୍ରୀ ଓ ଅନ୍ୟମାନେ ରାଜାଙ୍କୁ ହତ୍ୟା କରିବେ । (୭/୨୭)

ରାଜାଙ୍କର କ୍ଷମତାକୁ ପ୍ରତିହତ କରି ବ୍ରାହ୍ମଣ ଶୂଦ୍ରକୁ ଦମନ କରିବେ । ଜଣେ ରାଜା ଯଦି ବର୍ଣ୍ଣଧର୍ମକୁ ଲଂଘନ କରେ, ତେବେ ବ୍ରାହ୍ମଣ ଅସ୍ତ୍ର ଧାରଣକରି ତାଙ୍କ ବିରୁଦ୍ଧରେ ସଂଗ୍ରାମ କରିବେ । (୮/୩୪୮)

ଗୋଟିଏ ଗାଇ ଏକ ସନ୍ତସନ୍ତିଆ ଚୋରାବାଲିରେ ପଡି ଯେପରି କଷ୍ଟ ପାଏ, ସେହିପରି ଶୂଦ୍ର ପ୍ରଦତ୍ତ ନ୍ୟାୟଦ୍ୱାରା ଯେଉଁ ରାଜ୍ୟ ଚାଲେ ତାହା ଦୁଃଖ ଆଣିଥାଏ । (୮/୨୧)

ଯଦି କୌଣସି ସ୍ଥାନରେ ରାଜା କିଛି ଧନ ଭଣ୍ଡାରର ସୂଚନା ପାଆନ୍ତି ତେବେ ସେ ସେଥିରୁ ଅଧା ବ୍ରାହ୍ମଣଙ୍କୁ ଦେବେ ଓ ଅନ୍ୟ ଅଂଶଟି ନିଜ ଧନ ଭଣ୍ଡାରରେ ମିଶାଇବେ । (୮/୩୮)

**ମୃତ୍ୟୁଦଣ୍ଡ:**

ବ୍ରାହ୍ମଣମାନଙ୍କୁ ମୃତ୍ୟୁ ଦଣ୍ଡ ଦିଆଯାଇ ପାରିବ ନାହିଁ । ମୃତ୍ୟୁ ଦଣ୍ଡ ପରିବର୍ତ୍ତେ ବ୍ରାହ୍ମଣଙ୍କୁ ଲଣ୍ଡା କରିବା ତାଙ୍କ ପାଇଁ ସବିଶେଷ ଦଣ୍ଡ ଅଟେ । ଅନ୍ୟମାନଙ୍କୁ ମୃତ୍ୟୁଦଣ୍ଡ ଦିଆଯିବ । (୮/୩୭୯)

ଯଦି ବି ଜଣେ ବ୍ରାହ୍ମଣ ଏକ ବଡ଼ ଅପରାଧ କରନ୍ତି ତେବେ ତାଙ୍କୁ ଯନ୍ତ୍ରଣା ଦିଆଯିବ ନାହିଁ କିମ୍ବା ମୃତ୍ୟୁ ଦଣ୍ଡରେ ଦଣ୍ଡିତ କରାଯାଇ ପାରିବ ନାହିଁ । ତାଙ୍କୁ ତାଙ୍କର ଅସ୍ଥାବର ସଂପତ୍ତି ନେଇ ଗ୍ରାମରୁ ବାହାରିଯିବାକୁ କୁହାଯିବ । (୮/୩୮୦)

Digitized by srujanika@gmail.com

## ମହିଳାମାନଙ୍କ ବିଷୟରେ:

ଶଯ୍ୟା ସାଙ୍ଗ , ସୌନ୍ଦର୍ଯ୍ୟ, ଗର୍ଭଧାରଣ, ରାଗ, ମିଥ୍ୟା, ବିଶ୍ୱାସ ଘାତକତା ମହିଳାମାନଙ୍କ ପାଇଁ ସୃଷ୍ଟି କରାଯାଇଛି। (୯/୧୭)

ଯଦି ପରିବାରରେ ସ୍ତ୍ରୀ ଲୋକ ସନ୍ତାନ ପ୍ରସବ କରିପାରୁ ନାହିଁ, ତେବେ ସ୍ୱାମୀ ଓ ଶ୍ୱଶୁରଙ୍କର ଅନୁମତି ନେଇ ସ୍ୱାମୀଙ୍କ ଭାଇମାନଙ୍କ ସହ ଯୌନ ସଂପର୍କ ରଖି ସନ୍ତାନ ଜନ୍ମ କରିପାରିବେ। (୯/୫୯)

ଜଣେ ମହିଳାଙ୍କର ସ୍ୱାମୀ ଯଦି ଚରିତ୍ରହୀନ, ଅମାର୍ଜିତ ଓ ଅନ୍ୟ ନାରୀମାନଙ୍କ ସହ ମନ୍ଦସଂପର୍କ ରଖିଥାନ୍ତି, ତେବେ ମଧ୍ୟ ଜଣେ ମହିଳା ନିଜର ସ୍ୱାମୀଙ୍କୁ ଦେବତା ପରି ସମ୍ମାନ କରିବା ତାଙ୍କର କର୍ତ୍ତବ୍ୟ। (୫/୧୫୪)

ଅବିବାହିତ ଥିବା ବେଳେ ଜଣେ ଝିଅ ନିଜର ବାପାଙ୍କୁ, ବିବାହ ପରେ ନିଜର ସ୍ୱାମୀଙ୍କୁ ଓ ସ୍ୱାମୀଙ୍କ ମୃତ୍ୟୁ ହେଲେ ନିଜର ପିଲାମାନଙ୍କର କଥାକୁ ମାନିବାକୁ ବାଧ୍ୟ। ଜଣେ ମହିଳା କେବେ ହେଲେ ସ୍ୱାଧୀନ ଭାବେ ନିଜକୁ ପରିଚାଳିତ କରିପାରିବ ନାହିଁ। (୫/୧୪୮)

ଜଣେ ମହିଳା ବା ଅବ୍ରାହ୍ମଣଙ୍କୁ ହତ୍ୟା କରିବା ପାପ ନୁହେଁ।
(୧୧/୬୫)

ଆବଶ୍ୟକ ଥାଇ ମଧ୍ୟ ଜଣେ ରାଜା ଅଧିକ କର ବସାଇ ପାରିବେ ନାହିଁ। ଏହା ବ୍ରାହ୍ମଣମାନଙ୍କୁ କ୍ରୋଧିତ କରିବ। ବ୍ରାହ୍ମଣମାନେ କ୍ରୋଧିତ ହେଲେ ସେମାନେ ରାଜାଙ୍କୁ ଅଭିଶାପ ଦେବେ ଓ ତାହାଦ୍ୱାରା ରାଜ୍ୟ ଧ୍ୱଂସ ହୋଇଯିବ।
(୯/୩୧୩)

ଅଗ୍ନି ଶବକୁ ଭଷ୍ମ କରିଦିଏ। ହୋମର ଅଗ୍ନି ସୁଫଳ ଦେଇଥାଏ। ଯଦିବି ଜଣେ ବ୍ରାହ୍ମଣ ମନ୍ଦ କାର୍ଯ୍ୟ କରେ, ତଥାପି ସେ ସମ୍ମାନର ପାତ୍ର ଓ ପୂଜାଯୋଗ୍ୟ, କାରଣ ସେ ସମସ୍ତଙ୍କ ଠାରୁ ଶ୍ରେଷ୍ଠ।

(୯/୩୧୮,୩୧୯)



Digitized by srujanika@gmail.com

# ପରିଚ୍ଛେଦ - ୪

# ଅସ୍ପୃଶ୍ୟତା

## ଭାଇକମ ଆନ୍ଦୋଳନର ଇତିହାସ

(୧୯୫୮ ଡିସେମ୍ବର ୨୫, ୨୬ ରେ କନ୍ୟାକୁମାରୀଠାରେ ଦେଇଥିବା ଭାଷଣ)

(କେରଳ ରାଜ୍ୟରେ ଭାଇକମ ହେଉଛି ଏକ ସୁନ୍ଦର ଗ୍ରାମ। ପୂର୍ବରୁ ଏହା ତ୍ରାଭାଙ୍କର ରାଜ୍ୟରେ ଥାଇ ରାଜା ମାନଙ୍କ ଦ୍ୱାରା ଶାସିତ ହେଉଥିଲା। ୧୯୨୪ ମସିହା ପର୍ଯ୍ୟନ୍ତ ନୀଚ ଜାତିର ଲୋକମାନେ ମନ୍ଦିର ଥିବା ରାସ୍ତାରେ ଚାଲିବା ମନା ଥିଲା। ମନ୍ଦିର ରାସ୍ତାରେ ସେମାନେ ଚାଲିକରି ଗଲେ ଦିଅଁ ଅପବିତ୍ର ହୋଇଯିବେ ବୋଲି ସେମାନଙ୍କ ପ୍ରତି ଏହି ନିଷେଧ ରହିଥିଲା।

ପେରିୟାର ରାମସ୍ୱାମୀ ମାନବିକ ଅଧିକାର ଓ ଆତ୍ମମର୍ଯ୍ୟାଦା ପାଇଁ ଥିଲେ ଜଣେ ସଂଗ୍ରାମୀ ମଣିଷ। ଏକ ସର୍ବସାଧାରଣ ରାସ୍ତାରେ ସମସ୍ତଙ୍କର ଚାଲିବାର ଅଧିକାର ପାଇଁ ଭାଇକମରେ ଯେଉଁ ଆନ୍ଦୋଳନ ହୋଇଥିଲା ସେଥିରେ ସେ ଅଂଶଗ୍ରହଣ କରିଥିଲେ। ଏହି ଆନ୍ଦୋଳନର ଆୟୋଜକ ଥିଲେ ଜର୍ଜ ଜୋସେପ୍। ପେରିୟାର ଏଥିପାଇଁ ୨ଥର କାରାବରଣ କରିଥିଲେ ଓ ଦଳିତ ମାନଙ୍କର ଏହି ଅଧିକାରକୁ ସାବ୍ୟସ୍ତ କରିଥିଲେ। ପେରିୟାରଙ୍କୁ ଏଥିପାଇଁ ଭାଇକମ ଆନ୍ଦୋଳନର ନାୟକ (ହିରୋ) କୁହାଯାଏ।)

ମାନନୀୟ ସଭାପତି ଓ ବନ୍ଧୁଗଣ,

କନ୍ୟାକୁମାରୀ ଜିଲ୍ଲାକୁ ଆସିବାପାଇଁ ସାଥିମାନେ ମୋତେ ପୂର୍ବରୁ ନିମନ୍ତ୍ରଣ କରିଥିଲେ। ମୁଁ ଯେହେତୁ ଅନ୍ୟ ଜିଲ୍ଲାରେ ଭ୍ରମଣ କରୁଥିଲି ଓ ବିଭିନ୍ନ କାର୍ଯ୍ୟକ୍ରମ ନେଇ ବ୍ୟସ୍ତ ରହିଥିଲି ତେଣୁ ପୂର୍ବରୁ ଏଠାକୁ ଆସିପାରି ନଥିଲି। ମୁଁ ଯେଉଁ ଜାଗାକୁ ଯାଉଛି ଲୋକମାନଙ୍କ ଭିତରେ ଗୋଟିଏ ବଡ଼ ଜାଗରଣ ଦେଖିପାରୁଛି। ହଜାର ହଜାର ଲୋକ ମଧ୍ୟ ସଭାରେ ଯୋଗ ଦେଉଛନ୍ତି।ପ୍ରାୟ ୧୦ବର୍ଷ ତଳେ ଏହି

Digitized by srujanika@gmail.com

ପାଖରେ ମାର୍ଥାଣ୍ଡମ୍‌ଠାରେ ମୁଁ ଗୋଟିଏ ସଭାରେ ଭାଷଣ ଦେଇଥିଲି । ସେ ସମୟରେ ଆପଣମାନେ ଗୋଟିଏ କରଦ ରାଜ୍ୟର ନାଗରିକ ଥିଲେ । ଆପଣମାନେ ଜଣେ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲେ, ଓ ଆମେ ବ୍ରିଟିଶ୍ ସରକାରର ନାଗରିକ ଥିଲୁ ।

ତେବେ ଆମେମାନେ ସମସ୍ତେ ଥିଲେ ଶୂଦ୍ର । ଆମ ଦ୍ରାବିଡମାନଙ୍କୁ ନାନା ନିର୍ଯାତନା ସହ ଅସମ୍ମାନ କରାଯାଉଥିଲା । ତଥାକଥିତ ଉଚ୍ଚଜାତିର ଲୋକମାନେ ଆମକୁ ଶୂଦ୍ର କହି ନାନା ଭାବରେ ଶୋଷଣ କରୁଥିଲେ ।

ଆଜି ଆମେମାନେ ଗୋଟିଏ ସ୍ୱାଧୀନ ଦେଶର ନାଗରିକ । ଆମେ ତାମିଲନାଡୁର ତାମିଲ୍ ଅଧିବାସୀ । ଆମେ ସମସ୍ତେ ଏକତ୍ର ହୋଇଛେ । ଆମର ଏକତା ହେଉଛି ଆମର.ଶକ୍ତି । ଆମେମାନେ ଗୋଟିଏ ପରିବାରର ସଦସ୍ୟ ଭଳି, କାରଣ ଆମେମାନେ ଗୋଟିଏ ଦେଶର ନାଗରିକ । ଆମ ଆଦର୍ଶର ସଫଳ ରୂପାୟନ ପାଇଁ ଆମକୁ ଏକତ୍ର କାର୍ଯ୍ୟ କରିବାକୁ ହେବ । ପ୍ରାୟ ୩୫ ବର୍ଷତଳେ ତାମିଲନାଡୁରେ ସକଳ ଜାତିଗତ ବୈଷମ୍ୟକୁ ଦୂର କରିବା ପାଇଁ ମୁଁ ଉଦ୍ୟମ କରିଥିଲି । ବିଶେଷ କରି ଅସ୍ପୃଶ୍ୟତା ବିରୋଧରେ ମୁଁ ବିଭିନ୍ନ ଆନ୍ଦୋଳନରେ ସଂଯୁକ୍ତ ହୋଇଥିଲି । ହଜାର ହଜାର ବର୍ଷ ଧରି ସର୍ବସାଧାରଣ ରାସ୍ତାରେ ଚାଲିବାର ଅଧିକାର ବି ଆମର ନଥିଲା । ୫୦ ବର୍ଷର ବ୍ୟକ୍ତିମାନେ ଏସବୁ ଘଟଣାକୁ ମନେ ପକାଇ ପାରିବେ । ଆଜିର ଯୁବକମାନେ ଅତୀତର ସାମାଜିକ ବ୍ୟବସ୍ଥା ବିଷୟରେ ହୁଏତ ଜାଣିପାରିବେ ନାହିଁ ।

ସେହି ଅତୀତରେ ଯଦି ଏହି ପ୍ରକାରର ଆନ୍ଦୋଳନ ହୋଇନଥାନ୍ତା, ତେବେ ଆମ ଭିତରୁ ଅଧିକାଂଶ ସର୍ବସାଧାରଣ ରାସ୍ତାରେ ଚାଲିବାର ଅଧିକାର ପାଇନଥାନ୍ତେ । ଅତୀତରେ ଆମ ଦେଶର ସାମାଜିକ ବ୍ୟବସ୍ଥା ଅତ୍ୟନ୍ତ ଖରାପ ଥିଲା । ରକ୍ଷଣଶୀଳ ବ୍ରାହ୍ମଣମାନଙ୍କ ହାତରେ ସରକାର ରହିଥିଲା । ବର୍ଣ୍ଣାଶ୍ରମ ଧର୍ମ ସେତେବେଳେ ପୂର୍ଣ୍ଣଭାବରେ ପାଳିତ ହୋଇଥିଲା । ଆମ ଦେଶରେ ଅନେକ ଅବ୍ରାହ୍ମଣ ଆନ୍ଦୋଳନ ଯୋଗୁଁ ଆମେମାନେ କେତେକ ଅଧିକାର ହାସଲ କଲେ । ବ୍ରାହ୍ମଣମାନଙ୍କ ଆଧିପତ୍ୟ ବିରୋଧରେ କେତେକ ଆନ୍ଦୋଳନ ସଫଳ ହୋଇଥିଲା । ଅବ୍ରାହ୍ମଣ ଆନ୍ଦୋଳନକୁ

Digitized by srujanika@gmail.com

ସାମାଜିକ ନ୍ୟାୟ ଦଳ କୁହାଯାଉଥିଲା । ସେତେବେଳେ ଜଷ୍ଟିସ୍ ନାମରେ (ନ୍ୟାୟ)ଏକ ପତ୍ରିକା ପ୍ରକାଶ ପାଉଥିଲା ଓ ଏହି ଆଧାରରେ ଜଷ୍ଟିସ୍ ପାର୍ଟି ଭାବରେ ଏହାର ଏକ ପରିଚୟ ସୃଷ୍ଟି ହୋଇଥିଲା ।

ବ୍ରାହ୍ମଣମାନେ ବ୍ରାହ୍ମଣସମାଜ ଓ ବ୍ରାହ୍ମଣ ମହାସଭା ନାମରେ ମଧ୍ୟ ଦୁଇଟି ସଂଗଠନ ଗଠନ କରିଥିଲେ । ସେମାନେ ଆମ ବିରୋଧରେ କାର୍ଯ୍ୟ କରୁଥିଲେ । ଆମର କେତେକ ନାଯ୍ୟ ଅଧିକାରରୁ ଆମକୁ ବଞ୍ଚିତ କରିବା ପାଇଁ ସେମାନେ କାର୍ଯ୍ୟ କରୁଥିଲେ । ବ୍ରାହ୍ମଣମାନେ ନିଜକୁ ଉଚ୍ଚ ଜାତିର ବ୍ୟକ୍ତି କହି ଗର୍ବ ଅନୁଭବ କରୁଥିଲେ । ମନୁସଂହିତା ଓ ଅନ୍ୟାନ୍ୟ ହିନ୍ଦୁ ଶାସ୍ତ୍ରରେ ଆମକୁ ଶୂଦ୍ର କହି ନ୍ୟୂନ କରାଯାଇଛି । ଆମକୁ ନ୍ୟୂନ ଓ ପଦଦଳିତ କରି ରଖିବାକୁ ସର୍ବଦା ପ୍ରୟାସ ହୋଇଛି ।

ଦ୍ରାବିଡ କାଜାଗମ୍ ବା ତାମିଲ କାଜାଗମ ପରିବର୍ତ୍ତେ ଆମେମାନେ ନିଜକୁ ଶୂଦ୍ର କାଜାଗମ କହିବା ଯଥାର୍ଥ ହେବବୋଲି ମୁଁ ମନେ କରୁଛି । ସେଥିପାଇଁ ଦକ୍ଷିଣ ଭାରତୀୟ ଲିବେରାଲ ଫେଡରେସନ୍ ଓ ଜଷ୍ଟିସ୍ ପାର୍ଟିର ନାମକୁ ଦ୍ରାବିଡ କାଜାଗମ୍ ପରିବର୍ତ୍ତନ କରିବା ଆବଶ୍ୟକ । ତାହା ଦ୍ୱାରା ଆମେ ପୃଥିବୀକୁ ଆମର ପରିଚୟ ଜଣାଇ ପାରିବା । ଦ୍ରାବିଡମାନେ ଏକ ସମ୍ମାନାସ୍ପଦ ଜନଗୋଷ୍ଠୀ, ଯାହା ପୃଥିବୀବାସୀ ଜାଣନ୍ତି ।

ଜଷ୍ଟିସ୍ପାର୍ଟି ଯାହା ଏକ ଅବ୍ରାହ୍ମଣ ଆନ୍ଦୋଳନ ଥିଲା ତାହାଦ୍ୱାରା ୧୯୧୯ ଓ ୧୯୨୦ ରେ ତାମିଲ୍ନାଡୁରେ ହୋଇଥିବା ଆନ୍ଦୋଳନ ବେଶ୍ ଉଲ୍ଲେଖନୀୟ । ଜଷ୍ଟିସ୍ପାର୍ଟିର ଉଦ୍ୟମରେ ହୋଇଥିବା ଏହି ଆନ୍ଦୋଳନ ଯୋଗୁଁ ତାମିଲ୍ନାଡୁ, ଆନ୍ଧ୍ର, କର୍ଣ୍ଣାଟକ ଓ କେରଳରେ ସର୍ବସାଧାରଣ ରାସ୍ତାରେ ସମସ୍ତେ ଚାଲିବାର ସୁଯୋଗ ପାଇଲେ । ଏହା ଜଷ୍ଟିସ୍ପାର୍ଟିର କ୍ଷମତାଯୋଗୁଁ ସମ୍ଭବ ହେଲା । ଜଷ୍ଟିସ୍ ପାର୍ଟି କୂଅରୁ ସବୁ ଜାତିର ଲୋକମାନେ ଜଳନେବା ପାଇଁ ଏକ ଆଇନ୍ ପ୍ରଣୟନ କଲା । ଅତୀତରେ କେବଳ ବ୍ରାହ୍ମଣମାନେ ହିଁ କୂଅରୁ ଜଳନେଇ ପାରୁଥିଲେ । ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ ଏହା ଏକ ଉଲ୍ଲେଖନୀୟ ଘଟଣାଥିଲା ।

ଗାନ୍ଧିଜୀଙ୍କ ଆର୍ବିଭାବ ପୂର୍ବରୁ ଏହାସବୁ ହୋଇଥିଲା । ସୁତରାଂ ଗାନ୍ଧିଜୀଙ୍କ ଯୋଗୁଁ ହିଁ ଏହି ସାମାଜିକ ପରିବର୍ତ୍ତନ ହେବା ଯେଉଁମାନେ କୁହନ୍ତି, ତାହା ସ-ମ୍ପୂର୍ଣ୍ଣ

Digitized by srujanika@gmail.com

ମିଛ ଓ ଉଦ୍ଦେଶ୍ୟ ପ୍ରଣୋଦିତ। ଏପରିକି ଜଷ୍ଟିସପାର୍ଟି ପଞ୍ଚାୟତ ଓ ମ୍ୟୁନିସିପାଲଟିରେ ସବୁ ଶ୍ରେଣୀର ଲୋକ ପ୍ରତିନିଧିତ୍ୱ କରିବା ପାଇଁ ରାସ୍ତା ଦେଖାଇଥିଲେ। ଉଚ୍ଚଜାତିର ଲୋକମାନେ ବ୍ୟବସ୍ଥାପକ ସଂସ୍ଥା ମାନଙ୍କରେ ଯେଉଁ ଭଳି ସଭ୍ୟ ରହୁଥିଲେ, ସେଠାକୁ ମଧ୍ୟ ନୀଚ ଜାତିର ଲୋକମାନଙ୍କୁ ସମାନ ଅଧିକାର ଦେଇ ପଠାଯାଇଥିଲା। ଚକିଲି, ପଲ୍ଲାର (ତାମିଲନାଡୁର ଦୁଇ ଅସ୍ପୃଶ୍ୟଜାତି) ମଧ୍ୟ ବ୍ୟବସ୍ଥାପକ ସଭାକୁ ମନୋନୀତ ହୋଇଥିଲେ। ଆପଣମାନେ ଏହି ସତ୍ୟକୁ ବୁଝିବା ଆବଶ୍ୟକ।

ଗାନ୍ଧୀଙ୍କର ଯୋଜନା ଭିନ୍ନ ରକମର ଥିଲା। ଶୂଦ୍ର ଓ ଅସ୍ପୃଶ୍ୟ ଜାତିର ଲୋକମାନେ ବ୍ରାହ୍ମଣମାନେ ବ୍ୟବହାର କରୁଥିବା କୂଅ ପୋଖରୀକୁ ବ୍ୟବହାର କରିବା ସପକ୍ଷରେ ଗାନ୍ଧୀ ନଥିଲେ। ଉଚ୍ଚଜାତିର ଲୋକମାନେ ଯାଉଥିବା ମନ୍ଦିର ଭିତରକୁ ଅସ୍ପୃଶ୍ୟମାନଙ୍କୁ ପ୍ରବେଶ ଅଧିକାର ଦେବା ଗାନ୍ଧିଜୀ ଚାହିଁନଥିଲେ। ପ୍ରାଥମିକ ଅବସ୍ଥାରେ ସେ କେବଳ ଉଚ୍ଚଜାତିର ଲୋକଙ୍କର ଅଧିକାର ପାଇଁ ସ୍ୱର ଉଠାଇଥିଲେ। ସେ ମନୁସଂହିତାର ସପକ୍ଷରେ ଥିଲେ। ଉଚ୍ଚଜାତି ବ୍ରାହ୍ମଣ ମାନଙ୍କ ପାଇଁ ଓ ନୀଚଜାତି ଶୂଦ୍ରମାନଙ୍କ ପାଇଁ ପୃଥକ୍ ପୃଥକ ମନ୍ଦିର, କୂଅ ପୋଖରୀ ସେ ଚାହୁଁଥିଲେ। ସେହିପରି ଉଚ୍ଚ ଜାତିର ବସ୍ତି ଓ ନୀଚ ଜାତି ଶୂଦ୍ରମାନଙ୍କ ବସ୍ତି ଅଲଗା ହେବା ପାଇଁ ସେ ପ୍ରଥମେ ଭାବୁଥିଲେ। ମୁଁ ଏହା ଯାହା କହୁଛି କେହି ଏହାକୁ ଅସ୍ୱୀକାର କରିପାରିବ କି? ଆଜି ଗାନ୍ଧୀଙ୍କ ବିଷୟରେ ଭୁଲ୍ ପ୍ରଚାର କରାଯାଉଛି। ଗାନ୍ଧୀଙ୍କ ଧାରା ଓ ବିଚାର ବିଷୟରେ ଆଜି ଅନେକ କଥା କୁହାଯାଉଛି।

ମୁଁ ତାମିଲନାଡୁ କଂଗ୍ରେସ କମିଟିର ସ-ାଦକ ଥାଏ। ଜାତୀୟ କଂଗ୍ରେସ ନୀଚଜାତି ଶୂଦ୍ରମାନଙ୍କ ପାଇଁ ସ୍ୱତନ୍ତ୍ର ବିଦ୍ୟାଳୟ ଓ ମନ୍ଦିର ତିଆରି କରିବାକୁ ୪୮୦୦୦ ଟଙ୍କା ତାମିଲନାଡୁକୁ ଦେଲେ। ପାରିୟା, ଚକିଲି, ପଲ୍ଲାର ପରି ନୀଚ ଜାତିର ଶୂଦ୍ରମାନଙ୍କ ପାଇଁ ଏହି ଟଙ୍କା ପଠାଯାଇଥିଲା। ପତ୍ରରେ ନିର୍ଦ୍ଦେଶ ଥିଲାଯେ ଉଚ୍ଚ ଜାତିର ଲୋକମାନେ ବ୍ୟବହାର କରୁଥିବା ଜଳାଶୟ ବା ମନ୍ଦିର ଭିତରକୁ ନୀଚ ଜାତିର ଲୋକମାନେ ଯାଇ ବିଶୃଙ୍ଖଳା ସୃଷ୍ଟି କରିବା ଠିକ୍ ନୁହେଁ।

ତାହା ପୂର୍ବରୁ ଜାତି ବର୍ଣ୍ଣ ନିର୍ବିଶେଷରେ ସବୁ ପିଲାଙ୍କର ସ୍କୁଲରେ ପଢିବାର ଅଧିକାର ଅଛି ବୋଲି ଜଷ୍ଟିସ୍ ପାର୍ଟି ସରକାର ନିୟମ କରିପାରିଥିଲା। ଶିକ୍ଷା

Digitized by srujanika@gmail.com

ଅନୁଷ୍ଠାନରେ କୌଣସି ଜାତିଆଣ ଭେଦଭାବ ନରଖିବା ପାଇଁ ବହୁ ପୂର୍ବରୁ ଏହା ନିୟମ କରିଥିଲା । ଏହି ଆଇନ୍‌କୁ କଡାକଡି ଭାବେ ପାଳନ କରିବା ପାଇଁ ନିର୍ଦ୍ଦେଶ ଥିଲା । ଏପରିକି ଯେଉଁମାନେ କୌଣସି ବେସରକାରୀ ଶିକ୍ଷା ଅନୁଷ୍ଠାନ ସ୍ଥାପନ କରୁଥିଲେ, ସେମାନେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ଅଂଶର ଶୂଦ୍ର ପିଲାମାନଙ୍କୁ ବିଦ୍ୟାଳୟରେ ନାମ ଲେଖାଇବାକୁ ନିର୍ଦ୍ଦେଶ ଥିଲା । ତାହା ନକଲେ କୌଣସି ବେସରକାରୀ ବିଦ୍ୟାଳୟ ସରକାରୀ ଅନୁଦାନ ପାଇପାରିବ ନାହିଁ ବୋଲି ନିୟମ କରାଯାଇଥିଲା ।

କୌଣସି ବିଦ୍ୟାଳୟ ପରିଦର୍ଶନ ସମୟରେ ପରିଦର୍ଶକ ଅସ୍ପୃଶ୍ୟ ଜାତିର କେତେ ଛାତ୍ର ବିଦ୍ୟାଳୟରେ ନାମ ଲେଖାଇଛନ୍ତି ତାହା ପଚାରୁ ଥିଲେ. ଯଦି କୌଣସି ଅସ୍ପୃଶ୍ୟ ଲୋକ ପିଲାଙ୍କର ନାମ ଲେଖାପାଇଁ ବିଦ୍ୟାଳୟକୁ ଆସିନାହାନ୍ତି ବୋଲି ବିଦ୍ୟାଳୟ କର୍ତ୍ତୃପକ୍ଷ କହୁଥିଲେ, ତେବେ ତାଙ୍କୁ କୁହାଯାଉଥିଲା ଯେ ଆପଣମାନେ ଅସ୍ପୃଶ୍ୟ ଲୋକମାନଙ୍କ ପାଖକୁ ଯାଇ ସେମାନଙ୍କର ପିଲାମାନଙ୍କୁ ବିଦ୍ୟାଳୟକୁ ପଠାଇବା ପାଇଁ ବୁଝାନ୍ତୁ । ଗାନ୍ଧୀଙ୍କ ଆଗମନର ପୂର୍ବରୁ ତାମିଲନାଡୁରେ ସମାଜ ସଂସ୍କାର ପାଇଁ ଏହି ପ୍ରକାରର ଏକ ବାତାବରଣ ସୃଷ୍ଟି ହୋଇ ସାରିଥିଲା ।

ତାମିଲମାନେ ପ୍ରଗତିଶୀଳ ଥିଲାବେଳେ କନ୍ୟାକୁମାରୀ ଜିଲ୍ଲାର ଲୋକମାନେ ବହୁପଛରେ ରହିଛନ୍ତି । ଉଚ୍ଚ ଜାତିର ହିନ୍ଦୁମାନେ ଅସ୍ପୃଶ୍ୟଜାତିର ଅଧିକାରକୁ ସହ୍ୟ କରିବାକୁ ପ୍ରସ୍ତୁତ ନୁହଁନ୍ତି । ଏପରିକି ଅସ୍ପୃଶ୍ୟମାନଙ୍କ ଛାଇ ପଡିଲେ ତଥାକଥିତ ଉଚ୍ଚଜାତିର ଲୋକମାନେ ଅପବିତ୍ର ହୋଇଯିବେ ବୋଲି ଲୋକମାନେ ଭାବୁଛନ୍ତି । ଏହାହିଁ ହେଉଛି ଏ ଅଞ୍ଚଳର ଦୁର୍ଭାଗ୍ୟ ଜନକ ପରିସ୍ଥିତି । ରାସ୍ତାରେ ଗଲାବେଳେ ନୀଚ ଜାତିର ଶୂଦ୍ରମାନେ ଶବ୍ଦ କରି କରି ଯିବେ । ସେମାନଙ୍କ ଉପସ୍ଥିତିକୁ ଜଣାଇବା ପାଇଁ ସେମାନେ ଶବ୍ଦକରି ଲୁଚିକରି ଯିବେ, ଫଳରେ ସେମାନଙ୍କର ଛାଇ ଉଚ୍ଚଜାତି ଲୋକମାନଙ୍କ ଉପରେ ପଡିବ ନାହିଁ । ସ୍ୱାମୀନାରାୟଣ ଗୁରୁଙ୍କ ପରି ସଂସ୍କାରକଙ୍କ ଯୋଗୁ ଶୂଦ୍ରମାନେ କିଛି ସଚେତନ ହୋଇଥିଲେ, ତେବେ ଭାଇକମ୍ ଆନ୍ଦୋଳନ ପରିସ୍ଥିତିରେ ପରିବର୍ତ୍ତନ ଆଣିଲା । ଅସ୍ପୃଶ୍ୟମାନେ ସେମାନଙ୍କର କେତେକ ସର୍ବନିମ୍ନ ଅଧିକାରକୁ ସାବ୍ୟସ୍ତ କଲେ । ଏହି ଘଟଣା ସମ୍ଭବତଃ କେତେକ ଯୁବକମାନେ ଜାଣିନଥିବେ । ଭାଇକମଠାରେ ଅସ୍ପୃଶ୍ୟତା

Digitized by srujanika@gmail.com

ଦୂରୀକରଣ ପାଇଁ ଆମେ ଆନ୍ଦୋଳନ ଆରମ୍ଭ କଲୁ । ଆମକୁ ଅନେକ ଥର ଏଥିପାଇଁ କାରାବରଣ କରିବାକୁ ହୋଇଛି । ଆମକୁ ଲୋକମାନେ ନିର୍ଦ୍ଦୟଭାବେ ମାଡ ଦେଇଛନ୍ତି, ଅସମ୍ମାନ କରିଛନ୍ତି, ତଥାପି ଅସ୍ପୃଶ୍ୟତା ଦୂର କରିବା ପାଇଁ ଆମେ ଅନେକ ତ୍ୟାଗ ସ୍ୱୀକାର କରିଛୁ ।

ସେତେବେଳର ଜେଲ୍‌ମାନଙ୍କରେ କୌଣସି ଶ୍ରେଣୀ ବ୍ୟବସ୍ଥା ନଥିଲା । ବନ୍ଦୀମାନେ ଅତ୍ୟନ୍ତ ଦୟନୀୟ ଭାବେ କାରାଗାରରେ ରହୁଥିଲେ । ସମସ୍ତ କଷ୍ଟ ସ୍ୱୀକାର କରି ଅସ୍ପୃଶ୍ୟତା ଦୂର କରିବା ପାଇଁ ଆମେ ଜେଲ୍ ଯାଉଥିଲୁ । ତେବେ ପରିବର୍ତ୍ତନ କିପରି ଆସିଲା ? ଆମର ବର୍ତ୍ତମାନର ସ୍ଥିତି କ'ଣ ? ଆପଣମାନେ ଯଦି ଏହା ଉପରେ ଚିନ୍ତା କରିବେ, ତେବେ ଦେଖିବେ ଯେ ଜାତିପ୍ରଥା ଓ ଏହାର ଆନୁଷଙ୍ଗିକ ମନ୍ଦବ୍ୟବସ୍ଥା ଗୁଡିକ ଦୂରକରିବା ଦିଗରେ ଆମର ପ୍ରଗତି ଅତ୍ୟନ୍ତ ମନ୍ଥର ମନେ ହୁଏ । ଆମେ ଦୃଢତାର ସହ ଏହି ସାମାଜିକ ବୈଷମ୍ୟକୁ ଦୂର କରିବାକୁ ଉଦ୍ୟମ କଲେ ଏହା ସମାଜରୁ ଦୂର ହୋଇ ପାରିବ ।

ଆପଣମାନେ ଭାଇକମ୍ ଆନ୍ଦୋଳନର ଇତିହାସ ଜାଣିବା ଉଚିତ୍ । ଗୋଟିଏ ଛୋଟ ଘଟଣାରୁ ଏହି ଆନ୍ଦୋଳନର ସୂତ୍ରପାତ ହୋଇଥିଲା ।

ମହାଦେବନ ଜଣେ ଓକିଲ ଥିଲେ । ତାଙ୍କର ଜଣେ ମହକିଲଙ୍କ ପାଇଁ ବିଚାରପତିଙ୍କ ସମ୍ମୁଖରେ ଉପସ୍ଥିତ ହେବା ଆବଶ୍ୟକ ଥିଲା । ମହାରାଜାଙ୍କ ନଅର ଭିତରେ ସେତେବେଳେ ଅଦାଲତ ଚାଲୁଥିଲା । ସେତେବେଳେ ରାଜାଙ୍କର ଜନ୍ମ ଦିବସ ପାଳନ ପାଇଁ ପ୍ରସ୍ତୁତି କାର୍ଯ୍ୟ ଚାଲିଥାଏ । ସମଗ୍ର ପରିବେଶଟିରେ ତାଳଗଛ ପତ୍ରରେ ଛାମୁଡିଆ ହୋଇଥାଏ । ବ୍ରାହ୍ମଣମାନେ ସେଠାରେ ମନ୍ତ୍ରଗାନ କରୁଥାନ୍ତି । ମାଧବନ ନାଦର ଜାତିର ଲୋକଥିଲେ । ସେହି ଛାମୁଡିଆ ବାଟ ଦେଇ ବିଚାରାଳୟକୁ ଯିବା ପାଇଁ ତାଙ୍କୁ ଅନୁମତି ମିଳିଲା ନାହିଁ ।

ଏହି ସମୟରେ ତାମିଲ୍‌ନାଡୁରେ ଜଷ୍ଟିସ୍‌ପାର୍ଟି ଦ୍ୱାରା ଅସ୍ପୃଶ୍ୟତା ଓ ଜାତିପ୍ରଥାର ବିଲୋପ ପାଇଁ ଆନ୍ଦୋଳନ ଚାଲିଥିଲା । ଆନ୍ତର୍ଜାତି ବିବାହପାଇଁ ଲୋକମାନଙ୍କୁ ପ୍ରଭାବିତ କରାଯାଉଥିଲା । ବିଦ୍ୟାଳୟରେ ସବୁଜାତିର ପିଲାମାନେ ପଢିବା ପାଇଁ ପ୍ରଚାର ହୋଇଥିଲା । ବିଭିନ୍ନ ଜାତିର ଲୋକମାନେ ଏକାଠି ବସି

Digitized by srujanika@gmail.com

ଭୋଜନ କରିବାକୁ ଲୋକମାନଙ୍କୁ ଶିକ୍ଷା ଦିଆଯାଉଥିଲା । ଜାତିପଥାର ଦୂରୀକରଣ ପାଇଁ ଜଷ୍ଟିସ୍‌ପାର୍ଟି ଦ୍ୱାରା ତାମିଲନାଡୁରେ ଏହିପରି ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା । ଗାନ୍ଧୀଜୀ ଯେତେବେଳେ ଜଷ୍ଟିସ୍‌ପାର୍ଟିର ଏହି କାର୍ଯ୍ୟକ୍ରମ ବିଷୟରେ ଅବଗତ ହେଲେ, ସେ ସେହି ପ୍ରକାରର କାର୍ଯ୍ୟକ୍ରମକୁ ତାଙ୍କର ରଚନାତ୍ମକ କାର୍ଯ୍ୟସୂଚୀ ଭିତରେ ସଂଶ୍ଳିଷ୍ଟ କଲେ । ଜଷ୍ଟିସ୍‌ପାର୍ଟି ବ୍ରାହ୍ମଣମାନଙ୍କ ରକ୍ଷଣଶୀଳତା ବିରୋଧରେ ଜନଚେତନା ସୃଷ୍ଟି କରୁଥିବାରୁ ବ୍ରାହ୍ମଣମାନେ କେତେକ ଅଂଶରେ ଭୟଭୀତ ହୋଇଥିଲେ । କେତେକ ନେତା ଯଥା ଟି.ଏମ୍.ନାୟର୍ ଓ ସାର ପି. ଥେଗରାୟ୍ ଜନଗଣଙ୍କୁ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ସଚେତନ କରାଇ ତାମିଲ୍‌ନାଡୁରେ କ୍ଷମତା ଅଧିକାର କଲେ । ବ୍ରାହ୍ମଣମାନେ ଜଷ୍ଟିସ୍‌ପାର୍ଟିର ସରକାରକୁ ଆଦୌ ସହ୍ୟ କରିପାରୁନଥିଲେ । ଯେତେବେଳେ ବ୍ରାହ୍ମଣମାନେ ଏହି ଧ୍ୱନି ବା ସ୍ଲୋଗାନ ଦେଉଥିଲେ ଯେ ଆମେ କ୍ଷମତାଲୋଭୀ ନୋହୁଁ । ଆମେ ନିର୍ବାଚନକୁ ବର୍ଜନ କରୁଛୁ । ଏହିପରି ଭୁଲ୍ ସ୍ଲୋଗାନ ଦେଇ ସେମାନେ ଜନଗଣଙ୍କୁ ବିଭ୍ରାନ୍ତ କରୁଥିଲେ । ନାନାପ୍ରକାର ଚକ୍ରାନ୍ତ ଓ ଷଡଯନ୍ତ୍ର କରିବାରେ ସେମାନେ ବ୍ୟସ୍ତଥିଲେ । ଜଷ୍ଟିସ୍ ପାର୍ଟିର ଜନପ୍ରିୟତାକୁ ଅନୁଭବ କରି ଗାନ୍ଧିଜୀ ଅସ୍ପୃଶ୍ୟତାକୁ ତାଙ୍କର କାର୍ଯ୍ୟଧାରା ଭିତରେ ସଂପୃକ୍ତ କଲେ ।

ଜଷ୍ଟିସ୍‌ପାର୍ଟିର ନେତାମାନଙ୍କ ସହ ଯେତେବେଳେ ମୋର ଘନିଷ୍ଠତା ଥିଲା । ସେମାନଙ୍କର ମୋ ପ୍ରତି ଅନେକ ସମ୍ମାନ ଥିଲା, କାରଣ ମୁଁ ଯେତେବେଳେ ବିଭିନ୍ନ ପଦପଦବୀରେ ଥିଲି । ରାଜଗୋପାଳଚାରି ମୋତେ ସାକ୍ଷାତ କରି ଗାନ୍ଧିଜୀଙ୍କର ଜଣେ ଅନୁଗାମୀ ହେବାକୁ ମୋତେ ପ୍ରଭାବିତ କଲେ । ସେ କହିଲେ ଯେ ଏହି ସମାଜ ସଂସ୍କାର କାର୍ଯ୍ୟକ୍ରମ ଗୁଡିକ ଗାନ୍ଧୀ ସଫଳତାର ସହିତ କରିପାରିବେ । ମୁଁ ଏରୋଡ ମ୍ୟୁନିସ୍‌ପାଲିଟିର ଚେୟାରମ୍ୟାନ୍ ପଦବୀରୁ ଇସ୍ତଫାଦେଇ କଂଗ୍ରେସରେ ଯୋଗଦେଲି । ମୁଁ କଂଗ୍ରେସରେ ଯୋଗଦେବା ପର୍ଯ୍ୟନ୍ତ ତାମିଲନାଡୁର କେହି ତାମିଲ୍ କଂଗ୍ରେସ ଦଳର ସଭାପତି ବା ସ-ାଦକ ହୋଇନଥିଲେ । ତାମିଲନାଡୁ କଂଗ୍ରେସ ଇତିହାସରେ ଜଣେ ତାମିଲ ଭାବେ ମୁଁ ଏହି ପଦରେ ନିଯୁକ୍ତ ହେଲି ।

Digitized by srujanika@gmail.com

କମ୍ରେଡ଼.ଟି.ଭି. କଲ୍ୟାଣ ସୁନ୍ଦରମ୍ ଜଣେ ସ୍କୁଲ ଶିକ୍ଷକ ଥିଲେ। ଡଃ ପି. ଭରତ ରାଜଲୁ (ନାଇଡୁ) ପ୍ରପଞ୍ଚମିତ୍ରଁ ପତ୍ରିକାର ସ-ାଦକ ଥିଲେ। ବ୍ରାହ୍ମଣମାନେ ତାଙ୍କୁ ବିଶ୍ୱାସ କରୁନଥିଲେ। କମ୍ରେଡ ଭି.ଓ ଚିଦାମ୍ବରମ୍ (ପିଲାଇ)କସ୍ତୁରୀରଙ୍ଗୀ ଆୟଙ୍ଗରଙ୍କ ଠାରୁ ଅନେକ ସଂପତ୍ତି ନେବା ପରେ ତାଙ୍କର ଦୟାରେ ରହିଥାନ୍ତି।

ବ୍ରାହ୍ମଣମାନେ ସେମାନଙ୍କୁ କୌଣସି ସମ୍ମାନ କରୁନଥିଲେ । ମୁଁ ଯେହେତୁ ଉଚ୍ଚ ପଦପଦବୀରେ ଥିଲି ଓ ଏକ ବଡ ବ୍ୟବସାୟୀ ଗୋଷ୍ଠୀରୁ ଆସିଥିଲି, ସେମାନେ ମୋତେ ଉପେକ୍ଷା କରିପାରୁନଥିଲେ। ଯେକୌଣସି କାର୍ଯ୍ୟପାଇଁ ମୋତେ ବିଶ୍ୱାସ କରୁଥିଲେ ଓ ମୋ ଉପରେ ଆସ୍ଥା ରଖିଥିଲେ। ଆମେ ଉଭୟ ଏକାଠି କାର୍ଯ୍ୟ କରୁଥିଲୁ ଓ ଅସ୍ପୃଶ୍ୟତା ବିରୋଧରେ ଜୋରଦାର ପ୍ରଚାର କରୁଥିଲୁ। ଗୋଟିଏ ହେତୁବାଦୀ ଦୃଷ୍ଟିଭଙ୍ଗୀର ପ୍ରସାର ପାଇଁ ମୁଁ ଅତ୍ୟନ୍ତ ସାହାସର ସହିତ ମୋର ଭାବନାକୁ ବ୍ୟକ୍ତ କରୁଥିଲି। ମୁଁ ମୋର ସମସ୍ତ ସଭାମାନଙ୍କରେ ଖୋଲାଖୋଲି ଭାବରେ କହୁଥିଲି ଯେ ଯଦି ଈଶ୍ୱରଙ୍କର ପ୍ରତିମା ଲୋକମାନଙ୍କର ସ୍ପର୍ଶ ଦ୍ୱାରା ଅପବିତ୍ର ହୋଇଯିବେ, ତେବେ ସେ ପ୍ରକାର ଈଶ୍ୱର ଆମର ଆବଶ୍ୟକ ନାହିଁ। ବରଂ ସେହି ପ୍ରତିମୂର୍ତ୍ତିକୁ ଭାଙ୍ଗି ସର୍ବସାଧାରଣଙ୍କ ପାଇଁ ରାସ୍ତା କରାଯିବା ଆବଶ୍ୟକ। ନଚେତ୍ ନଦୀ ଘାଟମାନଙ୍କରେ ଲୁଗାସଫା କରିବା ପାଇଁ ସେହି ମୂର୍ତ୍ତିମାନଙ୍କୁ ରଖାଯିବା ଉଚିତ୍। ମୁଁ ଯେହେତୁ କୌଣସି କ୍ଷମତା ପାଇଁ ଆଶାୟୀ ନଥିଲି ମୋର ଏହି ସବୁ ପ୍ରଚାର ଦ୍ୱାରା ବ୍ରାହ୍ମଣମାନେ ନିରବ ରହିବାକୁ ବାଧ୍ୟ ହେଉଥିଲେ।

ମୁଁ ଆଜି ଈଶ୍ୱର, ଧର୍ମ ଓ ଜାତିପ୍ରଥା ସ-ର୍କରେ ଯାହା କହୁଛି ସେତେବେଳେ ମଧ୍ୟ ଏହା କହୁଥିଲି। ମୋର ବକ୍ତବ୍ୟ ଶୁଣିବା ପରେ ରାଜଗୋପାଳ ଚାରି ମୋତେ କହୁଥିଲେ ଯେ ମୁଁ ବହୁତ କଡାଭାଷାରେ କହୁଛି। ମୁଁ ଉତ୍ତର ଦେଉଥିଲି ଯେ ଯେଉଁ ପର୍ଯ୍ୟନ୍ତ ଲୋକମାନେ ଅଜ୍ଞ ରହିଛନ୍ତି ସେ ପର୍ଯ୍ୟନ୍ତ ଲୋକମାନଙ୍କୁ ଜାଗ୍ରତ କରିବା ପାଇଁ ଏହି ଭାଷାର ଆବଶ୍ୟକତା ରହିଛି, ସେ ମୋର କଥାଶୁଣି କେବଳ ହସି ଦେଉଥିଲେ।

ଯେତେବେଳେ ମାଧବନଙ୍କୁ ଅଦାଲତ ଭିତ୍ରେ ପ୍ରବେଶ ନେଇ ବିରୋଧ ହେଲା, ସେତେବେଳେ ଏହବା ଜାତିର ଲୋକମାନେ ଏକ ଆନ୍ଦୋଳନ ଆରମ୍ଭ

Digitized by srujanika@gmail.com

କଲେ । କେରଳ କଂଗ୍ରେସ କମିଟିର ସଭାପତି କେ.ପି. କେଶବ ମେନନ୍, ଟି.କେ.ମାଧବନ୍ ଓ ଅନ୍ୟକେତେକ ଏହାର ନେତୃତ୍ୱ ନେଲେ । ରାଜାଙ୍କ ନଅର ଭିତରେ ଯେଉଁଦିନ ପାର୍ଥନା କାର୍ଯ୍ୟକ୍ରମ, ସେହିଦିନଠାରୁ ସେମାନେ ସେମାନଙ୍କର ଆନ୍ଦୋଳନ ଆରମ୍ଭ କଲେ । ସେମାନଙ୍କ ଆନ୍ଦୋଳନ ପାଇଁ ସେମାନେ ଭାଇକମ ସ୍ଥାନଟିକୁ ବାଛିଲେ । ଭାଇକମରେ ଥିବା ଏକ ମନ୍ଦିର ଚାରିପାର୍ଶ୍ୱରେ ଚାରିଦିଗକୁ ରାସ୍ତା ରହିଥିଲା, ଏହି ଆନ୍ଦୋଳନ ପାଇଁ ସେହିଜାଗାଟି ବେଶ୍ ଉପଯୁକ୍ତ ଥିଲା ।

ସେତେବେଳର ନିୟମ ଅନୁଯାୟୀ ଅବରଣଥାନ ଓ ଆୟଥକକରଣ ନୀଚଜାତିର ଲୋକମାନେ ମନ୍ଦିର ରାସ୍ତାରେ ଚାଲିବାକୁ ବାରଣ ଥିଲା । ଯଦି ଜଣେ ଅସ୍ପୃଶ୍ୟ ଅନ୍ୟ ପଟକୁ ଯିବାକୁ ଚାହୁଁଥିଲା, ତେବେ ସେ ମନ୍ଦିର ରାସ୍ତା ପରିହାର କରି ବୁଲି ବୁଲି ଅନ୍ୟ ରାସ୍ତାକୁ ଯାଉଥିଲା । ଏପରିକି ଆଶାରି, ବଣିଆ ଓ ବୁଣାକାର ମାନେ ମନ୍ଦିର ସଂଲଗ୍ନ ରାସ୍ତାରେ ଯିବାର ଅଧିକାର ନଥିଲା । ସବୁ ମନ୍ଦିର ମାନଙ୍କରେ ଏହି ନିୟମ ଥିଲା, ଅର୍ଥାତ୍ ମନ୍ଦିର ରାସ୍ତାରେ ଶୂଦ୍ର ଓ ଅସ୍ପୃଶ୍ୟମାନେ ଚାଲିପାରୁନଥିଲେ । ସୁଚିନ୍ଦ୍ରମଠାରେ ଏହି ନିୟମକୁ କଡାକଡିଭାବେ ପାଳନ କରାଯାଉଥିଲା ।

ଭାଇକମ ମନ୍ଦିର ରାସ୍ତାରେ କେତେକ ଗୁରୁତ୍ୱପୂର୍ଣ୍ଣ ସରକାରୀ କାର୍ଯ୍ୟାଳୟ, ବିଚାରାଳୟ ଓ ଥାନା ରହିଥିଲା । ଯଦି କୌଣସି ଅସ୍ପୃଶ୍ୟକର୍ମଚାରୀଙ୍କ ବଦଳି ହେଉଥିଲା, ତେବେ ସେମାନଙ୍କୁ ମନ୍ଦିର ସଂଲଗ୍ନ ଅଫିସମାନଙ୍କୁ ବଦଳି କରାଯାଉନଥିଲା । ମନ୍ଦିର ପାଖରେ ଥିବା ଦୋକାନମାନଙ୍କୁ କୁଲିମାନଙ୍କ ଦ୍ୱାରା ଜିନିଷ ନେବା କ୍ଷେତ୍ରରେ ବି କଟକଣା ରହିଥିଲା ।

ଯେତେବେଳେ ଭାଇକମ୍ ଆନ୍ଦୋଳନ ଆରମ୍ଭ ହେଲା ୧୯ ଜଣଙ୍କୁ ଗିରଫ କରିବା ପାଇଁ ରାଜା ନିର୍ଦ୍ଦେଶ ଦେଲେ । ସେମାନଙ୍କ ଭିତରେ ଓକିଲ ମାଧବନ, ବାରିଷ୍ଟର କେଶବ ମେନନ୍, ଟିକେ ମାଧବନ, ଜର୍ଜ ଜୋସେପ ଅନ୍ତର୍ଭୁକ୍ତ ଥିଲେ । ସେମାନଙ୍କୁ ସ୍ୱତନ୍ତ୍ର ଶ୍ରେଣୀର ବନ୍ଦୀରୂପେ ରଖାଗଲା । ସେହି ସମୟରେ ରାଜାଙ୍କ ସରକାରରେ ସି. ପିଟ୍ଟ ନାମର ଜଣେ ୟୁରୋପୀୟ ପୋଲିସ୍ ଆଇ.ଜି.ଥିଲେ । ସେ ଆନ୍ଦୋଳନକାରୀ ମାନଙ୍କୁ ଦକ୍ଷତାର ସହ ନିୟନ୍ତ୍ରଣ କଲେ । ଯେତେବେଳେ ୧୯

Digitized by srujanika@gmail.com

ଜଣ ବିଶିଷ୍ଟ ଆନ୍ଦୋଳନକାରୀଙ୍କୁ ଜେଲ୍‌ରେ ରଖାଗଲା, ଭାଇକମ୍ ଆନ୍ଦୋଳନ ଧୀରେ ଧୀରେ ଭାଙ୍ଗିଯିବାକୁ ବସିଲା । ସେହି ସମୟରେ ମୁଁ କେଶବମେନନ ଓ ବାରିଷ୍ଟର ଜର୍ଜ ଜୋସେଫଙ୍କର ପତ୍ର ପାଇଲି । ସେମାନେ ଲେଖିଥିଲେ-

"ଆପଣ ନିଶ୍ଚୟ ଏଠାକୁ ଆସି ଆନ୍ଦୋଳନକୁ ଜୀବନ୍ୟାସ ଦିଅନ୍ତୁ, ନହେଲେ ରାଜାଙ୍କୁ କ୍ଷମା ପ୍ରାର୍ଥନା କରିବା ଛଡା ଆମ ପାଖରେ ଅନ୍ୟ ପନ୍ଥା ରହିବ ନାହିଁ । ଆନ୍ଦୋଳନ ବନ୍ଦ ହୋଇଗଲେ ଆମେ ହୁଏତ କିଛି ହରାଇବୁ ନାହିଁ । ତେବେ ଗୋଟିଏ ମହତ୍ତ୍ୱ ଲକ୍ଷ୍ୟ ନଷ୍ଟ ହୋଇଯିବ । ଏହାହିଁ ଆମକୁ ଆଘାତ ଦେଉଛି । ସୁତରାଂ ଏଠାକୁ ତୁରନ୍ତ ଆସି ଆନ୍ଦୋଳନକୁ ନେତୃତ୍ୱ ଦିଅନ୍ତୁ ।

ଏହାହିଁ ଚିଠିର ବିଷୟବସ୍ତୁଥିଲା । ମୁଁ ଯେହେତୁ ସେ ସମୟରେ ଅସ୍ପୃଶ୍ୟତାକୁ ଅତି କଡା ଭାଷାରେ ବିରୋଧ କରୁଥିଲି, ସେମାନେ ମୋତେ ଏହା ଲେଖି ଆନ୍ଦୋଳନର ଦାୟିତ୍ୱ ନେବାକୁ ଅନୁରୋଧ କରିଥିଲେ । ଏହା ଛଡା ମୁଁ ଯେ କେବଳ ଅସ୍ପୃଶ୍ୟତା ବିରୋଧରେ ଏକ ଉଗ୍ରପ୍ରଚାରକ ଥିଲି ତାହା ନୁହଁ, ମୁଁ ଥିଲି ଜଣେ ସଫଳ ଆନ୍ଦୋଳନକାରୀ । ସେମାନେ ଯେତେବେଳେ ମୋ ପାଖକୁ ଚିଠି ଲେଖିଲେ ମୁଁ ସେତେବେଳେ ବିଭିନ୍ନ ସ୍ଥାନ ଭ୍ରମଣରେ ଥିଲି । ଏରୋଡରୁ ଚିଠିଟି ପୁନଃ ପ୍ରେରିତ ହୋଇ ମଦୁରାଇ ଜିଲ୍ଲାର ପନ୍ନପୁରମ୍‌ଠାରେ ମୋ ପାଖରେ ପହଁଞ୍ଚିଲା । ଚିଠିଟି ପାଇ ମୁଁ ମୋର ସମସ୍ତ ଭ୍ରମଣ କାର୍ଯ୍ୟସୂଚୀକୁ ବାତିଲ୍‌କରି ଭାଇକମ୍ ଯିବାପାଇଁ ଏରୋଡ ଆସିଲି । ମୋ ସ୍ଥାନରେ ତାମିଲନାଡୁ କଂଗ୍ରେସ କମିଟିର ସଭାପତି ପଦ ନେବାକୁ ମୁଁ ରାଜଗୋପାଳଚାରୀଙ୍କୁ ଏକ ପତ୍ର ଲେଖିଲି । ଭାଇକମ୍ ଆନ୍ଦୋଳନର ଗୁରୁତ୍ୱ ବିଷୟରେ ମୁଁ ତାଙ୍କୁ ସୂଚନା ଦେଇଥିଲି । ଏହା ଗୋଟିଏ ଉତ୍ତମ ସୁଯୋଗ ଥିଲା । ମୁଁ ଏହାକୁ ହାତଛଡା କରିବାକୁ ଚାହୁଁନଥିଲି । ଦୁଇଜଣଙ୍କୁ ସାଥୀରେ ନେଇ ମୁଁ ଭାଇକମ ଅଭିମୁଖେ ଚାଲିଲି ।

ଭାଇକମ୍ ଆନ୍ଦୋଳନକୁ ନେତୃତ୍ୱ ଦେବାକୁ ମୁଁ ଆସୁଥିବା ଖବର ସେତେବେଳକୁ ସେଠାରେ ପ୍ରଚାରିତ ହୋଇଯାଇଥିଲା । ମୁଁ ଯେତେବେଳେ ନାଆରେ ସେଠାରେ ପହଁଞ୍ଚିଲି, ପୋଲିସ କମିଶନର ଓ ତହସିଲଦାର ଆମକୁ ସ୍ୱାଗତ କଲେ ।

Digitized by srujanika@gmail.com

ଆମକୁ କୁହାଗଲା ଯେ ଆମକୁ ସ୍ୱାଗତ କରିବା ପାଇଁ ଓ ଆମ ରହିବାର ବ୍ୟବସ୍ଥା କରିବା ପାଇଁ ରାଜା ସେମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ମୁଁ ଏଥିରେ ଆଶ୍ଚର୍ଯ୍ୟ ହେଲି । ରାଜା ମୋ ପ୍ରତି ଏହି ଉତ୍ତମ ବ୍ୟବହାର ଦେଖାଇବାର କାରଣଥିଲା । କାରଣ ସେ ଦିଲ୍ଲୀ ଯିବାବେଳେ ତାଙ୍କ କର୍ମଚାରୀଙ୍କ ସହ ଆମ ବଙ୍ଗଳାରେ ରହୁଥିଲେ । ଏରୋଡ ଠାରେ ସେମାନେ ରହିଲାବେଳେ ଦିଲ୍ଲୀକୁ ଟ୍ରେନ ଧରିବା ପର୍ଯ୍ୟନ୍ତ ରାଜା ଓ ତାଙ୍କର କର୍ମଚାରୀମାନଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦିଆଯାଉଥିଲା । ମୋତେ ଭାଇକମ୍ ଠାରେ ଉତ୍ତମ ପରିଚର୍ଯ୍ୟା ଦେଖାଇବାର ଏହା ହୁଏତ ପ୍ରକୃତ କାରଣ ହୋଇପାରେ । ରାଜା ଓ ତାଙ୍କର କର୍ମଚାରୀମାନଙ୍କ ସହ ମୋର ଏହି ସ-ର୍କ ବିଷୟରେ ଜାଣି ଭାଇକମର ଲୋକମାନେ ଖୁସି ହୋଇଥିଲେ । ରାଜା ଯଦିବା ମୋତେ ଏକ ଅତିଥି ଭଳି ବ୍ୟବହାର କରୁଥିଲେ ଭାଇକମ୍ ଆନ୍ଦୋଳନକୁ ସମର୍ଥନ କରି ମୁଁ ଅନେକ ସଭାରେ ଯୋଗ ଦେଉଥିଲି । ମୁଁ ସାମାଜିକ କଳଙ୍କକୁ ସମାଲୋଚନା କରୁଥିଲି ଓ କହୁଥିଲି ଯେ ଭାଇକମ ମନ୍ଦିରରେ ଦେବତା ରହିବା ଯୋଗ୍ୟ ନୁହଁନ୍ତି । ଯେଉଁ ଦେବତା ଅସ୍ପୃଶ୍ୟମାନଙ୍କର ଛାଇ ବା ସ୍ପର୍ଶଦ୍ୱାରା ଅପବିତ୍ର ହୋଇଯିବେ, ସେ ଦେବତାଙ୍କର ମନ୍ଦିରରେ ରହିବାର କଣ ମୂଲ୍ୟ ଅଛି ! ସେହି ପ୍ରତି ମୂର୍ତ୍ତିକୁ ମନ୍ଦିରରୁ ଆଣି ପୋଖରୀ ତୁଠରେ ରଖାଯିବା ଆବଶ୍ୟକ । ମୋର ବକ୍ତବ୍ୟ ଶୁଣି ଅଧିକରୁ ଅଧିକ ଲୋକ ଭାଇକମ୍ ଆନ୍ଦୋଳନରେ ଯୋଗ ଦେବାକୁ ଲାଗିଲେ । ବିଭିନ୍ନ ସ୍ଥାନରୁ ଲୋକମାନେ ଆସି ବହୁସଂଖ୍ୟାରେ ଆନ୍ଦୋଳନରେ ଯୋଗ ଦେଲେ । ରାଜାଙ୍କ ପାଇଁ ଏହା ଏକ ସମସ୍ୟା ସୃଷ୍ଟି କଲା । ସେ ପାଞ୍ଚ ଛଅ ଦିନ ଧରି ଏସ-ର୍କରେ କିଛି ନ କହି ନିରବ ରହିଲେ । ତେବେ ସେ ଏହି ବିବାଦରେ ଅଧିକ ଦିନ ନିରବ ରହିବା ସମ୍ଭବ ନଥିଲା । ଏଣୁ ୧୦ ଦିନ ପରେ ସେ ଅଞ୍ଚଳରେ ୧୪୪ ଧାରା ପରି ପୋଲିସର ୨୬ ଧାରା ଲଗାଇବା ପାଇଁ ପୋଲିସକୁ ରାଜା ନିର୍ଦ୍ଦେଶ ଦେଲେ ।

ପୋଲିସ କଟକଣାକୁ ଲଙ୍ଘନ କରିବା ଛଡା ମୋ ପାଖରେ ଅନ୍ୟ ପନ୍ଥା ନଥିଲା । ପୋଲିସ୍ ନିୟମକୁ ଲଙ୍ଘନ କରି ମୁଁ ସେଠାରେ ଏକ ସଭାରେ ଭାଷଣ ଦେଲି । ମୋତେ ଗିରଫ କରାଗଲା । ଆୟମୁଥୁ ପୋଲିସ ନିର୍ଦ୍ଦେଶ ନାମାକୁ

Digitized by srujanika@gmail.com

ଅବମାନନା କରି ମଧ୍ୟ ଗିରଫ ହେଲେ। ଆମକୁ ଗୋଟିଏ ମାସ ପାଇଁ ସଶ୍ରମ କାରାଦଣ୍ଡ ଦିଆଗଲା। ମୋତେ ଆରୁଭିକୁଥା ଜେଲ୍‌ରେ ବନ୍ଦୀକରି ରଖାଗଲା । ମୋର ଗିରଫପରେ ମୋର ପତ୍ନୀ ନାଗମାର ଓ ଭଉଣୀ ଏସ.ଆର୍.କାନମଲ ଓ ଅନ୍ୟ କେତେକ ରାଜ୍ୟବ୍ୟାପୀ ପ୍ରଚାର କାର୍ଯ୍ୟ ଆରମ୍ଭ କଲେ। ମୋତେ ଯେତେବେଳେ ଜେଲ୍‌ରୁ ଖଲାସ କରାଗଲା ମୁଁ ପୁଣି ଆନ୍ଦୋଳନରେ ଯୋଗ ଦେଲି।

ମୁଁ ଜେଲ୍‌ରେ ଥିବା ବେଳେ ଆନ୍ଦୋଳନ ଅଧିକ କ୍ରିୟାଶୀଳ ହେଲା। ଅନେକ ସ୍ୱେଚ୍ଛାସେବୀ କାରାବରଣ ପାଇଁ ଆଗେଇ ଆସିଲେ। ଅନେକ ପ୍ରଚାର ଭାଇକମ ଆନ୍ଦୋଳନ ପାଇଁ ଲୋକମାନଙ୍କୁ ପ୍ରେରଣା ଦେଲା। ପ୍ରତିପକ୍ଷ ଲୋକମାନେ ଏହାକୁ ଦବାଇବା ପାଇଁ ଗୁଣ୍ଡାଗିରି କଲେ। କେତେକ ଖରାପଲୋକ ଆନ୍ଦୋଳନରେ ନମିଶିବା ପାଇଁ ଲୋକମାନଙ୍କୁ ନାନା ଭାବରେ ଭୟଭୀତ କରାଇଲେ। କିନ୍ତୁ ସେ ସବୁ ଉଦ୍ୟମ ବ୍ୟର୍ଥ ହେଲା। ଏପରିକି ବିଦେଶରେ ରହିଥିବା କେତେକ ଲୋକ ଜାତି ନାଆଁରେ ହେଉଥିବା ଅତ୍ୟାଚାରର କାହାଣୀ ଜାଣିବାକୁ ପାଇଲେ। କେତେକ ସାହାଯ୍ୟ କରିବାକୁ ମଧ୍ୟ ଇଚ୍ଛା ପ୍ରକାଶ କଲେ। ପ୍ରତିଦିନ ମନି ଅର୍ଡର ମାନ ଆସିବାକୁ ଲାଗିଲା। ସ୍ୱେଚ୍ଛାସେବୀ ମାନଙ୍କ ପାଇଁ ଗୋଟିଏ ବଡ ମଞ୍ଚ ପ୍ରସ୍ତୁତ ହେଲା। ପ୍ରତିଦିନ ଧାରଣା ଦେଉଥିବା ୩୦୦ ରୁ ଅଧିକ ଲୋକଙ୍କ ପାଇଁ ଖାଦ୍ୟର ବ୍ୟବସ୍ଥା କରାଗଲା। କେତେକ ପରିବାଚାଷୀ ପ୍ରତିଦିନ ପରିବା ଓ ନଡିଆ ପଠାଇବାକୁ ଲାଗିଲେ। ସେ ସବୁ ଗଦାଗଦା ହୋଇ ରହିଲା। ଏକ ବିବାହ କାର୍ଯ୍ୟ ଭଳି ଜିନିଷମାନ ଆସି ଜମା ହେବାକୁ ଲାଗିଲା।

ଏହି ସମୟରେ ମୋତେ ରାଜଗୋପାଳଚାରୀ ଏକ ପତ୍ର ପଠାଇଲେ। ଗୋଟିଏ ରାଜ୍ୟରୁ ଯାଇ ଆଉ ଗୋଟିଏ ରାଜ୍ୟରେ ସମସ୍ୟା ସୃଷ୍ଟି କରିବାରେ କାହିଁକି ଲାଗିଛନ୍ତି? ଆପଣଙ୍କର ଏହିକାର୍ଯ୍ୟ ଠିକ୍ ନୁହେଁ। ଆପଣ ସେ ଜାଗାଛାଡି ଏଠାକୁ ଆସନ୍ତୁ ଓ ମୋଠାରୁ ଦାୟିତ୍ୱ ନିଅନ୍ତୁ। ଏହାହିଁ ତାଙ୍କ ଚିଠିର ବିଷୟ ଥିଲା। ମୋତେ ସାକ୍ଷାତ କରିବାକୁ ତାମିଲନାଡୁରୁ ଶ୍ରୀନିବାସ ଆୟଙ୍ଗର ଆସିଲେ। ସେ ମଧ୍ୟ ରାଜଗୋପାଳଚାରୀଙ୍କ ପରି ମୋତେ ଏକା ଉପଦେଶ ଦେଲେ। ଏହି ସମୟ

Digitized by srujanika@gmail.com

ଭିତରେ ଭାଇକମ ଆନ୍ଦୋଳନରେ ଏକ ହଜାରରୁ ଅଧିକ ଲୋକ ଅଂଶ ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇସାରିଥିଲେ। ପ୍ରତିଦିନ ବିଭିନ୍ନ ଜାଗାରେ ବଡ଼ ଧରଣର ପଟୁଆର ହେଉଥିଲା। ଲୋକମାନେ ସଙ୍ଗୀତ ଗାଇ ଗାଇ ରାଲିରେ ଯାଉଥିଲେ। ଆସ୍ତେ ଆସ୍ତେ ଆନ୍ଦୋଳନ ତୀବ୍ର ହେବାକୁ ଲାଗିଲା।

ଏହି ସମ୍ବାଦ ପଞ୍ଜାବରେ ପହଁଞ୍ଚିଲା। ସେଠାରେ ଆନ୍ଦୋଳନକୁ ସମର୍ଥନ କରି ସ୍ୱାମୀ ସିରଥାନନ୍ଦ ଏକ ନିବେଦନ ପ୍ରକାଶ କଲେ। ସେ ୩୦ ଜଣ ପଞ୍ଜାବୀଙ୍କୁ ଭାଇକମ ପଠାଇଲେ। ସେମାନେ ୨୦୦୦ ଟଙ୍କା ଦାନଦେବା ସହ ସ୍ୱେଚ୍ଛାସେବୀ ମାନଙ୍କର ପ୍ରତି ଦିନର ଖାଇବା ଖର୍ଚ୍ଚ ବହନ କରିବାକୁ ଇଚ୍ଛାପ୍ରକାଶ କଲେ। ଏସବୁ ଦେଖି ସ୍ଥାନୀୟ ବ୍ରାହ୍ମଣ ମାନେ ଗାନ୍ଧୀଙ୍କ ସହ ଯୋଗାଯୋଗ କଲେ। ଶିଖମାନେ ହିନ୍ଦୁମାନଙ୍କ ବିରୋଧରେ ଯୁଦ୍ଧଘୋଷଣା ପାଇଁ ଉସୁକାଉଛନ୍ତି ବୋଲି ସେମାନେ ପ୍ରତିବାଦ କଲେ। ଗାନ୍ଧୀ ମତବ୍ୟକ୍ତ କଲେ ଯେ ମୁସ୍‌ଲିମ୍ , ଖ୍ରୀଷ୍ଟିଆନ, ଶିଖ ଓ ଅନ୍ୟାନ୍ୟ ଅଣହିନ୍ଦୁମାନେ ଏହି ଆନ୍ଦୋଳନରେ ଭାଗନେବା ଠିକ୍ ନୁହେଁ। ଗାନ୍ଧୀଙ୍କର ଏହି ବକ୍ତବ୍ୟ ପରେ ମୁସଲିମ୍, ଖ୍ରୀଷ୍ଟିଆନ ଓ ଶିଖମାନେ ଆନ୍ଦୋଳନରୁ ନିଜକୁ ଦୂରେଇ ନେଲେ। ରାଜଗୋପାଳଚାରୀ ହିନ୍ଦୁମାନଙ୍କ ବିଷୟରେ ଜୋସେଫ ଜର୍ଜ ସଂପୃକ୍ତ ହେବା ଠିକ୍ ନୁହେଁ ବୋଲି ତାଙ୍କୁ ପତ୍ର ଲେଖିଲେ। ତେବେ ଜୋସେଫ ଜର୍ଜ ରାଜଗୋପାଳଚାରୀଙ୍କ ପତ୍ର ଉପରେ କୌଣସି ଗୁରୁତ୍ୱ ଦେଲେ ନାହିଁ। ସେ ରାଜଗୋପାଳଚାରୀଙ୍କୁ ଲେଖିଲେ ଯେ ସେ ଏଥିପାଇଁ କଂଗ୍ରେସରୁ ବହିଷ୍କୃତ ହେବାକୁ ପ୍ରସ୍ତୁତ ଅଛନ୍ତି। ନିଜର ଆତ୍ମ ସମ୍ମାନକୁ ସେ ବଳି ଦେଇ ପାରିବେ ନାହିଁ ବୋଲି ଜଣାଇଲେ। ଶ୍ରୀଯୁକ୍ତ ସେନ, ଡଃ ଏମ.ଇ.ନାଇଡୁ ଓ ଅନ୍ୟ ନେତୃବୃନ୍ଦ ଆନ୍ଦୋଳନକୁ ସମର୍ଥନ କଲେ। କେତେକ ଗାନ୍ଧୀଙ୍କୁ ଭୟ କରି ଯେଉଁ ସାହାଯ୍ୟ କରୁଥିଲେ ତାହା ବନ୍ଦ କରି ଦେଲେ। କାଳେ ଗାନ୍ଧୀ ଆନ୍ଦୋଳନକୁ ନିନ୍ଦା କରିବେ, ଏହି ଆଶଙ୍କାରେ ସେମାନେ ସାହାଯ୍ୟ କରିବାକୁ ମନା କରି ଦେଲେ। ଏହି ସମୟରେ ସ୍ୱାମୀ ସିରଥାନନ୍ଦ ଭାଇକମ ଆସି ଆନ୍ଦୋଳନକାରୀଙ୍କୁ ଆର୍ଥିକ ସାହାଯ୍ୟ ଦେବାକୁ ଘୋଷଣା କଲେ।

Digitized by srujanika@gmail.com

ଗାନ୍ଧୀଙ୍କ ବିରୋଧ ସତ୍ତ୍ୱେ ଭାଇକମ ଆନ୍ଦୋଳନ ଚାଲୁ ରହିଲା । ମୋତେ ପୁଣି ଗିରଫ କରାଯାଇ ୬ମାସ ପାଇଁ ଜେଲ ଦଣ୍ଡ ଦିଆଯାଇଥିଲା । ଏହି ସମୟରେ କେତେକ ନମ୍ବୁଦ୍ରୀ ବ୍ରାହ୍ମଣ ଓ କେତେକ ରକ୍ଷଣଶୀଳ ହିନ୍ଦୁ ଏହି ଆନ୍ଦୋଳନ କୁ ବିରୋଧ କରିବାକୁ ଏକ ପ୍ରତିପକ୍ଷ ଆନ୍ଦୋଳନ କରିବାକୁ ଯୋଜନା କଲେ । ସେମାନେ ଶତ୍ରୁ ସଂହାର ଯଜ୍ଞ ନାମରେ ଧାର୍ମିକ କାର୍ଯ୍ୟ ଆରମ୍ଭ କଲେ । ସେମାନେ ଏକ ପୂଜା ମାଧ୍ୟମରେ ପାଣି ପରି ଟଙ୍କା ଖର୍ଚ୍ଚ କରିବାକୁ ଲାଗିଲେ । ମୁଁ ଜେଲର ୱାଡେନଙ୍କୁ ଜେଲ ପାଖରେ କୌଣସି ଉତ୍ସବ ହୋଇ ବାଣ ଫୁଟୁଛିକି ବୋଲି ପଚାରିଲି । ଜେଲ୍‌ର ୱାଡେନ ମୋତେ କହିଲେ ଯେ, ରାଜାଙ୍କର ଦେହାନ୍ତ ହୋଇଯାଇଛି ଓ ଏହି ଖବର ଲୋକଙ୍କୁ ଜଣାଇବା ପାଇ ଏକ ଶବ୍ଦ କରାଯାଉଛି । ରାଜାଙ୍କର ମୃତ୍ୟୁ ସମ୍ବାଦ ପାଇ ଏକ ବିଷଣ୍ଣ ଅନୁଭୂତି ମୋର ହେଲା । ତେବେ ମୋର ଏକ ହାସ୍ୟକର ଅନୁଭବ ହେଲା ଯେ, ଶତ୍ରୁସଂହାର ଯଜ୍ଞ ନାମରେ ବ୍ରାହ୍ମଣ ଓ ରକ୍ଷଣଶୀଳ ହିନ୍ଦୁମାନେ ଯେଉଁ ପୂଜାକାର୍ଯ୍ୟ ଆରମ୍ଭ କଲେ ତାହା ତାଙ୍କ ଶତ୍ରୁକୁ ବିନାଶ କରିବା ପରିବର୍ତ୍ତେ ମହାରାଜାଙ୍କର ମୃତ୍ୟୁ ହେଲା । ସେହି ପୂଜକ ମାନଙ୍କ ପ୍ରାର୍ଥନା ଭାଇକମ ଆନ୍ଦୋଳନର ଆନ୍ଦୋଳନକାରୀମାନଙ୍କର କୌଣସି କ୍ଷତି କରି ପାରିଲା ନାହିଁ । ଏହାପରେ ମହାରାଜାଙ୍କର ଶୁଦ୍ଧି ଦିବସରେ ଆମମାନଙ୍କୁ ଜେଲରୁ ଖଲାସ କରାଗଲା । ଆମର ପ୍ରତିପକ୍ଷ ଲୋକମାନଙ୍କର ସ୍ୱର ଆସ୍ତେ ଆସ୍ତେ ନରମିଗଲା ।

ଏହାପରେ ମହାରାଣୀ ଆଲୋଚନା କରିଆରେ ସମସ୍ୟାଟିର ସମାଧାନ ଚାହିଁଲେ । ସେ ସମସ୍ୟା ବିଷୟରେ ମୋ ସହ ଆଲୋଚନା କରିବାକୁ ଚାହିଁଲେ । କିନ୍ତୁ ତାଙ୍କ ରାଜ୍ୟର ଦିୱାନ ଯେ ଜଣେ ବ୍ରାହ୍ମଣ ଥିଲେ, ମହାରାଣୀ ମୋ ସହ ପ୍ରତ୍ୟକ୍ଷ କଥାବାର୍ତ୍ତାରେ ପ୍ରତିବନ୍ଧକ ହେଲେ । ସୁତରାଂ ସେ ରାଜଗୋପାଳଚାରୀଙ୍କୁ ଏକ ପତ୍ର ଲେଖିଲେ । ରାଜାଜୀ ଜାଣିଥିଲେ ଯେ ଏହା ହେଲେ ମୋର ଖ୍ୟାତି ଏହାଦ୍ୱାରା ବଢିଯିବ ଓ ଆନ୍ଦୋଳନର ସଫଳତା ମୋତେ ମିଳିବ । ତେଣୁ ସେ କୌଶଳ କରି ମହାରାଣୀ ଗାନ୍ଧୀଙ୍କ ସହ ଯୋଗାଯୋଗ କରିବାକୁ ବ୍ୟବସ୍ଥା କଲେ । ରାଜଗୋପାଳଚାରୀଙ୍କର କୌଶଳପୂର୍ଣ୍ଣ କାର୍ଯ୍ୟ ଯୋଗୁଁ ଭାଇକମ ଆନ୍ଦୋଳନ ସହ

Digitized by srujanika@gmail.com

ଗାନ୍ଧୀଙ୍କର ନାଁ କୁ ସଂଶ୍ଳିଷ୍ଟ କରାଗଲା । ସଫଳତା କାହା ନାଆଁରେ ବା କାହା ପାଇଁ ଗଲା ସେଥିରେ ମୋର କିଛି ଅନୁଶୋଚନା ନାହିଁ । ମୋର ବ୍ୟକ୍ତିଗତ ପ୍ରଶଂସା ମୁଁ କେବେ ଆଶା କରିନାହିଁ । ବରଂ ସମସ୍ୟାଟିର ସଫଳ ସମାଧାନ ହିଁ ଥିଲା ମୋର ଲକ୍ଷ୍ୟ ।

ଗାନ୍ଧୀ ଆସି ମହାରାଣୀଙ୍କ ସହିତ ଆଲୋଚନା କଲେ । ସମସ୍ତ ରାସ୍ତା ଶୂଦ୍ର ଓ ଅସ୍ପୃଶ୍ୟମାନଙ୍କ ବ୍ୟବହାର ପାଇଁ ଖୋଲାରଖିବାକୁ ମହାରାଣୀ ରାଜି ହେଲେ । ତେବେ ମହାରାଣୀଙ୍କର ଆଶଙ୍କା ହେଲା ଯେ ମୁଁ ଏହାପରେ ମଧ୍ୟ ମନ୍ଦିର ଭିତରେ ସେମାନଙ୍କ ପ୍ରବେଶ ନେଇ ଆନ୍ଦୋଳନ ଜାରିରଖିବି । ଗାନ୍ଧୀ ମୁଁ ରହୁଥିବା ସ୍ଥାନକୁ ଆସି ଏଥିରେ ମୋର ମତାମତ ଲୋଡିଲେ । ମୁଁ କହିଲି- "ଅସ୍ପୃଶ୍ୟମାନଙ୍କୁ ସର୍ବସାଧାରଣ ରାସ୍ତାରେ ଚାଲିବାକୁ ଅଧିକାର ଦେବା କିଛି ବଡ କଥା ନୁହେଁ । ମନ୍ଦିର ପ୍ରବେଶକୁ କଂଗ୍ରେସ ବର୍ତ୍ତମାନ ପରିସ୍ଥିତିରେ ଯଦିବି ଗୁରୁତ୍ୱ ଦେଉନଥାଏ, ତେବେ ମୋ ପାଇଁ ଏହାହିଁ ଏକ ମୁଖ୍ୟ କାର୍ଯ୍ୟସୂଚୀ ଅଟେ । ତେବେ ମୁଁ ଗାନ୍ଧୀଙ୍କୁ କହିଲି ଯେ ବର୍ତ୍ତମାନ ପରିସ୍ଥିତିରେ ମନ୍ଦିର ପ୍ରବେଶ ଅଧିକାର ନେଇ ମୁଁ କୌଣସି ଆନ୍ଦୋଳନ କରିବି ନାହିଁ । ଏହା ଆପଣ ମହାରାଣୀଙ୍କୁ ଜଣାଇପାରନ୍ତି । ପ୍ରଥମେ ସମସ୍ତ ପରିସ୍ଥିତି ସ୍ୱାଭାବିକ ହେଲା ପରେ ତା ପରେ ଭବିଷ୍ୟତ ନେଇ କଣ କରାଯିବ ସେ ବିଷୟରେ ସ୍ଥିର ହେବ ।"

ଗାନ୍ଧୀ ଏସବୁ କଥା ରାଣୀଙ୍କୁ ଜଣାଇଲେ ଓ ରାଣୀ ସମସ୍ତ ରାସ୍ତାରେ ଅସ୍ପୃଶ୍ୟ ମାନଙ୍କର ଚାଲିବାର ଅଧିକାରକୁ ସ୍ୱୀକୃତି ଦେଲେ । ସର୍ବସାଧାରଣ ରାସ୍ତାରେ ନୀଚ ଜାତିର ଶୂଦ୍ରମାନେ ଓ ଅସ୍ପୃଶ୍ୟମାନେ ଏହାପରେ ଚାଲିବାର ଅଧିକାର ପାଇଲେ ।

ଏରୋଡଠାରେ ଥିବା ଦେବସ୍ଥାନ କମିଟିର ମୁଁ ଚେୟାରମ୍ୟାନ ଥିଲି । ମୁଁ ବାହାରେ ଥିବାବେଳେ, ସାଥୀ ଗୁରୁସ୍ୱାମୀ, ପୋନାମ୍ବଲମ ଓ ଈଶ୍ୱରମ ଦୁଇଜଣ ଆଦି ଦ୍ରାବିଡଙ୍କୁ ମୁଣ୍ଡରେ ବିଭୂତି ଲଗାଇ ମନ୍ଦିର ଭିତରକୁ ନେଇଥିଲେ । ସେମାନଙ୍କୁ ଦେଖି ମନ୍ଦିର ଅପବିତ୍ର ହେଲାବୋଲି ବ୍ରାହ୍ମଣମାନେ ପାଟିକରି ଉଠିଲେ । ସେମାନଙ୍କୁ ଗୋଟିଏ ଘରେ ବନ୍ଦୀକରି ରଖିବାସହ ସେମାନଙ୍କ ନାଆଁରେ କେସ୍ ରୁଜୁକଲେ ।

Digitized by srujanika@gmail.com

ସେମାନେ ଜିଲ୍ଲା ବିଚାରାଳୟରେ ଦଣ୍ଡିତ ହେଲେ। ତେବେ ହାଇକୋର୍ଟ ସେମାନଙ୍କର ଅପିଲ୍ ପାଇଲାପରେ ସେମାନଙ୍କୁ ନିର୍ଦ୍ଦୋଷରେ ଖଲାସ କରିଦେଲେ। ଏହା ପରାଧୀନ ଭାରତରେ ବ୍ରିଟିଶ ଶାସନ କାଳର ଘଟଣାଥିଲା।

ତେବେ ସଚିନ୍ଦ୍ରମଠାରେ ମନ୍ଦିର ପ୍ରବେଶ ଅଧିକାର ନେଇ ପ୍ରଥମ ଆନ୍ଦୋଳନ ହୋଇଥିଲା । ମୋ ସଭାପତିତ୍ୱରେ ସେଠାରେ ଆତ୍ମ ମର୍ଯ୍ୟାଦା ସମ୍ମିଳନୀ ପରିଚାଳିତ ହୋଇଥିଲା । ସେଠାରେ କେତେ ଗୁଡିଏ ନିଷ୍ପତ୍ତି ପ୍ରସ୍ତାବ ଆକାରରେ ଗୃହୀତ ହୋଇଥିଲା। ସେଥିରେ ଜାତି ପ୍ରଥାର ବିଲୋପ ଓ ଅସ୍ପୃଶ୍ୟମାନଙ୍କର ମନ୍ଦିର ପ୍ରବେଶ ଅଧିକାରକୁ ଗୁରୁତ୍ୱ ଦିଆଯାଇଥିଲା। ଏହାପରେ ଏରନାକୁଲମଠାରେ ଆତ୍ମ ସମ୍ମାନ ଆନ୍ଦୋଳନର ଆଉ ଏକ ସମ୍ମିଳନୀ ଆହୂତ ହୋଇଥିଲା। ସେହି ସମ୍ମିଳନୀରେ ଆଉ ଏକ ନିଷ୍ପତ୍ତି ଗୃହୀତ ହୋଇଥିଲା। ସେଥିରେ ଜାତି ପ୍ରଥାକୁ ନିନ୍ଦାକରାଯିବା ସହ ଜାତିଆଣ.ଭେଦଭାବ ନଥିବା ମୁସଲମାନ ଧର୍ମକୁ ଅସ୍ପୃଶ୍ୟ ହିନ୍ଦୁମାନେ ଗ୍ରହଣ କରିବାକୁ କୁହାଗଲା। କେତେକ ଖ୍ରୀଷ୍ଟିଆନ ଧର୍ମକୁ ଯିବାକୁ ମଧ୍ୟ କିଛି ସଂଶୋଧନ ପ୍ରସ୍ତାବ ଆଣି କାହାକୁ ନିଷ୍ପତ୍ତିରେ ସଂଯୋଗ କଲେ। ଶେଷରେ ଜଣେ ଯେକୌଣସି ଧର୍ମ ନିଜର ଇଚ୍ଛା ଅନୁଯାୟୀ ଗ୍ରହଣ କରିବାକୁ କୁହାଗଲା।

ସେହିଦିନ ୫୦ ଜଣ ଲୋକ ଇସଲାମ ଧର୍ମ ଗ୍ରହଣ କଲେ। ଏହି ଧାରା ଅନ୍ୟ ଜାଗାରେ ମଧ୍ୟ ଆରମ୍ଭ ହେଲା। ଏହାଦ୍ୱାରା ରକ୍ଷଣଶୀଳ ହିନ୍ଦୁ ଓ ବ୍ରାହ୍ମଣମାନେ ବିବ୍ରତ ହେଲେ।

ଆଲେପିଠାରେ ଦିନେ ଇସଲାମକୁ ଆସିଥିବା ଜଣେ ବ୍ୟକ୍ତି (ପୂର୍ବରୁ ସେ ପୁଲାୟାପ ଜାତିର ଲୋକଥିଲେ) ଜଣେ ନାୟର ଦୋକାନୀଙ୍କ ଦୋକାନକୁ କିଛି ଜିନିଷ କିଣିବାକୁ ଆସିଲେ। ସେଠାରେ ତାଙ୍କୁ ମାଡ ହେଲା ଓ ଏହି ଘଟଣାକୁ ନେଇ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଏକ ସଂଘର୍ଷମୟ ପରିବେଶ ସୃଷ୍ଟିହେଲା। ଏହି ସଂଘର୍ଷ ଅନ୍ୟ ଜାଗାକୁ ବ୍ୟାପିଗଲା। ସେହି ସମୟର ଦିୱାନ ସି.ପି. ରାମ ସ୍ୱାମୀଆୟର ଥିଲେ ଜଣେ ବ୍ରାହ୍ମଣ। ସେ ଦୃଢ ହସ୍ତରେ ଏହି ଦଙ୍ଗାକୁ ଦମନକଲେ। ଅନେକ ଏଝାଵା ଓ ପୁଲାୟାର ଅସ୍ପୃଶ୍ୟ ଜାତିର ଲୋକମାନେ ମୁସଲମାନ ଧର୍ମ

Digitized by srujanika@gmail.com

ଗ୍ରହଣ କରୁଥିବା ସମ୍ବାଦ ରାଜାଙ୍କ ପାଖରେ ପହଁଞ୍ଚିଲା । ଯଦି ମନ୍ଦିର ମାନଙ୍କରେ ଅସ୍ପୃଶ୍ୟମାନଙ୍କୁ ପ୍ରବେଶ ଅଧିକାର ଦିଆନଯିବ, ତେବେ ହିନ୍ଦୁଧର୍ମକୁ ବିପଦରୁ ରକ୍ଷା କରାଯାଇ ପାରିବ ନାହିଁ ବୋଲି ତାଙ୍କୁ ପରାମର୍ଶ ଦିଆଗଲା । ସେହି ସମୟରେ ରାଜା ଙ୍କର ଦୀର୍ଘଜୀବନ କାମନା କରି ବ୍ରାହ୍ମଣମାନେ ବିଭିନ୍ନ ଯଜ୍ଞ କରୁଥାନ୍ତି । ରାଜା ତାଙ୍କର ଜନ୍ମ ଦିବସରେ କିଛି ଭଲ ଘୋଷଣା କରିବା ସେତେବେଳେର ଏକ ପର-ରା ଥିଲା । ଫଳରେ ସମୟରେ ଗୋଟିଏ ଉଲ୍ଲେଖନୀୟ ଘୋଷଣା କରିବା ପାଇଁ ରାଜା ନିଷ୍ପତ୍ତି କଲେ । ସୂଚନା ଦେଲେ ଯେ ତାଙ୍କ ଜନ୍ମଦିନ ଦିନ ସମସ୍ତ ନୀଚ ଜାତିର ହିନ୍ଦୁ ଓ ଅସ୍ପୃଶ୍ୟମାନଙ୍କୁ ମନ୍ଦିର ଭିତରେ ପ୍ରବେଶ କିରବାର ଅଧିକାର ଦିଆଯିବ । ଏହାହିଁ ହେଉଛି ଏହି ଆନ୍ଦୋଳନର ଇତିହାସ , ଯାହା ଦ୍ୱାରା ଅସ୍ପୃଶ୍ୟମାନେ ମନ୍ଦିର ଭିତରେ ପ୍ରବେଶ କରିବାର ଅଧିକାର ପାଇଲେ ।

ଏହି ସମସ୍ତ ଘଟଣା ପରେ ରାଜଗାପାଳଚାରୀ ଓ ଗାନ୍ଧୀ ମନ୍ଦିର ପ୍ରବେଶ କଥା କହିବାକୁ ଲାଗିଲେ । ମନ୍ଦିର ପ୍ରବେଶ ଅଧିକାର ଗାନ୍ଧୀଙ୍କ ଯୋଗୁଁ ସମ୍ଭବ ହେଲା ବୋଲି କହିବା ସତ୍ୟର ଅପଲାପ ମାତ୍ର । କହିବାକୁ ଗଲେ ଅସ୍ପୃଶ୍ୟମାନଙ୍କର ସେବା ଦିଗରେ ଗାନ୍ଧୀ ସେପରି କିଛି କରିନାହାନ୍ତି । ଡଃ. ବି.ଆର ଆମ୍ବେଦକରଙ୍କ ଲିଖିତ ପୁସ୍ତକ "କଂଗ୍ରେସ ଓ ଗାନ୍ଧୀ ଅସ୍ପୃଶ୍ୟ ମାନଙ୍କ ପାଇଁ କଣ କରିଛନ୍ତି" ଯଦି ଆପଣମାନେ ପଢିବେ, ତେବେ ଆପଣ ଏ ବିଷୟଟିକୁ ଭଲଭାବରେ ବୁଝିପାରିବେ । ତାମିଲନାଡୁ କଂଗ୍ରେସ କମିଟିର ମୁଁ ଯେତେବେଳେ ସ-ାଦକ ଥିଲି, ପାର୍ଟି ପାଣ୍ଠିରୁ ସେରନ୍ମଦେବୀ ଠାରେ ଗୋଟିଏ ଗୁରୁକୁଳ ପରିଚାଳିତ ହେଉଥିଲା । ସ-ାଦକ ଭାବରେ ସେହି ଅନୁଷ୍ଠାନକୁ ୧୦,୦୦୦ ଟଙ୍କାର ଦାନ ଘୋଷଣା କରି ମୁଁ ତତ୍‌କ୍ଷଣାତ୍ ୫୦୦୦ ଟଙ୍କା ଦେଇଥିଲି । ଭି.ଭି.ଏସ୍ ଆୟାର ନାମକ ଜଣେ ବ୍ରାହ୍ମଣ ସେହି ଅନୁଷ୍ଠାନଟିର ପରିଚାଳନା ଦାୟିତ୍ୱ ନେଇଥାନ୍ତି । ସେହି ଗୁରୁକୁଳ ଅନୁଷ୍ଠାନର ବ୍ରାହ୍ମଣ ପିଲାମାନଙ୍କୁ ସ୍ୱତନ୍ତ୍ର ସୁବିଧା ସୁଯୋଗ ଦିଆଯାଉଥିଲା । ଗୁରୁକୁଳ ଅନୁଷ୍ଠାନର ବ୍ରାହ୍ମଣ ପିଲାମାନେ ଘର ଭିତରେ ଭୋଜନ କରୁଥିଲେ, ଅବ୍ରାହ୍ମଣ ପିଲାମାନେ ବ୍ରାହ୍ମଣ ପିଲାଙ୍କଠାରୁ ଦୂରରେ ବାହାରେ ରହି ଖାଉଥିଲେ । ଖାଦ୍ୟରେ ମଧ୍ୟ ଅନେକ ପାତରଅନ୍ତର ଥିଲା । ବ୍ରାହ୍ମଣ ପିଲାମାନଙ୍କୁ ଉପମା ଦିଆଯିବା ବେଳେ ଅବ୍ରାହ୍ମଣ

Digitized by srujanika@gmail.com

ପିଲାମାନଙ୍କୁ ଚାଉଳର ଯାଉ ଦିଆଯାଉଥିଲା । ଅମାନ୍ଦ ରାମସ୍ୱାମୀ ରେଜିଆରଙ୍କର ପୁଅ ଛଳଛଳ ଆଖିରେ ଏହି ତାରତମ୍ୟ ଘଟଣା ମୋତେ କହିଲେ । ଏହା ଜାଣିବାପରେ ମୁଁ ରାଜଗୋପାଳଚାରୀଙ୍କୁ ଅଭିଯୋଗ ଦେଲି । ସେ ଯେତେବେଳେ ଅନୁଷ୍ଠାନର ପରିଚାଳକ ଭି.ଭି. ଏସ୍ ଆୟରଙ୍କୁ ଯୋଗାଯୋଗ କଲେ, ସେ ଏଥିପାଇଁ କୌଣସି ଦୁଃଖପ୍ରକାଶ କଲେ ନାହିଁ । ସବୁ ପିଲାଙ୍କୁ ସମାନ ସୁବିଧା ଦେବା ପାଇଁ ସେ ପୁରା ମନା କରିଦେଲେ । ରକ୍ଷଣଶୀଳ ସ୍ଥାନରେ ସେ କିଛି କରିପାରିବେ ନାହିଁ ବୋଲି ଜଣାଇଲେ । ଗୁରୁକୁଳରେ ସଂସ୍କାର ଆସିବା ପରେ ଯାଇ ଅବଶିଷ୍ଟ ୫୦୦୦ ଟଙ୍କା ଦିଆଯିବ ବୋଲି ମୁଁ କହିଲି । ଏଥିରେ ସେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇଗଲେ । ସେ ମୋତେ ରୁକ୍ଷ ଭାବରେ କହିଲେ- ଆପଣ କ'ଣ ଦେଶ ସେବା କରୁଛନ୍ତି ! ମୁଁ ମଧ୍ୟ ଚଡାଗଳାରେ ଉତ୍ତର ଦେଲି- ଆପଣ ଯାହା କରୁଛନ୍ତି ତାହା କେଉଁ ଜାତୀୟତା । ଏହି ଗୁରୁତର ଘଟଣା ପରେ ଅବ୍ରାହ୍ମଣ (ତାମିଲ୍) ମାନଙ୍କ ପାଇଁ ମୁଁ ଗୋଟିଏ ଦଳଗଠନ କରିବା ପାଇଁ ଆକର୍ଷିତ ହେଲି ।

ଏବେବି କଂଗ୍ରେସ ଅଧିବେଶନ ମାନଙ୍କରେ କେବଳ ବ୍ରାହ୍ମଣମାନେ ଖାଦ୍ୟ ରୋଷେଇ କରୁଛନ୍ତି । ସେ ସମୟରେ ଜଷ୍ଟିସ୍ ପାର୍ଟି ସମ୍ମିଳନୀ ହେଉ ବା ଆତ୍ମସମ୍ମିଳନୀ ସଂଘର ସମ୍ମିଳନୀ ହେଉ ଆମେମାନେ ଭିରୁ ଦୁନାଗର, ନାଦରମାନଙ୍କୁ ଖାଦ୍ୟ ରୋଷେଇର ଦାୟିତ୍ୱ ଦେଉଥିଲୁ ।

ଏହି ସବୁ ଅତୀତ ଘଟଣାକୁ ମୁଁ କାହିଁକି ସ୍ମରଣ କରୁଛି, ଆପଣମାନେ ଜାଣିବା ଉଚିତ୍ । ଆମେ ଯଦି ସାମାଜିକ ପରିବର୍ତ୍ତନ ପାଇଁ ଏପ୍ରକାରର ଆନ୍ଦୋଳନାତ୍ମକ କାର୍ଯ୍ୟ ଗ୍ରହଣ କରିବା ନାହିଁ, ତେବେ ସମାଜ ପ୍ରଗତି କରିବ ନାହିଁ । କଂଗ୍ରେସ କିମ୍ବା ଗାନ୍ଧୀ ସମାଜ ସଂସ୍କାର ଦିଗରେ ଯେ ବିଶେଷ କିଛି କରିବାକୁ ଉଦ୍ୟମ କରିନାହାନ୍ତି, ତାହା ଆପଣମାନେ ମଧ୍ୟ ଜାଣିବା ଉଚିତ୍ ।

ଆଜି ବି ଆମେ ଏହି ପ୍ରଶ୍ନ ପଚାରୁଛୁ, ନିକମା ବ୍ରାହ୍ମଣମାନଙ୍କୁ କାହିଁକି ଉଚ୍ଚଜାତିର ସମ୍ମାନ ଦିଆଯିବ, ଅଥଚ ଶ୍ରମଜୀବୀ ଓ କାରିଗର ଶ୍ରେଣୀକୁ ନୀଚଜାତିର ଲୋକ ବୋଲି ବିବେଚନା କରାଯିବ? ଆମକୁ ଶୂଦ୍ର କହି ନ୍ୟୂନ କରୁଥିବା ଈଶ୍ୱରଙ୍କୁ ଆମେ କାହିଁକି ଗ୍ରହଣ କରିବା ?

Digitized by srujanika@gmail.com

ସଂପ୍ରତି ସେମାନେ ଜାତିବ୍ୟବସ୍ଥାକୁ ସାମ୍ବିଧାନିକ ସୁରକ୍ଷା ଦେବାକୁ ପ୍ରୟାସ କରୁଛନ୍ତି । ଜାତିଗତ ମାନଦଣ୍ଡରେ ନିଜକୁ ଉଚ୍ଚ କହି ନିଜର ଔଦ୍ଧତ୍ୟ ପ୍ରକାଶ କରିବା କେତେ ଦୂର ଯଥାର୍ଥ ? ସେମାନଙ୍କ ହାତରେ ସମସ୍ତ କ୍ଷମତା ଠୁଳ ହୋଇ ରହିଥିବା ଯୋଗୁଁ ସେମାନେ ଏହି ଔଦ୍ଧତ୍ୟ ପ୍ରକାଶ କରୁଛନ୍ତି । ଆମକୁ ସବୁଦିନ ଶୂଦ୍ର ହୋଇ ସେମାନଙ୍କର ବଶ୍ୟତାସ୍ୱୀକାର କରିବାକୁ ସେମାନେ କହିଥାନ୍ତି । ଆମ ପ୍ରତିବାଦ ପାଇଁ ସେମାନେ କାରାଗାରର ଭୟ ଦେଖାଇ ଆସିଛନ୍ତି ।

ଏହାକୁ ପ୍ରଶ୍ନ ଉଠାଇବା ପାଇଁ କାହାର ସାହାସ ଅଛି! ଆମେ ସ୍ୱାଧୀନ ଓ ନିର୍ଭୀକ ଭାବରେ ଦୃଢତାର ସହ ଆମର ମର୍ଯ୍ୟାଦା ପାଇଁ ସ୍ୱର ଉଠାଇବା ଯଥାର୍ଥ ନୁହେଁ କି?

ଯଦି ଆମକୁ ହିନ୍ଦୁ ଧର୍ମ ଦ୍ୱାରା ଶୂଦ୍ର କୁହାଯାଇ ନ୍ୟୂନ କରାଯାଉଛି, ତେବେ ସେହି ହିନ୍ଦୁ ଧର୍ମର ବିନାଶ କରିବା ଆମର କର୍ତ୍ତବ୍ୟ ନୁହେଁକି ? ଆମର ଦ୍ରାବିଡ କାଜଗମ୍ ଏକ ରାଜନୈତିକ ସଂଗଠନ ନୁହେଁ । ଆମେ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରୁନାହୁଁ । ଆମେ କୌଣସି କ୍ଷମତା ବା ଭୋଟ ପାଇଁ ଲଢୁନାହୁଁ । ମନ୍ଦକୁ ମନ୍ଦ କହିବା ପାଇଁ ଅନ୍ୟମାନେ ଦ୍ୱିଧା କରିପାରନ୍ତି । କ୍ଷମତା ଲୋଭୀ ଲୋକ ମାନେ ଭୁଲାଇବା ପାଇଁ ନିରୀହ ଲୋକମାନଙ୍କୁ ମଧୁର କଥା କହିଥାନ୍ତି । ସେମାନେ ନିଜର ସ୍ୱାର୍ଥ ପାଇଁ ଆପଣମାନଙ୍କୁ ଚାଟୁକାରୀ କଥା କହୁଛନ୍ତି । ମୁଁ କୌଣସି କ୍ଷମତା ବା ପଦବୀ ଗାନ୍ଧୀଙ୍କ ନାଆଁ ନେଇ ପାଇବାକୁ ଚାହେଁ ନାହିଁ । ଅସମ୍ମାନର ଜୀବନକୁ ମୁଁ କେବେ ସମର୍ଥନ କରିପାରେ ନାହିଁ ।

ଆମର ଆବଶ୍ୟକତା ପୂରଣ ପାଇଁ ଆମେ ଯେଉଁ ବୃତ୍ତିଗ୍ରହଣ କରୁଛେ ସେଥିରେ ଆମେ ଆମ ଶ୍ରମଦ୍ୱାରା ରୋଜଗାର କରି ବଞ୍ଚୁଛେ । ଜନସାଧାରଣଙ୍କ ମଙ୍ଗଳ କରିବା ପାଇଁ ରାଜନୀତି କରୁଥିବା ଲୋକମାନେ ଏହାକୁ କାହିଁକି ବୃତ୍ତି କରୁଛନ୍ତି? ଆପଣ ଏ ବିଷୟରେ ଚିନ୍ତା କରନ୍ତୁ । ଆପଣମାନେ କିପରି ଆତ୍ମ ମର୍ଯ୍ୟାଦାର ସହ ସମାଜରେ ଜୀବନ ନିର୍ବାହ କରିବେ, ସେଥିପାଇଁ ସଚେତନ ହୁଅନ୍ତୁ । ଆମେ ଆମର ସମୟ ଦେଇ ଲୋକମାନଙ୍କୁ ଏହା ଶିକ୍ଷା ଦେବା ଯଥାର୍ଥ ନୁହେଁ କି!

Digitized by srujanika@gmail.com

୧୯୩୮ ମସିହାବେଳକୁ ସମଗ୍ର ପୃଥିବୀରେ ଜ୍ଞାନ ବିଜ୍ଞାନର ଯଥେଷ୍ଟ ବିକାଶ ହୋଇଛି । ତେବେ ଆମ ଦେଶରେ ଆମେ ଏପର୍ଯ୍ୟନ୍ତ ଅସଭ୍ୟ ସ୍ତରରେ ରହିଛେ । ଆମର ଈଶ୍ୱର, ଧର୍ମ ଓ ଶାସ୍ତ୍ର ଆମ ଜୀବନର ମାନ ବୃଦ୍ଧି ଦିଗରେ ସହାୟକ ନୁହନ୍ତି । ସରକାର ଓ ଶାସନ ଶୋଷଣକାରୀ ମାନଙ୍କ ହାତରେ ରହିଛି । ଆମଛଡା ବ୍ୟବସ୍ଥାକୁ କେହି ପ୍ରଶ୍ନ କରୁନାହାନ୍ତି ।

ବ୍ରାହ୍ମଣମାନେ ଆମମାନଙ୍କୁ ଦେହଜୀବୀଙ୍କ ସନ୍ତାନ (ହରିଜନ) କହିଥାନ୍ତି । ଆମର ପିଲାମାନଙ୍କୁ କାହିଁକି ଏପରି ନ୍ୟୂନ କରି ରଖାଯିବ? ଆମର ଅସମ୍ମାନ ଜନକ ସ୍ଥିତି ବିଷୟରେ କିଏ ଭାବୁଛି! ଯେଉଁମାନେ ରାଜନୀତିରେ ପ୍ରତିଷ୍ଠିତ ହେଉଛନ୍ତି, ସେମାନେ ସାମାଜିକ ବ୍ୟବସ୍ଥାରେ ପରିବର୍ତ୍ତନ ପାଇଁ ଆଗ୍ରହୀ କି? ଯାହା ବ୍ରାହ୍ମଣମାନେ କହୁଛନ୍ତି, ସେମାନେ ସେଥିରେ ସମ୍ମତି ଦେଇଛନ୍ତି ।

ମୁଁ ଯେତେବେଳେ ଭାଇକମ ଆନ୍ଦୋଳନ ପରିଚାଳନା କରୁଥିଲି ନିଲମ୍ବନ ଜମିଦାରଙ୍କ ପୁଅ ଶଥୁକୁତ୍ତି ମୋତେ ସାକ୍ଷାତ କରୁଥିଲେ ଓ ମୋ ସହ ବିଭିନ୍ନ କଥା ଆଲୋଚନା କରୁଥିଲେ । ସେ ମୋତେ ନାଇକର ସମି ବୋଲି ସମ୍ବୋଧନ କରୁଥିଲେ । କେବଳ ସେତିକି ନୁହେଁ ସେ ଏକ ନମ୍ବୁଦ୍ରି ବ୍ରାହ୍ମଣ ପରିବାରରେ ଜନ୍ମ ହୋଇଥିବା ଯୋଗୁଁ ସେ ଉଚ୍ଚ ଜାତିର ବୋଲି ଅହମିକା ଦେଖାଉଥିଲେ । ସେ ମୋତେ କହୁଥିଲେ ଯେ ମୁଁ ତାଙ୍କୁ ନାୟର ପରିବାରର ବ୍ୟକ୍ତିବୋଲି ଯେପରି ନଭାବେ । ସେ ବିଏ ପାସ୍ କରିଥିବା ଜଣେ ଗ୍ରାଜୁଏଟ୍ ଥିଲେ । ଆମ ଲୋକଙ୍କର ଏହି ମାନସିକତାକୁ କଣ କୁହାଯିବ?

ଏହି ଅଳଖାର ମାନେ କଣ କରିଛନ୍ତି ତାହା ଥରେ ଚିନ୍ତା କରନ୍ତୁ । ସେମାନେ ନିଜର ପତ୍ନୀମାନଙ୍କୁ ବାରଙ୍ଗନା କରି ମୋକ୍ଷ ପାଇଛନ୍ତି । ଭକ୍ତ ବିଜୟମ୍ ପୁରାଣରେ ଏହି ବର୍ଣ୍ଣନା ରହିଛି । ଅଳଖାର ଶୂଦ୍ର ନିଜର ପତ୍ନୀକୁ ବ୍ରାହ୍ମଣକୁ ଦେଇଥିବାରୁ ସେ ସ୍ୱର୍ଗକୁ ଯାଇପାରିଲେ । ନୟନମାର ଜାତିର ଲୋକମାନେ ବ୍ରାହ୍ମଣମାନଙ୍କ ଉପଭୋଗ ପାଇଁ ନିଜ ପତ୍ନୀମାନଙ୍କୁ ଦେଇଥାନ୍ତି । ପୁରାଣ ମାନଙ୍କ ଏହି କାହାଣୀ ସ୍ୱର୍ଗପ୍ରାପ୍ତିର ବାଟବୋଲି ଲୋକମାନଙ୍କୁ କୁହାଯାଉଛି । ରକ୍ଷଣଶୀଳ

Digitized by srujanika@gmail.com

ଲୋକମାନେ ଏସବୁ ପ୍ରଚାର କରୁଛନ୍ତି । ଏହା ଲଜ୍ଜାଜନକ ଓ ଆତ୍ମସମ୍ମାନର ପ୍ରତିକୂଳ ନୁହେଁ କି? ମୁଁ ଯେତେବେଳେ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଛି ମୁଁ ଶାସ୍ତ୍ରପୁରାଣ ବିରୋଧୀ ବୋଲି ମୋ ପ୍ରତି ଆକ୍ଷେପ କରାଯାଉଛି । ଏହି ଅନ୍ୟାୟ ବିରୋଧରେ ସ୍ୱର ଉଠାଇବା ଠିକ୍ ନୁହେଁ କି? ପୁରାଣମାନ ଆମର ନୈତିକତାକୁ ନଷ୍ଟ କରୁନାହିଁ କି? ଆମେ ଏ ବିଷୟରେ ଅଧିକ କଣ କହିବା !

ଏସବୁ ସହିତ ସରକାରରେ ବ୍ରାହ୍ମଣମାନେ କ୍ଷମତାକୁ ଧରି ରଖିଛନ୍ତି । ସେମାନଙ୍କ ହାତରେ ସମସ୍ତ କ୍ଷମତା ଠୁଳ ହୋଇରହିଛି । ଗାନ୍ଧୀଙ୍କୁ ଏଥିପାଇଁ କେତେ ଦୂର ଦୋଷ ଦିଆଯିବ? ଏବେ ଭାରତର ରାଷ୍ଟ୍ରପତି, ଉପରାଷ୍ଟ୍ରପତି ହେଉଛନ୍ତି ବ୍ରାହ୍ମଣ । ପ୍ରଧାନମନ୍ତ୍ରୀ ଓ ଉପପ୍ରଧାନମନ୍ତ୍ରୀ ମଧ୍ୟ ବ୍ରାହ୍ମଣ । ଲୋକସଭାର ବାଚସ୍ପତି ମଧ୍ୟ ବ୍ରାହ୍ମଣ । ଆମେ ଯଦି ଜାତିପ୍ରଥାର ବିଲୋପ ପାଇଁ ଯୁକ୍ତି କରିବା, ସେମାନେ ଆମକୁ ୩ବର୍ଷ ପାଇଁ ଜେଲ୍‌କୁ ପଠାଇବେ. ଏସବୁ ବିଷୟରେ କିଏ ଚିନ୍ତା କରୁଛି! ସମାଜର ପ୍ରତିଷ୍ଠିତ ଲୋକମାନେ ସରକାର, ଜାତିପ୍ରଥା, ଶାସ୍ତ୍ରପୁରାଣ, ଧର୍ମ ଓ ଈଶ୍ୱରକୁ ଜାବୁଡିଧରିଛନ୍ତି । ଏସବୁକୁ ଛାଡି ସେମାନଙ୍କର ସତେ ଯେପରି ବଞ୍ଚିବାର ଅନ୍ୟ କିଛି ଉପାୟ ନାହିଁ ।

ଯେଉଁମାନେ ଭୋଟ ଓ ଲାଞ୍ଚ ଉପରେ ନିର୍ଭର କରନ୍ତି, ସେମାନେ ଜାତି, ଈଶ୍ୱର, ଧର୍ମ ଓ ସରକାର ନାମରେ ହେଉଥିବା ଅତ୍ୟାଚାରକୁ ପ୍ରଶ୍ନ ଉଠାଇ ପାରିବେ କି ?

ବ୍ରିଟିଶରମାନେ ଆମକୁ ଅନ୍ତତଃ ମଣିଷ ବୋଲି ଭାବୁଥିଲେ ଓ ଆମକୁ ସମାନ ଅଧିକାର ଦେବାକୁ ଭାବୁଥିଲେ । ଏବେ ବ୍ରାହ୍ମଣ ମାନଙ୍କ ହାତରେ କ୍ଷମତା ରହିଛି ଯେଉଁମାନେ ଆମକୁ ଦେହଜୀବୀର ସନ୍ତାନ (ହରିଜନ) ବୋଲି କହିଥାନ୍ତି । ସମ୍ବିଧାନରେ ମଧ୍ୟ ସେମାନେ ସୁରକ୍ଷା ରଖିଛନ୍ତି । ଯଦି ଆମେ ଜାତିପ୍ରଥାର ବିଲୋପ ପାଇଁ ଦାବି କରିବା, ତେବେ ଆଇନ ଅନୁଯାୟୀ ଆମକୁ ତିନି ବର୍ଷ ଜେଲ ଯିବାକୁ ପ୍ରସ୍ତୁତ ରହିବାକୁ ହେବ ।

ଜାତିପ୍ରଥା ହେଉଛି ଏପରି ଏକ ପୁରାତନ ବ୍ୟାଧି ଯାହା ଶତାବ୍ଦୀ ଶତାବ୍ଦୀ ଧରି ଆମ ସମାଜକୁ ନଷ୍ଟ କରି ଦେଇଛି । କଣ କଲେ ଏହି ବ୍ୟାଧିର ଦୂରୀକରଣ

Digitized by srujanika@gmail.com

ସମ୍ଭବ ହେବ? ଯେଉଁ ପଥିଦ୍ୱାରା କାଛୁ କୁଂଡିଆ ଭଲ ହୋଇ ପାରିବ, ତାହା କର୍କଟ ରୋଗର ଚିକିତ୍ସା କ୍ଷେତ୍ରରେ ସହାୟକ ହେବନାହିଁ । ଦୂରାରୋଗ୍ୟ କର୍କଟରୁ ସୁରକ୍ଷା ପାଇଁ ଶଲ୍ୟ ଚିକିତ୍ସା ଆବଶ୍ୟକ । ବିଭିନ୍ନ ରୋଗର ଚିକିତ୍ସା ପାଇଁ ବିଭିନ୍ନ ପ୍ରତିକାର ପନ୍ଥା ଗ୍ରହଣ କରିବାକୁ ହେବ । ହିନ୍ଦୁ ନିୟମ ଅନୁଯାୟୀ ୩୦୦୦ରୁ ଅଧିକ ବର୍ଷହେଲା ଆମେ ଶୂଦ୍ର ହୋଇ ରହିଛେ । ୩୦୦୦ ବର୍ଷ ଧରି ଆମକୁ ନ୍ୟୂନ କରି ରଖାଯାଇଛି । ସା୍ତିକ ଆଇନ ଓ ସମ୍ବିଧାନ ଏହି ସାମାଜିକ ମନ୍ଦ ବ୍ୟବସ୍ଥାକୁ ମଧ୍ୟ ପ୍ରଶ୍ରୟ ଦେଇଛି ।

ଏହି ମନ୍ଦ ପ୍ରଥାର ସମୂଳ ବିଲୋପ ଆବଶ୍ୟକ । ଜାତିର ପରିଚୟରୁ ଆମେ ମୁକ୍ତ ହେବା ଦରକାର । ଏହା ଅବଶ୍ୟ ଏକ ଜଟିଳ ସମସ୍ୟା । ଏହାର ମୂଳକୁ ଧ୍ୱଂସ ନକଲେ ଏହାର ବିଲୋପ ସଂଭବ ନୁହେଁ । ଜାତିପ୍ରଥାର ବିଲୋପ କରିବାକୁ ହେଲେ ଆମକୁ କଠିନ ପଦକ୍ଷେପ ନେବାକୁ ହେବ ।

କେବଳ ତାମିଲନାଡୁ ନୁହେଁ ସମଗ୍ର ଭାରତ ବର୍ଷରେ ଜାତି ପ୍ରଥାବିରୋଧରେ ଆମେ ଯେଉଁ ପରି ଦୃଢ ସ୍ୱର ଉତ୍ତୋଳନ କରୁଛେ, ସେପରି କେହି କରୁନାହାନ୍ତି । ଯେଉଁମାନେ କ୍ଷମତା ପଛରେ ଗୋଡାଇଛନ୍ତି, ସେମାନେ ଜାତି ପ୍ରଥା ବିରୁଦ୍ଧରେ ପ୍ରତିବାଦର ସ୍ୱର ଉଠାଇବେ ନାହିଁ । ଯେଉଁମାନେ ଜନଗଣଙ୍କ ସେବାପାଇଁ ନିଷ୍ଠାପର ଭାବରେ କାର୍ଯ୍ୟ କରୁଛନ୍ତି ଓ ନିଜ ଜୀବନକୁ ଉତ୍ସର୍ଗ କରୁଛନ୍ତି ସେମାନେ କେବଳ ଜାତିପ୍ରଥାର ବିଲୋପ ପାଇଁ ନିଜ ଜୀବନକୁ ବଳି ଦେଇପାରିବେ । ଯେଉଁମାନେ ବ୍ୟବସ୍ଥାପକ ହୋଇଛନ୍ତି ଏପର୍ଯ୍ୟନ୍ତ ଏ କ୍ଷେତ୍ରରେ କଣ କରିଛନ୍ତି? ସେମାନେ କଣ କିଛି କରିପାରି ନଥାନ୍ତେ ? ଗୋଟିଏ ଟେଲିଗ୍ରାମ ପଠାଇଲେ ଆମକୁ କର୍ମସଂସ୍ଥାନ ମିଳି ଯାଆନ୍ତା, କିନ୍ତୁ ଆମେ ସେ ପାଇଁ ପ୍ରସ୍ତୁତ ହୋଇନାହେଁ ।

କିଛିଦିନ ତଳେ ନେହେରୁ ବିଧାୟକ ଓ ଅନ୍ୟାନ୍ୟ ନିର୍ବାଚିତ ସଂସ୍ଥା ମାନଙ୍କ ଉପରେ କେତେକ ରୁଗ୍ଣ ମନ୍ତବ୍ୟ ଦେଇଥିଲେ । ଏପରିକି ସେ ରାଜନୀତିରୁ ଅବସର ନେବେ ବା ରାଜନୀତି ଛାଡିଦେବେ ବୋଲି ଧମକ ଦେଇଥିଲେ । ନିଜର ସମସ୍ତ ଘୋଷଣାକୁ ଭୁଲି ଯାଇ ସେ କ୍ଷମତାକୁ ଆସିଲେ । କ୍ଷମତା ଲାଭ ପାଇଁ ଏହା ଏକ ଗାନ୍ଧୀବାଦୀ କୌଶଳ ଥିଲା । ଡି.ଏମ.କେ.ର ଲୋକମାନେ ଯେଉଁ ଦିନ ପର୍ଯ୍ୟନ୍ତ

Digitized by srujanika@gmail.com

ଆମ ସହିତ ରହିଥିଲେ ସେପର୍ଯ୍ୟନ୍ତ ବ୍ୟବସ୍ଥାପକ ସଭାକୁ ଯିବାକୁ ସେମାନେ ବିରୋଧ କରୁଥିଲେ। ଏପରିକି ନିର୍ବାଚିତ ପ୍ରତିନିଧି ମାନଙ୍କୁ ସମାଲୋଚନା କରି ସେମାନେ ଲେଖୁଥିଲେ। ନେହେରୁ ଓ ରାଜେନ୍ଦ୍ର ପ୍ରସାଦଙ୍କ ପରି ବିଶିଷ୍ଟ ବ୍ୟକ୍ତିମାନେ ବ୍ୟବସ୍ଥାପକ ମାନଙ୍କ ବିରୁଦ୍ଧରେ ଏକଦା ମନ୍ତବ୍ୟ ପ୍ରକାଶ କରୁଥିଲେ। ଏବେ ସୁଯୋଗ ପାଇ ସେମାନେ ସମସ୍ତେ କ୍ଷମତା ପାଇଁ ବ୍ୟାକୁଳ ହୋଇ ଉଠିଛନ୍ତି। ବିଧାନ ସଭାରେ ବା ସଂସଦରେ ପ୍ରବେଶ କରିବା ପାଇଁ ସେମାନେ ଅତ୍ୟନ୍ତ ଆଗ୍ରହୀ। ଯେକୌଣସି ବ୍ୟକ୍ତିର ବିରୋଧ କରିବା ବା ଲକ୍ଷ୍ୟକୁ ଧୂଳିସାତ କରିଦେବା ପାଇଁ ସେମାନେ ପ୍ରସ୍ତୁତ। କୌଣସି ପ୍ରକାରରେ ଜୀବନରେ ପ୍ରତିଷ୍ଠା ପାଇବା ପାଇଁ ପ୍ରତ୍ୟେକ ଆଗ୍ରହୀ। ମାତ୍ର ଆମ ଜାତୀୟତା ଉପରେ ଯୁଗ ଯୁଗ ଧରି ଆମକୁ ଯେପରି ଲଜ୍ଜାଜନକ ସ୍ଥିତିରେ ନ୍ୟୂନ କରି ରଖାଯାଇଛି, ତାହାକୁ ଦୂର କରିବାକୁ ସେମାନେ ଚାହାନ୍ତି ନାହିଁ।

ସମଗ୍ର ଦେଶ ତିନୋଟି ଭୂତ ଓ ପାଞ୍ଚଟି ବ୍ୟାଧି କବଳରେ ଜର୍ଜରିତ। କୌଣସି ଅସ୍ତିତ୍ୱ ନଥିବା କାଳ୍ପନିକ ଭାବନାରେ ବିଶ୍ୱାସ କରିବା ହେଉଛି ଭୂତର ସଂଜ୍ଞା। ଈଶ୍ୱର, ଜାତି ଓ ଗଣତନ୍ତ୍ର ହେଉଛି ଏହି ତିନୋଟି ଭୂତ। ବ୍ରାହ୍ମଣ, ସମ୍ବାଦପତ୍ର, ରାଜନୈତିକ ଦଳ, ବିଧାନସଭା ଓ ସିନେମା ହେଉଛି ପାଞ୍ଚଟି ବ୍ୟାଧି। ଏହି ବ୍ୟାଧି ଗୁଡିକ ମଣିଷ ଶରୀରକୁ କର୍କଟ, କୁଷ୍ଠ ଓ ମ୍ୟାଲେରିଆ ଭଳି ଆକ୍ରାନ୍ତ କରିଥାଏ। ସମାଜର ବାସ୍ତବ ପ୍ରଗତି କରିବାକୁ ହେଲେ ଏହି ବ୍ୟାଧି ଗୁଡିକ ବିରୋଧରେ ସଂଗ୍ରାମ କରିବା ଦରକାର।



Digitized by srujanika@gmail.com

## ପରିଚ୍ଛେଦ - ୫

# ପ୍ରିୟ ଯୁବବନ୍ଧୁଗଣ

(୨୧.୨.୧୯୪୩ ଦିନ ତ୍ରିଚିଠାରେ ଦେଇଥିବା ଭାଷଣ)

ମାନନୀୟ ସଭାପତି ମହୋଦୟ ଓ ପ୍ରିୟ ବନ୍ଧୁଗଣ,

ଗତ ପାଞ୍ଚ ଛଅମାସ ଭିତରେ ମୁଁ କୌଣସି ସଭାରେ ଭାଷଣ ଦେଇନାହିଁ। ମୋର ଅସୁସ୍ଥତା ପରେ ଏହା ମୋର ପ୍ରଥମ ଭାଷଣ। ଏହା ଭିତରେ ଅନେକ ଘଟଣା ଘଟିଯାଇଛି। ସେ ସବୁ ବିଷୟରେ ଆପଣମାନେ ମୋର ମତ ଜାଣିବାକୁ ଆଗ୍ରହୀ ହୋଇପାରନ୍ତି।

କେତେକ ବିବାଦୀୟ ପ୍ରସଙ୍ଗ ଉପରେ ମୁଁ ମୋର ମତ ପ୍ରକାଶ କରିବାକୁ ଚାହୁଁଛି। ବିଶେଷ କରି କେତେକ ଘଟଣାରେ ମୋତେ ଦାୟୀ କରାଯାଇଛି। ସୁତରାଂ ମୋର ମତକୁ ମୁଁ ସ୍ପଷ୍ଟ କରିବାକୁ ଚାହେଁ।

ମଣିଷ ଏକ ସାମାଜିକ ପ୍ରାଣୀ ଓ ସେ ଜଙ୍ଗଲରେ ବାସ କରିପାରିବ ନାହିଁ। ସେ ସମାଜରେ ଅନ୍ୟମାନଙ୍କ ସହିତ ରହିବ। ସେ ସମାଜରେ ନିଜର କର୍ତ୍ତବ୍ୟ କରିବ। ସାମାଜିକ ଶାନ୍ତି ଓ ପ୍ରଗତି ତାର ପ୍ରଥମ କର୍ତ୍ତବ୍ୟ। ତେଣୁ ମୋର ମତରେ ଯେଉଁବ୍ୟକ୍ତି ସମାଜର କୌଣସି ଉପକାରରେ ଆସେ ନାହିଁ, ସେ ଜଣେ ଜଙ୍ଗଲୀ ମଣିଷ। ସମସ୍ତ ପ୍ରାଣୀ ଯଦିବା ନିଜର ସ୍ୱାର୍ଥ ପାଇଁ ଆଗ୍ରହୀ, କେବଳ ମଣିଷମାନେ ସାମାଜିକ ବିକାଶକୁ ଯଥେଷ୍ଟ ଗୁରୁତ୍ୱ ଦେଇଥାନ୍ତି। ଏହାହିଁ ହେଉଛି ମାନବିକ ସ୍ୱଭାବର ଅଙ୍ଗ।

ମଣିଷ ସମାଜ କଥା ଚିନ୍ତାକରେ ଓ ସାମାଜିକ ବିକାଶ ପାଇଁ ଯୋଜନା କରେ। ଆମ ଦେଶରେ ବ୍ରାହ୍ମଣମାନେ ଓ ମୁସଲମାନମାନେ ସେମାନଙ୍କ ଗୋଷ୍ଠୀର ସ୍ୱାର୍ଥପ୍ରତି ସଚେତନ। ସେମାନେ ସର୍ବଦା ନିଜ ଗୋଷ୍ଠୀର ସ୍ୱାର୍ଥ ପାଇଁ ବ୍ୟସ୍ତ।

Digitized by srujanika@gmail.com

ସେମାନେ ଏହାକୁ ସର୍ବଦା ଗୁରୁତ୍ୱ ଦେଇ ଆସିଛନ୍ତି । ଦ୍ରାବିଡ ସମାଜରେ ଆମେ କିନ୍ତୁ କ'ଣ ଦେଖୁଛେ ? ଆମେ ଦ୍ରାବିଡ ମାନେ ଆମର ସାମାଜିକ ସ୍ୱାର୍ଥ ନେଇ ଚିନ୍ତା କରୁନାହୁଁ । ଆଦିଦ୍ରାବିଡମାନେ ମଧ୍ୟ ସେମାନଙ୍କର ଗୋଷ୍ଠୀର ସ୍ୱାର୍ଥପାଇଁ ସଚେତନ ନୁହଁନ୍ତି । ଏହାର କାରଣ ହେଉଛି ଦ୍ରାବିଡ ଓ ଆଦିଦ୍ରାବିଡମାନେ ସେମାନଙ୍କର ପ୍ରାଚୀନ ଗୌରବ ନେଇ ଆଦୌ ସଚେତନ ନୁହଁନ୍ତି । ଆଦି ଦ୍ରାବିଡମାନଙ୍କ ମଧ୍ୟରେ ଗୋଟିଏ ଗୋଷ୍ଠୀ ଅନ୍ୟଗୋଷ୍ଠୀ ସାଙ୍ଗରେ ଏକାଠି ବସି ଭୋଜନ କରନ୍ତି ନାହିଁ । ସେମାନେ ନିଜ ଭିତରେ ବହୁ ଜାତିରେ ବିଭାଜିତ ହୋଇଛନ୍ତି । ଦ୍ରାବିଡ ମାନଙ୍କର ମଧ୍ୟ ଅନେକ ଜାତି ରହିଛି । ଗୋଟିଏ ଜାତିର ଲୋକମାନେ ଅନ୍ୟଜାତିର ଲୋକଙ୍କ ସହ ଭୋଜନ କରୁନାହାଁନ୍ତି । ସେମାନଙ୍କର କୌଣସି ସାଧାରଣ ନୀତି କିମ୍ବା ଧର୍ମ ନାହିଁ । ସେମାନଙ୍କର ବାସ୍ତବରେ କୌଣସିଂ ଗୋଷ୍ଠୀଗତ ଦୃଷ୍ଟି ନାହିଁ । ଧର୍ମଗତ ଓ ଗୋଷ୍ଠୀଗତ ଦୃଷ୍ଟିଭଙ୍ଗୀର ଅଭାବରେ ସାମାଜିକ ଏକତା ଓ ମନୋଭାବ ରହିବା ସମ୍ଭବ ନୁହେଁ । ନିଜ ଗୋଷ୍ଠୀ ପ୍ରତି ସେମାନଙ୍କର ବିଶେଷ ଆନ୍ତରିକତା ନାହିଁ । କୌଣସି ସମୁଦାୟ ଜନିତ ଆନ୍ତରିକତା ଅଭାବରେ ସେମାନେ ପଶୁସ୍ତରରେ ରହିଛନ୍ତି । ଆମେ ନିଜକୁ ଅବ୍ରାହ୍ମଣ କିମ୍ବା ତାମିଲ ବୋଲି ପରିଚିତ କରାଇ ଥାଉ । ଆମେ ମାନେ ନିଜକୁ ଦ୍ରାବିଡ କହିବାକୁ ପ୍ରସ୍ତୁତ ନୋହୁଁ ।

ଆଙ୍ଗ୍ଲୋ ଭାରତୀୟମାନେ ଯେଉଁମାନେ ଦୁଇଟି ଜାତୀୟତାର ଉତ୍ତରାଧିକାରୀ, ସେମାନେ ପରସ୍ପର ଭିତରେ ଏକତା ରଖିବା ସହ ସେମାନଙ୍କର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଛନ୍ତି । ବ୍ରାହ୍ମଣମାନେ ନିଜକୁ ଦ୍ୱିଜ ବୋଲି କହିଥାନ୍ତି । ସେମାନଙ୍କର ନିଜସ୍ୱ ଉତ୍ପତ୍ତି ନେଇ ଜାଣିବାକୁ ଆଗ୍ରହ ନାହିଁ । କିନ୍ତୁ ସେମାନଙ୍କ ଭିତରେ ଏକତା ରହିଛି । ତେଣୁ ସେମାନେ ନିଜକୁ ମହାନ ଭାବୁଛନ୍ତି । ମୁସଲମାନ ମାନଙ୍କ କ୍ଷେତ୍ରରେ ଯିଏ ସେହି ଧର୍ମରେ ଦିକ୍ଷିତ ହେଲା, ସେମାନେ ଧର୍ମନାମରେ ଏକତ୍ର ହୋଇ ପାରୁଛନ୍ତି । ଗୋଟିଏ ଧର୍ମର ଲୋକ ବୋଲି ସେମାନଙ୍କ ମଧ୍ୟରେ ସଂହତି ସୃଷ୍ଟି ହୋଇ ପାରୁଛି । ତାଙ୍କର ଏହି ଧାର୍ମିକ ଏକତା ଯୋଗୁଁ ସେମାନେ ସମ୍ମାନର ଅଧିକାରୀ ହେଉଛନ୍ତି ।

Digitized by srujanika@gmail.com

## ଦ୍ରାବିଡମାନେ

ଦ୍ରାବିଡମାନଙ୍କ ଘଟଣା କିନ୍ତୁ ପୃଥକ୍ । ସେମାନଙ୍କର ବିଭିନ୍ନ ଜାତି ଅଛି । ସେମାନଙ୍କ ମଧ୍ୟରେ ନାନା ଭିନ୍ନତା ରହିଛି । ସେମାନେ ବି ବିଭିନ୍ନ ବିଶ୍ୱାସ ପୋଷଣ କରନ୍ତି । ସେମାନେ ସେମାନଙ୍କର ଜାତୀୟତା ନେଇ ଆଦୌ ବ୍ୟସ୍ତ ନୁହଁନ୍ତି । ସେମାନେ ଅନ୍ୟମାନଙ୍କର ଦାସ ହୋଇ ରହିଛନ୍ତି । ଏଥି ପାଇଁ ଦ୍ରାବିଡମାନେ ଓ ଆଦି ଦ୍ରାବିଡମାନେ ବ୍ରାହ୍ମଣ ମାନଙ୍କର ଓ ସରକାରର ଦୟାରେ ରହିଛନ୍ତି । ସେମାନେ ବିକାଶ ନ କରିବାର ଏହା ହେଉଛି କାରଣ । ସମାଜରେ ଏହି ମନ୍ଦ ବ୍ୟବସ୍ଥା ଯୋଗୁଁ ସେମାନେ ପଛରେ ପଡିଛନ୍ତି ।

ଗୋଟିଏ ଉଦାହରଣ ଦେଇ ମୁଁ ଏହାକୁ ବ୍ୟାଖ୍ୟା କରିବାକୁ ଚାହୁଁଛି । ଯୁଦ୍ଧ ସମୟରେ ବ୍ରାହ୍ମଣମାନେ ଅନେକ ସମସ୍ୟା ସୃଷ୍ଟି କରୁଥିଲେ, ଯାହା ସରକାରଙ୍କୁ ବେଶ୍ ଜଣା । ଯୁଦ୍ଧ ସମୟରେ ମୁସଲମାନମାନେ ଇଂରେଜମାନଙ୍କୁ କୌଣସି ସାହାଯ୍ୟ କରିବାକୁ ମନା କରିଥିଲେ । ଭାଇସରାୟଙ୍କର ପ୍ରଶାସନ କମିଟି ସ୍ୱତଃପ୍ରବୃତ୍ତ ହୋଇ ସେମାନଙ୍କୁ ସମସ୍ତ ପଦବୀ ଦେଲେ । ଦ୍ରାବିଡ ଓ ଅତି ଦ୍ରାବିଡମାନେ ଫ୍ୟାସି ବାଦୀ ଶକ୍ତି ବିରୋଧରେ ଇଂରେଜ ମାନଙ୍କୁ ଅକୁଣ୍ଠ ସାହାଯ୍ୟ କରିଥିଲେ । ସେମାନେ ନିଜର ସ-ର୍ଗୀୟମାନଙ୍କୁ ପ୍ରତାରଣା କରି ସରକାରଙ୍କୁ ସବୁକ୍ଷେତ୍ରରେ ସାହାଯ୍ୟ କରିଥିଲେ । ଏହା ସତ୍ତ୍ୱେ ସରକାରଙ୍କ ଦ୍ୱାରା ସେମାନଙ୍କୁ ଶୂଦ୍ର ବୋଲି ବର୍ଗୀକରଣ କରାଯାଇଛି । ଏପରିକି ଆଇନ ଦୃଷ୍ଟିରେ ମଧ୍ୟ ଶୂଦ୍ର ଆଖ୍ୟା ଦିଆଯାଇଛି । ଏହାର କାରଣ କ'ଣ ହୋଇପାରେ? ଏହା ବ୍ରାହ୍ମଣ ଓ ସରକାରଙ୍କ ଯୋଗୁଁ ହୋଇଛି । ଆମେ କ'ଣ ଏତିକି ପାଇବାକୁ ଯୋଗ୍ୟ ?

ସରକାରଙ୍କ ମତରେ କୌଣସି ଉଚ୍ଚ ପଦବୀ ପାଇଁ ଆମେ ଯୋଗ୍ୟ ନୁହେଁ । ସେପରି ସ୍ଥଳେ ଯୁଦ୍ଧ ସମୟରେ ବ୍ରିଟିଶ ସରକାରଙ୍କୁ ଆମେ ବିନା ସର୍ତ୍ତରେ ସାହାଯ୍ୟ କରିବା ଆବଶ୍ୟକ ନଥିଲା । ଶାସକମାନେ ଆମକୁ ଅବଜ୍ଞା କରି ବ୍ରାହ୍ମଣ ଓ ମୁସଲମାନ ମାନଙ୍କୁ ସମସ୍ତ ସାହାଯ୍ୟ ଦେଇଛନ୍ତି । ଆମେ ଉଚ୍ଚ ପଦପଦବୀ ପାଇଁ ଯେ ଯୋଗ୍ୟ ନୁହେଁ ଏହା ଆମକୁ କୁହାଯାଉଛି । ବ୍ରାହ୍ମଣମାନେ ଯଦିବା ଏକ ଅତ୍ୟନ୍ତ

Digitized by srujanika@gmail.com

ସଂଖ୍ୟାଲଘୁ ଶ୍ରେଣୀ, ସରକାର ସେମାନଙ୍କୁ ଭୟଙ୍କର ଭାବରେ ଭୟ କରୁଛି। ଆମେମାନେ ଅତ୍ୟନ୍ତ ସଂଖ୍ୟା ଗରିଷ୍ଠ ହେଲେ ମଧ୍ୟ ସରକାର ଆମ ପ୍ରତି ସାମାନ୍ୟ ଦୃଷ୍ଟି ଦେଉନାହିଁ। ସେମାନଙ୍କର ବିଶ୍ୱାସ ଯେ ଆମେ ଦ୍ରାବିଡମାନେ ସେମାନଙ୍କର କୌଣସି କିଛି ଅନିଷ୍ଟ କରିପାରିବା ନାହିଁ। ଏପରିକି ଅବସର ନେଇ ସାରିଥିବା ଓ ପେନ୍‌ସନ୍ ଭୋଗ କରୁଥିବା ବ୍ରାହ୍ମଣମାନଙ୍କୁ ଡାକିଆଣି ସରକାରରେ ଓ ବିଚାର ବିଭାଗରେ ଅବସ୍ଥାପିତ କରାଯାଉଛି। ଉଚ୍ଚ ଜାତିର ବ୍ରାହ୍ମଣ ମାନଙ୍କର ଆମକୁ ଦାସ କରିବାକୁ କାହିଁକି ସରକାର ଚାହୁଁଛନ୍ତି? ଏହା ପଛରେ କଣ ଯୁକ୍ତି ଅଛି? ଆମେ କେବଳ ସରକାରଙ୍କୁ ଦୋଷ ଦେଇ ପାରିବା ନାହିଁ। ମୁଁ ଏପରି କାହିଁକି କହୁଛି? ଆମେମାନେ ଭୀରୁ ହୋଇ ରହିଛେ। ଆମର ନ୍ୟାଯ୍ୟଦାବି ନେଇ ଆମେ ସରକାରଙ୍କୁ ପ୍ରଭାବିତ କଲାଭଳି ଆମର ସାହସ ନାହିଁ। ଆମ ମାନଙ୍କର ସ୍ୱାର୍ଥପରତା ଆମ ସମାଜର ଅଧପତନର ମୂଳ କାରଣ।

**ସମାଧାନର ବାଟ**

ଆମର ସଂଗଠନ ବହୁ ଦୁର୍ବଳ। ଆମେ ଭଲଭାବରେ କାର୍ଯ୍ୟ କରିପାରୁନାହୁଁ। ଏଥିରେ ଆମ ଦଳ କିପରି ସଫଳତା ପାଇବ? ଏହି ଲୋକମାନଙ୍କୁ ନେଇ ଏକ ସୁଦୃଢ ସଂଗଠନ କିପରି ସମ୍ଭବ ହେବ? ଅତ୍ୟନ୍ତ ବୟସ୍କ ଲୋକମାନଙ୍କୁ ଆମେ ଛାଡିଦେବା ଦରକାର। ଧନୀ ଲୋକମାନଙ୍କୁ ଆମ ସଂଗଠନରୁ ମଧ୍ୟ ବିଦାୟ ଦେବା ଦରକାର। ଆମ ପାର୍ଟିର ଯୁବକମାନେ ଆନ୍ଦୋଳନ କରିବା ପାଇଁ ଆଗକୁ ଆସିବା ଆବଶ୍ୟକ, ତାହା ହେଲେ ଦ୍ରାବିଡ ଆଦିଦ୍ରାବିଡମାନେ ସ୍ୱାଧୀନ ହୋଇ ପାରିବେ। କେବଳ ଯୁବକମାନେ ଆମ ଦାବି ପ୍ରତି ସରକାରଙ୍କ ସମର୍ଥନ ହାସଲ କରି ପାରିବେ। ଆମର ଏହି ଆଦର୍ଶ ଜନିତ ଲକ୍ଷ୍ୟ କ୍ଷେତ୍ରରେ ଆମ ସଂଗଠନରେ ଥିବା ବୟସ୍କ ଓ ଧନୀ ବ୍ୟକ୍ତିମାନେ ବିଶେଷ କିଛି କରିପାରିବେ ନାହିଁ। ଏ କ୍ଷେତ୍ରରେ କିଛିଟା ଏକଛତ୍ରବାଦ ଆବଶ୍ୟକ । ଏକ ଦଳ ହିସାବରେ ଆମକୁ ସର୍ବଦା ଗଣତାନ୍ତ୍ରିକ ହୋଇ ରହିବା ପାଇଁ ପରାମର୍ଶ ଦେବା ଅର୍ଥଶୂନ୍ୟ ମନେ ହୁଏ। ବରଂ

Digitized by srujanika@gmail.com

ଦଳରେ କିଛି ଏକଛତ୍ରବାଦୀ କାର୍ଯ୍ୟ ଦ୍ୱାରା ଲକ୍ଷ୍ୟ ସ୍ପଷ୍ଟ ହୋଇପାରିବ। ସ–ତି ରୁଷିଆ ଓ ଜର୍ମାନ ଏକଛତ୍ରବାଦକୁ ଗ୍ରହଣ କରିଛନ୍ତି। ସେଥିପାଇଁ ସେମାନେ ଅତ୍ୟନ୍ତ ଶକ୍ତିଶାଳୀ ହୋଇଛନ୍ତି। ଯେହେତୁ ଇଂଲଣ୍ଡ ଓ ଆମେରିକା ଗଣତାନ୍ତ୍ରିକ ରାଷ୍ଟ୍ର, ସେମାନେ ଅନେକ ସଂଗ୍ରାମ କରୁଛନ୍ତି। ଯଦି ଏକଛତ୍ରବାଦୀ ଦେଶ ଗୁଡିକ ସେମାନଙ୍କୁ ବିରୋଧ କରନ୍ତି କ'ଣ ହେବ?

କଂଗ୍ରେସ ଓ ମୁସଲିମ୍ ଲିଗ୍ ଏକଛତ୍ରବାଦ ଉପରେ ଦଣ୍ଡାୟମାନ। ଅନ୍ୟ ଦଳଗୁଡିକ ଗଣତାନ୍ତ୍ରିକ। ସରକାର ଏକଛତ୍ରବାଦୀ ସଂଗଠନମାନଙ୍କୁ ବଶୀଭୂତ କରିବାକୁ ପ୍ରୟାସ କରୁଛି। ଗଣତାନ୍ତ୍ରିକ ସଂଗଠନମାନଙ୍କୁ ସରକାର ବିଶେଷ ପ୍ରାଧାନ୍ୟ ଦେଉନାହାଁନ୍ତି। ଗଣତାନ୍ତ୍ରିକ ସଂସ୍ଥା ଗୁଡିକୁ କ୍ଷମତାଶୂନ୍ୟ କରି ରଖିବାକୁ ସରକାର ପ୍ରୟାସ କରୁଛନ୍ତି।

ଏହି କାରଣ ଯୋଗୁଁ ତାମିଲମାନେ ନିଜକୁ ପ୍ରସ୍ତୁତ କରିବା ଆବଶ୍ୟକ। ସେମାନେ ସଚେତନ ଭାବେ ଏକ ଦେଶର ବ୍ୟକ୍ତି ଭାବେ ନିଜର ଅସ୍ମିତାକୁ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ କରିବା ଦରକାର। ଏହି ପରିପ୍ରେକ୍ଷୀରେ ହୁଏତ ଏକ ଏକଛତ୍ରବାଦୀ ନେତାଙ୍କର ଆବିର୍ଭାବ ହେବ। ତାହେଲେ ଆମର ଲକ୍ଷ୍ୟ ପୂରଣ ହୋଇପାରିବ।

**ଅନଶନ**

ପରବର୍ତ୍ତୀ ଘଟଣା ଯାହା ଜନସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରିଥାଏ ତାହା ହେଲା ଦ୍ୱିତୀୟ ବିଶ୍ୱଯୁଦ୍ଧ। ଦିନକୁ ଦିନ ଯୁଦ୍ଧ ସ-ର୍କରେ ସୁସମ୍ବାଦମାନ ପହଞ୍ଚିବାରେ ଲାଗିଛି। ଏହି ଯୁଦ୍ଧରେ ଆମେ ଅନେକ ତ୍ୟାଗ କରିଛେ ଓ ଏବେ ମଧ୍ୟ ଅନେକ ତ୍ୟାଗ ପାଇଁ ପ୍ରସ୍ତୁତ ଅଛେ। ଯୁଦ୍ଧ ପାଇଁ ଆମେ ଅତ୍ୟଧିକ ବ୍ୟସ୍ତ ହେବା ଆବଶ୍ୟକ ନାହିଁ।

ଯେଉଁ ଦ୍ୱିତୀୟ ଘଟଣାଟି ଜନସାଧାରଣଙ୍କର ଚର୍ଚ୍ଚାର ବିଷୟ ହୋଇଛି, ତାହା ହେଲା ମହାତ୍ମା ଗାନ୍ଧୀଙ୍କର ଅନଶନ। ଗାନ୍ଧୀଙ୍କର ଅନଶନ ଏକ ନୂଆ ଘଟଣା ନୁହେଁ। ପୂର୍ବରୁ ସେ ବହୁବାର ଅନଶନ କରିଛନ୍ତି ଓ ଅନଶନ ଭଙ୍ଗ

Digitized by srujanika@gmail.com

କରିବାର କିଛି ଦିନପରେ ପୂର୍ବସ୍ୱାସ୍ଥ୍ୟ ଫେରି ପାଇଛନ୍ତି । ଗୋଟିଏ ଥର ସେ ଆମରଣ ଅନଶନ କରି ତାଙ୍କର ଲକ୍ଷ୍ୟ ପୂରଣ କରିଥିଲେ । ଏଥର ସେ ଯେଉଁ ଅନଶନ କଲେ ତାହା ବହୁ ଲୋକଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଡାକ୍ତର ମାନଙ୍କ ମତରେ ତାଙ୍କ ସ୍ୱାସ୍ଥ୍ୟର ଅବସ୍ଥା ଭଲ ନୁହେଁ । ସରକାର ତାଙ୍କ ପ୍ରତି ମଧ୍ୟ ଅବହେଳା କରିଛନ୍ତି । ତେବେ ମୋର ମତରେ ତାଙ୍କର ଏହି ଅନଶନ ଆମର ସ୍ୱାର୍ଥ ବିରୋଧୀ ଥିଲା । ସମ୍ଭବତଃ ଏହି କାରଣରୁ ସରକାର ତାଙ୍କ ପ୍ରତି ଟାଳଟୁଳ ନୀତି ଧରିଥିଲେ । ଆମର ଦାବିଥିଲା ପୃଥକ ଦ୍ରାବିଡନାଡୁ । ଗାନ୍ଧୀ ଏହାର ବିରୋଧୀ ଥିଲେ । ସରକାର ଏଥିରେ ହସ୍ତକ୍ଷେପ କରିବାକୁ ଚାହୁଁଥିଲେ । ଆମମାନଙ୍କ ଭିତରେ ଏହି ସମସ୍ୟାର ସମାଧାନ ପାଇଁ ସରକାର ଚାହୁଁଥିଲେ । ଗାନ୍ଧୀଙ୍କର ମତ ଥିଲା ଇଂରେଜମାନେ ଭାରତ ଛାଡି ଚାଲିଯିବା ଉଚିତ୍ । ଆମକୁ ତାପରେ ତଳେ ରଖିବା ଏହାର ଉଦ୍ଦେଶ୍ୟ ହୋଇପାରେ ଏହି ଉଦ୍ଦେଶ୍ୟ ରଖି ସେ ଏବେ ଅନଶନ କରିଛନ୍ତି ।

ଏହି ସ୍ଥିତିରେ ଆମର କାର୍ଯ୍ୟ କଣ? ଯେଉଁମାନେ ଆମ ପ୍ରତି ଦରଦୀ ଆଁମେ ସେମାନଙ୍କ ପ୍ରତି ସମ୍ବେଦନଶୀଳ । ଏହା ଏକ ପାରସ୍ପରିକ ସମ୍ବନ୍ଧ ଯାହା ଅତ୍ୟନ୍ତ ସ୍ୱାଭାବିକ ।

ଆମେମାନେ ଶୂଦ୍ରଭାବରେ ନ୍ୟୁନ ହୋଇ ଆସିଛେ । ଆମ ମାନଙ୍କର ମନ୍ଦିର ଭିତରେ ପ୍ରବେଶ କରିବାର ଅଧିକାର ନାହିଁ । କିମ୍ବା ଅନ୍ୟମାନଙ୍କ ସହ ଏକାଠି ବସି ଖାଇବାର ଅଧିକାର ନାହିଁ । ଆମମାନଙ୍କୁ ହୀନ ଅସ୍ପୃଶ୍ୟ କରି ରଖାଯାଇଛି । ସରକାରୀ ଦପ୍ତରରେ ଆମକୁ କେବଳ ଭୃତ୍ୟ ସମ୍ବନ୍ଧୀୟ କାର୍ଯ୍ୟ ଦିଆଯାଉଛି । ଯେଉଁମାନେ ଆମକୁ ଶୋଷଣ କରିଆସିଛନ୍ତି , ସେମାନଙ୍କୁ ସରକାରରେ ଓ କଂଗ୍ରେସରେ ଉଚ୍ଚ ପଦରେ ଅବସ୍ଥାପିତ କରାଯାଉଛି । ଏପର୍ଯ୍ୟନ୍ତ ଆମକୁ ନିମ୍ନ ଦୃଷ୍ଟିରେ ଗ୍ରହଣ କରାଯାଉଛି । ବ୍ରାହ୍ମଣ ଓ ଉଚ୍ଚଜାତିର ଲୋକମାନେ ଆମକୁ ସର୍ବଦା ଶୋଷଣ କରି ଆସିଛନ୍ତି ।

ଆମର ଏହି ଦୁସ୍ଥିତି ପାଇଁ ଗାନ୍ଧୀ କେବେ ଚିନ୍ତା କରିଛନ୍ତି କି? ଆମ ପ୍ରତି କୌଣସି ସମ୍ବେଦନାର ମନୋଭାବ ସେ ବ୍ୟକ୍ତ କରିଛନ୍ତି କି ? ଅନେକ ବ୍ୟକ୍ତି

Digitized by srujanika@gmail.com

ଗାନ୍ଧୀଙ୍କର ଅନଶନ ନେଇ ଗମ୍ଭୀର ଚିନ୍ତା ପ୍ରକଟ କରୁଛନ୍ତି । ଆମେ ଯେଉଁ କାର୍ଯ୍ୟପାଇଁ ସଂଗ୍ରାମ କରୁଛେ, ସେମାନଙ୍କର ସେ ପ୍ରତି କୌଣସି ଦରଦ ରହିଛି କି? ତାଙ୍କ ଅନଶନ ପରେ ତାର ପରିଣାମ ନେଇ ଚିନ୍ତା କରାଯିବା ଆବଶ୍ୟକ। ତାଙ୍କର ଅନଶନ ଦ୍ୱାରା ଆମର ସାମାଜିକ ସ୍ଥିତିରେ କିଛି ଉନ୍ନତି ହେବ ନା ଆମେ ଅନ୍ୟମାନଙ୍କ ସହ ସମାନ ହୋଇ ପାରିବା? ଏହି ସବୁ ପ୍ରଶ୍ନ ଗୁଡିକୁ ବିଚାର ନକରି ଗାନ୍ଧୀଙ୍କ ଅନଶନ ପ୍ରତି ଆମେ କାହିଁକି ଗୁରୁତ୍ୱ ଦେବା, ତାଙ୍କ ଅନଶନରୁ ଆମେ କୌଣସି ସୁଫଳ ପାଇବା କି?

ଏକ ସର୍ବଦଳୀୟ ସଭାର ଆହୂତ କରାଯାଇଛି। ଏହି ସମ୍ମିଳନୀର ଆୟୋଜକଗଣ ଆମକୁ ପୂରାଭାବରେ ଅଗ୍ରାହ୍ୟ କରିଛନ୍ତି । ସେମାନେ ଆମ ସ-ର୍କରେ କୌଣସି ଚିନ୍ତା ପ୍ରକଟ କରିନାହାଁନ୍ତି। ଏହି ପରିସ୍ଥିତିରେ ଆମେ ସେମାନଙ୍କୁ କି ପ୍ରକାରର ସାହାଯ୍ୟ ଦେଇପାରିବା? ମୋର ସାଥି ରାଜାଜୀ ସମସ୍ତ ଘଟଣା ପଛରେ ମୁଖ୍ୟ ନାୟକ ହୋଇ ରହିଛନ୍ତି। ଏସତ୍ତ୍ୱେ ନିଜ ରାଜ୍ୟ ସ-ର୍କରେ ସେ କୌଣସି ବ୍ୟଗ୍ରତା ପ୍ରକାଶ କରିନାହାନ୍ତି। ଅଧିକନ୍ତୁ ଏଥିରେ ଯୋଗ ଦେଉଥିବା ବିଭିନ୍ନ ରାଜନୈତିକ ଦଳର ନେତୃବୃନ୍ଦଙ୍କୁ କୌଣସି ଦଳୀୟ ରାଜନୀତି ଆଲୋଚନା ନକରିବାକୁ କଡା ନିର୍ଦ୍ଦେଶ ଦିଆଯାଇଛି। କେବଳ ଗାନ୍ଧୀଙ୍କର ମୁକ୍ତି ବିଷୟରେ ଆଲୋଚନା କରିବା ପାଇଁ ସେମାନଙ୍କୁ କୁହାଯାଇଛି। ଜଣେ ଆମ ମର୍ଯ୍ୟାଦା ପାଇଁ ଲଢୁଥିବା ବ୍ୟକ୍ତି ଏହି ସମ୍ମିଳନୀରେ କାହିଁକି ଯୋଗ ଦେବ?

ଯେଉଁମାନେ ନିଜର ସ୍ୱାର୍ଥସିଦ୍ଧି ପାଇଁ ମହାତ୍ମା ଗାନ୍ଧୀଙ୍କ ନାମକୁ ବ୍ୟବହାର କରୁଛନ୍ତି, ସେହିମାନେ ହିଁ ଏହି ସମ୍ମିଳନୀରେ ଯୋଗଦେଇଛନ୍ତି । ସେମାନେ ସମ୍ମିଳନୀରେ ଯୋଗଦେଇ କଙ୍ଗ୍ରେସ ସପକ୍ଷରେ ଏକ ପ୍ରସ୍ତାବ ଗ୍ରହଣ କରିଛନ୍ତି। ସମ୍ମିଳନୀରେ ୨୦୦ ପ୍ରତିନିଧି ଓ ୩୦୯ ଜଣ ପରିଦର୍ଶକ ଯୋଗ ଦେଇଥିଲେ।

ସମ୍ମିଳନୀରେ ଅନେକ ଲୋକ ଯୋଗଦେଇ ନଥିବା ରାଜାଜୀ ସ୍ୱୀକାର କରିଛନ୍ତି। ସେଠାରେ ଅନେକ ଦୂରଭାଷ (ଲାଉଡସ୍ପିକର) ବ୍ୟବସ୍ଥା ହୋଇଥିଲା। ସେମାନେ ଏହାକୁ ଏକ ସର୍ବଭାରତୀୟ ଓ ସର୍ବଦଳୀୟ ସମ୍ମିଳନୀ ବୋଲି ଘୋଷଣା

Digitized by srujanika@gmail.com

କରିଥିଲେ। ଏ ପ୍ରକାରର ଠକାମିର ସୀମା ନାହିଁ। ସେମାନଙ୍କ ମତରେ ଦକ୍ଷିଣ ଭାରତରରୁ ୧୦୦ ଟି ଟେଲିଗ୍ରାମ ଆସିଥିଲା, ସେଥିରୁ ୯୯ ଟି ବ୍ରାହ୍ମଣମାନଙ୍କ ପାଖରୁ ଯାଇଥିଲା। ସମାଜର ସ୍ୱାର୍ଥାନ୍ୱେଷୀ ଲୋକମାନେ ବ୍ରାହ୍ମଣମାନଙ୍କ ଦ୍ୱାରା ନିୟନ୍ତ୍ରିତ ସମ୍ବାଦପତ୍ର ମାନଙ୍କରେ ଅତିରଞ୍ଜିତ କଥା ପ୍ରକାଶ କରୁଥିଲେ। ଦକ୍ଷିଣ ଭାରତୀୟଙ୍କ ବିଷୟରେ କେହି କୌଣସି ବ୍ୟଗ୍ରତା ପ୍ରକାଶ କରିନଥିଲେ। ଜଣେ ବ୍ୟକ୍ତିଙ୍କର ଅନଶନକୁ ନେଇ ଜନଗଣଙ୍କର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସମସ୍ୟା ଗୁଡିକର ବିଚାର କରାଯିବା କେତେ ଦୂର ଠିକ୍ ? ଏହା ଏକ ବିଜ୍ଞ ପଦେକ୍ଷେପ କି? ସମସ୍ୟାର ସମାଧାନ କ୍ଷେତ୍ରରେ ଅନଶନକୁ ଆଧାର କରିବା ଏକ ଅହେତୁକ ଘଟଣା ନୁହେଁକି ? ଜଣେ ବ୍ୟକ୍ତିଙ୍କର ଅନଶନକୁ ଭୟ କରିବା ଏକ ଚିନ୍ତାଶୂନ୍ୟ ବିଚାର ନୁହେଁକି? ଆମକୁ ଏପ୍ରକାର ଭୟ ଦେଖାଇବା କେତେ ଦୂର ଠିକ୍ ? ଏଥିରୁ ଆମେ କଣ ଫଳ ପାଇବା, ତାହା ମୁଁ ଭାବିପାରୁନାହିଁ।

**ଦୁର୍ବୃତ୍ତତା :-**

ଅନ୍ୟ ଯେଉଁ ଘଟଣାଟି ଯାହା ଜନଗଣଙ୍କର ଦୃଷ୍ଟି ଆକର୍ଷଣ କରିଛି, ତାହା ହେଲା କେତେକ ଅନ୍ତର୍ଘାତୀ କାର୍ଯ୍ୟ। ସାରା ଦେଶରେ ଯେତେ ଜାତୀୟ ସ-ତ୍ତି ନଷ୍ଟ କରାଯାଇଛି ସେଥିପାଇଁ କଂଗ୍ରେସ ହିଁ ଦାୟୀ। ତେବେ ସେମାନେ ଏହାକୁ ଅସ୍ୱୀକାର କରୁଛନ୍ତି। ଦେଶସାରା ହୋଇଥିବା ଅନ୍ତର୍ଘାତୀ କାର୍ଯ୍ୟରେ କଂଗ୍ରେସ ଜଡିତ ନୁହଁ, ଏହା ସେମାନେ କହୁଛନ୍ତି। କଂଗ୍ରେସ କେତେକ ଉଚ୍ଚ ଆଦର୍ଶର କଥା କହିଥାଏ। ସେମାନେ ନୀତିନିଷ୍ଠ, ଶାନ୍ତିପ୍ରିୟ, ସତ୍ୟବାଦୀ ଓ ଅହିଂସ ବୋଲି ଦାବି କରିଥାନ୍ତି। ଅନ୍ୟପଟେ ଦେଶସାରା ଯେଉଁ ଭଙ୍ଗାରୁଜା ହେଲା ତାହା କାହିଁକି ହେଲା? ସେମାନଙ୍କର କଥା ଓ କାର୍ଯ୍ୟରେ କୌଣସି ମେଳ ନାହିଁ। ଏଥିରୁ କଂଗ୍ରେସର ବାସ୍ତବ ରୂପ ଜଣାପଡେ।

ନିକଟରେ ଯେଉଁ ଦଙ୍ଗା, ପୋଡା ଜଳା, ଲୁଟ୍ ତରାଜ ଓ ସାଧାରଣ ସ-ତ୍ତି ନଷ୍ଟ ହେଲା ସେଥିରେ କଂଗ୍ରେସ ଲୋକ ମାନଙ୍କର କୌଣସି ଭୂମିକା ନାହିଁ ବୋଲି ଆଇନକୁ ଏଡାଇ ଯିବା ପାଇଁ ସେମାନେ ଏପରି କହୁଛନ୍ତି। ଯଦି ନେତାଙ୍କର

Digitized by srujanika@gmail.com

ଏଥିରେ ଭୂମିକା ନାହିଁ, ତେବେ ସ୍ୱେଚ୍ଛାସେବୀମାନେ ବିଚାରାଳୟରେ କହିବା ଉଚିତ୍ ଯେ ଯାହା ସବୁ ହେଲା ସେମାନେ ସେଥିପାଇଁ ଦାୟୀ । ଅଳ୍ପ କେତେକ ଜାଗାରେ ସ୍ୱେଚ୍ଛାସେବୀମାନେ ଏଥିରେ ନିଜର ସଂପୃକ୍ତିକୁ ସ୍ୱୀକାର କରିଛନ୍ତି । ଅଗ୍ନି ସଂଯୋଗ କରିବାରେ ସେମାନେ ନିଜକୁ ଦାୟୀ କରିବା ସହ ଏହା ଅଧିକ ନ ବ୍ୟାପି ଥିବା ଯୋଗୁଁ ଅନୁଶୋଚନା ପ୍ରକାଶ କରିଛନ୍ତି । ଜାତୀୟ ସ୍ତରର କୌଣସି ସମ୍ବାଦ ପତ୍ର ଏହାକୁ ନିନ୍ଦା କରିନାହିଁ । ଦେଶସାରା ହୋଇଥିବା ଏହି ଅସାମାଜିକ କାର୍ଯ୍ୟ ବିଷୟରେ ମହାତ୍ମା ଗାନ୍ଧୀ ବେଶ ଅବଗତ ଥିଲେ । ସେ ଏହାକୁ ନିନ୍ଦାକରି କୌଣସି ବକ୍ତବ୍ୟ ଦେଇନାହାନ୍ତି । କଂଗ୍ରେସ ଦଳର କେହି ଏହାକୁ ନିନ୍ଦା କରିବା ପାଇଁ ଆଗଭର ହୋଇନାହାନ୍ତି । ପୋଲିସ ଅନେକ କଂଗ୍ରେସ 'କାର୍ଯ୍ୟାଳୟ ଚଡାଉକରି ଅନେକ ରେକର୍ଡ ଜବତ କରିଛି । ଯେଉଁଥିରୁ ଏସବୁ ପଛରେ ସେମାନଙ୍କର ସଂପୃକ୍ତି ଥିବା ଜଣାପଡିଛି । କେତେକ କଂଗ୍ରେସ କର୍ମୀ ଏହି ପ୍ରଚାର ପତ୍ର ସହ ଗିରଫ୍ଦ ହୋଇଛନ୍ତି । ସରକାରଙ୍କ ମତରେ ଏସବୁ ଘଟଣାରେ କଂଗ୍ରେସ ଦଳ ଯେ ସଂଶ୍ଳିଷ୍ଟ ସେ ନେଇ ଅନେକ ତଥ୍ୟ ମିଳିଛି । ଅବସ୍ଥା କାଳେ ଖରାପ ହେବ, ସେଥିପାଇଁ ସରକାର ସମସ୍ତ ତଥ୍ୟ ପ୍ରକାଶ କରୁନାହାନ୍ତି । ଏଥିରୁ ଏହା ସ୍ପଷ୍ଟ ହେବାକୁ ଲାଗିଛି ଯେ କଂଗ୍ରେସ ନୀତି ହିଁ ହିଂସା, ଭଙ୍ଗାରୁଜା ଓ ଏହି ଅସାମାଜିକ କାର୍ଯ୍ୟ ପାଇଁ ଦାୟୀ ।

**ଦୁଃଖ କାହାର :-**

ଏହି ସବୁ ଦାୟିତ୍ୱହୀନ କାର୍ଯ୍ୟରୁ ସାଧାରଣ ଲୋକମାନେ କିଛି ଉପକାର ପାଇବେ କି? ଏସବୁ କାର୍ଯ୍ୟ କଳାପ ମୂର୍ଖାମିର କାର୍ଯ୍ୟ ଓ ନିନ୍ଦନୀୟ । ଏହା ଦ୍ୱାରା ଇଂରେଜମାନଙ୍କର ବା ସେମାନଙ୍କ ସମ୍ପତ୍ତିର କୌଣସି କ୍ଷତି ହେଉନାହିଁ । ସେମାନଙ୍କର ଜୀବନପ୍ରତି କୌଣସି ବିପତ୍ତି ନାହିଁ । ସେମାନଙ୍କର ସରକାର ଏହାଦ୍ୱାରା କୌଣସି ଭାବେ ବାଧାପ୍ରାପ୍ତ ହେବନାହିଁ । ତେବେ ଏସବୁକାର୍ଯ୍ୟ ଦ୍ୱାରା କାହାର କ୍ଷତି ହେଲା? ଆମରି ଲୋକମାନେ ହିଁ କଷ୍ଟ ସହିଲେ ବା ଜୀବନ ଦେଲେ ।

Digitized by srujanika@gmail.com

ଯଦି କ୍ଷମତା କଂଗ୍ରେସକୁ ହସ୍ତାନ୍ତର କରାଯାଏ, ତେବେ ଆମ ସମାଜର ଭବିଷ୍ୟତ କ'ଣ ହେବ ?

ସରକାର ନେତାମାନଙ୍କୁ ଗିରଫ କଲେ। ଏହା ଏକ ଉତ୍ତମ ପଦକ୍ଷେପ ଥିଲା। ସେମାନେ କଂଗ୍ରେସର କାର୍ଯ୍ୟ କଳାପକୁ ଦମନ କରିବା ପାଇଁ ତତ୍କ୍ଷଣାତ୍ କେତେକ ପଦକ୍ଷେପ ନେଲେ। ଏହା ପ୍ରକୃତରେ ସ୍ୱାଗତଯୋଗ୍ୟ। ଆମ ରାଜ୍ୟ ପରିପ୍ରେକ୍ଷୀରେ ଆମର ଜନଗଣକୁ ଆମେ ପ୍ରଶଂସା କରିବା ଉଚିତ୍। ସରକାରରେ ଥିବା ପଦାଧିକାରୀମାନେ ଯଦିବା ବ୍ରାହ୍ମଣ ଥିଲେ, ଗଭର୍ଣ୍ଣର ଚତୁରତାର ସହ କାର୍ଯ୍ୟ କରି ପ୍ରତିକୂଳତା ଭିତରେ ପରିସ୍ଥିତିକୁ ନିୟନ୍ତ୍ରଣ କଲେ। ସେଥିପାଇଁ ଆନ୍ତର୍ଘାତୀ କାର୍ଯ୍ୟ ଗୁଡିକ ସଫଳ ହେଲା ନାହିଁ। ଅନ୍ୟ ରାଜ୍ୟର ପରିସ୍ଥିତି ଭିନ୍ନ ରକମର ହେଲା। ସେଠାରେ ଗାନ୍ଧୀଙ୍କୁ ଲୋକମାନେ ପୂଜା କରୁଛନ୍ତି। ଧନୀ ପୁଞ୍ଜି ପତିମାନେ ଭାବିଲେ ଯେ କଂଗ୍ରେସକୁ ସରକାର ଦବାଇଦେଲେ, ସେମାନଙ୍କର ଲାଭ ହ୍ରାସ ପାଇବ। ସୁତରାଂ ସେମାନେ କଂଗ୍ରେସକୁ ମୁକ୍ତ ହାତରେ ସାହାଯ୍ୟ କଲେ ଏବଂ କଂଗ୍ରେସର ସ୍ୱେଚ୍ଛାସେବୀମାନଙ୍କୁ ଉତ୍ସାହିତ କଲେ। ମୁଁ ଭାବୁଛି ସେ ସ୍ଥାନ ମାନଙ୍କରେ ମଧ୍ୟ ଏହାର ଶୀଘ୍ର ପରିସମାପ୍ତି ଘଟିବ।

**ଛାତ୍ରମାନ:-**

ଛାତ୍ରମାନେ ମଧ୍ୟ ସମସ୍ୟା ସୃଷ୍ଟି କରୁଛନ୍ତି। ସେଥିପାଇଁ ମୁଁ ଶିକ୍ଷକମାନଙ୍କୁ ଦୋଷ ଦେଉଛି। ଶିକ୍ଷକମାନେ ଛାତ୍ରମାନଙ୍କୁ ପ୍ରୋତ୍ସାହିତ କରୁଛନ୍ତି। ଛାତ୍ରମାନଙ୍କ ଭିତରେ ବିଶୃଙ୍ଖଳାର ବାତାବରଣ ସୃଷ୍ଟି କରିବା ପାଇଁ ଉତ୍ତର ଭାରତରୁ ଅନେକ ଅର୍ଥ ଆସୁଛି। ଏହି ଦୁଇଟି କାରଣ ଯୋଗୁଁ ଛାତ୍ରମାନେ ବିପଥଗାମୀ ହେଉଛନ୍ତି। ଶିକ୍ଷକମାନେ ବିଶୃଙ୍ଖଳିତ ଛାତ୍ରମାନଙ୍କ ବିରୋଧରେ କୌଣସି ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁନାହାନ୍ତି। ସେମାନେ ଜାଣିଶୁଣି ଛାତ୍ରମାନେ ଗଣ୍ଡଗୋଳରେ ସଂଯୁକ୍ତ ହେବାକୁ ଅନୁମତି ଦେଉଛନ୍ତି। ସେମାନେ ଜାଣନ୍ତି ଯେ, ଛାତ୍ରମାନଙ୍କ ଶିକ୍ଷା ଓ ଭବିଷ୍ୟତ ନଷ୍ଟ ହେବ। ଏ କ୍ଷେତ୍ରରେ ବ୍ରାହ୍ମଣ ଛାତ୍ରମାନେ ବେଶ୍ ଚତୁର।

Digitized by srujanika@gmail.com

ଛାତ୍ରମାନଙ୍କ ଆନ୍ଦୋଳନରେ ସେମାନେ ସଂଯୁକ୍ତ ହେଉ ନାହାଁନ୍ତି । ଏଥିରେ ପରିଣାମ କ'ଣ ହେଉଛି? କେବଳ ଅଣବ୍ରାହ୍ମଣ ଛାତ୍ରମାନେ ସେମାନଙ୍କର ଭବିଷ୍ୟତ ନଷ୍ଟ କରୁଛନ୍ତି ।

ଆମର ଶିକ୍ଷାବ୍ୟବସ୍ଥା ଏକ ମନ୍ଦ ସ୍ଥିତିରେ ଅଛି । ଆଜି ଯେଉଁ ଶିକ୍ଷା ଦିଆଯାଉଛି, ଭବିଷ୍ୟତ କ୍ଷେତ୍ରରେ ଏହା କୌଣସି ଛାତ୍ରକୁ କିଛି ସାହାଯ୍ୟ କରିବ ନାହିଁ । ଦିନକୁ ଦିନ ଛାତ୍ରମାନଙ୍କୁ ଶିକ୍ଷାଦେବା କ୍ଷେତ୍ରରେ ଅଭିଭାବକମାନେ ଅଧିକ ଆର୍ଥିକ ଚାପର ସମ୍ମୁଖୀନ ହେଉଛନ୍ତି । ପିଲାମାନଙ୍କୁ ପାଠ ପଢାଇବା ବର୍ତ୍ତମାନ ବହୁ ବ୍ୟୟବହୁଳ ହେବାରେ ଲାଗିଛି । ଏତେ ଅର୍ଥ ଖର୍ଚ୍ଚ କରି ପିଲାମାନଙ୍କୁ ପାଠ ପଢାଇବା ପିତାମାତାଙ୍କର ସଂଖ୍ୟା ହ୍ରାସ ପାଇବାରେ ଲାଗିଛି ।

ବ୍ରାହ୍ମଣ ସମ୍ପ୍ରଦାୟ ଏଥିରେ ଆଦୌ ବିଚଳିତ ନୁହଁନ୍ତି । ତାହାର କାରଣ ହେଉଛି ସେମାନେ ନିଜର ଆତ୍ମମର୍ଯ୍ୟାଦା ନେଇ କିଛି ଖାତିର କରନ୍ତି ନାହିଁ । ଧର୍ମ ତାଙ୍କୁ ଏତେ ସୁଯୋଗ ଦେଇଛି ଯେ ସେମାନେ ସହଜରେ ଅନ୍ୟ ଜାତିମାନଙ୍କୁ ଶୋଷଣ କରିପାରିବେ । ସରକାର ମଧ୍ୟ ସେମାନଙ୍କୁ ପ୍ରୋତ୍ସାହିତ କରିଚାଲିଛନ୍ତି । ଏହି ସବୁ ସୁବିଧା ସୁଯୋଗ ଯୋଗୁଁ ବ୍ରାହ୍ମଣ ଛାତ୍ରଛାତ୍ରୀମାନେ ଭଲ ପଢୁଛନ୍ତି, ଓ ପରୀକ୍ଷାରେ ଭଲ ଫଳ ପ୍ରଦର୍ଶନ କରୁଛନ୍ତି । ଅବ୍ରାହ୍ମଣ ଛାତ୍ରଛାତ୍ରୀମାନେ ସହଜରେ ପ୍ରତାରିତ ହେଉଛନ୍ତି । ସ୍କୁଲ ବା କଲେଜ ମାନଙ୍କରେ ଗଣ୍ଡଗୋଳ କରିବାପାଇଁ ସେମାନେ ଅକ୍ଳେଶରେ ପ୍ରଭାବିତ ହେଉଛନ୍ତି ।

ଅବ୍ରାହ୍ମଣ ପିଲାମାନଙ୍କର ବାପା ମାଙ୍କର ପ୍ରତିବନ୍ଧକକୁ କଳ୍ପନା କରନ୍ତୁ । ସେମାନେ ଦାରିଦ୍ର୍ୟ ଭିତରେ ଭୋକ ଉପାସରେ ରହି ନିଜ ପିଲାଙ୍କର ଶିକ୍ଷା ପାଇଁ ଯତ୍ କିଞ୍ଚିତ୍ ଅର୍ଥ ସଂଞ୍ଚୟ କରୁଛନ୍ତି । ଏପରିକି କେତେକ ଅଭିଭାବକ ପିଲାଙ୍କର ପାଠ ପାଇଁ ସେମାନଙ୍କର ସମ୍ପତ୍ତିବାଡି ବିକି ଦେଉଛନ୍ତି । କେତେକ ମଧ୍ୟ ଉଚ୍ଚ ସୁଧରେ ଟଙ୍କା ଆଣି ପିଲାମାନଙ୍କୁ ପଢାଉଛନ୍ତି । ଅବ୍ରାହ୍ମଣ ଗରିବ ଲୋକମାନଙ୍କର ପିଲାମାନେ ସ୍କୁଲ କଲେଜରେ ସେମାନଙ୍କର କର୍ତ୍ତବ୍ୟ ଓ ଦାୟିତ୍ୱ ବିଷୟରେ ସଚେତନ ହେବା ଆବଶ୍ୟକ । ସେମାନେ ଯଦି ନିଜର ଶିକ୍ଷାକୁ ହତାଦାର କରି

Digitized by srujanika@gmail.com

ବିଶୃଙ୍ଖଳା ପୂର୍ଣ୍ଣ କାର୍ଯ୍ୟରେ ସଂପୃକ୍ତ ହେବେ, ଏହା ବାପାମାଙ୍କ ଲକ୍ଷ୍ୟ ପ୍ରତି ବିଶ୍ୱାସଘାତକତା ହେବ। ବିଶୃଙ୍ଖଳା କରି ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟିକରିବା ଏକ ଦେଶାତ୍ମକ କାର୍ଯ୍ୟ ନୁହେଁ। ଅନେକ ଅବ୍ରାହ୍ମଣ ଛାତ୍ରମାନେ ସଂପ୍ରତି ସେମାନଙ୍କର କର୍ତ୍ତବ୍ୟ କ୍ଷେତ୍ରରେ ଅନେକ ଅବହେଳା କରୁଛନ୍ତି। ସେମାନଙ୍କର ଏହି ବିଚାରହୀନ କାର୍ଯ୍ୟ ସେମାନଙ୍କୁ ବିପଥଗାମୀ କରାଉଛି। ଛାତ୍ରମାନଙ୍କ କର୍ତ୍ତବ୍ୟ ହେଉଛି ଶିକ୍ଷା କରିବା। ଯାହାକୁ ସେମାନେ ହତାଦାର କରିବା ଠିକ୍ ନୁହେଁ। ବରଂ ସେମାନଙ୍କ ଶିକ୍ଷାପରେ ସେମାନେ ନିଜର ନିଷ୍ପତ୍ତି ଅନୁଯାୟୀ ଯେ କୌଣସି କାର୍ଯ୍ୟ କରିପାରନ୍ତି। ଛାତ୍ରମାନେ ଯଦି ଭାବନ୍ତି ଶିକ୍ଷା ଜାତୀୟତା ଅପେକ୍ଷା ଗୁରୁତ୍ୱପୂର୍ଣ୍ଣ ନୁହେଁ, ତେବେ ଛାତ୍ରମାନେ ନିଜର ବାପାମା'ଙ୍କୁ ଏହା ଜଣାଇ ସ୍କୁଲ କଲେଜରୁ ନିଜର ନାମ କଟାଇଦେବା ଉଚିତ୍। ଏହା ପରେ ସେମାନେ ଯାହା ଉଚିତ୍ ଭାବିବେ, ସେହି କାର୍ଯ୍ୟରେ ନିଜକୁ ସଂପୃକ୍ତ କରାଇ ପାରିବେ। ଦାୟିତ୍ୱ ଶୂନ୍ୟ ହୋଇ ଗୁଣ୍ଡାଭଳି ବିଶୃଙ୍ଖଳାପୂର୍ଣ୍ଣ କାର୍ଯ୍ୟରେ ସଂପୃକ୍ତ ହେବା ନିନ୍ଦାର ବିଷୟ। ଶିକ୍ଷାନୁଷ୍ଠାନରେ ଛାତ୍ର ରହି ଜାତୀୟତାର ସ୍ୱର ଉଠାଇବା ଠିକ୍ ନୁହେଁ। ମୁଁ ଏହା ସମସ୍ତ ଅବ୍ରାହ୍ମଣ ଛାତ୍ରଛାତ୍ରୀମାନଙ୍କୁ ସୂଚାଇ ଦେବାକୁ ଚାହେଁ।

**ପୁସ୍ତକ : -**

ଜନଗଣଙ୍କର ଦୃଷ୍ଟି ଆକର୍ଷଣ କରିଥିବା ଆଉ ଗୋଟିଏ ବିଷୟ ହେଉଛି, ଅଦରକାରୀ ମନେ କରୁଥିବା ପୁସ୍ତକମାନଙ୍କୁ ଅଗ୍ନିସଂଯୋଗ କରି ପୋଡିବା। ଆତ୍ମମର୍ଯ୍ୟାଦା ଥିବା ଲୋକମାନେ ଏହା କାହିଁକି କରୁଛନ୍ତି? ଏଥିପାଇଁ ମୋତେ ଦାୟୀ କରାଯାଉଛି। ମନୁ ସଂହିତା ଭଳି ପୁସ୍ତକମାନଙ୍କୁ ତାମିଲମାନେ ପ୍ରତ୍ୟାଖ୍ୟାନ କରିବା ପାଇଁ ଏହା କରାଯାଉଛି। କାରଣ ଏହି ସଂହିତା ଧର୍ମ, ଈଶ୍ୱର ନାମରେ ଆମକୁ ନ୍ୟୂନ କରିଛି। ରାମାୟଣ ହେଉଛି ଈଶ୍ୱରଙ୍କୁ ନେଇ ଏକ କାହାଣୀ। ପେରିଆ ପୁରାଣ ସେହିପରି ସୃଷ୍ଟି କରାଯାଇଛି। ଏଗୁଡିକୁ ତାମିଲ ସାହିତ୍ୟ ଭାବରେ ପ୍ରଚାର କରାଯାଉଛି। ଏଥିପାଇଁ ଏସବୁକୁ ବାଦଦେବାକୁ ଆମେ ତାମିଲ ମାନଙ୍କୁ କହିବା ଆବଶ୍ୟକ। ପୁସ୍ତକ ପୋଡି ଆମ ପ୍ରତିବାଦରେ ଏକ ପ୍ରତୀକ ମାତ୍ର। ମନୁଙ୍କ ସଂହିତା

Digitized by srujanika@gmail.com

ଆଧାରରେ ହୋଇଥିବା ହିନ୍ଦୁ ଆଇନକୁ ପ୍ରତ୍ୟାଖାନ କରିବାକୁ କେତେକ ମୋତେ ପତ୍ର ଲେଖିଛନ୍ତି । ଆମେ ବହୁ ବର୍ଷହେଲା ଏହା ବିରୁଦ୍ଧରେ ସ୍ୱର ଉଠାଇ ଆସୁଛେ । ଆଜି ମନୁଙ୍କ ନିୟମ ଅନୁସାରେ ଆମକୁ ଶାସନ କରାଯାଉଛି । ଆମେ ଗୋଟିଏ ପରେ ଗୋଟିଏ କାର୍ଯ୍ୟ ହାତକୁ ନେବା । ମନୁ ସଂହିତା, ରାମାୟଣ ଓ ପେରିଆ ପୁରାଣକୁ ଆମେ ପ୍ରତ୍ୟାଖ୍ୟାନ କରିବା ଉଚିତ୍ । କିନ୍ତୁ ତାମିଲ ପଣ୍ଡିତମାନେ ଓ ଶୈବମାନେ ଆମ ବିରୋଧରେ ଦୃଢ ସ୍ୱର ଉଠାଇଛନ୍ତି ।

ଏହି ପୁସ୍ତକ ଗୁଡିକ ପରସ୍ପର ସହ କିପରି ସଂଯୋଜିତ ତାହା ବିଚାର କରାଯାଉ । ତାପରେ ତାର ବିଷୟ ବସ୍ତୁକୁ ଆମେ ଦେଖିବା । ଏଗୁଡିକ ଆମ ପାଇଁ କୌଣସି ଭାବେ ଦରକାରୀ କି ବୋଲି ଆମେ ଆଲୋଚନା କରିବା । ଏହି ବହି ମାନଙ୍କରେ ଯାହା ସବୁ ବର୍ଣ୍ଣନା ଅଛି, ସେସବୁକୁ ଅନୁକରଣ କରିବା ଦ୍ୱାରା ଆମର କୌଣସି ମଙ୍ଗଳ ବିଧାନ ହେବ କି? ଏହି ପ୍ରଶ୍ନ ଗୁଡିକର ଗମ୍ଭୀର ଚର୍ଚ୍ଚା କରି ଆମେ ସେ ସବୁ ବିଷୟରେ କହିପାରିବା ।

ଏହି ତିନୋଟି ବହି ଆମ ସ-ର୍କରେ ଆଦୌ ସ-ୃକ୍ତ ନୁହେଁ । ଆମ ପାଇଁ ସେଗୁଡିକ କୌଣସି ଉପକାର ଯୋଗ୍ୟ ନୁହେଁ । ଯଦି କୌଣସି ତାମିଲ ମନୁସଂହିତାର ନଷ୍ଟ ସପକ୍ଷରେ ନୁହେଁ, ତେବେ ଆମକୁ ତାଙ୍କର ଜନ୍ମ ନେଇ ସନ୍ଦେହ କରିବାକୁ ହେବ । ରାମାୟଣ ମଧ୍ୟ ମନୁସଂହିତା ପରି ଏକ କାବ୍ୟ । କେତେକ ପଣ୍ଡିତ କମ୍ବ ରାମାୟଣକୁ ଏକ ବିଶିଷ୍ଟ ସାହିତ୍ୟ କୃତିଭାବେ ଗ୍ରହଣ କରିଥାନ୍ତି । ସେମାନେ କୌଣସି ଗ୍ରନ୍ଥରେ ଅଗ୍ନି ସଂଯୋଗର ବିରୋଧୀ । ତେବେ ରାମାୟଣର ମୂଳ ଲେଖକ କମ୍ବ ରାମାୟଣକୁ ଏକ ସାହିତ୍ୟ କୃତିର ସ୍ୱୀକୃତି ଦିଅନ୍ତି ନାହିଁ । କମ୍ବର ନିଜେ କହିଛନ୍ତି ରାମାୟଣ ଏକ ସାହିତ୍ୟ କୃତି ନୁହେଁ । ରାମାୟଣକୁ ଏକ ବିଶିଷ୍ଟ କୃତି ଭାବେ ନେଇ ତାହାରି ଆଧାରରେ ସେ ନିଜର ସମାର୍ଥ୍ୟର ପରାକାଷ୍ଠା ଦେଖାଇଛନ୍ତି ।

ପେରିୟାର ପୁରାଣରେ କେତେକଙ୍କ ମତରେ ଜ୍ୟୋତିର୍ବିଦ୍ୟା ଓ ଭୂଗୋଳ ବିଷୟରେ ଗୁରୁତ୍ୱ ପୂର୍ଣ୍ଣ ଗଭୀର ଜ୍ଞାନ ରହିଛି । ଏହାକୁ ଏକ ଐତିହାସିକ କୃତି

Digitized by srujanika@gmail.com

ଭାବରେ ନେବା ଦରକାର । ଏହାକୁ ଧ୍ୱଂସ କରିବା ଠିକ୍ ନୁହେଁ ବୋଲି ସେମାନେ ମତ ପୋଷଣ କରିଥାନ୍ତି ।

ରାମାୟଣ ଓ କନ୍ଦ ପୁରାଣ ଏକ ପ୍ରତିଯୋଗିତା ମୂଳକ କୃତି ଭାବେ ସୃଷ୍ଟି କରାଯାଇଥିଲା । ପେରିୟ୍ଯ ପୁରାଣ ଭକ୍ତ ବିଜୟ ଓ ଭକ୍ତ ଲୀଳା ମିର୍ଥଙ୍କ ବିଷୟକୁ ପ୍ରତିହତ କରିବା ପାଇଁ ରଚିତ ହୋଇଥିଲା । ଏହି ବହି ଗୁଡିକ ଅଧ୍ୟୟନରୁ ଏହା ସ୍ପଷ୍ଟ ହୋଇଥାଏ ।

ରାମାୟଣ ଓ କନ୍ଦ ପୁରାଣର ଆଦର୍ଶ ସମାନ । ରାମଙ୍କ ଜନ୍ମ ମନ୍ଦଶକ୍ତିର ବିନାଶ ପାଇଁ ଉଦ୍ଦିଷ୍ଟ ଥିଲା । ମହାବିଷ୍ଣୁ ରାମ ଅବତାର ନେଇ ଜନ୍ମ ହୋଇଥିଲେ । ଦେବତାମାନେ ଅସୁରମାନଙ୍କର ବିନାଶ ପାଇଁ ଶିବଙ୍କୁ ପାର୍ଥନା କରିଥିଲେ । କନ୍ଦନ ସେହି ଉଦ୍ଦେଶ୍ୟ ରଖି ଶିବଙ୍କ ପାଖରୁ ଜନ୍ମ ହୋଇଥିଲେ । ରାମଙ୍କର ପତ୍ନୀ ସୀତାଙ୍କର ଜନ୍ମ ବା ପିତାମାତାଙ୍କ ସ-ର୍କରେ କିଛି ଜଣାନାହିଁ । କନ୍ଦନଙ୍କର ପତ୍ନୀ ବାଲିଙ୍କର ଜନ୍ମ ବୃତ୍ତାନ୍ତ ବିଷୟରେ ମଧ୍ୟ କିଛି ବର୍ଣ୍ଣନା ନାହିଁ ।

ରାମଙ୍କର ଜନ୍ମ ଏକ ଉଦ୍ଭଟ କଥା । ବ୍ରାହ୍ମଣଙ୍କ ଯଜ୍ଞ ପରେ ତାଙ୍କର ଜନ୍ମ ହୋଇଥିଲା । କନ୍ଦନଙ୍କର ଜନ୍ମ ଆହୁରି ରହସ୍ୟାବୃତ । ଶିବଙ୍କର ବିର୍ଯ୍ୟ ଯେତେବେଳେ ଭୂମି ଉପରେ ପଡିଲା, ପୃଥିବୀ ତାହା ଧାରଣ କରିବାକୁ ସମର୍ଥ ହେଲା ନାହିଁ । ଏହା ସମୁଦ୍ର ଦିଗରେ ଅଗ୍ରସର ହେଲା, ସେଠାରେ କନ୍ଦନଙ୍କର ଜନ୍ମ ହେଲା । ମୁଁ ଏହା ନିଜ ମନରୁ କହୁନାହିଁ । ଏହା ବିଶ୍ୱାମିତ୍ର କହିଛନ୍ତି । ରାମାୟଣରେ କୁହାଯାଇଛି ଯେ ଯେତିକି ଯେତିକି ରାକ୍ଷାସ ମାନଙ୍କୁ ସଂହାର କରାଗଲା, ଅଧିକରୁ ଅଧିକ ସେମାନଙ୍କର ସୃଷ୍ଟି ହେଲା । କନ୍ଦ ପୁରାଣ ବର୍ଣ୍ଣନା ଅନୁଯାୟୀ ଯେତେବେଳେ ଅସୁରମାନଙ୍କର ମୁଣ୍ଡ କଟା ହେଉଥିଲା, ମୃତ ଅସୁର ନୂତନ ଜୀବନ୍ୟାସ ପାଇ ପୁଣି ଆବିର୍ଭୂତ ହେଉଥିଲେ । ଏହିପରି ଅନେକ ସାମଞ୍ଜସ୍ୟ ଦେଖିବାକୁ ମିଳେ । ଶିବ ଭକ୍ତ ଓ ବିଷ୍ଣୁଭକ୍ତ ମାନଙ୍କର ବିଶ୍ୱାସ ଓ ବ୍ୟବହାରର ତୁଳନା କଲେ ସେମାନଙ୍କର ବିଚାର କ୍ଷେତ୍ରରେ ଥିବା ବହୁ ସମାନତା ଦୃଷ୍ଟିଗୋଚର ହୁଏ ।

Digitized by srujanika@gmail.com

ଶୈବବାଦରେ ତୀଗୁନୀଳକଣ୍ଠ ନାମରେ ଜଣେ ଭକ୍ତଙ୍କର ବର୍ଣ୍ଣନା ଅଛି, ଯିଏ କି ଜଣେ କୁମ୍ଭାର। ସେହିପରି ବୈଷ୍ଣବ ବାଦରେ ଗୋରକୁମ୍ଭର ନାମରେ ଜଣେ ଭକ୍ତଙ୍କର ବର୍ଣ୍ଣନା ରହିଛି, ଯିଏ ବି ମଧ୍ୟ ଜଣେ କୁମ୍ଭାର। ଉଭୟ ଭକ୍ତଙ୍କର କାହାଣୀ ପ୍ରାୟତଃ ସମାନ। ଉଭୟଙ୍କର କ୍ଷେତ୍ରରେ ଦେଖିବାକୁ ମିଳେ ଯେ, ସେମାନଙ୍କର ପତ୍ନୀ ମାନଙ୍କ ସହିତ ସେମାନଙ୍କର ସୁସ-ର୍କ ନଥିଲା। ଏପରିକି ପ୍ରତ୍ୟେକ ନିଜ ନିଜ ପତ୍ନୀଙ୍କ ସହିତ କଥା ହେଉନଥିଲେ। ବିଷ୍ଣୁ ଗୋରକୁମ୍ଭର ଏବଂ ତାଙ୍କ ପତ୍ନୀ ଙ୍କ ଭିତରେ ସୁସ-ର୍କ ଆଣିପାରିଥିଲେ। ସେହିଭଳି ତିରୁନୀଳକଣ୍ଠ ଓ ତାଙ୍କ ପତ୍ନୀଙ୍କ ମଧ୍ୟରେ ଶିବ ସ-ର୍କ ଯୋଡି ପାରିଥିଲେ।

ହିନ୍ଦୁବୈଷ୍ଣବମାନେ ରାମାୟଣକୁ ତାଙ୍କର ପୁରାଣ ଭାବରେ ନେଲାବେଳେ, ହିନ୍ଦୁ ଶୈବମାନେ ପେରିୟପୁରାଣକୁ ତାଙ୍କର ପୁରାଣ ଭାବରେ ଗ୍ରହଣ କରିଥାନ୍ତି। ଏଥିରୁ ସେପରି କିଛି ମହତ୍ତର ଶିକ୍ଷା ମିଳେ ନାହିଁ। ବରଂ ବିଶୃଙ୍ଖଳା, ଚାରିତ୍ରିକ ସ୍ଖଳନ ଓ ଆତ୍ମମର୍ଯ୍ୟାଦା ବିରୋଧୀ କାହାଣୀମାନ ଏହି ପୁରାଣ ମାନଙ୍କରେ ବର୍ଣ୍ଣିତ ହେବା ଦେଖାଯାଏ।

ଏହି ଗ୍ରନ୍ଥଗୁଡିକୁ ଧର୍ମ ଓ ଈଶ୍ୱର ସ-ର୍କରେ ଦିବ୍ୟ ରଚନା ବୋଲି ଗ୍ରହଣ କରି ଯଦି ଆମେ ସେ ସବୁର ପ୍ରଶଂସା କରୁ, ତେବେ ସେଥିରୁ ଆମ ଅସଭ୍ୟ ଦୃଷ୍ଟିଭଙ୍ଗୀର ପରିଚୟ ମାତ୍ର ଆମେ ଦେବୁ।

ଜଣେ ଭକ୍ତ ନିଜ ପତ୍ନୀଙ୍କୁ ଜଣେ ବ୍ରାହ୍ମଣଙ୍କୁ ଦେଇଛନ୍ତି। ଜଣେ ଭକ୍ତ ନିଜ କହୁଣୀରେ ଘୋରି ଚନ୍ଦନ ବାହାର କରୁଛି। ଜଣେ ଭକ୍ତ ଗୋଟିଏ ମନ୍ଦିରକୁ ନିଜ କନ୍ୟାଙ୍କର କେଶଦାନ କରୁଛନ୍ତି। ଏହିପରି ବର୍ଣ୍ଣନା ଥିବା କାହାଣୀ ମାନଙ୍କୁ ପଢିବାର କଣ ଆବଶ୍ୟକତା ଅଛି ! ଉଚ୍ଚଜାତି ବ୍ରାହ୍ମଣ ମାନଙ୍କୁ ଯେ କୌଣସି ବସ୍ତୁ ଯେ ଦାନଦିଆଯିବ ଏହା କେବଳ ତାର ପ୍ରମାଣ ଦେଉଛି। ଏହି କାହାଣୀ ଗୁଡିକ ସମାଜରେ ଅସଂହତି ସୃଷ୍ଟି କରିବା ପାଇଁ ଉଦ୍ଦିଷ୍ଟ। ଶୈବବାଦରେ ନନ୍ଦନ ନାମରେ ଜଣେ ଅସ୍ପୃଶ୍ୟ ବ୍ୟକ୍ତିଙ୍କର କାହାଣୀ ଦେଖିବେ। ସେହିପରି ବୈଷ୍ଣବବାଦରେ ଶୋକମେଳା ନାମରେ ଜଣେ ଅଛୁତଙ୍କର କାହାଣୀ ଆପଣ ପଢିବାକୁ ପାଇବେ। ଏ

Digitized by srujanika@gmail.com

ଉଭୟ କାହାଣୀ ପ୍ରାୟତଃ ସମାନ । ଉଭୟଙ୍କୁ ମନ୍ଦିର ଭିତରେ ପ୍ରବେଶ ଅନୁମତି ଦେବା ଦ୍ୱାରା ସେମାନଙ୍କର ଈଶ୍ୱର ସେମାନଙ୍କୁ ମୁକ୍ତି ଦେଇଛନ୍ତି ।

ଈଶ୍ୱରଙ୍କ ନାମରେ ଚୋରିକରିବା ଓ ଠକିବା ଘଟଣାକୁ ବୈଷ୍ଣବବାଦ ସ୍ୱୀକୃତି ଦେଇଛି । ତିରୁମଙ୍ଗାଇ ଅଲବାରର କାହାଣୀ ଏହାର ପ୍ରମାଣ । ସେହିପରି ମାଣିକ ଭୋସାଗାରର କାହାଣୀ ଯାହା ଶୈବବାଦରେ ରହିଛି ତାହା ମଧ୍ୟ ଚୌର୍ଯବୃତ୍ତି ଓ ଠକାମିକୁ ସ୍ୱୀକୃତି ଦେଇଛି । ଏ ଉଭୟ ଚରିତ୍ରରେ ଦେଖିବାକୁ ମିଳେ ଯେ ସେମାନେ ସେମାନଙ୍କର ପୃଥକ ଈଶ୍ୱରଙ୍କ ପାଇଁ ଚୋରି କରିଥିବାରୁ ଓ ଠକିଥିବାରୁ ନିଜ ନିଜ ଈଶ୍ୱରଙ୍କ ଦ୍ୱାରା ମୁକ୍ତି ପାଇଛନ୍ତି । ବୈଷ୍ଣବମାନଙ୍କର ଈଶ୍ୱର ଓ ଶୈବମାନଙ୍କର ଈଶ୍ୱର ପରସ୍ପର ଭିତରେ ପ୍ରତିଯୋଗିତା କରିଛନ୍ତି । ଏଥିରେ ଉଦ୍‌ଭଟତା, ଅଜ୍ଞତା ଓ ଅସଭ୍ୟତାର ଚିତ୍ର ରହିଛି । ପୁରାଣମାନଙ୍କର ଏସବୁ ବର୍ଣ୍ଣନା ଦେଖିବାକୁ ମିଳେ । ସେଥିରେ ନିଜ ନିଜ ଭକ୍ତମାନଙ୍କ ପାଇଁ ବିଭିନ୍ନ ପରୀକ୍ଷାର କଥା କୁହାଯାଇଛି । ପବିତ୍ର ବ୍ରାହ୍ମଣ ମାନଙ୍କୁ ଦାନଦେଲେ ମୁକ୍ତି ମିଳିବ ବୋଲି ଗୁଡିଏ କାଳ୍ପନିକ କାହାଣୀ ଲୋକମାନଙ୍କ ଭିତରେ ସୃଷ୍ଟି କରାଯାଇଛି । କୁହାଯାଇଛି ଯେ ବିନା ଦ୍ୱିଧାରେ ବ୍ରାହ୍ମଣମାନଙ୍କୁ ଦାନ ଦେଲେ ପୁଣ୍ୟ ମିଳିବ । ଯେଉଁମାନେ ହିନ୍ଦୁସମାଜ ପାଇଁ ଏହିପୁରାଣ ଗୁଡିକ ଉପଯୋଗୀ ବୋଲି ଭାବନ୍ତି, ସେମାନେ ଯେ ନିର୍ବୋଧ ଏହା କୁହାଯାଇ ପାରେ । କେତେକ ତାମିଲ ବିଦ୍ୱାନ ଏହି ପୁସ୍ତକ ଗୁଡିକୁ ପ୍ରଚାର କରିବା ପାଇଁ ବହୁ ଆଗ୍ରହ ପ୍ରକାଶ କରିଥାନ୍ତି । ଏପ୍ରସଙ୍ଗରେ ମୋର ବକ୍ତବ୍ୟ ହେଉଛି ସେମାନେ ଏହାଦ୍ୱାରା ସମାଜର ଅନେକ କ୍ଷତି ସାଧନ କରୁଛନ୍ତି । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ରାମାୟଣରେ କୌଣସି ମହନୀୟ ବା ଯୁକ୍ତି ସଂଗତ ବର୍ଣ୍ଣନା ଥିବା ଦେଖାଯାଏ ନାହିଁ । ରାମଙ୍କର ପ୍ରତ୍ୟେକଟି କାର୍ଯ୍ୟ ନିଷ୍ଠୁର ଥିବା ଜଣା ଯାଏ । ତାଙ୍କୁ ଈଶ୍ୱର ଭାବେ ପୂଜା କରାଯିବ କାହିଁକି ! ସମାଜର ଅଗଣିତ ମଣିଷଙ୍କର ଉପକାରରେ ରାମାୟଣ କିପରି ଆସିପାରିବ ତାହା କେହି କହିବେ କି?

ଏହାକୁ ଏକ ପୁରାଣ ବା ଏହାକୁ ଏକ ସାହିତ୍ୟ କୃତି ଭାବରେ ନିଆଯାଇ ପାରେ । ଏଥିରେ ସମାଜ ପରିଚାଳନା ପାଇଁ ସେପରି କିଛି ପ୍ରେରଣା ରହିଛି କି?

Digitized by srujanika@gmail.com

କଳ୍ପନାର କିଛି ସୀମା ରହିଛି କି ? ଜଣେ କବି ନିଜର କଳ୍ପନାରେ ଉତ୍ତମ ଗୁଣ ବିଷୟରେ ଭାବିପାରନ୍ତି ବୋଲି, ଜଣେ ନିଜର ପତ୍ନୀକୁ ଛାଡିଦେବା ଯଥାର୍ଥ କି? ଭକ୍ତମାନେ କରିଥିବା କାର୍ଯ୍ୟକୁ କେହି ବ୍ୟକ୍ତି ଆଦର୍ଶସ୍ଥାନୀୟ ଭାବି ଅନୁକରଣ କରିବା ଠିକ୍ ହେବ କି? ଏହି ସବୁ ବର୍ଣ୍ଣନାକୁ ଜଣେ ପ୍ରତ୍ୟାଖ୍ୟାନ କରିବା ଯଥାର୍ଥ ନୁହେଁକି! ତାମିଲ ବିଦ୍ୟାର୍ଥୀ ଓ ପଣ୍ଡିତମାନେ ଏହି ସାଧାରଣ କଥାକୁ ଅବବୋଧ କରିପାରନ୍ତି ନାହିଁ। ସେମାନେ କିପରି ଲୋକଙ୍କର ସମ୍ମାନର ପାତ୍ର ହେବେ! ଶୈବବାଦୀ ତାମିଲ ପଣ୍ଡିତମାନେ ପେରିୟ ପୁରାଣର ସୁରକ୍ଷା ଓ ପ୍ରସାର ଦିଗରେ ଗୁରୁତ୍ୱ ଦେଇଥାନ୍ତି। ଏଥିରେ ଅନେକ ଐତିହାସିକ, ଭୌଗଳିକ ଓ ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ ବର୍ଣ୍ଣନା ଥିବା ଘଟଣା ବିଷୟରେ ସେମାନେ କହିଥାନ୍ତି।

ଏହି ସବୁ ପ୍ରସଙ୍ଗ ଉପରେ ବିଶେଷଜ୍ଞମାନଙ୍କର ମତକୁ ଆମେ ପୁସ୍ତକମାନଙ୍କରେ ପାଇପାରିବା। ବିଷାରଦ ବ୍ୟକ୍ତିଗଣ ଏସ-ର୍କରେ ଲେଖିଥିବା ପୁସ୍ତକମାନ ଶସ୍ତାରେ ପ୍ରାୟ ଉପଲବ୍ଧ। ପାରଦର୍ଶୀ ଲୋକମାନଙ୍କର ବୈଜ୍ଞାନିକ ମତକୁ ଛାଡି ଆମେ କାହିଁକି ପ୍ରାଚୀନ ବିଶ୍ୱାସକୁ ଗୁରୁତ୍ୱ ଆରୋପ କରିବା? ଯେତେବେଳେ ତେଜରାତି ଦୋକାନମାନଙ୍କରେ କେତେ ପ୍ରକାରର ଚାଉଳ ସହଜରେ ଉପଲବ୍ଧ, ସେତେବେଳେ ସାହାରା ମରୁଭୂମିରେ ଚାଉଳ ଖୋଜିବାର କିଛି ଅର୍ଥ ଥାଏ କି।

ବଜାରରେ ନାନା ପ୍ରକାରର କାହାଣୀ ବହି ମିଳିପାରୁଛି। ଲୋକମାନେ ସେସବୁ ପଢନ୍ତି ନାହିଁ। କାରଣ କ'ଣ? ଏହି ଗପ ବହି ଗୁଡିକ ଧର୍ମ ସ-ର୍କୀୟ ହୋଇନଥିବାରୁ ସେଥିରେ ଲୋକଙ୍କର ଆଗ୍ରହ ନଥାଏ। ଏହି ପୁସ୍ତକ ମାନଙ୍କରେ ରହିଥିବା କାହାଣୀ ଗୁଡିକ ଧର୍ମ ସ-ର୍କୀୟ ବର୍ଣ୍ଣନା ନୁହେଁ। ତାମିଲ୍ ଲୋକମାନଙ୍କୁ ସେଥିରେ ନ୍ୟୂନ କରାଯାଇ ନାହିଁ। ସେ ବହି ଗୁଡିକରେ ଆମକୁ ଦାସ କରାଯାଇ ନାହିଁ। ସେ ଗୁଡିକ କୌଣସି ଗର୍ବର ଘଟଣା ନୁହେଁ। ସୁତରାଂ ଧର୍ମ ପୁସ୍ତକ ଛାଡି ସେ ବହି ଗୁଡିକ ଉପରେ ଆମେ ବିଶେଷ ଗୁରୁତ୍ୱ ଦେଇନଥାଏ। ତେବେ ଧର୍ମ, ଇଶ୍ୱର ନାମରେ ଲେଖାଯାଇଥିବା ଏହି ବହି ଗୁଡିକୁ ଆମେ ପ୍ରତ୍ୟାଖ୍ୟାନ କରିବା

Digitized by srujanika@gmail.com

ଆବଶ୍ୟକ। ତାହା ହେଲେ ଯାଇ ଆମେ ଆତ୍ମସମ୍ମାନର ସହ ଜୀବନ ନିର୍ବାହ କରିପାରିବା। ଏହି ମହତ ଉଦ୍ଦେଶ୍ୟ ରଖି ଆମକୁ ଅସମ୍ମାନିତ କରୁଥିବା ଧର୍ମ ପୁସ୍ତକ ଗୁଡିକୁ ଆମେ ବିନାଶ କରିବା ଆବଶ୍ୟକ।

ଯେତେଦିନ ପର୍ଯ୍ୟନ୍ତ ଏହି ପୁସ୍ତକ ଗୁଡିକ ରହିଥିବ, ସେ ପର୍ଯ୍ୟନ୍ତ ଆମ ତାମିଲମାନଙ୍କର ମୁକ୍ତି ସମ୍ଭବ ନୁହେଁ। ସେଥିପାଇଁ ଆମେ ଏଗୁଡିକୁ ବିନାଶ କରିବା ଆବଶ୍ୟକ। ଆମେ ଅନ୍ଧ ଭାବରେ ଏହା କରୁନାହୁଁ। ଏହା କରିବା ପାଇଁ ହୁଏତ ଆମକୁ ବହୁମୂଲ୍ୟ ଦେବାକୁ ପଡିପାରେ। ତଥାପି ଆମକୁ ନ୍ୟୁନ କରିଥିବା କାହାଣୀ ମାନଙ୍କୁ ଧ୍ୱଂସ କରିବା ପାଇଁ ଆମର ନିଷ୍ପତ୍ତି ଅଟଳ ହେବା ଆବଶ୍ୟକ। ସେଥିପାଇଁ ଆମେ ଯେକୌଣସି ତ୍ୟାଗ ଦେବାକୁ ପ୍ରସ୍ତୁତ ହେବା ଦରକାର।

ଯେକୌଣସି ପରିଣାମର ସମ୍ମୁଖୀନ ହେବାକୁ ଆମେ ସଂକଳ୍ପବଦ୍ଧ ହେବା ଆବଶ୍ୟକ। ଯେକୌଣସି ପ୍ରକାରର ପରିସ୍ଥିତିର ସମ୍ମୁଖୀନ ହେବାକୁ ଏପରିକି ଜୀବନ ଦେବାକୁ ଆମେ ପ୍ରସ୍ତୁତ ରହିବା ଉଚିତ୍ । କୌଣସି ଧାର୍ମିକ କାର୍ଯ୍ୟର ପ୍ରଚାରପାଇଁ ବା ଅନ୍ଧାନୁକରଣ ପାଇଁ ଲୋକମାନେ ଯେପରି ମତୁଆଲା ହୁଅନ୍ତି, ଆମେ ସେପରି ହେବା ଉଚିତ୍ ନୁହେଁ। ଆମେ ମୁକ୍ତ ଭାବରେ ବଞ୍ଚି ରହିବା ପାଇଁ ଆମ ସଂକଳ୍ପରେ ଦୃଢ ରହିବା ଆବଶ୍ୟକ। କୌଣସି ମନ୍ଦ ବ୍ୟବସ୍ଥା ପାଖରେ ଆମେ ନିଜକୁ ସମର୍ପଣ କରିବା ନାହିଁ। ଗତ ୧୮ ବର୍ଷ ଧରି ଆମେ ଆତ୍ମ ମର୍ଯ୍ୟାଦା ପାଇଁ ଯେଉଁ ଆନ୍ଦୋଳନ ଚଳାଇ ଆସିଛେ, ସେଥିରେ ଆମେ ଆମର କାର୍ଯ୍ୟରେ ଓ କଥାରେ ସଂଗତି ରକ୍ଷାକରି ଆସିଛେ। ଯେଉଁମାନେ ଆମର କାର୍ଯ୍ୟକଳାପକୁ ଆଗ୍ରହର ସହ ପର୍ଯ୍ୟବେକ୍ଷଣ କରୁଛନ୍ତି ସେମାନେ ଏହା ସ୍ୱୀକାର କରିବେ। ଆମେମାନେ ଗୋଟିଏ ଆଦର୍ଶ ପ୍ରତି ହୁଏତ ପ୍ରତିବଦ୍ଧ। କେତେକ ଲୋକ ଆମର ଆଦର୍ଶକୁ ଭୁଲବ୍ୟାଖ୍ୟା କରିଥାନ୍ତି। ଆମର କାର୍ଯ୍ୟ କ୍ରମ ଦେଖି ସେମାନେ ବିବ୍ରତ ବା ରାଗପ୍ରକାଶ କରିଥାନ୍ତି। କୌଣସି ସାମାଜିକ କାର୍ଯ୍ୟକ୍ରମରେ ସଂପୃକ୍ତ ବ୍ୟକ୍ତି ଯେଉଁ କାର୍ଯ୍ୟକୁ ଯଥାର୍ଥ ଓ ମଙ୍ଗଳକର ବୋଲି ବିଚାର କରନ୍ତି ସେଥିରେ ଆନ୍ତରିକତାର ସହ ସଂପୃକ୍ତ ହେବା ଆବଶ୍ୟକ। ସେ ମଧ୍ୟ ମହିଳାମାନଙ୍କୁ ଯଥାର୍ଥ

Digitized by srujanika@gmail.com

ପଛା ଦେଖାଇବା ଦରକାର । ସବୁ ସମୟରେ ସଂସ୍କାରକ ମାନେ ଯେଉଁ ପ୍ରତିବନ୍ଧକର ସମ୍ମୁଖୀନ ହୁଅନ୍ତି ତାହା ଆମେ ପ୍ରାୟତଃ ଜାଣେ । ବହୁବିଜ୍ଞ ଲୋକ ସମାଜ ସଂସ୍କାର କ୍ଷେତ୍ରରେ ବହୁ ପ୍ରତିକୂଳ ସ୍ଥିତିର ମୁକାବିଲା କରିଥାନ୍ତି । ସଂସ୍କାରକ ମାନଙ୍କର କାର୍ଯ୍ୟକଳାପକୁ ଲକ୍ଷ୍ୟ କଲେ ସେମାନେ ସମାଜ ପାଇଁ ଯେଉଁ ମହତ ଅବଦାନ ଦେଇଛନ୍ତି, ତାହା ଆମେ ବୁଝିବା ଆବଶ୍ୟକ । କେତେକ ସଂସ୍କାରକ ଏଥିପାଇଁ ଶହୀଦ୍ ହୋଇଥିବା ବେଶ୍ ଜଣାଶୁଣା ।

ସାମାଜିକ ସଂସ୍କାର କ୍ଷେତ୍ରରେ ମୁଁ ରାଜନୀତିକୁ ସଂଯୁକ୍ତ କରିବାକୁ ଚାହିଁ ନାହିଁ । ମୁଁ ଏଠାରେ ରାଜନୀତି ପରିବର୍ତ୍ତେ ସମାଜ ସଂସ୍କାର ପ୍ରସଂଗରେ ହିଁ ଆପଣମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି । ସ୍ୱରାଜ ଭାବନାକୁ ନେଇ ମୁଁ ବିଶେଷ ବିମୋହିତ ହେଉନାହିଁ । କହିବାକୁ ଗଲେ ମୁଁ ଏହା ଉପରେ ବିଶେଷ ଗୁରୁତ୍ୱ ଦେଉନାହିଁ । ମୋର ପ୍ରଶ୍ନ ହେଉଛି- ଆମେ ସ୍ୱରାଜ ଚାହୁଁ କିମ୍ବା ଆତ୍ମମର୍ଯ୍ୟାଦା ରାଜ ଅର୍ଥାତ୍ ଆତ୍ମମର୍ଯ୍ୟାଦା ସହ ବଞ୍ଚିବାକୁ ଚାହୁଁ? ଯେଉଁମାନେ ତାମିଲମାନଙ୍କର ବର୍ତ୍ତମାନର ସ୍ଥିତିନେଇ ଉଦ୍‌ବିଗ୍ନ, ସେମାନେ ଅନୁଭବ କରିବେ ଯେ ଆମର ବହୁ ଧର୍ମଗ୍ରନ୍ଥ ତାମିଲମାନଙ୍କର ସ୍ୱାର୍ଥ ବିରୋଧୀ । ପ୍ରକୃତ ତାମିଲ୍‌ମାନେ ଏହି ପୁସ୍ତକମାନଙ୍କୁ ବିଷାକ୍ତ ମନେକରିବା ଆବଶ୍ୟକ । ମାରାଇମଲାଇ ଆଦିଗଲ୍ ଜଣେ ବିଶିଷ୍ଟ ତାମିଲ ବିଦ୍ୱାନ । କମ୍ବ ରାମାୟଣ ଉପରେ ତାଙ୍କର ବକ୍ତବ୍ୟକୁ ଏଡାଇ ଦିଆଯାଇ ପାରିବ ନାହିଁ । ତାଙ୍କ ମତ ସହିତ ଆମ ମତର ଅନେକ ପାର୍ଥକ୍ୟ ରହିଛି । ବହୁ ତାମିଲ ବିଦ୍ୱାନ ଓ ପଣ୍ଡିତ ଆଦିଗଲ୍‌କୁ ବହୁପ୍ରଶଂସା ଓ ସମ୍ମାନ କରିଥାନ୍ତି । ତାଙ୍କର କେତେକ ବକ୍ତବ୍ୟକୁ ଆପଣମାନେ ଲକ୍ଷ୍ୟ କରନ୍ତୁ ।

କେତେକ ତାମିଲ କବି ଆର୍ଯ୍ୟମାନଙ୍କର କେତେକ ମିଥ୍ୟା ପ୍ରଚାରରେ ବିମୋହିତ ହୋଇଥାନ୍ତି । ସେମାନେ ବରଥମ୍ ଓ ରାମାୟଣରେ ଅନେକ ଅବିଶ୍ୱାସନୀୟ କାହାଣୀ ଲେଖିଛନ୍ତି । ଆର୍ଯ୍ୟମାନଙ୍କୁ ପୂଜା କରୁଥିବା ବ୍ୟକ୍ତିଙ୍କ ଭିତରେ ଥିବା କେତେକ ବିଶ୍ୱାସକୁ ନେଇ କାହାଣୀମାନ ଲେଖିଛନ୍ତି ।"

Digitized by srujanika@gmail.com

"ପେରୁନ ଦେବାନର ବରଥମ୍‌କୁ ତାମିଲ ଭାଷାରେ ଅନୁବାଦ କରିଥିଲେ । କିନ୍ତୁ ଏବେ ଏହା ମହତ୍ତ୍ୱ ହରାଇ ସାରିଲାଣି ।"

"ବରଥମ୍ ଗୁଡିଏ ଅବିଶ୍ୱାସ ଯୋଗ୍ୟ କାହାଣୀର ଏକ ସମାହାର । ତାମିଲର ପ୍ରାଚୀନ ଲେଖକମାନେ ଆର୍ଯ୍ୟଭାଷାରେ ଲେଖାଯାଇଥିବା ରାମାୟଣକୁ ତାମିଲଭାଷାରେ ଅନୁବାଦ କରିନାହାଁନ୍ତି । ତାହାର କାରଣ ହେଉଛି ଏଥିରେ ଥିବା ଅନେକ ଉଦ୍ଭଟ କଥାକୁ ସେମାନେ ଗ୍ରହଣ କରିନାହାଁନ୍ତି ।"

କବି କମ୍ବର ଆର୍ଯ୍ୟ ଭାଷାରେ ଲେଖାଯାଇଥିବା ରାମାୟଣ ଆଧାରରେ ତାମିଲ୍‌ରେ ରାମାୟଣ ରଚନା କରିଛନ୍ତି । ଯେହେତୁ କମ୍ବରଙ୍କ ଲେଖାରେ ଅନେକ ଅବିଶ୍ୱାସନୀୟ୍ କାହାଣୀ ମାନ ରହିଛି, ପରବର୍ତ୍ତୀ ତାମିଲ ବିଦ୍ୟାର୍ଥୀମାନେ କମ୍ବରଙ୍କ ବିଶ୍ୱାସ ସହ ସହମତ ହୋଇନାହାଁନ୍ତି । ଯେହେତୁ କମ୍ବର ବିଦେଶୀ ଭାଷା ଓ ସଂସ୍କୃତି ବିଷୟରେ ଅବଗତି ଥିଲେ ତେଣୁ ସେ ବିଦେଶୀ କାହାଣୀକୁ ନେଇ ଅନେକ ମିଛକଥା ତାଙ୍କ କୃତିରେ ସ୍ଥାନ ଦେଇଛନ୍ତି ।

ପରବର୍ତ୍ତୀ ଯୁଗର କବିମାନେ ସେମାନଙ୍କ ବଶ୍ୟତାସ୍ୱୀକାର କରି ଲୋକମାନଙ୍କୁ ବିଭ୍ରାନ୍ତ କରିବାକୁ ପ୍ରୟାସ କରିଛନ୍ତି । ସେହି ଉଦ୍ଦେଶ୍ୟ ରଖି ସେମାନେ ସେସବୁକୁ ତାମିଲ୍ ଭାଷାରେ ଅନୁବାଦ କରିଛନ୍ତି । ବସ୍ତୁତଃ ତାମିଲମାନଙ୍କର ଅତୀତ ଗୌରବକୁ ସେମାନେ ନଷ୍ଟ କରିଛନ୍ତି ।

ବିଦେଶୀ ଭାଷାମାନଙ୍କରେ ଅନେକ ଚମତ୍କାର ମନଗଢା କାହାଣୀମାନ ରହିଛି । ଇଂରାଜୀ ଭଳି ଏକ ସମୃଦ୍ଧ ଭାଷାରେ ଅନେକ ମିଥ୍ୟାଗପ, କାହାଣୀମାନ ରହିଛି । ଗୁଡିଏ କାଳ୍ପନିକ କାହାଣୀକୁ ନେଇ ଚମତ୍କାର କାବ୍ୟ ସୃଷ୍ଟି କରାଯାଇଛି । ଏହିଭଳି ସାହିତ୍ୟ କ୍ରମ ବର୍ଦ୍ଧିଷ୍ଣୁଭାବେ ବୃଦ୍ଧି ପାଇ ଚାଲିଛି । ତେବେ ଏହି ଭାଷାର ବିଜ୍ଞ ବିଦ୍ୟାର୍ଥୀ ବା ଗବେଷକମାନେ ଏହା ଉପରେ କଣ ମନ୍ତବ୍ୟ ଦେଇଛନ୍ତି ! ସେମାନଙ୍କ ମତରେ ଏଗୁଡିକ କେବଳ ମନଗଢା କାଳ୍ପନିକ କାହାଣୀ ମାତ୍ର । ଏହି କାହାଣୀ ମାନଙ୍କୁ ସେମାନେ ଅନିଷ୍ଟକର ମନେକରିଥାନ୍ତି । ଏହି କାଳ୍ପନିକ କାହାଣୀମାନଙ୍କର ଲେଖକମାନେ ସେଗୁଡିକ ଯେ କେବଳ ମନଗଢା କାହାଣୀ

Digitized by srujanika@gmail.com

ତାହା ବି ସ୍ୱୀକାର କରିଥାନ୍ତି । ସେଗୁଡିକ ସତ୍ୟଘଟଣା ନୁହେଁ । ଏହି କାହାଣୀ ଗୁଡିକ ପଢିବା ପାଇଁ ଓ ମନୋରଞ୍ଜନ ପାଇଁ ଯେ ଉଦ୍ଦିଷ୍ଟ ଏହା ସେମାନେ ମୁକ୍ତଭାବେ ବିଶ୍ୱାସ କରିଥାନ୍ତି । ତେଣୁ ସେଗୁଡିକ ପଢିବାରେ କୌଣସି ଅସୁବିଧା ନାହିଁ । ଆଧୁନିକ ଯୁଗର ତାମିଲ ବିଦ୍ୟାର୍ଥୀମାନେ ଯେଉଁମାନେ ଏ ସ-ର୍କରେ ଗବେଷଣା କରିଛନ୍ତି ମତ ଦିଅନ୍ତି ଯେ, ଏଗୁଡିକ କେବଳ କାଳ୍ପନିକ କାହାଣୀ । କେଉଁ ଗୁଡିକ ଅସତ୍ୟ ଓ କାଳ୍ପନିକ ତାହାକୁ ସେମାନେ ନିର୍ଣ୍ଣୟ କରିଛନ୍ତି । ସେମାନଙ୍କ ମତରେ କୌଣସି ବିଚାରବୁଦ୍ଧି ପ୍ରୟୋଗ କରି ସେସବୁ ପ୍ରଣିତ ହୋଇନାହିଁ ।

ଏହି କାହାଣୀ ଗୁଡିକୁ ସତ୍ୟ ବୋଲି ପ୍ରତିପାଦନ କରିବାକୁ ପ୍ରୟାସ କରିବା ଏକ ଗୁରୁତର ତ୍ରୁଟି କୁହାଯାଇ ପାରେ । ଏହା ଆମର ମସ୍ତିଷ୍କର ଯଥାର୍ଥ ବିକାଶ ଦିଗରେ ସାହାଯ୍ୟ କରେ ନାହିଁ । ସତ୍ୟ ସବୁବେଳେ ସତ୍ୟ, ଅସତ୍ୟ ସବୁଦିନ ପାଇଁ ସତ୍ୟ ବୋଲି ଗୃହୀତ ହୋଇପାରିବ ନାହିଁ । ଦିନେନା ଦିନେ ସତ୍ୟର ଉନ୍ମୋଚନ ହେବ । ସୁତରାଂ ଏହି କାହାଣୀ ଗୁଡିକୁ ସତ୍ୟବୋଲି ବିଶ୍ୱାସ କରିବା ଏକ ବଡ଼ ତ୍ରୁଟି ବୋଲି ମୁଁ କହି ଆସିଛି ।

ଯେଉଁ ତାମିଲ ପଣ୍ଡିତମାନେ ସାହିତ୍ୟକୁ ସତ୍ୟ ଘଟଣା ବୋଲି ବିଶ୍ୱାସ କରୁଛନ୍ତି, ସେମାନେ ନିଜର ପ୍ରଜ୍ଞା, ନ୍ୟାୟବୋଧ ଓ ସ୍ୱଚ୍ଛତା ହରାଇଥିବା ମନେହୁଏ ।

କମ୍ବ ରାମାୟଣ ଉପରେ ମାଡ୍ରାସ ଆଇନ ମହାବିଦ୍ୟାଳୟରେ ଯେଉଁ ଆଲୋଚନା ହୋଇଥିଲା, ସେଥିରେ ତାମିଲ ବିଦ୍ୟାର୍ଥୀ ଆର୍.ପି.ସେଥୁପିଲାଇ କହିଥିଲେ ଯେ ସିଲୋନର ରାଜା ରାବଣ ଜଣେ ଆର୍ଯ୍ୟଥିଲେ । ମୁଁ ଏହାକୁ ସମ୍ବାଦ ପତ୍ରରୁ ପଢିଲି, ଏହା ସମସ୍ତଙ୍କୁ କୁହାଯାଇଛି ଯେ ରାବଣ ଶ୍ରୀଲଙ୍କାର ଶାସକ ଥିଲେ । ଏହାକୁ ସମସ୍ତେ ବିଶ୍ୱାସ କରି ଆସିଛନ୍ତି ଓ ଏଥିରେ ଦ୍ୱିମତ ନାହିଁ ।

ଐତିହାସିକମାନେ ଓ ଗବେଷକମାନେ ଆର୍ଯ୍ୟମାନେ କେବେ ଭାରତ ଭୂଖଣ୍ଡକୁ ଆସିଲେ ତାହା ବହୁ ପୂର୍ବରୁ ସ୍ଥିର କରିସାରିଛନ୍ତି । ସେମାନଙ୍କ ମତରେ ଦ୍ରାବିଡମାନେ ବା ତାମିଲମାନେ ଭାରତବର୍ଷର ବିଶେଷ କରି ଦକ୍ଷିଣ ଭାରତର

Digitized by srujanika@gmail.com

ମୂଳ ଅଧିବାସୀ । ଆର୍ଯ୍ୟମାନେ କେବେ ତାମିଲମାନଙ୍କୁ ବା ଶ୍ରୀଲଙ୍କାରେ ଶାସନ କରୁଥିବାର କୌଣସି ଐତିହାସିକ ପ୍ରମାଣ ନାହିଁ ।

ଯେହେତୁ ରାବଣ ବେଦଉପରେ ପାରଦର୍ଶିତା ରଖିଥିଲେ ଓ ଶିବଙ୍କୁ ପାର୍ଥନା କରୁଥିଲେ, ସେଥିରୁ ରାବଣ ଜଣେ ଆର୍ଯ୍ୟ ଥିଲେ ବୋଲି ଆର.ପି.ସେଥୁପିଲାଇ ଅନୁମାନ କରିଛନ୍ତି । ସେ ଏହାର ଭିତ୍ତିପାଇଁ ବାଲ୍ମୀକିଙ୍କ ଲେଖାରୁ ଉଦ୍ଧୃତିମାନ ଦେଇଛନ୍ତି । ସେ ଭଲଭାବରେ ଜାଣନ୍ତି ଯେ ଐତିହାସିକମାନେ, ଗବେଷକମାନେ ଏ ବିଷୟରେ ଅନେକ ଅନୁସନ୍ଧାନ କରିଛନ୍ତି ।

ବାଲ୍ମୀକି ଓ କମ୍ବର ରାବଣଙ୍କ ପ୍ରତି ଅନେକ ଗୁଣ ଆରପ କରିଛନ୍ତି ।

ଏହା କୁହାଯାଇଛି ଯେ ରାବଣ ସାଢେତିନି କୋଟି ବର୍ଷ ବଞ୍ଚିଥିଲେ । ସେ ପୁଲସ୍ତିଆନ ଶ୍ରେଣୀର ବ୍ୟକ୍ତି ଥିଲେ । ପୃଥିବୀକୁ ବୋହିନେବାର ସାମର୍ଥ୍ୟ ତାଙ୍କର ଥିଲା ବୋଲି କୁହାଯାଏ । ତାଙ୍କ ବିଷୟରେ ଏଭଳି ଅନେକ କଥା କୁହାଯାଇଛି । ବାଲ୍ମୀକି ଓ କମ୍ବର ଯେଉଁ ଭଳି ରାବଣ ବିଷୟରେ ଏସବୁ ବିଷୟ କଥା କହିଛନ୍ତି, ସେହିଭଳି ସେ ବେଦ ଅଧ୍ୟୟନ କରିଥିଲେ ଓ ଉତ୍ତର ଭାରତୀୟ ଭାଷା କହୁଥିଲେ ବୋଲି କୁହାଯାଏ । ପୁରାଣରେ ଲେଖାଯାଇଥିବା କଥା ଆଧାରରେ ସେଥୁପିଲାଇ କେତେକ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । କୌଣସି ଯୁକ୍ତିଶୀଳ କିମ୍ବା ଗବେଷଣାତ୍ମକ ତଥ୍ୟ ଆଧାରରେ ତାଙ୍କର ବକ୍ତବ୍ୟ ରଖିନାହାନ୍ତି । ଦକ୍ଷିଣକୁ ରାମଚନ୍ଦ୍ର ଆସିବା ପୂର୍ବରୁ ଦକ୍ଷିଣରେ ବେଦର କିପରି ପ୍ରସାର ହେବା ସମ୍ଭବ ହେଲା ? ସେହିପରି ଦକ୍ଷିଣ ଭାରତୀୟ ଭାଷା ଏଠାକୁ କିପରି ଆସିଲା ? ଯଦି ରାବଣ ଆର୍ଯ୍ୟ ହୋଇଥାନ୍ତେ ତେବେ ସେ କାହିଁକି ସୀତାଙ୍କୁ ଅପହରଣ କରିଥାନ୍ତେ? ସେହିପରି ରାବଣକୁ କେବଳ ମାରିବା ପାଇଁ ସେ ଆସିଛନ୍ତି ବୋଲି ରାମ କହିବା ପଛରେ କଣ ଆଧାର ଥିଲା ?

ଯଦି ଆମେ ଏପ୍ରସଙ୍ଗ ସଂପର୍କରେ ବ୍ୟାଖ୍ୟା କରିବା, ଏଥିରୁ ଜାଣି ହେବ ଯେ ରାବଣ ଆଦୌ ଆର୍ଯ୍ୟ ନ ଥିଲେ ।

Digitized by srujanika@gmail.com

କେତେକ ତାମିଲ ବିଦ୍ୟାର୍ଥୀଙ୍କର ବକ୍ତବ୍ୟ ଓ ବ୍ୟବହାର ତାମିଲ ସ୍ୱାର୍ଥ ବିରୋଧୀ । ସେମାନେ ସତେ ଯେପରି ତାମିଲ ମାନଙ୍କର ଶତ୍ରୁ, ଏହିଭଳି ବ୍ୟବହାର ସେମାନେ ଦେଖାଉଛନ୍ତି ।

ସେହିତାମିଲ ବିଦ୍ୟାର୍ଥୀ ମାନଙ୍କୁ ସମାଲୋଚନା କରିବାରେ ମୁଁ ଅବଶ୍ୟ ଆନନ୍ଦ ଅନୁଭବ କରୁନାହିଁ । ତେବେ ସେମାନଙ୍କୁ ସମାଲୋଚନା କରିବା ବ୍ୟତୀତ ମୁଁ ଆଉ କଣ କରିପାରିବି ! ସେମାନେ ପ୍ରଶଂସାର ପାତ୍ର କି ସମାଲୋଚନାର ପାତ୍ର, ତାହା ଲୋକମାନେ ମୂଲ୍ୟାୟନ କରିବାକୁ ମୁଁ ଲୋକମାନଙ୍କ ଉପରେ ଛାଡିଦେଉଛି ।

ରାମ ଜଣେ ଆର୍ଯ୍ୟ ଥିଲେ ବୋଲି ଆର୍ଯ୍ୟମାନେ ଲେଖିଛନ୍ତି । ଏହା ଆର୍ଯ୍ୟମାନଙ୍କର କାହାଣୀ ବୋଲି ସେମାନେ ଗ୍ରହଣ କରିଛନ୍ତି । ରାମଙ୍କୁ ଈଶ୍ୱରଙ୍କର ଅବତାର ବୋଲି ସେମାନେ କହିଥାନ୍ତି । ପରବର୍ତ୍ତୀ ପର୍ଯ୍ୟାୟରେ ଆମର ତାମିଲ ଲେଖକମାନେ ଏସବୁକୁ ଗ୍ରହଣକରି ରାମଙ୍କ ପ୍ରତି ଅଧିକରୁ ଅଧିକ ଚମତ୍କାରିତା ଆରୋପ କରିଛନ୍ତି । ରାମାୟଣର କାହାଣୀକୁ ସ୍ୱୀକାର କରି ସେଥିରେ ଥିବା ଅନେକ ଅବାନ୍ତର ଘଟଣାକୁ ନିର୍ମଳ ସତ୍ୟ ଭାବେ ସେମାନେ ପ୍ରସାର କରିଛନ୍ତି ।

ଏହି ଲୋକମାନଙ୍କୁ ମହାନ, ସାଧୁ କିମ୍ବା ସମ୍ମାନାସ୍ପଦ ବୋଲି ଆମେ କିପରି ଗ୍ରହଣ କରିବା? ସେମାନଙ୍କୁ କିପରି ଦେଶପ୍ରେମୀ ବୋଲି ଆମେ ମୂଲ୍ୟାୟନ କରିବା?

ଆର୍ଯ୍ୟମାନେ ଆମର କୌଣସି ତାମିଲ ଗ୍ରନ୍ଥକୁ ଅନୁବାଦ କରିବା ଆପଣମାନେ ଦେଖିଛନ୍ତି କି? ସେମାନେ କୌଣସି ତାମିଲଗ୍ରନ୍ଥକୁ କେବେ ପ୍ରଶଂସା କରିଛନ୍ତି କି? ଏହା ଉପରେ ଆପଣମାନେ ଚିନ୍ତା କରନ୍ତୁ । ସେମାନେ ଯେତେବେଳେ ଆମ ପ୍ରତି ଉଦାସୀନ ସେତେବେଳେ ଆମେ କିପରି ଆମର ଆତ୍ମମର୍ଯ୍ୟାଦାକୁ ବଳିଦେଇ ତାଙ୍କର ପ୍ରଶଂସା ଗାନ କରିବା? ଆମର ଆତ୍ମମର୍ଯ୍ୟାଦା ରହିବା ଉଚିତ ନୁହେଁ କି? ରାବଣକୁ ସର୍ବଦା ମନ୍ଦ ଓ ଛୋଟ କରି କାହିଁକି ପ୍ରକାଶ କରାଯିବ!

**ଘୃଣାର ପାତ୍ର**

ଏହି ପୁରାଣ ଓ ଇତିହାସ ଯୋଗୁଁ ଆମକୁ ଆର୍ଯ୍ୟମାନଙ୍କର ଦାସକରି ରଖାଯାଇଛି । ମୁସଲମାନ ଓ ଖ୍ରୀଷ୍ଟିଆନମାନେ ଆର୍ଯ୍ୟମାନଙ୍କର ଦାସ ନୁହନ୍ତି ।

Digitized by srujanika@gmail.com

ଏହା କାହିଁକି ହୋଇଛି? ସେମାନେ ଏହି ପୁସ୍ତକମାନଙ୍କୁ ଘୃଣା କରୁଥିବାରୁ ସେମାନେ ଦାସତ୍ୱରୁ ମୁକ୍ତ ନୁହଁନ୍ତି କି ? ଏହା ହିଁ ହେଉଛି ଐତିହାସିକ କାରଣ। କେତେକ ବ୍ୟକ୍ତି ଆର୍ଯ୍ୟମାନଙ୍କର ଓ ସେମାନଙ୍କ ଦର୍ଶନର ବିରୁଦ୍ଧରେ କହିଥାନ୍ତି। ତେବେ ପ୍ରକୃତରେ କେତେ ଲୋକ ସେମାନଙ୍କ ଜୀବନରେ ଆର୍ଯ୍ୟ ବିରୋଧୀ? ଆମେମାନେ ବାସ୍ତବବାଦୀ ନୋହୁଁ ଓ ଆମେ ଯାହା କହୁ ତାହା କାର୍ଯ୍ୟରେ ପରିଣତ କରୁନା । ରାମାୟଣ, ପେରିୟ୍ପୁରାଣ ପ୍ରତି ଆମର ଦୃଷ୍ଟିଭଙ୍ଗୀ ଆମ ଚରିତ୍ରର ଏକ ସୂଚକ। ଆମେ ଯେ ବାସ୍ତବରେ ନଷ୍ଟାପର ନୋହୁଁ ଏହାହିଁ ମୋର ବକ୍ତବ୍ୟ।

ରାମାୟଣର ଭିତ୍ତି ବିଷୟରେ ଏଠାରେ କେତେକ ସୂଚନା ଦିଆଯାଇପାରେ। ଐତିହାସିକ ମାନେ ଆର୍ଯ୍ୟମାନଙ୍କର ସଭ୍ୟତା, ଦେଶ ଗମନ ଓ ଭାରତରେ ପଦାର୍ପଣ କଥା କହିଥାନ୍ତି। ସେମାନେ ଯାଯାବର ଭାବେ ଆସି ଭାରତ ଭୂଖଣ୍ଡରେ ବସତି ସ୍ଥାପନ କଲେ। ଐତିହାସିକ ମାନେ ଦ୍ରାବିଡ ଓ ସେମାନଙ୍କର ସଭ୍ୟତା ବିଷୟରେ ଅନେକ କଥା ପ୍ରକାଶ କରିଛନ୍ତି। ତେବେ ପେରିୟ୍ପୁରାଣ ଓ ସେଥିରେ ଥିବା କାହାଣୀ ବିଷୟରେ ସେମାନେ ବିଶେଷ ଉଲ୍ଲେଖ କରିନାହାଁନ୍ତି।

**ପେରିୟ୍ପୁରାଣ**

ଜଣେ ଏକ କବିତା ଗାଇଲେ
ଇଶ୍ୱର ଏହାକୁ ରଚନା କରିଥିଲେ!
ଆଲୋକ ଉଦ୍ଭାସିତ ହେଲା!
ମଣିଷ ପ୍ରତିବିମ୍ବଭଳି ଉଦ୍ଭାସିତ ହେଲା
ଜଣେ ବାସ୍ତବ ମଣିଷ ଆର୍ବିଭାବ ହେଲେ!
ତିନିବର୍ଷର ଶିଶୁଟି ସଙ୍ଗୀତ ଗାନ କଲେ!
ଜଳ ଉପରେ ପଥରଟି ଭାସୁଥିଲା!
ବିଭୂତି ଦ୍ୱାରା ଜ୍ୱର ଭଲ ହୋଇଗଲା!
ଦ୍ୱାର ଛାଏଁ ଛାଏଁ ଖୋଲିଗଲା!
ବିଲୁଆ ମାନେ ଘୋଡାରେ ରୂପାନ୍ତରିତ ହୋଇଗଲେ!

Digitized by srujanika@gmail.com

ହାଡରୁ ଝିଅଟିଏ ଉଦ୍ଭବ ହେଲା!

କୁମ୍ଭୀର ଗିଳିଦେଇଥିବା ବାଳକଟି ବୃଦ୍ଧିପାଇ ଅକ୍ଷତ ହୋଇ ବାହାରି ଆସିଲା!

ଏସବୁ ଅବାନ୍ତର କଥା ପେରିୟା ପୁରାଣର କାହାଣୀ। କନ୍ଦପୁରାଣରେ କଣ ମହାନତା ଅଛି! ପ୍ରଥମ ପଦରେ ଥିଲାଇ ମନ୍ଦିରର ବ୍ରାହ୍ମଣ ପୂଜକଙ୍କ ବିଷୟରେ କୁହାଯାଇଛି। ଶୈବ ପଣ୍ଡିତମାନେ ଅନ୍ୟ ପୁରାଣକୁ ପ୍ରତ୍ୟାଖ୍ୟାନ କରନ୍ତି। ଅନ୍ୟ ପୁରାଣ ଗୁଡିକ ଅବାନ୍ତର ବୋଲି ସେମାନେ କହିଥାନ୍ତି। ତେବେ ସେମାନଙ୍କର ପେରିୟା ପୁରାଣର ଚିତ୍ର କି ପ୍ରକାରର ? ଯେପରି ଜଣେ ମଦୁଆ ଅନ୍ୟ ନିଶାସକ୍ତ ବ୍ୟକ୍ତିଙ୍କୁ ମଦୁଆ କହି ତିରସ୍କାର କରେ, ଅଥଚ ନିଜେ ନିଶାସେବନ କରେ, ସେହିପରି ଶୈବ ପଣ୍ଡିତମାନେ ବ୍ୟବହାର କରିଥାନ୍ତି। ଅନ୍ୟପୁରାଣରେ ଥିବା ଅବାନ୍ତର କଥା ପ୍ରତି ସେମାନେ ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି, ଅଥଚ ନିଜ ପୁରାଣର ଅବାନ୍ତର କଥା ପ୍ରତି ଆଖି ବୁଜି ଦିଅନ୍ତି। ଏହି ଠକାମି ତାଙ୍କ ଚରିତ୍ରରେ ଆମେ ଦେଖେନାହିଁ କି?

ଖ୍ରୀଷ୍ଟିଆନ ଧର୍ମରେ ଦୁଇ ତିନୋଟି ଅବାନ୍ତର କଥା ରହିଛି, କିନ୍ତୁ ଏଭଳି ବହୁଗୁଡିଏ ଉଦ୍ଭଟ ଭାବନାର ବର୍ଣ୍ଣନା ନାହିଁ। ଏକ କୁମାରୀ ଝିଅ ପିଲାଟିଏ ଜନ୍ମ ଦେଲେ। ଗୋଟିଏ ରୁଟି ସହସ୍ରାଧିକ ଲୋକଙ୍କୁ ଖାଦ୍ୟ ଦେଇ ପାରିଲା। ମୃତବ୍ୟକ୍ତି ଜୀବନ ପାଇ ବଞ୍ଚିଲେ। ଏହି କେତୋଟି ଅବିଶ୍ୱାସନୀୟ କାହାଣୀକୁ ପାଶ୍ଚାତ୍ୟ ଦେଶର ଲୋକମାନେ ମଧ୍ୟ ଗ୍ରହଣ କରନ୍ତି ନାହିଁ।

ବାଇବେଲର ବିରୋଧ କରାଯାଇଛି। ବାଇବେଲର କାହାଣୀକୁ ନେଇ ବହୁ ବିବାଦ ସୃଷ୍ଟି ହୋଇଛି। ଧର୍ମକୁ ଅସ୍ୱୀକାର କରୁଥିବା ଲୋକଙ୍କର ସଂଖ୍ୟା ବଢିବାରେ ଲାଗିଛି। ଏଠାରେ ଅନେକ ଲୋକ ଉଦ୍ଭଟ କଥାମାନ ବିଶ୍ୱାସ କରୁଛନ୍ତି। ଅନେକ କଥା ସମ୍ପୂର୍ଣ୍ଣ ଅହେତୁକ, ଅଯୌକ୍ତିକ ଓ ଆଦୌ ବିଚାରବୁଦ୍ଧି ସଂପନ୍ନ ନୁହେଁ। ଏହି ସ୍ଥିତିରେ ଆମର ଈଶ୍ୱର, ଧର୍ମ, ପୁରାଣମାନଙ୍କୁ କେତେଦିନ ଆମେମାନେ ବିଶ୍ୱାସ କରୁଥିବା! କେବଳ ଯେ ନିରକ୍ଷର ଲୋକମାନେ ଏହା ବିଶ୍ୱାସ କରୁଛନ୍ତି ତାହାନୁହେଁ, ଏପରିକି ବହୁ ଜ୍ଞାନୀ ବ୍ୟକ୍ତିମାନେ ପୁରାଣକୁ ସମ୍ମାନର ସହ ବିଶ୍ୱାସ

Digitized by srujanika@gmail.com

କରୁଛନ୍ତି । ଏହାକୁ ଆମେ କେଉଁ ଦୃଷ୍ଟିରେ ନେବା ? ମୁଁ ଆମର ଯୁବବନ୍ଧୁମାନଙ୍କୁ ନିବେଦନ କରୁଛି- ଏହି ସବୁ ପୁରାଣକୁ ପ୍ରତ୍ୟାଖ୍ୟାନ ନକରାଯିବା ପର୍ଯ୍ୟନ୍ତ ଆପଣମାନେ ନିରବରେ ରୁହନ୍ତୁ ନାହିଁ । ଏଗୁଡିକୁ ଅସ୍ୱୀକାର କରିବାରେ ଆପଣମାନେ ଯେତେ ବିରୋଧର ସମ୍ମୁଖୀନ ହେଲେ ମଧ୍ୟ ଆପଣମାନେ ସାହାସର ସହ ତାହା କରନ୍ତୁ । କାରଣ ଏହି ଭାବନା ଗୁଡିକ ହେଉଛି, ମସ୍ତିଷ୍କ ନଷ୍ଟକାରୀ କୀଟ ସଦୃଶ । ଆପଣଙ୍କ ପରି ଯୁବକମାନେ ଏହି ବିଚାରଶୂନ୍ୟ, କ୍ଷତିକାରକ ଓ ମାରାତ୍ମକ ସାହିତ୍ୟର ପ୍ରଭାବରୁ ମୁକ୍ତହେଲେ ଯାଇ ଆପଣମାନେ ତାମିଲନାଡୁ ଓ ତାମିଲ ଲୋକଙ୍କର ଉପକାର କରିପାରିବେ ।

**ସିନେମା**

କେତେକ ଶାସ୍ତ୍ର ପୁରାଣ ଓ ଇତିହାସକୁ ଆମେ ଯେପରି ନଷ୍ଟ କରିବା ଆବଶ୍ୟକ ସେହିପରି ଅନ୍ୟଗୋଟିଏ କ୍ଷେତ୍ରକୁ ବିଚାରକୁ ନେବା ଦରକାର । କେତେକ ସିନେମା ମାନଙ୍କରେ ମଧ୍ୟ ଅତ୍ୟନ୍ତ ଅବାନ୍ତର କଥା କୁହାଯାଇଛି । ପୁରାଣମାନଙ୍କରେ ଯେଉଁ ବର୍ଣ୍ଣନା ରହିଛି କେତେକ ସିନେମାରେ ସେହି କାହାଣୀକୁ ଲୋକମାନଙ୍କ ଭିତରେ ପ୍ରସାର କରାଯାଉଛି ।

ସାରା ପୃଥିବୀରେ ନାନା ନୂଆ ନୂଆ କଥା ପୁରୁଣା ସ୍ଥାନରେ ପ୍ରକାଶିତ ହେଉଛି । ଆମର ଏଠାରେ ପରିବର୍ତ୍ତନକୁ ଚାପିଦିଆଯାଇ ପୁରୁଣା କଥାକୁ ପ୍ରସାର କରାଯାଉଛି । ବିଶେଷ କରି ସିନେମା କ୍ଷେତ୍ରରେ ପୁରୁଣା କାହାଣୀ ମାନଙ୍କୁ ନୂଆ ରୂପ ଦେଇ ଗୌରବର ସହ ପ୍ରସାର କରାଯାଇଛି । ଆମର ସିନେମା ଶିଳ୍ପ ଅନ୍ଧ ବିଶ୍ୱାସ, ବିଚାରହୀନତା ଓ ବର୍ବରତା ଉପରେ ଗଢିଉଠୁଛି, ସିନେମା ପ୍ରଯୋଜକ ମାନେ ବା ଅଭିନେତାମାନେ ସିନେମା ଦେଖୁଥିବା ଲୋକମାନଙ୍କର ଆଗ୍ରହ ବିଷୟରେ କୌଣସି ଚିନ୍ତା ବ୍ୟକ୍ତକରୁ ନାହାନ୍ତି ।

ଜଣେ ବାରଙ୍ଗନା କିମ୍ବା ଜଣେ ଚୋର ସାଧାରଣ ଲୋକଙ୍କର ସ୍ୱାର୍ଥ ବିଷୟରେ ଚିନ୍ତା କରନ୍ତି ନାହିଁ । କଳାକାର ଓ ପ୍ରଯୋଜକମାନେ ସାଧାରଣ ଲୋକଙ୍କ ବିଷୟରେ କୌଣସି ଚିନ୍ତା ପ୍ରକଟ କରୁ ନାହାନ୍ତି । ଯେକୌଣସି ପଛାରେ ସେମାନେ

Digitized by srujanika@gmail.com

ନିଜର ସ୍ୱାର୍ଥ ହାସଲ ପାଇଁ କେବଳ ଆଗ୍ରହୀ । ସେମାନଙ୍କ ଖୁସିପାଇଁ ସେମାନେ ସମାଜକୁ ବିଭ୍ରାନ୍ତ କରିଛନ୍ତି ।

ଏଭଳି ସମାଜ ବିରୋଧୀ ଲୋକଙ୍କର ସଂଖ୍ୟା ଦିନକୁ ଦିନ ପାଶ୍ଚାତ୍ୟ ଦେଶମାନଙ୍କରେ କମୁଥିବାବେଳେ ଆମ ଦେଶରେ ତାହା ବଢିବାରେ ଲାଗିଛି ।

ହିନ୍ଦୀବିରୋଧୀ ଆନ୍ଦୋଳନ ବେଳେ ତାମିଲଭାଷାର ସୁରକ୍ଷା ପାଇଁ କେତେକ ମହିଳାଙ୍କ ସହ ୧୫୦୦ ରୁ ଅଧିକ ସ୍ୱେଚ୍ଛାସେବୀ ଗିରଫ ହୋଇଥିଲେ. ଏହି ଆନ୍ଦୋଳନର ଗୋଟିଏ ଭଲ ପ୍ରଭାବ ଥିଲା ଯେ ଆମର ଲୋକମାନେ ତାମିଲ ସଙ୍ଗୀତ ଶୁଣିବାକୁ ଆଗ୍ରହ ପ୍ରକାଶ କରୁଥିଲେ । ତାମିଲ୍ ସଙ୍ଗୀତ ଆନ୍ଦୋଳନକୁ ପ୍ରୋତ୍ସାହନ ଦେବା ପାଇଁ କେତେକ ଧନୀ ବ୍ୟକ୍ତି ଚାନ୍ଦା ଦେବାକୁ ଆଗ୍ରହୀ ହୋଇଥିଲେ । ସେଥିରୁ ଏହା ଜଣା ଯାଉଥିଲା ଯେ ଅବାଞ୍ଛିତ ବିଷୟକୁ ନେଇ ସିନେମା କରୁଥିବା କଳାକାର ଓ ପ୍ରଯୋଜକମାନେ ଏହା ବନ୍ଦ କରିବେ, ଏଥିପାଇଁ ଆମକୁ ଆନ୍ଦୋଳନ କରିବାକୁ ହେବ । ଯଦି ୫୦୦୦ ବ୍ୟକ୍ତି କାରାବରଣ କରିବାକୁ ଆଗେଇ ଆସିବେ, ତେବେ ଏହାର ବହୁ ପ୍ରଭାବ ପଡିବ । ଆମକୁ ବହୁକାର୍ଯ୍ୟ କରିବାକୁ ହେବ, ସେ ମଧ୍ୟରୁ ଏହା ଗୋଟିଏ ।

ପାଶ୍ଚାତ୍ୟ ଦେଶମାନଙ୍କରେ ନବଜାଗରଣ ଘଟଣାକୁ ନେଇ ଆପଣମାନେ ଅନେକ ନାଟକ ଓ ଚଳଚ୍ଚିତ୍ର ଦେଖିବାକୁ ପାଇବେ । ଆମ ଦେଶରେ ଧର୍ମ, ପୁରାଣ ଓ ଈଶ୍ୱରଙ୍କୁ ନେଇ ଅନେକ ଅବିଶ୍ୱାସନୀୟ କାହାଣୀ ଆଧାରିତ ଘଟଣାକୁ ଆପଣ ଦେଖିବେ । ସରକାର ମଧ୍ୟ ଏଥିରେ ସହଯୋଗ ଦେଉଛନ୍ତି । ଯେଉଁସବୁ ଘଟଣାକୁ ଘୃଣାକରି ବର୍ଜନ କରିବା କଥା, ସେସବୁ ଆମର ସିନେମା ମାନଙ୍କରେ ଦେଖାଯାଉଛି ।

କେତେଜଣ ବ୍ୟକ୍ତି ଏହାନେଇ ବ୍ୟସ୍ତତା ପ୍ରକାଶ କରୁଛନ୍ତି! କେବଳ ଦେଶର ହିତ ପାଇଁ ସମାଜ ସଂସ୍କାର କଥା ଭାଷଣ ଦେଲେ ଯଥେଷ୍ଟ ହେବ କି? ଲୋକମାନଙ୍କୁ ଦେଶର ପ୍ରଗତି ପାଇଁ ପ୍ରତିଦିନ ସୁତାକାଟିବାକୁ କହିବା ସବୁ କିଛି

Digitized by srujanika@gmail.com

କି? ଦେଶର ବିକାଶ ପାଇଁ ଲୋକମାନେ ଖଦି ପିନ୍ଧିବା ପାଇଁ ଉପଦେଶ ଦେବା କ'ଣ ସବୁକିଛି ?

ପ୍ରଗତି ପାଇଁ ଆମକୁ ଚିନ୍ତାଶୀଳ ଭାବରେ ଯୋଜନା ଓ କାର୍ଯ୍ୟ କରିବାକୁ ହେବ। ଏଥିପାଇଁ ଅନେକ ରଚନାତ୍ମକ କାର୍ଯ୍ୟ ହାତକୁ ନେବାର ଅଛି। ବାସ୍ତବରେ କିଛି ନକରି କେବଳ ବଡ ବଡ ଭାଷଣ ଦେଲେ ସେଥିରୁ କିଛି ସୁଫଳ ମିଳିବ ନାହିଁ। ଆମ ଦେଶରେ ଏହିଭଳି ବହୁ ଅସାଧୁ ଲୋକଙ୍କୁ ଆମେ ଦେଖୁ। କେବଳ ରାଜନୈତିକ ଲକ୍ଷ୍ୟନେଇ ସେମାନେ ଦେଶର ନେତୃଭାବେ ନିଜକୁ ଉପସ୍ଥାପନ କରିବାରେ ବ୍ୟସ୍ତ।

ଏହି ପରିପ୍ରେକ୍ଷୀରେ ମୁଁ ଯୁବକମାନଙ୍କୁ ନିବେଦନ କରିବାକୁ ଚାହୁଁଚି- ଆପଣମାନେ ପରିସ୍ଥିତିକୁ ହୃଦୟଙ୍ଗମ କରି ଆପଣମାନଙ୍କ ଦାୟିତ୍ୱ ସ-ର୍କରେ ସଚେତନ ହୁଅନ୍ତୁ। ଆମର ମହିଳାମାନେ ଦେଶ ଗଠନ ପାଇଁ ମଧ୍ୟ ଆଗେଇ ଆସିବା ଦରକାର। ଗୋଟିଏ ଦେଶର ହୃତ ଗୌରବକୁ ଫେରାଇ ଆଣିବା ପାଇଁ ଅନ୍ତତଃ କିଛି ଲୋକ ଆଗେଇ ଆସିବା ଆବଶ୍ୟକ। ଅନେକ ଲୋକ କେବଳ ନିଜର ପେଟ ପାଟଣା ପାଇଁ ବ୍ୟସ୍ତ । ଏପରିକି ସେମାନେ ଯେକୌଣସି ଅନ୍ୟାୟ୍ ପଛାରେ ଏହା କରିବା ଆପଣମାନେ ଦେଖୁନାହାନ୍ତି କି? ସୁତରାଂ ନିଜର ଆତ୍ମମର୍ଯ୍ୟାଦା ପ୍ରତିଷ୍ଠା ପାଇଁ ଆପଣମାନେ ନିଷ୍ଠାତ୍ତିମୂଳକ ଭାବେ ଆଗକୁ ଆସିବା ଦରକାର। ଯଦି ସମାଜ ପାଇଁ କିଛି ମଙ୍ଗଳ କରିବାର ଅଛି, ସେ କ୍ଷେତ୍ରରେ ଦ୍ୱିଧାହୀନ ଭାବରେ ଆପଣମାନେ ଆଗଭର ହେବା ଉଚିତ୍।

ଭାଲୁବର ଆତ୍ମମର୍ଯ୍ୟାଦା ସ-ର୍କରେ କଣ କହିଛନ୍ତି ସ୍ମରଣ କରନ୍ତୁ। ନିଜର ଆତ୍ମସମ୍ମାନ ଓ ନିଜର ସାମାଜିକ ପ୍ରତିଷ୍ଠା ପାଇଁ କେବଳ ଚିନ୍ତା କଲେ, ଯଥେଷ୍ଟ ହେବ ନାହିଁ। ନିଜର ସ୍ୱାଭିମାନ ଓ ଆତ୍ମସମ୍ମାନ ପାଇଁ ଯେକୌଣସି ତ୍ୟାଗ ଦେବାକୁ ଜଣେ ପ୍ରସ୍ତୁତ ହେବା ଉଚିତ୍। ମୁଁ ଏହା କାହିଁକି କହୁଛି? ଆତ୍ମସମ୍ମାନ ଚାହୁଁଥିବା ବ୍ୟକ୍ତିମାନେ କେବେହେଲେ ଏହାକୁ ପରିତ୍ୟାଗ କରିପାରିବେ ନାହିଁ।

କମ୍ୟୁନିଜିମ ବିଷୟରେ ଆମଦେଶରେ ଯାହା କୁହାଯାଇଛି, ତାହାମଧ୍ୟ ଅର୍ଥପୂର୍ଣ୍ଣ ନୁହେଁ। ଆମର ଯୁବକମାନେ ଶସ୍ତା କଥାରୁ ନିଜକୁ ଦୂରରେ ରଖିବା

Digitized by srujanika@gmail.com

ଆବଶ୍ୟକ । କମୁନିଷ୍ଟମାନଙ୍କର ଦୃଷ୍ଟି ଜଷ୍ଟିସ୍ ପାର୍ଟିର ନେତାଙ୍କ ଉପରେ ସୀମାବଦ୍ଧ । ସେମାନେ କେବଳ ମୁସଲିମ୍ ଓ ଧନୀଲୋକମାନଙ୍କୁ ସମାଲୋଚନା କରିଥାନ୍ତି । ଗାନ୍ଧୀଙ୍କର ପ୍ରତିକ୍ରିୟାଶୀଳ ପ୍ରଚାର ସ-ର୍କରେ ସେମାନେ କୌଣସି ବ୍ୟସ୍ତତା ପ୍ରକାଶ କରନ୍ତି ନାହିଁ । ରାଜାଜୀ କେବଳ ବ୍ରାହ୍ମଣ ମାନଙ୍କର ସୁଖ ଚାହାଁନ୍ତି । କମୁନିଷ୍ଟମାନେ ଏହି ବିଷୟରେ କିଛି ପ୍ରତିକ୍ରିୟା ପ୍ରକାଶ କରନ୍ତି ନାହିଁ । ବର୍ଣ୍ଣାଶ୍ରମଧର୍ମକୁ ସମର୍ଥନ କରୁଥିବା କଂଗ୍ରେସର କାର୍ଯ୍ୟ ସ-ର୍କରେ ସେମାନେ କୌଣସି ଚିନ୍ତା ପ୍ରକଟ କରନ୍ତି ନାହିଁ । ଖଦି ପିନ୍ଧିଲେ ସବୁ ପ୍ରଗତି ହୋଇଯିବ ଏହା ଉପରେ ସେମାନଙ୍କର କୌଣସି ପ୍ରତିକ୍ରିୟା ନାହିଁ ।

କମ୍ୟୁନିଷ୍ଟମାନେ ଉପରସୂଚିତ ମନ୍ଦବ୍ୟବସ୍ଥା ବିଷୟରେ ପାଟି ଖୋଲନ୍ତି ନାହିଁ । ସୁତରାଂ କମ୍ୟୁନିଷ୍ଟମାନଙ୍କ ସ-ର୍କରେ ଯୁବକମାନେ ସଚେତନ ରହିବା ଦରକାର ।



Digitized by srujanika@gmail.com

## ପରିଚ୍ଛେଦ - ୬
# ଈଶ୍ୱର ଓ ମଣିଷ

ମୋ ମତରେ ଯିଏ ଈଶ୍ୱରଙ୍କୁ ଉଦ୍ଭାବନ କରିଛି ସେ ଜଣେ ନିର୍ବୋଧ। ମୁଁ ଏପରି କାହିଁକି କହୁଛି? ଆଦିମ ମଣିଷ ବହୁ ବିଷୟରେ ଚିନ୍ତା କରିବାକୁ ପ୍ରୟାସ କରିଛି। ଏ ପୃଥିବୀ କିପରି ନିର୍ମିତ ହେଲା ସେ ଜାଣିବାକୁ ଚାହିଁଛି। ଏ ପୃଥିବୀ କିପରି ରହିଛି ସେ କିଛି ବୁଝିପାରି ନାହିଁ। ଜନ୍ମ ମୃତ୍ୟୁର କାରଣ କଣ ସେ ଜାଣିବାକୁ ଚାହିଁଛି। ତାର ଚତୁଃପାର୍ଶ୍ୱରେ କେତେକ କଥା ମଣିଷ ସୃଷ୍ଟି କରିଥିବା ସେ ପ୍ରତ୍ୟକ୍ଷ କରିଛି। କେତେକ ଜିନିଷ କିପରି ହୋଇଛି ସେ ନିଜ ଅନୁଭୂତିରୁ ଦେଖିଛି। ଅନ୍ୟ ସବୁ ଜିନିଷ କିପରି ଉତ୍ପତ୍ତି ହୋଇଛି ଜାଣିବାକୁ ତା ଭିତରେ ଏକ ସ୍ୱାଭାବିକ ଆଗ୍ରହ ସୃଷ୍ଟି ହୋଇଛି। ଯେତେବେଳେ ଜନ୍ମମୃତ୍ୟୁର ରହସ୍ୟ ଜାଣିପାରି ନାହିଁ, ସେତେବେଳେ ସେ ଭାବିଛି ଯେ ଏସବୁ ପଛରେ କାହାର ନିଶ୍ଚୟ ହାତ ରହିଛି, ସେ ଗୁଡିଏ କାଳ୍ପନିକ ଭାବନା ସୃଷ୍ଟି କରିଛି। ନିଜର ଅଜ୍ଞତା ଭିତରେ ତାର ବିଶ୍ୱାସକୁ ନେଇ ସେ ସନ୍ତୁଷ୍ଟ ହୋଇଛି।

ଅଜ୍ଞତାରୁ ହିଁ ଏବେବି କେତେକ ଲୋକ ନିର୍ବୋଧଭାବେ ପ୍ରଶ୍ନ ପଚାରିଥାନ୍ତି- "ଯଦି ଈଶ୍ୱର ନାହାନ୍ତି ଆପଣ କିପରି ଜନ୍ମ ନେଲେ" ତାଙ୍କର ପ୍ରଶ୍ନ ହେଉଛି ମଣିଷ ଘରଟିଏ ନିର୍ମାଣ କରିଛି, ତେବେ ପର୍ବତ, ସମୁଦ୍ର, ନଦୀ, ବୃକ୍ଷ ଓ ଏପରିକି ଗୁଳ୍ମଟି କିପରି ସୃଷ୍ଟି ହୋଇଛି? ଏସବୁ ସୃଷ୍ଟି ପଛରେ ନିଶ୍ଚୟ କିଛି କାରଣ ରହିଛି।" ଏହି ପ୍ରକାର ଯୁକ୍ତି ଦେଇ ସେମାନେ ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରମାଣ କରିବାକୁ ପ୍ରୟାସ କରିଥାନ୍ତି।

ଅଜ୍ଞତା ଓ ସତ୍ୟକୁ ଜାଣିବାର ଅସମର୍ଥତା ଈଶ୍ୱର ସୃଷ୍ଟିର ଭାବନା ଉଦ୍ଭବ କରାଇଥାଏ। ଜଣଙ୍କର ଅଜ୍ଞତାରୁ ଈଶ୍ୱର ଭାବନାର ଉଦ୍ଭବ ହୋଇଥାଏ। କଳ୍ପନା ଆଧାରରେ ଈଶ୍ୱର ଭାବନାର ଭିତ୍ତି ସୁଦୃଢ଼ ହୋଇଥାଏ।

Digitized by srujanika@gmail.com

ଯେଉଁ ଘଟଣାକୁ ସେ ବୁଝିପାରେ ନାହିଁ, କିମ୍ବା ଯାହାର ତାତ୍ପର୍ଯ୍ୟ ଅନୁଭବ କରେ ନାହିଁ ତାହାର ବ୍ୟାଖ୍ୟା ପାଇଁ ସେ ଈଶ୍ୱରଙ୍କୁ ଉଦ୍ଭାବନ କରିଥାଏ। ଜଣେ ସାଧାରଣ ଲୋକ ନିଜର ସର୍ବନିମ୍ନ ଜ୍ଞାନଭିତରେ ସତ୍ୟ କଣ ଜାଣି ପାରନ୍ତା। ମାତ୍ର ସେ ଏହି ସମସ୍ୟା ସ-ର୍କରେ ବିଶେଷ ମୁଣ୍ଡ ପୂରାଇ ପାରେନାହିଁ କିମ୍ବା ଏ ବିଷୟରେ ଆଗ୍ରହ ନିଏ ନାହିଁ।

କେତେକ ମିଥ୍ୟା କାହାଣୀକୁ ବିଶ୍ୱାସ କରିବାକୁ ସେ ସହଜ ମଣିଥାଏ। ସମାଜର ଅଗଣିତ ବ୍ୟକ୍ତି ଏହି ପ୍ରସଙ୍ଗ ଉପରେ କୌଣସି ଗମ୍ଭୀର ଚିନ୍ତା ପ୍ରକଟ ନକରି କେବଳ ବିଶ୍ୱାସ ଦ୍ୱାରା ପ୍ରଭାବିତ ହୋଇଥାନ୍ତି। ଏପରିକି ଏତେ ସବୁ ବିଷୟରେ ବିଶ୍ଳେଷଣ କରିବା ବା ଅନୁସନ୍ଧିତ୍ସୁ ହେବା ଘଟଣାକୁ ସମାଜରେ ନିଷେଧ କରାଯାଇଥିଲା। ସୁତରାଂ ପାର-ରିକ ବିଶ୍ୱାସ ଭିତରେ ଲୋକମାନେ ପରିଚାଳିତ ହେଉଥିଲେ। ତେବେ ଈଶ୍ୱର ବିଶ୍ୱାସ ଯେ ଅହେତୁକ ତାହା କୁହାଯାଇପାରେ।

ଯଦିବା ମଣିଷ ପାଖରେ ଚିନ୍ତା କରିବା ସମାର୍ଥ୍ୟ ରହିଛି ତେବେ ବି ସେ କେତେ ଦୂର ଏହା ବିନିଯୋଗ କରେ ତାହା ଆଲୋଚନାର ବିଷୟ। ଏ ବିଷୟରେ ପଂଚସ୍ତରି ବର୍ଷତଳେ ମୋର କେତେକ ଅନୁଭୂତିକୁ ଆପଣମାନଙ୍କ ପାଖରେ ପ୍ରକାଶ କରିବାକୁ ଚାହୁଁଛି।

ଏରୋଡଠାରେ ଗୋଟିଏ ମ୍ୟୁନିସପାଲ ଡାକ୍ତରଖାନା ଥିଲା। ଡାକ୍ତରଖାନାସହ ଦୁଇ ତିନିଜଣ ସ୍ଥାନୀୟ ଚିକିତ୍ସକ ଓ ଜଣେ ଖ୍ରୀଷ୍ଟିଆନ ପ୍ରଚାରକ ସ-ୃକ୍ତ ରହିଥିଲେ। ସେତେବେଳେ ପ୍ରତ୍ୟେକ ବର୍ଷ ପ୍ରାୟ ୨ଥର ହଇଜା ସୃଷ୍ଟି ହେଉଥିଲା। ସେତେବେଳେ ଏରୋଡର ଜନସଂଖ୍ୟା ପାଖାପାଖି ୧୫୦୦୦ ଥିଲା। ପ୍ରତ୍ୟେକ ବର୍ଷ ପ୍ରାୟ ୩୦୦ ବ୍ୟକ୍ତି ହଇଜାରେ ଆକ୍ରାନ୍ତ ହୋଇ ମୃତ୍ୟୁ ବରଣ କରୁଥିଲେ। କେତେକ ବର୍ଷରେ ୫୦୦ ଲୋକ ମରିଥିବା ଦୃଷ୍ଟାନ୍ତ ରହିଛି। ସେତେବେଳର ବିଶ୍ୱାସ ଅନୁଯାୟୀ ଓଁ କାଳୀମାଙ୍କର ପ୍ରକୋପରୁ ହଇଜା ହୁଏ ବୋଲି ଲୋକମାନେ ବିଶ୍ୱାସ କରୁଥିଲେ। କାଳୀ ମା' ଥିଲେ ମନ୍ଦଦେବୀ।

ଏହି ବିଶ୍ୱାସ ଯୋଗୁଁ ହଇଜା ରୋଗୀର କୌଣସି ଚିକିତ୍ସା ଲୋକମାନେ କରୁନଥିଲେ। ଯଦିବା ଡାକ୍ତର ଆସି ଲୋକଙ୍କୁ ଔଷଧ ଦେଉଥିଲେ ଲୋକମାନେ

Digitized by srujanika@gmail.com

କୌଣସି ଔଷଧ ଗ୍ରହଣ କରୁନଥିଲେ । ଲୋକମାନେ ବିଶ୍ୱାସ କରୁଥିଲେ ଯେ ହଇଜା ରୋଗୀଙ୍କୁ ଔଷଧ ଦେଲେ କାଳୀମା' ଅଧିକ କ୍ରୋଧ ପ୍ରକାଶ କରିବେ । ଲୋକମାନେ ଏପରିକି ଡାକ୍ତର ଆସିଲେ ସେମାନଙ୍କୁ ତିରସ୍କାର କରୁଥିଲେ । ହଇଜା ପ୍ରାୟ ମାସେ ଦୁଇମାସ ଧରି ବ୍ୟାପୀ ରହୁଥିଲା । ଯେତେବେଳେ ହଇଜା ଗୋଟିଏ ମାସ ପରେ କମିଯାଉଥିଲା ଓ ମାତ୍ର ଜଣେ ଦୁଇଜଣ ଲୋକ ମୃତ୍ୟୁ ମୁଖରେ ପଡୁଥିଲେ ସେତେବେଳେ ଲୋକମାନେ ଦେବୀ କାଳୀଙ୍କୁ ପ୍ରାର୍ଥନା କରୁଥିଲେ । ବୟସ୍କ ସ୍ତ୍ରୀଲୋକମାନେ ଅନ୍ୟମାନଙ୍କୁ ତାଙ୍କ ଦେହରେ ମା' ପ୍ରବେଶ କରିଛନ୍ତି କହି ଡରାଉଥିଲେ । ଲୋକମାନଙ୍କୁ କହୁଥିଲେ "ମୋର ଶକ୍ତି ନ୍‌ଦେଖିଲେ ତୁମେ ମୋତେ ପ୍ରାର୍ଥନା କରିବ ନାହିଁ । ମୋତେ ପ୍ରାର୍ଥନା କରିବ ନହେଲେ ମୁଁ ତୁମର ପ୍ରତିଶୋଧ ନେବି" । ଏକଥା ଶୁଣିବା ପରେ ଲୋକମାନେ ଭୟଭୀତ ହେଉଥିଲେ ଓ ମା'ଙ୍କୁ ପ୍ରାର୍ଥନା ଦେବାପାଇଁ ପ୍ରତିଶ୍ରୁତି ଦେଉଥିଲେ । ଏହାପରେ କିଛି ଦିନପରେ ହଇଜା ବନ୍ଦ ହୋଇ ଯାଉଥିଲା ।

ଏହା ଭିତରେ ମୁନିସପାଲଟିର କର୍ମକର୍ତ୍ତାମାନେ ହଇଜାକୁ ବନ୍ଦ କରିବାକୁ ପଦକ୍ଷେପ ନେଲେ । ପାଣି ଫୁଟାଇ ପିଇବାକୁ ଲୋକମାନଙ୍କୁ ପରାମର୍ଶ ଦେଲେ । ବାହାରର ଖୋଲାରେ ବିକ୍ରି ହେଉଥିବା କୌଣସି ଖାଦ୍ୟ ନଖାଇବାକୁ ଲୋକମାନଙ୍କୁ କହିଲେ । ପିଉଥିବା କୂଅର ପାଣିକୁ ବିଶୋଧନ କଲେ । ଯେତେବେଳେ ଏହି କାର୍ଯ୍ୟ ଚାଲିଥିଲା ସେତେବେଳେ ହଠାତ୍ ଜଣେ ଭଦ୍ର ମହିଳା ବଡ ପାଟିରେ କହିଲେ (ତାଙ୍କର କଥା ହେଉଛି ମା'ଙ୍କର ନିର୍ଦ୍ଦେଶ) ମୁଁ ଦୁଇପାତ୍ର ତୈଳ ଆଣିଥିଲି , ଦେଡପାତ୍ର ତୁମ ଗାଁରେ ହଇଜା ପାଇଁ ସାରିଲି । ଅବଶିଷ୍ଟ ଅନ୍ୟ ଗାଁକୁ ନେଇ ଯାଉଛି । ମୁଁ ଏବେ ତୁମ ଗ୍ରାମ ପରିତ୍ୟାଗ କରୁଛି" । ଏହାପରେ ଲୋକମାନେ ମା'ଙ୍କୁ ପାର୍ଥନା କରି ଗାଁରେ ଏକ ଶୋଭା ଯାତ୍ରାରେ ଯାଇ ସେମାନେ ପୁରୁଣା ମସିଣା, କନ୍ଥା ନେଇ ଗ୍ରାମ ମୁଣ୍ଡ ଶେଷରେ ଛାଡିଦେଇ ଆସିଲେ ।

ଯେତେବେଳେ ଦୁଇଜଣ ସ୍ତ୍ରୀଲୋକଙ୍କ ଭିତରେ ଝଗଡା ହୁଏ, ଜଣେ ଅନ୍ୟକୁ କୁହେ - "ମା ତୋତେ ତେଲ ଦେବେ ନାହିଁ କି!" ଯେହେତୁ ଜଣେ ତେଲ ଛଣା ଜିନିଷ ଖାଇଲେ ତରଳ ଝାଡା ହୁଏ, ତେଣୁ ଲୋକମାନେ ହଇଜାକୁ

Digitized by srujanika@gmail.com

ତେଲବୋଲି କହୁଥିଲେ । ସେସମୟରେ ହଇଜା ମୃତ୍ୟୁ ସଂଖ୍ୟା ଅତ୍ୟନ୍ତ ଉଦ୍‌ବେଗର କାରଣ ଥିଲା । ଗୋଟିଏ ଗୋଟିଏ ଗାଁରେ ପ୍ରାୟ ୭୫ ଭାଗ ଲୋକ ହଇଜାରେ ମରିଯାଉଥିଲେ । ଲୋକମାନେ କୌଣସି ପ୍ରତିକାର କରୁନଥିଲେ । ସେମାନେ ଏପରିକି ଚିକିତ୍ସିତ ହେବାକୁ ମନା କରୁଥିଲେ । ହଇଜାର ପ୍ରକୃତ କାରଣ କ'ଣ ଜାଣିବା ପାଇଁ ଲୋକମାନେ କିଛି ପ୍ରୟାସ କରୁନଥିଲେ ।

ପର୍ବପର୍ବାଣୀ ସମୟରେ ହିଁ ହଇଜା ବ୍ୟାପୁଥିଲା । ବିଭିନ୍ନ ଗ୍ରାମରୁ ସହରମାନଙ୍କରୁ ଲୋକେ ଆସି ଗୋଟିଏ ସ୍ଥାନରେ ମେଳା ସମୟରେ ରୁଣ୍ଡ ହେଉଥିଲେ । ସେଠାରେ ଯାହା ମିଳୁଥିଲା ଲୋକମାନେ ଖାଉଥିଲେ । ଏଣେ ତେଣେ ମଳ ତ୍ୟାଗ କରୁଥିଲେ । ପିଇବା ପାଣି ଏହାଦ୍ୱାରା ଶୀଘ୍ର ଦୂଷିତ ହୋଇ ଯାଉଥିଲା । ଲୋକମାନେ ରାତ୍ରିରେ ସୁଖରେ ଶୋଉନଥିଲେ ଓ ଦୂଷିତ ମାଛ ମାଂସ ଇତ୍ୟାଦି ଆମିଷ ଜିନିଷ ଖାଉଥିଲେ । କେତେକ ହିନ୍ଦୁ ପର୍ବପର୍ବାଣୀ ଯଥା ଏକାଦଶୀ, ପୁସମ, ମକର ଇତ୍ୟାଦି ବେଳେ ଲୋକମାନେ କୌଣସି ଜାଗାକୁ ପୂଜା ପାଇଁ ଯାଉଥିଲେ । ଏହି ପୂଜା ସ୍ଥଳରୁ ସେମାନେ ଫେରିବାବେଳେ କୌଣସି ଧର୍ମଶାଳା ବା ଲଜରେ ରହୁଥିଲେ । ବସ୍ ଟ୍ରେନରେ ଗଲାବେଳେ ବାହାରର ଦୂଷିତ ଖାଦ୍ୟ, ପାଣି ବ୍ୟବହାର କରୁଥିଲେ । ରୋଗ ସଂକ୍ରମଣ ପାଇଁ ଏହା ମୁଖ୍ୟ କାରଣ ଥିଲା । ରୋଗ କିପରି ସଂକ୍ରମିତ ହୁଏ ସେ ବିଷୟରେ ଲୋକମାନଙ୍କର ବିଶେଷ ଜ୍ଞାନ ନଥିଲା । ରୋଗ କିପରି ସୃଷ୍ଟି ହୁଏ, କିପରି ଏହାକୁ ପ୍ରତିଷେଧ କରିହେବ ଇତ୍ୟାଦି ବିଷୟରେ ଧାରଣା ସେ ସମୟରେ ନଥିଲା । ଏହି ଅଜ୍ଞତା ଯୋଗୁଁ ରୋଗ ବା ମହାମାରୀକୁ ଈଶ୍ୱରଙ୍କ କୋପ ବୋଲି ଲୋକମାନେ ଭାବୁଥିଲେ । ଯଦି ମାତ୍ର ସତୁରି ପଚସ୍ତୋରି ବର୍ଷ ତଳେ ଏହି ପରିସ୍ଥିତି ଥିଲା ତେବେ ୧୦୦, ୨୦୦, ୫୦୦, ୧୦୦୦ ବର୍ଷ ତଳେ ଲୋକମାନଙ୍କର ବିଚାର ଶକ୍ତି କେଉଁ ସ୍ତରରେ ଥିବ, ତାହା ସହଜରେ ଅନୁମେୟ । ଏହି ଅଜ୍ଞତାରୁ ଲୋକମାନେ ଈଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସ କରୁଥିଲେ ।

ହଇଜା ଈଶ୍ୱରଙ୍କ କୋପର ପରିଣାମ, ଏହି ଭାବନା କାଳକ୍ରମେ ମଉଳି ଆସିଲା । ସ୍ୱାସ୍ଥ୍ୟ ବିଭାଗ ବିଭିନ୍ନ ପ୍ରକାରର ପଦକ୍ଷେପ ନେଲା । ପୁଷ୍କରିଣୀ ଓ କୂଅର ଜଳକୁ ସେମାନେ ବିଶୋଧିତ କଲେ । ଯେଉଁ ପାଣି ଲୋକମାନେ ପିଉଥିଲେ ତାକୁ

Digitized by srujanika@gmail.com

ଆଧୁନିକ ବୈଜ୍ଞାନିକ ପଦ୍ଧତିରେ ବିଶୋଧନ କରିବା ପାଇଁ ବ୍ୟବସ୍ଥା ହେଲା। ଯେତେବେଳେ ଏରୋଡର ଲେକସଂଖ୍ୟା ୧୫୦୦୦ ଥିଲା, ସେତେବେଳେ ହାରାହାରି ବର୍ଷକୁ ୩୦୦ ଲୋକ ହଇଜାରେ ମୃତ୍ୟୁବରଣ କରୁଥିଲେ। ସଂପ୍ରତି ଏହାର ଲୋକସଂଖ୍ୟା ୬୦,୦୦୦ ହୋଇଥିଲେ ବି ବର୍ଷକୁ ୨୦ ରୁ ୩୦ ଲୋକ ମରୁଥିବା ଦେଖା ଯାଉଛି।

ଈଶ୍ୱର ଓ ତାଙ୍କର ଶକ୍ତିରେ ବିଶ୍ୱାସ ଲୋକମାନଙ୍କୁ ଅନ୍ଧ କରି ରଖିଥିଲା। ଅନ୍ଧତା ଓ କୁସଂସ୍କାର ଥିଲା ବେଳେ ଲୋକମାନଙ୍କ ପରିସ୍ଥିତି ବହୁତ ଖରାପ ହେଉଥିଲା। ଯେତେବେଳେ ଲୋକମାନେ ଈଶ୍ୱର ଓ ତାଙ୍କ ଶକ୍ତିର ପରିହାର କରି ଜ୍ଞାନର ବିକାଶ କରାଇଲେ, ସମାଜରୁ ଅନେକ ଦୁଃଖ ଦୁର୍ଦ୍ଦଶା କମିବାକୁ ଲାଗିଲା।

ପାଶ୍ଚାତ୍ୟ ଦେଶମାନଙ୍କରେ ଯଦିବା ଅନେକ ଲୋକ ଈଶ୍ୱରରେ ବିଶ୍ୱାସ କରନ୍ତି, ତେବେ ଈଶ୍ୱରଙ୍କ ଶକ୍ତି ଉପରେ ଲୋକମାନେ ବିଶ୍ୱାସ କରନ୍ତି ନାହିଁ।

ଈଶ୍ୱରଙ୍କୁ ବିଶ୍ୱାସ ରଖ, କିନ୍ତୁ ନିଜର ବିଚାରକୁ ମୁକ୍ତରଖ। ନିଜର ଆଲମିରାକୁ ଠିକ୍ ତାଲାଦେଇ ନିରାପଦ ରଖିବାକୁ ଚେଷ୍ଟାକର। ଏହାହିଁ ଖ୍ରୀଷ୍ଟିଆନମାନେ ବିଶ୍ୱାସ କରନ୍ତି।

ମୁସଲମାନମାନେ ଭାବନ୍ତି ଈଶ୍ୱରଙ୍କୁ ବିଶ୍ୱାସ କର, କିନ୍ତୁ ନିଜର ଘୋଡାଟିକୁ ଯତ୍ନର ସହ ନିରାପଦରେ ବାନ୍ଧି ରଖିବାକୁ ପ୍ରୟାସ କର।

ଏସବୁ ବକ୍ତବ୍ୟରୁ ଆମର କ'ଣ ଶିଖିବାର ଅଛି? ଜଣେ ବୁଦ୍ଧିମାନ ଲୋକ ପାଇଁ ଈଶ୍ୱରଙ୍କ ଆବଶ୍ୟକତା ନାହିଁ। ମଣିଷର ଜୀବନଧାରଣ ପାଇଁ ଖାଦ୍ୟ ଯେପରି ଅପରିହାର୍ଯ୍ୟ, ଈଶ୍ୱର ସେପରି ଅପରିହାର୍ଯ୍ୟ ନୁହନ୍ତି। ପରିବେଶ ଅନୁଯାୟୀ ମଣିଷ ନିଜର ଆବଶ୍ୟକତାକୁ ଦେଖି ବସ୍ତ୍ର ବ୍ୟବହାର କରେ। ଈଶ୍ୱରଙ୍କ ଜନ୍ମ ବିଷୟରେ ତାହା କୁହାଯାଇ ପାରିବ। ଯଦି କେହି କୁହନ୍ତି ଯେ ଜୀବନ ଧାରଣ ପାଇଁ ଈଶ୍ୱର ବିଶ୍ୱାସ ନିତ୍ୟାନ୍ତ ଅପରିହାର୍ଯ୍ୟ, ତେବେ ମୁଁ କହିବି ଯେ ସେ ବ୍ୟକ୍ତି ଅନ୍ଧ ବ୍ୟକ୍ତି। କୌଣସି ବ୍ୟକ୍ତି କୌଣସି ଈଶ୍ୱରଙ୍କର ପ୍ରମାଣ ଦେବାକୁ କେବେ ହେଲେ ଆମର ସମ୍ମୁଖୀନ ହୁଅନ୍ତି ନାହିଁ। ଈଶ୍ୱରଙ୍କ ଅସ୍ତିତ୍ୱକୁ ଈଶ୍ୱର ନିଜେ ପ୍ରମାଣ କରିବା ଉପରେ ସେମାନେ ଛାଡି ଦେଇଥାନ୍ତି। ସୁତରାଂ ଈଶ୍ୱର ଯେ ନିର୍ବୋଧ ମାନଙ୍କ ଦ୍ୱାରା ସୃଷ୍ଟି,

Digitized by srujanika@gmail.com

ଏଥିରେ କୌଣସି ସନ୍ଦେହ ନାହିଁ । ଯେଉଁମାନେ ଈଶ୍ୱରଙ୍କ ବିଷୟରେ ପ୍ରଚାର କରନ୍ତି, ସେମାନେ ଦୁର୍ବୃତ୍ତ, ମୋର ଏହା କହିବାର କାରଣ ହେଉଛି ସେମାନେ ଈଶ୍ୱରର ରୂପର କଳ୍ପନା କରିଛନ୍ତି ଏବଂ ଈଶ୍ୱରଙ୍କୁ ବିଭିନ୍ନ ଗୁଣ ଆରୋପ କରିଛନ୍ତି । ଏପରିକି କେତେକ ଈଶ୍ୱରଙ୍କର ସଂଜ୍ଞା ଦେବାକୁଯାଇ କହନ୍ତି ଯେ ଈଶ୍ୱର ହେଉଛନ୍ତି ସର୍ବଶକ୍ତିମାନ, ସର୍ବଜ୍ଞ ଇତ୍ୟାଦି ।

ସେମାନଙ୍କ ମତରେ ଈଶ୍ୱରଙ୍କର କୌଣସି ରୂପ ନାହିଁ । ସେମାନେ ଭାବନ୍ତି ଈଶ୍ୱର ଦୟାଳୁ । ଏମାନେ କାହିଁକି ଅଜ୍ଞ ବୋଲି ଆମେ କହିବା? ଯଦି କୌଣସି ବିଷୟରେ ଜଣେ ବ୍ୟକ୍ତି କିଛି ଜାଣନ୍ତି ନାହିଁ, ତେବେ ଆମେ ତାଙ୍କୁ ଅଜ୍ଞ ବୋଲି କହୁ । କିନ୍ତୁ କେତେକ ବ୍ୟକ୍ତି ଈଶ୍ୱରଙ୍କର ସଂଜ୍ଞା ଓ ସ୍ୱରୂପ ବର୍ଣ୍ଣନା କରିବାକୁ ପ୍ରୟାସ କରନ୍ତି । ସେହି ଲୋକମାନେ ଜାଣିଶୁଣି ଲୋକମାନଙ୍କୁ ବିଭ୍ରାନ୍ତ କରନ୍ତି ।

ଯଦି ଏକ ଅଜ୍ଞ ବ୍ୟକ୍ତି ଈଶ୍ୱରଙ୍କ ଅସ୍ତିତ୍ୱକୁ ବିଶ୍ୱାସ କରେ, ତେବେ ଏହି ଲୋକମାନେ ଆଉପାଦେ ଆଗକୁ ଯାଇ ଈଶ୍ୱରଙ୍କର ଗୁଣ ବର୍ଣ୍ଣନା କରନ୍ତି । ଯତେ ଯେପରି ସେମାନେ ଈଶ୍ୱରଙ୍କୁ ପ୍ରତ୍ୟକ୍ଷ କରିଛନ୍ତି । ଈଶ୍ୱରଙ୍କର ସ୍ୱରୂପ କଣ ବୋଲି ଆମେ ପ୍ରଶ୍ନ କଲେ ସେମାନେ କହନ୍ତି, ଈଶ୍ୱର ହେଉଛନ୍ତି ରୂପହୀନ, ଯାହାର କୌଣସି ରୂପନାହିଁ । ତାହା କିପରି ଆମର ପ୍ରତ୍ୟକ୍ଷ ହେବ? ତେବେ କେତେକ ବସ୍ତୁର ଯଦିବା ନିର୍ଦ୍ଦିଷ୍ଟ ଆକୃତି ନାହିଁ, ତେବେ ସେସବୁକୁ ଆମେ ଅନୁଭବ କରି ପାରିବା, ସ୍ୱାଦ କରିବା, ଘ୍ରାଣ କରିବା, ସ୍ପର୍ଶକରିବା, ଦେଖିବା ଏବଂ ଶୁଣିବା ଦ୍ୱାରା ଆମେ ବିଭିନ୍ନ କଥାକୁ ଜାଣୁ । ଉଦାହରଣ ସ୍ୱରୂପ ଆମେ ବାୟୁକୁ ଦେଖିପାରିବା ନାହିଁ । ତେବେ ପବନ ବୋହିଲେ ଆମେ ଏହା ସ୍ପର୍ଶ କରିପାରିବା । ସେହିପରି ବିଜୁଳି ଶକ୍ତିକୁ ଦେଖିପାରିବା ନାହିଁ, ଏହାର କାର୍ଯ୍ୟକାରିତାକୁ ଆମେ ଅନୁଭବ କରି ପାରିବା । ଏହାକୁ ସ୍ପର୍ଶ କରିବା ଦ୍ୱାରା ଏହାକୁ ଆମେ ଜାଣିପାରିବା । ଏହାକୁ ବିଭିନ୍ନ କାର୍ଯ୍ୟରେ ଆମେ ମନମୁତାବକ ବ୍ୟବହାର କରିଥାଉ । ସୁଇଚ ବୋର୍ଡ ସୁଇଚଟିଏ ମାଧ୍ୟମରେ ଆମେ ଏହାକୁ ନିୟନ୍ତ୍ରଣ କରିଥାଉ । ସୁତରାଂ ଏହାର ବିଭିନ୍ନ ଲକ୍ଷଣକୁ ଜାଣିବାରେ ସମର୍ଥ ହୋଇଥାଉ ।

Digitized by srujanika@gmail.com

ଯାହାଙ୍କୁ ଜାଣିପାରିବା ନାହିଁ, କିମ୍ବା ଅନୁଭବରେ ଆଣିପାରିବା ନାହିଁ ତାଙ୍କୁ ବିଶ୍ୱାସ କରିବା ଏକ ଉଦ୍ଭଟ ଭାବନା । ଈଶ୍ୱର ହେଉଛନ୍ତି ଏକ ମିଥ୍ୟା କଳ୍ପନା । ଯେ ଆମକୁ ଏହା ବିଶ୍ୱାସ କରିବା ପାଇଁ କହନ୍ତି, ସେ ନିଶ୍ଚୟ ଜଣେ ଧୂର୍ତ୍ତ ବ୍ୟକ୍ତି । ଯିଏ ଅସାଧୁ ପଛାରେ ବିଶ୍ୱାସ କରେ ତାଙ୍କୁ ସାଧୁ ବୋଲି ବିବେଚନା କରାଯାଇ ପାରିବ ନାହିଁ । ସାଧାରଣ ଅନ୍ଧବିଶ୍ୱାସୀ ଲୋକମାନଙ୍କୁ ସେମାନେ ଅକ୍ଳେଶରେ ପ୍ରଭାବିତ କରିପାରିଥାନ୍ତି । ଲୋକମାନଙ୍କୁ ଭ୍ରମାତ୍ମକ ଭାବନାରେ ପରିଚାଳିତ କରି ସେମାନଙ୍କୁ ଅନ୍ଧବିଶ୍ୱାସୀ କରନ୍ତି । ଧୂର୍ତ୍ତାମୀ ଓ ଅସାଧୁ ପଛାଦ୍ୱାରା ଲୋକମାନଙ୍କୁ ସେମାନେ ଭୂଆଁ ବୁଲାନ୍ତି । ଈଶ୍ୱର ହେଉଛନ୍ତି ଏକ ପ୍ରତାରଣାପୂର୍ଣ୍ଣ ଭାବନା । ଯେଉଁମାନେ ଏହି ପ୍ରତାରଣାପୂର୍ଣ୍ଣ ଭାବନା ଲୋକମାନଙ୍କ ଭିତରେ ପ୍ରଚାର କରନ୍ତି, ସେମାନେ ସାଧୁ ପ୍ରକୃତିର ହୋଇପାରିବେ ନାହିଁ । ଏପରିକି ଈଶ୍ୱର ବିଶ୍ୱାସୀମାନେ ଈଶ୍ୱର ନିରାକାର ଅଥଚ ସର୍ବବିଦ୍ୟମାନ ବୋଲି ଦୃଢ ଭାବେ ପ୍ରକାଶ କରନ୍ତି । ଏହା ହେଉଛି ଏକ ବଡ ଠକାମି । ଏ ପ୍ରସଙ୍ଗରେ ଆମର ଦୃଷ୍ଟି ଭଙ୍ଗୀ କଣ ହେବା ଆବଶ୍ୟକ !

ଆମେ ଯେତେବେଳେ ସେମାନଙ୍କୁ ପଚାରୁ "ଆପଣମାନେ ଈଶ୍ୱରଙ୍କ ବିଷୟରେ ଅନେକ କଥା କହୁଛନ୍ତି ଏହା ଆମର ବୋଧଗମ୍ୟ ହେଉନାହିଁ, ଈଶ୍ୱର ପ୍ରକୃତରେ କଣ ତାହା ଆପଣ ବୁଝାଇବେ କି ?

ସେମାନେ ଉତ୍ତର ଦିଅନ୍ତି- " ଈଶ୍ୱର ଅଦୃଶ୍ୟ । ସେ କୌଣସି ବ୍ୟକ୍ତିଙ୍କ ଦ୍ୱାରା ବୋଧଗମ୍ୟ ନୁହଁନ୍ତି । ତେଣୁ ଆପଣ ତାଙ୍କୁ ଦେଖିପାରିବେ ନାହିଁ, କିମ୍ବା ତାଙ୍କୁ ବୁଝି ପାରିବେ ନାହିଁ । ସେଥିପାଇଁ ଈଶ୍ୱରଙ୍କ ସଂଜ୍ଞା ହେଉଛି ଯେ ସେ ନିରାକାର । ଏପରିକି ଶିକ୍ଷିତ ଓ ବୁଦ୍ଧିମାନ ଲୋକ ମଧ୍ୟ ତାଙ୍କୁ ବୁଝିପାରିବେ ନାହିଁ ।

ବାସ୍ତବରେ କେତେକ ଧୂର୍ତ୍ତ ଲୋକଙ୍କ ଦ୍ୱାରା ସୁବ୍ୟବସ୍ଥିତ ଭାବେ ଲୋକମାନଙ୍କ ଭିତରେ ମିଥ୍ୟାକୁ ପ୍ରଚାର କରାଯାଉ ନାହିଁ କି?

ଯାହା ଅପ୍ରତ୍ୟକ୍ଷ ଓ ଅଚିନ୍ତ୍ୟ ତାହାଙ୍କ ବିଷୟରେ ଏତେକଥା କିପରି କୁହାଯିବ । ଯଦି ବୁଦ୍ଧିମାନ ବ୍ୟକ୍ତିମାନେ ଈଶ୍ୱରଙ୍କୁ ଜାଣିବାରେ ଅସମର୍ଥ, ତେବେ

Digitized by srujanika@gmail.com

ଈଶ୍ୱରଙ୍କ ବିଷୟରେ ଯେଉଁମାନେ କେତେ ସବୁ କଥା କହୁଛନ୍ତି ସେମାନେ ନିର୍ବୋଧ ନୁହନ୍ତିକି ?

ବନ୍ଧୁଗଣ , ଆପଣମାନେ ଯଦି ଈଶ୍ୱରଙ୍କ ବିଷୟରେ କେତେକଥା କହୁଥିବା ବ୍ୟକ୍ତିମାନଙ୍କୁ ସମ୍ମୁଖୀନ ହୁଅନ୍ତି , ଆପଣମାନେ ତାଙ୍କୁ ଏହି ପ୍ରଶ୍ନ ପଚାରିବା ଉଚିତ୍ । ଈଶ୍ୱରଙ୍କୁ ଜାଣିବାକୁ ଆପଣମାନେ ନିଜର ଅନୁସନ୍ଧିତ୍ସା ପାଇଁ ଏହି ସବୁ ପ୍ରଶ୍ନ ପଚାରନ୍ତୁ ।

ଯେଉଁ ଦୁଇଟି ପ୍ରସଙ୍ଗ ଲୋକମାନଙ୍କୁ ଅହେତୁକ କରି ରଖିଛି ତାହା ହେଲା ଈଶ୍ୱର ଓ ଧର୍ମ । ଈଶ୍ୱର ହେଉଛନ୍ତି ସର୍ବ ରୋଗର ମହୌଷଧି, ଯାହା ଦ୍ୱାରା ଜଣେ ବ୍ୟକ୍ତି ନିର୍ବୋଧରେ ପରିଣତ ହୋଇ ପାରିବ । ମିଥ୍ୟା ପ୍ରଚାର ଦ୍ୱାରା ଆମେମାନେ ଏହି ପରିସ୍ଥିତିରେ ପହଞ୍ଚିବା ।

ମଣିଷର ବିକାଶ ପାଇଁ ଈଶ୍ୱର ଭାବନାକୁ ଉଦ୍ଭାବନା କରାଯାଇ ନାହିଁ । ଲୋକମାନଙ୍କୁ ଠକିବା ପାଇଁ ଏହା ଏକ ଚତୁର ଷଡଯନ୍ତ୍ର । କୌଣସି ବ୍ୟକ୍ତି ଚନ୍ଦ୍ର, ଅଗ୍ନି, ଜଳ, ପଥର ଇତ୍ୟାଦି ବସ୍ତୁ ସକଳକୁ ଉଦ୍ଭାବନ କରିନାହିଁ । ମଣିଷ କେବଳ ସେମାନଙ୍କୁ ନାମିତ କରିଛି । ଏସବୁ ବସ୍ତୁକୁ ଈଶ୍ୱର ଭାବନା ଆଧାରରେ ବ୍ୟାଖ୍ୟା କରିବାର କୌଣସି ଆବଶ୍ୟକତା ନାହିଁ । ମଣିଷ ଏସବୁକୁ ଜାଣିବା ଓ ଜୀବନ ପାଇଁ ଉପଯୋଗ କରିବା ଆବଶ୍ୟକ ।

ଈଶ୍ୱର କୌଣସି ଦୃଶ୍ୟମାନ ବସ୍ତୁ ନୁହନ୍ତି । ଈଶ୍ୱର ଭାବନାକୁ ପ୍ରଚାର କରାଯାଏ । ଜଣେ ଯାହା ପ୍ରଚାର କରେ ତାକୁ ଅନ୍ଧ ଭାବରେ ବିଶ୍ୱାସ କରେ । ବଳ ପ୍ରୟୋଗ କରି କିମ୍ବା ବାଧ୍ୟକରି ଈଶ୍ୱର ବିଶ୍ୱାସ ରଖିବା ପାଇଁ କୁହାଯାଇଛି । ସେପରି ନ ହୋଇଥିଲେ ଈଶ୍ୱର ଭାବନା ପ୍ରାୟ ଲୋକମାନଙ୍କ ମସ୍ତିଷ୍କ ଭିତରେ ପ୍ରବେଶ କରିନଥାନ୍ତା । ଏସତ୍ତ୍ୱେ ଈଶ୍ୱର ସର୍ବ ଶକ୍ତିମାନ ଘୋଷଣା କରାଯାଏ । କି ପ୍ରହେଳିକା!

ଈଶ୍ୱରଙ୍କୁ ଓ ଈଶ୍ୱର ସଂକ୍ରାନ୍ତୀୟ କାହାଣୀକୁ କେବଳ ନିର୍ବୋଧମାନେ ହିଁ କଳ୍ପନା କରିଛନ୍ତି । ଈଶ୍ୱର କଳ୍ପନା ଦ୍ୱାରା ମଣିଷର ବୌଦ୍ଧିକ ସାମର୍ଥ୍ୟ ଶକ୍ତିହୀନ ହୋଇଯାଇଛି । ଗୋଟିଏ ଶିଶୁ ହାତରେ ଏକ ଛୋଟ ଅଗ୍ନିଶିଖା ଗୋଟିଏ ଗୃହକୁ ଅଗ୍ନି ସଂଯୋଗ କରିଦେଇ ପାରେ ଓ ଏପରିକି ଏକ ସହରକୁ ଧ୍ୱଂସ ପାଉଁସ ଗଦାରେ

Digitized by srujanika@gmail.com

ପରିଣିତ କରିପାରେ। ସେହିପରି ଈଶ୍ୱର ଭାବନା ମଣିଷର ବୌଦ୍ଧିକ ସାମର୍ଥ୍ୟ ଧ୍ୱଂସ କରିପାରେ। ଈଶ୍ୱରଙ୍କୁ କେତେକ ନମଃ ଶିବାୟ ବୋଲି କହିଥାନ୍ତି, ଏମ୍.ଏଲ ପିଲାଇ ଓ ଶ୍ରୀ ଭି-କା ଶୈବବାଦୀମାନେ ଈଶ୍ୱରଙ୍କୁ ନମଃ ଶିବାୟ ବୋଲି କହିଥାନ୍ତି। ନମଃ ଶିବାୟ ଏକ ଶୂନ୍ୟତାକୁ ବୁଝାଏ ନାହିଁକି? ତେବେ ଦୀର୍ଘ ଦିନ ଧରି ସେମାନେ ସେହି ପ୍ରତିମାକୁ ପୂଜା କରି ଆସୁଥିଲେ, ଯାହା ପରେ ପରିବର୍ତ୍ତିତ ହେଲା।

ଜଣେ ମଣିଷ ଈଶ୍ୱରଙ୍କୁ କାହିଁକି ଆବଶ୍ୟକ କରେ ତାହା ମୁଁ ବୁଝିପାରୁନାହିଁ। ଈଶ୍ୱରଙ୍କର କେଉଁ ଶକ୍ତିରେ ସେ ବିଶ୍ୱାସ କରେ ? ପର-ରାକ୍ରମେ ଜଣେ ସାଧାରଣତଃ କହିଥାଏ ଯେ ସବୁ କିଛି ଈଶ୍ୱରଙ୍କ କାର୍ଯ୍ୟ। କିନ୍ତୁ ବାସ୍ତବ ଜୀବନରେ ବ୍ୟକ୍ତି ନିଜ କାର୍ଯ୍ୟ, ପ୍ରକୃତି, ତତ୍ କ୍ଷଣାତ୍ କାର୍ଯ୍ୟ, ଏକ ଦୁର୍ଘଟଣା ଇତ୍ୟାଦି ଭିତରେ ପାର୍ଥକ୍ୟ କରିଥାଏ। ତେଣୁ କେଉଁ କାମ ଈଶ୍ୱରୀୟ କାର୍ଯ୍ୟ ?

ଏପରିକି ଯେଉଁମାନେ ସବୁକିଛି ଈଶ୍ୱରଙ୍କ କାର୍ଯ୍ୟ ବୋଲି କହନ୍ତି, ସେମାନେ ପ୍ରତିଷେଧକ ମୂଳକ ପଦକ୍ଷେପ ନେବାରେ ଅବହେଳା କରନ୍ତି ନାହିଁ। ଯଦି ସବୁ କିଛି ଈଶ୍ୱରୀୟ ସୃଷ୍ଟି, ତେବେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରୁଥିବା ନିରୀଶ୍ୱରବାଦୀମାନେ କିପରି ଉଦ୍ଭବ ହେଲେ?

ଯଦି ଏହା ସତ୍ୟ ଯେ ଈଶ୍ୱର ସର୍ବବିଦ୍ୟମାନ, ତେବେ ଈଶ୍ୱର ନିଜର ଉପସ୍ଥିତି ନେଇ କାହିଁ କୌଣସି ପ୍ରମାଣ ରଖିନାହାନ୍ତି। ଈଶ୍ୱର ବିଶ୍ୱାସୀ ବ୍ୟକ୍ତିମାନେ ଏହି ଗୁରୁତ୍ୱ ପୂର୍ଣ୍ଣ ଓ ସମ୍ବେଦନଶୀଳ ପ୍ରଶ୍ନଗୁଡିକ ଉପରେ ଚିନ୍ତା କରନ୍ତି ନାହିଁ।

ଜଣେ ଖ୍ରୀଷ୍ଟିଆନ କହିଥାଏ ଯେ ଈଶ୍ୱର ମଣିଷକୁ ବୁଦ୍ଧି ଦେଇଛନ୍ତି, ମଣିଷ ନିଜର ବୁଦ୍ଧି ଦ୍ୱାରା ଈଶ୍ୱରଙ୍କର ସନ୍ଧାନ କରିବା ଆବଶ୍ୟକ। ଆମେ ଯେତେବେଳେ କହୁଛେ ସେମାନେ କିପରି ସେମାନଙ୍କ ବୁଦ୍ଧିରେ ଈଶ୍ୱରଙ୍କୁ ଜାଣୁଛନ୍ତି, ଅଥଚ ଆମ ବୁଦ୍ଧିରେ ଆମେ ଜାଣିପାରୁ ନାହୁଁ? ସେମାନେ ମନ୍ତବ୍ୟ ଦିଅନ୍ତି ଯେ ନିରୀଶ୍ୱରବାଦୀମାନେ ହେଉଛନ୍ତି ପାପୀ ଓ ସେମାନେ ଈଶ୍ୱରଙ୍କୁ ପ୍ରାପ୍ତ ହୋଇ ପାରିବେ ନାହିଁ।

ତେବେ ଏହି ପାପୀମାନଙ୍କୁ କିଏ ସୃଷ୍ଟି କଲା? ଯଦି ଈଶ୍ୱର ପାପୀମାନଙ୍କୁ ବି ସୃଷ୍ଟି କରିଛନ୍ତି, ତେବେ ସେ କାହିଁକି ସେମାନଙ୍କୁ ପାପୀ କରିଛନ୍ତି? ଯଦି

Digitized by srujanika@gmail.com

ପାପୀମାନଙ୍କୁ ଈଶ୍ୱର ସୃଷ୍ଟି କରିନାହାନ୍ତି, ତେବେ ସେମାନଙ୍କୁ କିଏ୍ ସୃଷ୍ଟି କରିଛି? ଆମେ ଯେତେବେଳେ ଏହି ପ୍ରଶ୍ନ ପଚାରୁ, ସେମାନେ କୁହନ୍ତି ଯେ ସେମାନଙ୍କ ସୃଷ୍ଟି ପାଇଁ ଶୟିତାନ ଦାୟୀ। ସେମାନେ ଅନ୍ୟ ପ୍ରଶ୍ନର ଉତ୍ତର ଦେବାକୁ ପ୍ରସ୍ତୁତ ନୁହନ୍ତି। ତାହାର କାରଣ ହେଉଛି ସେମାନେ ଯାହା କୁହନ୍ତି ତାହା ନିଜେ ମଧ୍ୟ ବୁଝନ୍ତି ନାହିଁ। ଏହି କଥା ରକ୍ଷଣଶୀଳ ମୁସଲମାନମାନଙ୍କ ବିଷୟରେ ମଧ୍ୟ କୁହାଯାଇ ପାରେ। ହିନ୍ଦୁମାନେ ନାନା ଦେବାଦେବୀ, ପଥର, ଛବି, ପଶୁ, ପକ୍ଷୀ ବୃକ୍ଷ, ଗୋବର ଇତ୍ୟାଦି ବହୁ ଜିନିଷକୁ ଈଶ୍ୱର ଭାବି ପୂଜା କରିଥାନ୍ତି।

ମୁଁ ଏଠାରେ ଏତେ ଈଶ୍ୱରଙ୍କୁ କାହିଁକି ଉଲ୍ଲେଖ କରୁଛି ? ଯଦି ଈଶ୍ୱର ସର୍ବ ଶକ୍ତିମାନ, ତେବେ ସେ କାହିଁକି ଏକ ନିର୍ଦ୍ଦିଷ୍ଟ ରୂପରେ ନିଜକୁ ବ୍ୟକ୍ତ କରୁନାହାନ୍ତି? ନିଜକୁ କୌଣସି ରୂପରେ ପ୍ରକାଶ କରୁନଥିବା ଈଶ୍ୱର କ'ଣ ବାସ୍ତବରେ ଏଥିପାଇଁ ଦୁର୍ବଳ ନା ଅସମର୍ଥ? ଏହା କହିବା ହାସ୍ୟାସ୍ପଦ ନୁହେଁ କି! ଈଶ୍ୱର ସର୍ବ ଶକ୍ତିମାନ ହୋଇ ସେ ନିଜକୁ ପ୍ରକାଶ କରିବା ପାଇଁ ଅସମର୍ଥ।

ଏହି ଘଟଣା ପରେ କେତେକ ଲୋକ ପୂର୍ବ ଜନ୍ମ, ପରଜନ୍ମ ଭାଗ୍ୟ, କର୍ମଫଳ, ସ୍ୱର୍ଗ, ନରକ କଥା କହିଥାନ୍ତି। ନିଶାଗ୍ରସ୍ତ ବ୍ୟକ୍ତି ଯେପରି ଅସଂଯୋଜିତ କଥା କହିଥାଏ, ସେହିପରି ଏହି ଲୋକମାନେ ଗୁଡିଏ କାଳ୍ପନିକ କଥା ଲୋକମାନଙ୍କୁ କୁହନ୍ତି।

ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ବ୍ୟକ୍ତି ଅନେକ କଷ୍ଟକର ପରିସ୍ଥିତିର ସମ୍ମୁଖୀନ ହୋଇଥାଏ। ମଣିଷର ଦୁଃଖକୁ ଅନେକ କୁସଂସ୍କାର ଯଥା ଭାଗ୍ୟ, ସ୍ୱର୍ଗ, ନରକ ଇତ୍ୟାଦି ଅଧିକ କଷ୍ଟକର କରିଥାଏ। ଏସବୁ ଭାବନା ମଣିଷର ମନକୁ କଳୁଷିତ କରିଥାଏ। ମଣିଷମାନେ ନିଜର ଦୁଃଖ ଦୁର୍ଦ୍ଦଶା, ଆଶଙ୍କା ଓ ପ୍ରାକୃତିକ ଦୁର୍ବିପାକ ଗୁଡିକ ଅନେକ ସମୟରେ ବୁଝି ନପାରି ନିଜ ଦୁଃଖକୁ ବୃଦ୍ଧି କରିଥାନ୍ତି। ସମସ୍ତ ଜୀବଜଗତରେ ମଣିଷ ବିଚାରଶୀଳ ହୋଇ ମଧ୍ୟ ମଣିଷର ଦୁଃଖ ଅଧିକ ହେବା ବିଡମ୍ବନା ନିଶ୍ଚୟ।

ଯେହେତୁ ମଣିଷ ବିଚାରଶୀଳ, ସେ ଦୃଷ୍ଟିରୁ ଅନ୍ୟ ଇତର ପ୍ରାଣୀଙ୍କ ଠାରୁ ତାର ଦୁଃଖର ମାତ୍ରା ଅଧିକ। ଏହି ଦୁଃଖ ପାଇଁ ତା'ର ଈଶ୍ୱରୀୟ ଭାବନା

Digitized by srujanika@gmail.com

ଅନେକାଂଶରେ ଦାୟୀ । ଯଦି ସମାଜରେ ସବୁବ୍ୟକ୍ତି କର୍ମ କରିବା ସହ ନିଜର ଖାଦ୍ୟ ଓ ଅନ୍ୟାନ୍ୟ ଆବଶ୍ୟକତା ପୂରଣ କରିବାରେ ସମର୍ଥ ହୋଇପାରିବେ ସେତେବେଳେ ଈଶ୍ୱରଙ୍କର କୌଣସି ଆବଶ୍ୟକତା ରହିବ ନାହିଁ । ସ୍‌ପ୍ରତି ମଣିଷ ସମାଜରେ ଦାସତ୍ୱ, ଦୁଃଖ, ପ୍ରତିକୂଳ ଅବସ୍ଥା ଅନେକ ରହିଛି । ତାହାର କାରଣ ହେଉଛି ମୁଷ୍ଟିମେୟ ଓ ଶକ୍ତିଶାଳୀ ଲୋକଙ୍କ ହାତରେ ସମସ୍ତ କ୍ଷମତା ଠୁଳ ହୋଇ ରହିଛି । ସେମାନେ ନିଜର ଧୂର୍ତ୍ତତା ଭିତରେ ଅଗଣିତ ମଣିଷକୁ ନ୍ୟୂନ କରି ରଖିଛନ୍ତି ।

ଆଗାମୀ ୫୦ ବର୍ଷ ଭିତରେ ଲୋକମାନଙ୍କର ସାଧାରଣ ଆୟୁ ଶହେ ବର୍ଷକୁ ବଢିବାକୁ ସମ୍ଭାବନା ରହିଛି । କେତେକ ରାଷ୍ଟ୍ରରେ ଲୋକମାନଙ୍କର ସାଧାରଣ ବୟସ ସୀମା ୬୬ ରୁ ୭୪ ବର୍ଷକୁ ବୃଦ୍ଧି ପାଇଛି । ଆମ ଦେଶରେ ୧୯୫୦ ମସିହାରେ ଲୋକଙ୍କର ସାଧାରଣ ଆୟୁଥିଲା ୩୨ ବର୍ଷ, ୧୯୪୦ ରେ ସାକ୍ଷର ସଂଖ୍ୟା ଥିଲା ଶତକଡା ୯ । କାମରାଜଙ୍କର ଚେଷ୍ଟା ଯୋଗୁଁ ସାକ୍ଷର ସଂଖ୍ୟା ଦ୍ରୁତଗତିରେ ଶତକଡା ୫୦ କୁ ବୃଦ୍ଧି ପାଇଛି । ଏହା ହେବାଦ୍ୱାରା ଈଶ୍ୱର ବିଶ୍ୱାସ ଅନେକାଂଶରେ କମିବାରେ ଲାଗିଛି । ସୁତରାଂ ମୋ ମତରେ ଈଶ୍ୱର ଭାବନା ଯେଉଁ ପରିମାଣରେ ହ୍ରାସ ହେବ ତାହା ଲୋକମାନଙ୍କୁ ସେତେ ଅଧିକ ବୁଦ୍ଧିମାନ କରାଇବ । ଯଦି ଆମର ମହିଳାମାନେ ଜୀବନରେ ସ୍ୱାଧୀନତାର ମହତ୍ତ୍ୱକୁ ଉପଭୋଗ କରିବେ ଓ ଏହା ସହିତ ସମାଜର ଭାବନା ଧୀରେ ଧୀରେ ବଢିବ, ତେବେ ମଣିଷର ଆୟୁ ଓ ପ୍ରଜ୍ଞା କ୍ରମବର୍ଦ୍ଧିଷ୍ଣୁ ଭାବେ ବୃଦ୍ଧି ପାଇବ ।

ସ୍‌ପ୍ରତି ସରକାର ଡି.ଏମ୍.କେ ହାତରେ ରହିଛି । ସେମାନେ ପ୍ରାୟତଃ ନିରୀଶ୍ୱରବାଦୀ । ଯଦି ସେମାନେ ସେମାନଙ୍କର ସଭ୍ୟ ସଂଖ୍ୟା ଆଉକେତୋଟି ଲକ୍ଷକୁ ବୃଦ୍ଧି କରି ପାରିବେ, ତେବେ ସେମାନେ ସବୁଦିନ ପାଇଁ କ୍ଷମତାରେ ରହିବେ । ଏହା ହୁଏତ କେତେକଙ୍କୁ ଅସ୍ୱସ୍ତିକର ଲାଗିପାରେ ।

ଯେଉଁ ସବୁ ମିଥ୍ୟା ଓ ଭ୍ରାନ୍ତି ସମାଜକୁ ଧ୍ୱଂସ କରିଛି ସେମାନଙ୍କ ଭିତରେ ଈଶ୍ୱର ଭାବନା ମୁଖ୍ୟ ଅଟେ । ପୃଥିବୀରେ ଯେତେ ଧର୍ମ ରହିଛି ସେମାନଙ୍କ ମଧ୍ୟରେ ତିନୋଟି ହେଉଛନ୍ତି ମୁଖ୍ୟ ଧର୍ମ । ସେଗୁଡିକ ହେଉଛି ଖ୍ରୀଷ୍ଟିଆନଟି, ଇସଲାମ ଓ ହିନ୍ଦୁଧର୍ମ । ଏଇ ତିନି ଧର୍ମ ମଧ୍ୟରୁ ଖ୍ରୀଷ୍ଟଧର୍ମ ଓ ଇସଲାମ ଧର୍ମର ଐତିହାସିକ

Digitized by srujanika@gmail.com

ତାତ୍ପର୍ଯ୍ୟ ରହିଛି । ତୃତୀୟ ଧର୍ମଟି ଅନେକ ଅବାସ୍ତବ ଭାବନା ମାନଙ୍କୁ ନେଇ କାଳକ୍ରମେ ବିକଶିତ ହୋଇଛି । ଏହି ଧର୍ମକୁ ଲୋକଙ୍କ ଉପରେ ଲୋକଙ୍କୁ ଶୋଷଣ ପାଇଁ ଲଦି ଦିଆଯାଇଛି । ଅନ୍ୟ ଦୁଇଟି ଧର୍ମର ବିକାଶ ପରେ ଏହି ଧର୍ମ ହିନ୍ଦୁ ଧର୍ମନାମ ଗ୍ରହଣ କରିଛି । ପ୍ରଥମେ ଏହା ବୈଦିକ ଧର୍ମ ନାମରେ ପରିଚିତ ଥିଲା । ପରେ ଏହା ଆର୍ଯ୍ୟଧର୍ମ ବୋଲି ସୂଚିତ ହେଲା । ତାପର ଅବସ୍ଥାରେ ଏହା ବ୍ରାହ୍ମଣ ଧର୍ମ ନାମରେ ବିଦିତ ହେଲା । ଶେଷରେ ଏହା ଏବେ ହିନ୍ଦୁଧର୍ମର ନା ନେଇଛି । ପୃଥିବୀରେ ଖ୍ରୀଷ୍ଟଧର୍ମ ହେଉଛି ଅଧିକ ବ୍ୟାପକ ଓ ଏହି ଧର୍ମର ଜନସଂଖ୍ୟା ସର୍ବାଧିକ । ଏହାପରେ ଦ୍ୱିତୀୟ ସ୍ଥାନରେ ରହିଛି ଇସଲାମ ଧର୍ମ । ଖ୍ରୀଷ୍ଟିଆନ ଧର୍ମ ଲୋକସଂଖ୍ୟାର ତିନି ଚତୁର୍ଥାଂଶ ଲୋକ ହେଉଛନ୍ତି ଇସଲାମ ଧର୍ମାବଲମ୍ବୀ, ହିନ୍ଦୁଧର୍ମର ଲୋକସଂଖ୍ୟା ଇସଲାମ ଧର୍ମ ଲୋକ ସଂଖ୍ୟାର ପ୍ରାୟ ଅଧା ହେବ ।

ଏହି ତିନି ଧର୍ମକୁ ଛାଡି ଆଉ ଏକ ଧର୍ମ ହେଉଛି, ବୌଦ୍ଧ ଧର୍ମ । ଏହି ଧର୍ମରେ କୌଣସି ଈଶ୍ୱର ଭାବନା ନାହିଁ । ତେବେ ଏହି ଧର୍ମରେ କେତେକ କର୍ମକାଣ୍ଡ ରହିଛି । ଧର୍ମାବଲମ୍ବୀ ଦୃଷ୍ଟିରୁ ଦେଖିଲେ ଖ୍ରୀଷ୍ଟଧର୍ମ ପରେ ବୌଦ୍ଧଧର୍ମ ବି ଆସିବ । ଏହି ଧର୍ମ ମୁଖ୍ୟତଃ ଚାଇନା, ସିଆମ, ବର୍ମା ଓ ଶ୍ରୀଲଙ୍କାରେ ରହିଛି । ଯଦି ବୌଦ୍ଧଧର୍ମକୁ ଅନ୍ୟ କୌଣସି ଧର୍ମ ନାମରେ ନାମିତ କରାଯିବ, ତେବେ ଏହାକୁ ପ୍ରଜ୍ଞାଧର୍ମ ବୋଲି କୁହାଯିବ । କାରଣ ବୁଦ୍ଧିର ଅର୍ଥ ହେଉଛି ଜ୍ଞାନ ବା ପ୍ରଜ୍ଞା । ପ୍ରଶ୍ନ ହେଉଛି ଏହି ଧର୍ମକୁ କାହିଁକି ପ୍ରଜ୍ଞା ଧର୍ମ ବୋଲି କୁହାଯିବ? ତାହାର କାରଣ ହେଉଛି, ଅନ୍ୟସବୁ ଧର୍ମରେ କୌଣସି ଈଶ୍ୱର ଭାବନା ଥିଲାବେଳେ ବୌଦ୍ଧ ଧର୍ମରେ କୌଣସି ଈଶ୍ୱର ଭାବନା ନାହିଁ । ଏହି ଧର୍ମରେ ପ୍ରଜ୍ଞାକୁ ମୁଖ୍ୟସ୍ଥାନ ଦିଆଯାଇଛି । କାରଣ ବୁଦ୍ଧିଜିମ୍ ଅର୍ଥ ହେଉଛି ପ୍ରଜ୍ଞା ଆଧାରିତ ଧର୍ମ ।

କେତେକ ବୌଦ୍ଧଧର୍ମାବଲମ୍ବୀ ବୌଦ୍ଧଧର୍ମକୁ ପ୍ରଜ୍ଞା ଉପରେ ଆଧାରିତ ଧର୍ମ ବୋଲି ସ୍ୱୀକାର କରିବେ ନାହିଁ । ଏହାର କାରଣ କ'ଣ? ଯେହେତୁ ଏହି ଧର୍ମରେ କୌଣସି ଈଶ୍ୱର ନାହାଁନ୍ତି । ତେଣୁ ଧର୍ମର କେତେକ ଅନୁଗାମୀ କେତେକ ଉଦ୍ଭଟ କାହାଣୀ ଓ ଅଯୌକ୍ତିକ ବିଶ୍ୱାସ ରଖିବାର ଦେଖାଯାଏ ।

Digitized by srujanika@gmail.com

କଣେ ଯଦି ବୌଦ୍ଧଧର୍ମକୁ ଏହି ଦୃଷ୍ଟିରେ ଗ୍ରହଣ କରେ, ତେବେ ବୌଦ୍ଧଧର୍ମ ହେବ ଏକ ଜୀବନଧାରା । ଏହାର ମୁଖ୍ୟ ଭାବନା ଗୁଡିକ ଏହି ଦୃଷ୍ଟିଭଙ୍ଗୀସହ ସମତାଳ ।

ଯଦିବା ସବୁଧର୍ମର ଲୋକମାନେ କୌଣସି ନା କୌଣସି ଈଶ୍ୱରରେ ବିଶ୍ୱାସ କରନ୍ତି, ତେବେ ଅଧିକାଂଶ ଧର୍ମରେ ଏକେଶ୍ୱର ଭାବନା ରହିଛି ଓ କେତେକ ଧର୍ମରେ ବହୁ ଈଶ୍ୱର ଭାବନା ରହିଛି । ବିଭିନ୍ନ ଧର୍ମରେ ଯେଉଁମାନେ ଏକେଶ୍ୱରବାଦରେ ବିଶ୍ୱାସ କରନ୍ତି, ସେମାନଙ୍କର ଈଶ୍ୱର ଭାବନା କ୍ଷେତ୍ରରେ ବହୁ ସାମଞ୍ଜସ୍ୟ ଥିବା ଦେଖାଯାଏ ।

ଯେଉଁମାନେ ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି, ସେମାନେ ଈଶ୍ୱରଙ୍କୁ ଏକ ମଣିଷ ରୂପେ କଳ୍ପନା କରିଛନ୍ତି । ଅଧିକାଂଶ ଈଶ୍ୱରଙ୍କର ମାନବିକ ରୂପ ରହିଛି । ସେହି ଈଶ୍ୱରମାନେ ମଣିଷ ଭଳି ବ୍ୟବହାର କରନ୍ତି ଓ ସମସ୍ତ ମାନବିକ ଗୁଣର ଅଧିକାରୀ ହେବା ଦେଖାଯାଏ । ମଣିଷ ତାର ସମସ୍ତ ଭାବନାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ବହୁ ପ୍ରୟାସ କରିଥାଏ । ଯଦିବା ଈଶ୍ୱର କଣେ ମଣିଷ ସେ ନିଜର ଚିନ୍ତାକୁ ତତ୍କ୍ଷଣାତ୍ କାର୍ଯ୍ୟରେ ପ୍ରବର୍ତ୍ତନ କରିପାରନ୍ତି ଓ ଏ କ୍ଷେତ୍ରରେ ତାଙ୍କର ଅନେକ ସାମର୍ଥ୍ୟ ରହିଛି । ଏହା ହେଉଛି ମଣିଷ ଓ ଈଶ୍ୱରଙ୍କ ଭିତରେ ପାର୍ଥକ୍ୟ । ମଣିଷ ଓ ଈଶ୍ୱରଙ୍କ ଭିତରେ ମାନବୀୟ ଗୁଣ ଓ ବ୍ୟବହାର କ୍ଷେତ୍ରରେ ବହୁ ସାମଞ୍ଜସ୍ୟ ଥିଲେ ବି ଈଶ୍ୱର ମଣିଷ ତୁଳନାରେ ଅଧିକ ଶକ୍ତିଶାଳୀ ଓ ଅଧିକ ବୁଦ୍ଧିମାନ । ଏହା ଛଡା ଈଶ୍ୱରଙ୍କ ପାଖରେ ଥିବା ସବୁ ଗୁଣ ଯେ ମହାନ ଏହା କୁହାଯାଇ ନାହିଁ ।

ଯିଶୁଖ୍ରୀଷ୍ଟ ନିଜକୁ ଈଶ୍ୱରଙ୍କ ପୁତ୍ର (କୁମାରନ)କହି ବିଭ୍ରାନ୍ତ କରିଛନ୍ତି ।

ମହମ୍ମଦ ନବି ନିଜକୁ ଈଶ୍ୱରଙ୍କ ଦୂତ କହି ବିଭ୍ରାନ୍ତ କରିଛନ୍ତି । ମଣିଷ ସେମାନଙ୍କୁ କୁମାରନ ବା ଦୂତବୋଲି ଭାବି ଆସିଛି । ଏସବୁ ହେଉଛି ମଣିଷର କଳ୍ପନା ।

ଯେଉଁମାନେ ଭଲକାର୍ଯ୍ୟ କରନ୍ତି, ଈଶ୍ୱର ସେମାନଙ୍କୁ ଉତ୍ତମ ଫଳ ପ୍ରଦାନ କରନ୍ତି । ଯେଉଁମାନେ ମନ୍ଦକାର୍ଯ୍ୟ କରନ୍ତି, ସେମାନଙ୍କୁ ଈଶ୍ୱର ଦଣ୍ଡ ଦିଅନ୍ତି । ଯେଉଁମାନେ ମଣିଷ ପ୍ରତି ଦୟାବାନ, ମଣିଷ ସେମାନଙ୍କ ପ୍ରତି ଉତ୍ତମ ଆଚରଣ

Digitized by srujanika@gmail.com

ପ୍ରଦର୍ଶନ କରିଥାଏ। ଯେଉଁମାନେ ମଣିଷର କ୍ଷତି କରନ୍ତି, ମଣିଷ ତାର କ୍ଷତି କରିଥାଏ। ଈଶ୍ୱର ନିଜ ଶକ୍ତି ପ୍ରଦର୍ଶନ କରିବାକୁ କୌଣସି କଷ୍ଟ କରନ୍ତି ନାହିଁ। ସେ ଏହା ତତ୍ କ୍ଷଣାତ୍ କରିପାରନ୍ତି। କିନ୍ତୁ ମଣିଷ ନିଜର ଭାବନାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଅନେକ ପ୍ରୟାସ କରିଥାଏ ଓ ଏଥିପାଇଁ କଷ୍ଟ ସ୍ୱୀକାର କରିଥାଏ।

ଅତ୍ୟନ୍ତ ବର୍ବର କାର୍ଯ୍ୟ କରିଥିବା କୌଣସି ବ୍ୟକ୍ତିଙ୍କୁ ଈଶ୍ୱର କ୍ଷମା କରନ୍ତି, ଯଦି ସେ ଈଶ୍ୱରଙ୍କୁ ପ୍ରାର୍ଥନା କରିଥାଏ। ଏହି କଥା ଆମକୁ କୁହାଯାଇଛି। ମଣିଷ ଅନୁତାପ କଲେ ତାଙ୍କୁ ମଧ୍ୟ ମଣିଷ କ୍ଷମା କରିଥାଏ।

ଈଶ୍ୱର କେତେକଙ୍କୁ କ୍ଷମା କରନ୍ତି ନାହିଁ ଓ ତାଙ୍କୁ କଠୋର ଶାସ୍ତି ଦେଇଥାନ୍ତି। ସେହିପରି ମଣିଷ କେତେକଙ୍କୁ କ୍ଷମାକରେ ନାହିଁ ଓ ସେମାନଙ୍କର ପ୍ରତିଶୋଧ ନେଇଥାଏ।

ତେଣୁ ଆମେ ଦେଖୁ ଯେ ମଣିଷ ପାଖରେ ଥିବା ଗୁଣ ଗୁଡିକ ଈଶ୍ୱରଙ୍କ ଠାରେ ମଧ୍ୟ ଅଭିବ୍ୟକ୍ତ ହୋଇଥାଏ। ଈଶ୍ୱର ଯାହା କରନ୍ତି ମଣିଷ ତାହା ଅନୁକରଣ କରେ।

ମଣିଷ ଅପରାଧ କରେ,
ଈଶ୍ୱର ମଧ୍ୟ ତାଙ୍କ କାର୍ଯ୍ୟ କରନ୍ତି,
ମଣିଷ ଅପରାଧୀଙ୍କ ପାଇଁ ଜେଲ କରିଛି।
ଈଶ୍ୱର ଦଣ୍ଡ ଦେବାକୁ ନରକ କରିଛନ୍ତି।
ମଣିଷ ଦଣ୍ଡଦିଏ, ଈଶ୍ୱର ଦଣ୍ଡ ଦିଅନ୍ତି।
ମଣିଷ ଅନେକ ଜୀବଜନ୍ତୁଙ୍କୁ ମାରିଥାଏ,
ଈଶ୍ୱର ମଣିଷକୁ ଓ ଅନ୍ୟ ପ୍ରାଣୀକୁ ବଧ କରିଥାନ୍ତି।
ଭୋକିଲା ଲୋକ ଓ ଦାରିଦ୍ର୍ୟ ଦେଖି ମଣିଷ ନିରବ ରହେ ଯେତେବେଳେ
ମଣିଷ ଓ ଅନ୍ୟ ପ୍ରାଣୀମାନେ କ୍ଷୁଧାରେ ଆତୁର ହୁଅନ୍ତି,
ଈଶ୍ୱର ମଧ୍ୟ ନିରବ ରୁହନ୍ତି।

Digitized by srujanika@gmail.com

ଯେଉଁମାନେ ଏକାଧିକ ଇଶ୍ୱରରେ ବିଶ୍ୱାସ କରନ୍ତି, ସେମାନେ ପ୍ରଚ୍ଛନ୍ନରେ ଏକେଶ୍ୱର ବିଶ୍ୱାସ ଠାରୁ ଦୂରେଇଯାଆନ୍ତି ନାହିଁ । ମନ୍ଦକାର୍ଯ୍ୟ ଓ ଗୁଣ ଗୁଡିକ ଯାହା ମଣିଷ ପାଖରେ ଥାଏ, ତାହାକୁ ସେ ଇଶ୍ୱରଙ୍କ ଉପରେ ଆରୋପ କରିଥାଏ। ଆଦିମ ଯୁଗରେ ମଣିଷ ଅତ୍ୟନ୍ତ ଅସଭ୍ୟ ନିଷ୍ଠୁର, ନିଷ୍କରୁଣ, ନିର୍ବୋଧ ଓ ଚରିତ୍ରହୀନ ଥିଲା । ଏହି ସ୍ଥିତିରେ ଯେତେବେଳେ ସେ ବହୁ ଇଶ୍ୱରଙ୍କୁ କଳ୍ପନା କଲା ସେ ନିଜ ଇଶ୍ୱରଙ୍କ ପାଖରେ ମାନବୀୟ ଭଲମନ୍ଦ ଗୁଣର ମଧ୍ୟ କଳ୍ପନା କଲା ।

ଉଦାହରଣ ସ୍ୱରୂପ ଯେତେବେଳେ ମଣିଷ ବଣ ଜଙ୍ଗଲ ଓ ପାହାଡରେ ବାସ କରୁଥିଲା, ସେତେବେଳେ ତାର କୌଣସି ଇଶ୍ୱର ଭାବନା ନଥିଲା । କାଳକ୍ରମେ ସେ ସ୍ୱର୍ଗରେ ଦେବତାମାନେ ରହୁଥିବା କଥାକୁ କଳ୍ପନା କଲା । ବ୍ରାହ୍ମଣମାନଙ୍କ କଳ୍ପିତ ଦେବତାମାନେ ମାନବୀୟ ଦୋଷ ଦୁର୍ବଳତା ଠାରୁ ମୁକ୍ତ ନଥିଲେ । ମଣିଷ ପାଖରେ ଥିବା ଭଲମନ୍ଦ ଗୁଣ ସେ ଦେବତାମାନଙ୍କୁ ଆରୋପ କଲା । ସେ ସେମାନଙ୍କୁ ବିଭିନ୍ନ ନାମରେ ନାମିତ କଲା । ସେହି ଦେବା ଦେବୀଙ୍କୁ ଆମ୍ଭେମାନେ ବିଶ୍ୱାସ କରିବାକୁ ସେ ଗୁଡିଏ କାହାଣୀ କଳ୍ପନା କଲା । ଦେବାଦେବୀଙ୍କୁ ସେ ଏପରି କେତେକ ଗୁଣର ଅଧିକାରୀ କଲା, ଯାହା ଲୋକମାନଙ୍କ ମନରେ ଭୟ ସଂଚାର କରାଇବ ।

ଶୈବବାଦୀମାନେ ଦେବତାଙ୍କୁ ରୁଦ୍ର ଓ ଦୁର୍ଗା ଭାବରେ କଳ୍ପନା କଲେ । ୟୁରୋପରେ ଅସଭ୍ୟ ଲୋକମାନେ ଇଶ୍ୱରଙ୍କୁ ପିତା ଓ ମାତା ଭାବରେ କଳ୍ପନା କରୁଥିଲେ । ଠିକ୍ ସେହିଭଳି ଶୈବମାନେ ମାତୃଦେବୀ ଓ ପିତୃଦେବ ଭାବରେ ଦେବାଦେବୀ କଳ୍ପନା କରିଥିଲେ । ଏହି ଦେବାଦେବୀମାନେ ବର୍ଚ୍ଛା, ଖଣ୍ଡା ଭଳି ମାରଣାସ୍ତ୍ରରେ ସଜ୍ଜିତ ହୋଇଥିଲେ । ସେମାନେ ବାଘ, ସିଂହ, ଅରଣାମଇଁଷି, ଷଣ୍ଢ ପରି ହିଂସ୍ର ଜୀବମାନଙ୍କ ଉପରେ ବସି ଭ୍ରମଣ କରୁଥିଲେ । ପ୍ରାଚୀନ ଲୋକମାନେ ଭୟପ୍ରଦର୍ଶନ କରୁଥିବା ଦେବାଦେବୀଙ୍କୁ ପୂଜାଅର୍ଚ୍ଚନା କରୁଥିଲେ ।

ସେ ସମୟରେ ସେମାନେ ଧରିତ୍ରୀର ଦେବୀ ଭାବେ ପାର୍ବତୀଙ୍କୁ, ଜଳର ଦେବଭାବେ ବରୁଣଙ୍କୁ, ବାୟୁର ଦେବତା ଭାବେ ବାୟୁଦେବଙ୍କୁ, ନିଆଁର ଦେବତା ଭାବେ ଅଗ୍ନିଦେବଙ୍କୁ, ଆକାଶର ଦେବୀଭାବେ ଆକାଶବାଣୀଙ୍କୁ କଳ୍ପନା କରିଥିଲେ । ସେହିପରି ସୂର୍ଯ୍ୟକୁ ସୂର୍ଯ୍ୟ ଭଗବାନ ଓ ଚନ୍ଦ୍ରକୁ ଚନ୍ଦ୍ର ଭଗବାନ ବୋଲି ସେମାନେ

Digitized by srujanika@gmail.com

କଳ୍ପନା କରିଥିଲେ । ଏତତ୍‌ବ୍ୟତୀତ ମୃତ୍ୟୁର ଦେବତାଭାବେ ଯମଙ୍କୁ, ସୃଷ୍ଟିର ଦେବତାଭାବେ ବ୍ରହ୍ମାଙ୍କୁ , ଜୀବନର ଦେବତାଭାବେ ବିଷ୍ଣୁଙ୍କୁ, ଧ୍ୱଂସର ଦେବତାଭାବେ ଶିବଙ୍କୁ ଓ ଆହୁରି ଅନେକ ଦେବାଦେବୀଙ୍କୁ କଳ୍ପନା କରିଥିଲେ । ସବୁ ଦେବତାମାନଙ୍କର ରାଜାଭାବେ ସେମାନେ ଇନ୍ଦ୍ରଙ୍କୁ ଗ୍ରହଣ କରିଥିଲେ ।

ସମସ୍ତ ଦେବତାମାନଙ୍କର ପତ୍ନୀ ରହିଥିଲେ ଓ ସମସ୍ତ ଦେବୀମାନଙ୍କର ପତି ଥିଲେ । ତେବେ ଯେତେ ଦେବାଦେବୀଙ୍କର କଳ୍ପନା କରାଯାଇଛି, କେହି ମହାନଗୁଣର ଅଧିକାରୀ ନଥିଲେ । କେତେକଙ୍କର ମଧ୍ୟ ଚାରିତ୍ରିକ ସାଧୁତା ନଥିଲା । ସେହି ଲୋକମାନେ ମଣିଷ ଜନ୍ମଭଳି ଇଶ୍ୱରମାନଙ୍କୁ କଳ୍ପନା କରିଥିଲେ ଏବଂ ସେମାନଙ୍କ ପାଖରେ ମନ୍ଦଗୁଣର ସଂଶ୍ଲିଷ୍ଟ କରାଇଥିଲେ । ଏହି ଇଶ୍ୱରମାନଙ୍କ ପାଖରେ ମନ୍ଦଗୁଣର ସୀମା ନଥିଲା । ଯେଉଁ ସ୍ୱଭାବକୁ ଆମେମାନେ ଖରାପ, ମନ୍ଦ ଅହିତକର ମନେକରେ, ସେହିସବୁ ଗୁଣ ଇଶ୍ୱର ମାନଙ୍କ ପାଖରେ ପ୍ରବଳ ଥିବା ଦେଖାଯାଏ । ଏହିଭଳି ଅନେକ ଦେବତାଙ୍କୁ ସୃଷ୍ଟି କରାଯାଇଛି ଓ ତାଙ୍କୁ ଲୋକମାନେ ଯୁଗ ଯୁଗ ଧରି ପୂଜା କରୁଛନ୍ତି । ଏବେବି ଲୋକମାନଙ୍କ ପାଖରେ ବିଶ୍ୱାସ ଅଛି ଯେ ଯିଏ ଏହି ଇଶ୍ୱରମାନଙ୍କୁ ପୂଜା କରିବ, ସିଏ ତାଙ୍କର ଆଶୀର୍ବାଦ ପାଇବ ।

ତେବେ ଇଶ୍ୱର କଣ? ଇଶ୍ୱରଙ୍କର କେଉଁ ଗୁଣ ମହାନ, ଏବେବି ଲୋକମାନେ ଏହା ବୁଝିବାରେ ଅସମର୍ଥ । ବହୁ ଖରାପ ଗୁଣର ଓ ମନ୍ଦସ୍ୱଭାବର ଅଧିକାରୀ ହୋଇଥିବା ଇଶ୍ୱରମାନଙ୍କୁ ଲୋକମାନେ ପୂଜା କରୁଛନ୍ତି । ଇଶ୍ୱରମାନଙ୍କ ପାଖରେ ବହୁ ମହତ ଗୁଣ ରହିଛି ବୋଲି ଆମେମାନେ ଶୁଣିଥାଏ । ତେବେ ବାସ୍ତବ ଜୀବନରେ ଆମେ ଏହିଗୁଣର ପରିଚୟ ପାଏନାହିଁ । ମୋଟ ଉପରେ ଏହି ଇଶ୍ୱରୀୟ ଅବଧାରଣା ଦ୍ୱାରା ମଣିଷ ନିର୍ବୋଧ ହୋଇଯାଇଛି । ଲୋକମାନଙ୍କର ଅଜ୍ଞତାକୁ ପ୍ରକାଶ କରିବା ପାଇଁ କେହି କାହିଁକି ଆଗକୁ ଆସୁନାହିଁ ମୁଁ ତାହା ବୁଝିପାରୁ ନାହିଁ । ଏପରିକି ଶିକ୍ଷିତ ବୁଦ୍ଧିଜୀବୀ ମଧ୍ୟ ଏପ୍ରତି ଉଦାସୀନ । ଯଦି ପୃଥିବୀରେ ପ୍ରଥମ ଦାର୍ଶନିକ ଭାବରେ କାହାର ଆବିର୍ଭାବ ହୋଇଥିଲା , ସେ ହେଉଚନ୍ତି ବୁଦ୍ଧ । ତାହାହିଁ ଆମକୁ ଇତିହାସ କହିଥାଏ । ତାଙ୍କ ପରେ ପାଶ୍ଚାତ୍ୟ ଭୂଖଣ୍ଡରେ ଆଉଜଣେ ଦାର୍ଶନିକ

Digitized by srujanika@gmail.com

ସକ୍ରେଟିସଙ୍କର ଆବିର୍ଭାବ ହୋଇଥିଲା । ସମ୍ଭବତଃ ସେମାନଙ୍କ ଦାର୍ଶନିକ ସିଦ୍ଧାନ୍ତକୁ ଠିକ୍ ଭାବରେ ଅବବୋଧ କରାଯାଇ ନାହିଁ ।

ସ୍ତୁତି ଗୁଡ଼ିଏ ଆଧାରହୀନ ଅଯୌକ୍ତିକ ଭାବନାର ପ୍ରସାର ହେଉଛି । ଶାସନକଳ ଓ ଏପରିକି ରାଷ୍ଟ୍ର ବ୍ରାହ୍ମଣମାନଙ୍କର ଅଧସ୍ତନ ହେଉଛି । ବ୍ରାହ୍ମଣମାନେ ନିଜର ଜନ୍ମଗତ ପରିଚୟ ନେଇ, ନିଜର ବଡପଣିଆ ଦେଖାଉଛନ୍ତି । ସେମାନେହିଁ ଏଥିପାଇଁ କେତେ ଦେବା ଦେବୀଙ୍କୁ ଜାବୁଡ଼ି ଧରିଛନ୍ତି । ନିଜର ମହନୀୟତା ଓ ଜୀବନର ଗୁଣାତ୍ମକମାନ ପ୍ରଦର୍ଶନ କରିବାରେ ସେମାନେ ନିଜର ଶ୍ରେଷ୍ଠତ୍ୱ ଦେଖାଇବାକୁ ବ୍ୟସ୍ତ ନୁହନ୍ତି । ବରଂ ନିଜ ସାମାଜିକ ପରିଚୟକୁ ନେଇ ନିଜର ଶ୍ରେଷ୍ଠତ୍ୱକୁ ପ୍ରତିଷ୍ଠା କରିବା ପାଇଁ କେବଳ ଆଗ୍ରହ ଦେଖାଇ ଆସୁଛନ୍ତି ।

ଯେଉଁମାନେ ଈଶ୍ୱରଙ୍କୁ ମହତ୍ତର ଗୁଣରେ ଭୂଷିତ କରିଥାନ୍ତି, ଈଶ୍ୱର କିପରି ସର୍ବୋତ୍ତମ, ତାହା ସେମାନେ କୌଣସି ଭାବେ ପ୍ରମାଣ କରନ୍ତି ନାହିଁ ।

ପ୍ରତ୍ୟେକ ଧର୍ମରେ ଈଶ୍ୱର, ସ୍ୱର୍ଗ, ନରକ, ଦୈବୀଶକ୍ତି, ଅବତାର, ଧର୍ମଗୁରୁ, ଧର୍ମପ୍ରତୀକ ଇତ୍ୟାଦି ରହିଥାଏ । ଏସବୁ ବ୍ୟତୀତ କୌଣସି ଧର୍ମର ପରିକଳ୍ପନା ସମ୍ଭବ ନୁହେଁ । ଏପରିକି ଏଗୁଡ଼ିକ ହିନ୍ଦୁଧର୍ମ ପୃଷ୍ଠଭୂମିରେ ଯଥେଷ୍ଟ ନୁହେଁ । ହିନ୍ଦୁଧର୍ମରେ ବହୁ ଈଶ୍ୱର, ନାନା ସ୍ୱର୍ଗ, ବିଭିନ୍ନ ନରକ, ବିଭିନ୍ନ ଜନ୍ମାନ୍ତର ବାଦ, ଦୁଃଖ ଯନ୍ତ୍ରଣା, ବହୁଗୁରୁ, ପୂଜାପୀଠ ଇତ୍ୟାଦି ନାନା ଭାବନା ରହିଛି । ଯେଉଁ ଭକ୍ତ ଈଶ୍ୱରଙ୍କୁ ପାର୍ଥନା କରି ମୁକ୍ତିଲାଭ କରିଛନ୍ତି, ସେମାନେ ମଧ୍ୟ ହିନ୍ଦୁ ଧର୍ମର ପ୍ରସାର ପାଇଁ ଦରକାରୀ ମନେ ହୁଅନ୍ତି । ବୈଷ୍ଣବବାଦ ଓ ଶୈବବାଦ ଯାହା ହିନ୍ଦୁଧର୍ମର ଦୁଇଟି ଦିଗ, ସେଥିରେ ଏହି ପ୍ରକାର ଭାବନାର ଅବତାରଣା ରହିଛି । ହୁଏତ ସେମାନଙ୍କ କ୍ଷେତ୍ରରେ ନାମରେ ପାର୍ଥକ୍ୟ ରହିଛି । ତେବେ କାର୍ଯ୍ୟ ପ୍ରଣାଳୀ ଦୃଷ୍ଟିରୁ ଦେଖିଲେ ସେମାନଙ୍କ ମଧ୍ୟରେ ପ୍ରାୟତଃ ସମତା ରହିଛି । ମନେହୁଏ ସତେ ଯେପରି ଗୋଟିଏ ଅନ୍ୟକୁ ଅନୁକରଣ କରିଛି ।

ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇପାରେ ଯେ କନ୍ଦ ପୁରାଣରେ ଶୈବବାଦ ବିଷୟରେ ଯାହା କୁହାଯାଇଛି, ତାହା ବୈଷ୍ଣବବାଦର ରାମାୟଣ ପ୍ରସଙ୍ଗସହ ସମାନ ।

Digitized by srujanika@gmail.com

ଭଗବାନ ବିଷ୍ଣୁ ଓ ଲକ୍ଷ୍ମୀଙ୍କ ସହବାସ ସ-ର୍କ ରାମାୟଣର କାରଣ ଅଟେ। ଶିବ ଓ ପାର୍ବତୀଙ୍କ ସ-ର୍କର କାରଣ ହିଁ କନ୍ଧ ପୁରାଣର ଆଧାର ଅଟେ। ଏହାକୁ ବ୍ୟାଖ୍ୟା କରାଯାଉ।

କାହାଣୀ ଅନୁଯାୟୀ ବିଷ୍ଣୁ ଓ ଲକ୍ଷ୍ମୀଙ୍କୁ ସାକ୍ଷାତ କରିବାକୁ ଋଷିମାନେ ଆସିଲେ। ଏହା ଦିନ ସମୟ ଥିଲା। ସେ ସମୟରେ ବିଷ୍ଣୁ ଓ ତାଙ୍କର ପତ୍ନୀ ଲକ୍ଷ୍ମୀ ଶୟନ କକ୍ଷରେ ରହିଥିଲେ। ଦ୍ୱାରପାଳ ବିଷ୍ଣୁ ଓ ଲକ୍ଷ୍ମୀ ଶୟନ କକ୍ଷରେ ଥିବାରୁ ଋଷିମାନଙ୍କୁ ସେଠାକୁ ଯିବାକୁ ବାରଣ କଲେ। ଋଷିମାନେ ଏଥିରେ କ୍ରୋଧାନ୍ୱିତ ହୋଇ ଦ୍ୱାରପାଳଙ୍କୁ ଅଭିଶାପ ଦେଲେ। ସେମାନଙ୍କୁ ସେହି ଅଭିଶାପରୁ ମୁକ୍ତ କରିବାକୁ ରାମାୟଣର ଉତ୍ପତ୍ତି ହେଲା।

ଅନ୍ୟ କାହାଣୀଟି ଅନୁଯାୟୀ ଶିବ ତାଙ୍କ ପତ୍ନୀ ପାର୍ବତୀଙ୍କ ସହ ଶହେ ବର୍ଷରୁ ଅଧିକ ସମୟ ଧରି ସହବାସରେ ଲିପ୍ତ ଥିଲେ। ଇନ୍ଦ୍ର ଲୋକର ଦେବତାମାନେ ଏଥିପାଇଁ ବହୁ ଚିନ୍ତିତ ହେଲେ। ସେମାନେ ଭାବିଲେ ଯେ ଶିବଙ୍କର ଶୁକ୍ର ପାର୍ବତୀଙ୍କ ଶରୀରରେ ଅନେକ ଅନିଷ୍ଟ ସାଧନ କରିବ। ସୁତରାଂ ଶିବ ଓ ପାର୍ବତୀଙ୍କ ସହବାସରୁ ସେମାନଙ୍କୁ ପୃଥକ୍ କରିବା ପାଇଁ ଦେବତାମାନେ ସେମାନଙ୍କର କର୍ତ୍ତବ୍ୟ ବୋଲି ଗମ୍ଭୀରତାର ସହ ଚିନ୍ତା କଲେ। ତାଙ୍କର ଉଦ୍ୟମରେ ସେମାନେ ମଧ୍ୟ ସଫଳ ହେଲେ। କିନ୍ତୁ ଶିବଙ୍କ ଶରୀରରୁ ନିର୍ଗତ ହୋଇଥିବା ଶୁକ୍ର ଅନେକ ବିକୃତ ରୂପଧାରୀ ବ୍ୟକ୍ତିଙ୍କୁ ଜନ୍ମ ଦେବା ସହ ଶେଷରେ ଜଣେ ଦେବତାଙ୍କର ଜନ୍ମ ହେଲା- ସେ ଶିବପୁତ୍ର ମୁରୁଗାନ୍ ନାମକ ଏକ ସନ୍ତାନ ସୃଷ୍ଟି କଲା। କେତେକ ଲୋକଙ୍କ ମତରେ ମୁରୁଗାନ୍ଙ୍କର ଜନ୍ମ ରାକ୍ଷସମାନଙ୍କର ସଂହାର ପାଇଁ ଉଦ୍ଦିଷ୍ଟ ଥିଲା।

ରାମଙ୍କର ଜନ୍ମପାଇଁ ଦେବତାମାନେ ମହାବିଷ୍ଣୁଙ୍କୁ ପ୍ରାର୍ଥନା କରିଥିଲେ।

ମୁରୁଗାଙ୍କର ଜନ୍ମ ପାଇଁ ଦେବତାମାନେ ପରମ ଶିବଙ୍କୁ ପ୍ରାର୍ଥନା କରିଥିଲେ।

ରାମ ରାକ୍ଷସମାନଙ୍କୁ ବଧକଲେ, ମୁରୁଗା ଅସୁରମାନଙ୍କୁ ନିଧନ କଲେ।

ରାମ ଯେତେବେଳେ ରାକ୍ଷସ ମାନଙ୍କୁ ନିହତ କରୁଥିଲେ, ସେତେବେଳେ ହଠାତ୍ ରାକ୍ଷସମାନଙ୍କର ସଂଖ୍ୟା ବଢିବାରେ ଲାଗିଲା। ସେହିପରି ଯେତେବେଳେ

Digitized by srujanika@gmail.com

ମୁରୁଗା ଅସୁର ମାନଙ୍କୁ ନିହତ କରୁଥିଲେ ସେମାନଙ୍କର ସଂଖ୍ୟା ମଧ୍ୟ ବଢି ବଢି ଚାଲିଲା ।

ରାମଙ୍କର ପତ୍ନୀ ସୀତା ଅନ୍ୟ ଦ୍ୱାରା ଲାଳିତ ହୋଇଥି ଲେ । ସେହିପରି ମୁରୁଗାଙ୍କର ପତ୍ନୀ ଭାଲିଦେବୀ ଅନ୍ୟଦ୍ୱାରା ଲାଳିତ ପାଳିତ ହୋଇଥିଲେ ।

ବୈଷ୍ଣବବାଦ ଓ ଶୈବବାଦ ମଧ୍ୟରେ ଅନେକ ସାମଞ୍ଜସ୍ୟ ଦେଖିବାକୁ ମିଳେ । ଏହି କାହାଣୀ ଗୁଡିକ ମଧ୍ୟରେ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ବୈଷ୍ଣବ ବାଦର ଆଚାର୍ଯ୍ୟମାନଙ୍କ ମଧ୍ୟରେ ଓ ଶୈବବାଦର ନୟନମାର ମଧ୍ୟରେ ସେପରି କୌଣସି ଗୁରୁତ୍ୱ ପୂର୍ଣ୍ଣ ପ୍ରଭେଦ ନାହିଁ । ସେମାନଙ୍କର ଜୀବନଧାରା ଓ ମୋକ୍ଷ ପ୍ରାପ୍ତି ର କାହାଣୀ ପ୍ରାୟତଃ ସମାନ ମନେହୁଏ ।

ବୈଷ୍ଣବବାଦର ପୁରାଣ ଭକ୍ତଲୀଳା ଓ ଶୈବବାଦର ଗ୍ରନ୍ଥ ପେରିୟ୍ ପୁରାଣ ମଧ୍ୟରେ ବହୁ ସାମଞ୍ଜସ୍ୟ ଦେଖିବାକୁ ମିଳେ । ବୈଷ୍ଣବ ପୁରାଣରେ ଗୋଟିଏ କୁମ୍ଭାର ଚରିତ୍ର ବିଷୟରେ ବର୍ଣ୍ଣନା ଦେଖିବାକୁ ମିଳେ, ଠିକ୍ ସେହିପରି ଶୈବ ପୁରାଣରେ ମଧ୍ୟ ଜଣେ କୁମ୍ଭାରଙ୍କ ବିଷୟରେ ଉଲ୍ଲେଖ ଥିବା ଦେଖାଯାଏ । ବୈଷ୍ଣବ ପୁରାଣର କୁମ୍ଭାରଙ୍କ ନାମ ଗୋରାକୁମ୍ଭ । ଶୈବପୁରାଣର କୁମ୍ଭାରଙ୍କ ନାମ ନୀଳକଣ୍ଠ । ସେମାନଙ୍କ କାହାଣୀ ପ୍ରାୟତଃ ଏକା ପ୍ରକାରର । ଗୋରାକୁମ୍ଭ ଓ ତାଙ୍କ ପତ୍ନୀଙ୍କ ମଧ୍ୟରେ ସୁସ-ର୍କ ନଥିଲା । ସେହିପରି ନୀଳକଣ୍ଠଙ୍କର ତାଙ୍କ ପତ୍ନୀଙ୍କ ସହିତ ମଧ୍ୟ ଭଲ ପଡୁନଥିଲା । ମହାବିଷ୍ଣୁ ଗୋରାକୁମ୍ଭ ଓ ତାଙ୍କ ପତ୍ନୀଙ୍କ ଭିତରେ ସୁସ-ର୍କ ସୃଷ୍ଟି କରିଥିଲେ । ସେହିପରି ପରମ ଶିବ ନୀଳକଣ୍ଠ ଓ ତାଙ୍କ ପତ୍ନୀଙ୍କ ଭିତରେ ସୁସ-ର୍କ ଆଣିଥିଲେ ।

ବୈଷ୍ଣବ ପୁରାଣରେ ଶୋକମେଳା ଅସ୍ପୃଶ୍ୟଙ୍କ ବିଷୟରେ ଏକ କାହାଣୀ ରହିଛି । ସେହିପରି ଶୈବ ପୁରାଣରେ ନନ୍ଦନ ନାମକ ଜଣେ ଅସ୍ପୃଶ୍ୟଙ୍କର ବିଷୟରେ ଗପଟିଏ ଅଛି । ଶୋକମେଳାଙ୍କୁ ବିଷ୍ଣୁ ସ୍ୱପ୍ନରେ ଦେଖାଦେଇଥିଲେ । ସେହିଭଳି ନନ୍ଦନଙ୍କର ସ୍ୱପ୍ନରେ ଶିବ ଆବିର୍ଭାବ ହୋଇଥିଲେ । ଶୋକମେଳା ଅସ୍ପୃଶ୍ୟ ହୋଇ ବିଷ୍ଣୁଙ୍କ ଦର୍ଶନ ଲାଭ କରିଥିଲେ । ସେହିପରି ନନ୍ଦନ ଶିବଙ୍କର ଦର୍ଶନ ପାଇଥିଲେ ।

Digitized by srujanika@gmail.com

ଏଠାରେ ଗୋଟିଏ କଥା ଲକ୍ଷ୍ୟ କରାଯାଏ। ଶୈବପୁରାଣ ହେଉ ବା ବୈଷ୍ଣବ ପୁରାଣ ହେଉ ପ୍ରତ୍ୟେକଟିରେ ବ୍ରାହ୍ମଣମାନଙ୍କ ସ୍ଥାନକୁ ଅତି ଉଚ୍ଚରେ ରଖାଯାଇଥିବା ବେଳେ, ଅନ୍ୟମାନଙ୍କୁ ନ୍ୟୂନ କରାଯାଇଛି, ଉଭୟ ପୁରାଣରେ ଜାତିପ୍ରଥାକୁ ସୁଦୃଢ ଭିତ୍ତି ଦିଆଯାଇଛି।

ଏହି କାହାଣୀ ଗୁଡିକ ବିଷୟରେ ଯଦି ଚର୍ଚ୍ଚା ଓ ଗବେଷଣା କରାଯାଏ ତେବେ କିଏ କାହାକୁ ଅନୁକରଣ କରିଛି ତାହା ଜଣାପଡିପାରେ। ତେବେ ଏହି ଗବେଷଣାକୁ ମୁଁ କୌଣସି ମହତ୍ତ୍ୱ ପ୍ରଦାନ କରୁନାହିଁ। ଶୈବବାଦ ଦକ୍ଷିଣ ଭାରତରେ ଅଧିକ ପ୍ରଚାରିତ। ଏହା ଉତ୍ତର ଭାରତରେ ଏତେ ଜନପ୍ରିୟ ନୁହେଁ। ସେହିପରି ଉତ୍ତରଭାରତରେ ବୈଷ୍ଣବବାଦ ଅଧିକ ପ୍ରଚାରିତ ଓ ମହତ୍ତ୍ୱପୂର୍ଣ୍ଣ । ଉତ୍ତର ଭାରତରେ ନିଜକୁ ବୈଷ୍ଣବ କହୁଥିବା ବ୍ୟକ୍ତିମାନେ ନିରାମିଷାଶୀ ଭାବେ ପରିଗଣିତ ହୋଇଥାନ୍ତି।

ଉଭୟ ସ-ଦାୟର ପୁରାଣମାନଙ୍କର କାହାଣୀମାନଙ୍କ ଭିତରେ ଭକ୍ତ ଓ ଦେବତାଙ୍କର ବିଷୟରେ ସମାନ କଥା କୁହାଯାଇଛି। ଏହାର କାରଣ ହେଉଛି, ଏକ ବିଶ୍ୱାସକୁ ଅନ୍ୟ ଏକ ବିଶ୍ୱାସ ଅନୁକରଣ କରିଛି। ଅନ୍ୟ ଗୋଟିଏ ସମ୍ଭାବନା ହେବ ବୈଷ୍ଣବବାଦୀ ଓ ଶୈବବାଦୀମାନେ ପରସ୍ପରକୁ ସାକ୍ଷାତ କରି ନିଜ ନିଜର କାହାଣୀମାନଙ୍କୁ ଷଡଯନ୍ତ୍ର ମୂଳକ ଭାବେ ସୃଷ୍ଟି କରିଛନ୍ତି।

ଆମ ସଂସାରରେ ଗୁଳ୍ମଠାରୁ ଆରମ୍ଭ କରି ମଣିଷ ପର୍ଯ୍ୟନ୍ତ ଅନେକ ଜୀବିତ ସତ୍ତା ରହିଛନ୍ତି। ବୃକ୍ଷ, କୀଟପତଙ୍ଗ, ପଶୁପକ୍ଷୀ ଓ ମଣିଷ ହେଲେ ଜୀବିତପ୍ରାଣୀ। ମଣିଷ ପରି ସବୁପ୍ରାଣୀମାନେ ଜନ୍ମହୁଅନ୍ତି, ଖାଦ୍ୟଗ୍ରହଣ କରନ୍ତି, ବୃଦ୍ଧି ହୁଅନ୍ତି, ବଂଶ ବିସ୍ତାର କରନ୍ତି ଓ ଶେଷରେ ମୃତ୍ୟୁ ବରଣ କରନ୍ତି। ତେବେ ମଣିଷମାନେ ହିଁ କେବଳ ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି।

ଜନ୍ମ, ଜୀବନ, ମୃତ୍ୟୁ କ୍ଷେତ୍ରରେ ମଣିଷ ଓ ଅନ୍ୟ ଜୀବିତ ପ୍ରାଣୀ ଭିତରେ କୌଣସି ପ୍ରଭେଦ ନାହିଁ। ଯେଉଁମାନେ ଜୀବିତ ପ୍ରାଣୀମାନଙ୍କର ଉତ୍ପତ୍ତି ସ-ର୍କରେ ଗବେଷଣା କରିଛନ୍ତି, ସେମାନଙ୍କ ମତରେ ଜୀବିତ ପ୍ରାଣୀମାନଙ୍କ ମଧ୍ୟରେ ବିଶେଷ ପ୍ରଭେଦ ନାହିଁ। ଜୀବିତ ପ୍ରାଣୀମାନଙ୍କ ମଧ୍ୟରେ କେବଳ ମଣିଷମାନଙ୍କ ମଧ୍ୟରେ ବିଚାରଶୀଳତା ଓ ପ୍ରଜ୍ଞା ରହିଛି। ମଣିଷ ପାଖରେ ରହିଥିବା ବୁଦ୍ଧି, ଜ୍ଞାନ ପରବର୍ତ୍ତୀ

Digitized by srujanika@gmail.com

କାଳରେ ମଣିଷର ମାନସିକତାକୁ ପ୍ରଭାବିତ କରିଛି । ମଣିଷର ଆବଶ୍ୟକତା ଓ କାମନା ଯେତିକି ବଢିଛି, ତାହା କାଳକ୍ରମେ ଅନେକ ଦୁଃଖ କଷ୍ଟ ସୃଷ୍ଟି କରିଛି । ମଣିଷର କାମନା ଓ ଅଜ୍ଞତାର ପରିବେଶରୁ ମଣିଷ ଇଶ୍ୱରଙ୍କ ପାଖରେ ନିଜକୁ ନ୍ୟୂନ କରିଛି । ଇଶ୍ୱରଙ୍କ ଉପରେ ବିଶ୍ୱାସ ରଖିଥିବା କାରଣ ମଣିଷ ସମାଜରେ ଜ୍ଞାନର ବିକାଶ ଦିଗରେ ପ୍ରତିବନ୍ଧକ ହୋଇଛି । ଏହା ମଣିଷ ସମାଜକୁ ବିଚାରହୀନ ଓ ଅହେତୁକ କରିବାସହ ସମାଜରେ ଅନେକ ଦୁଃଖ ଦୁର୍ଦ୍ଦଶାର କାରଣ ହୋଇଛି ।

ଯଦି ଇଶ୍ୱର ଭାବନା ମଣିଷ ସମାଜରେ ଏପରି ପ୍ରସାରିତ ହୋଇନଥାନ୍ତା, ତେବେ ମଣିଷର ସ୍ଥିତି ସମୟର ବ୍ୟବଧାନ ଭିତରେ ଅତ୍ୟନ୍ତ ପ୍ରଗତିଶୀଳ ହୋଇପାରିଥାନ୍ତା ।

ମଣିଷ ସମାଜ ନାନା ଉଦ୍‌ବେଗ, ପ୍ରତିବନ୍ଧକ ଓ ଦୁଃଖରୁ ମୁକ୍ତ ହୋଇ ପାରିବ । ସ-ତି ଏପରି କୌଣସି ବ୍ୟକ୍ତିକୁ ଆପଣ ଦେଖିବେ ନାହିଁ ଯାହାର କୌଣସି ଉଦ୍‌ବେଗ ବା ଦୁଃଖ ନାହିଁ । ପ୍ରତ୍ୟେକ ବ୍ୟକ୍ତି ନାନା ଉଦ୍‌ବେଗ ଭିତରେ ଥିବା ଦେଖାଯାଏ । ଯେଉଁମାନେ ନିରୀଶ୍ୱରବାଦୀ, ଅର୍ଥାତ୍ ଯେଉଁମାନେ କୌଣସି ଇଶ୍ୱରଙ୍କୁ ବିଶ୍ୱାସ କରିପାରନ୍ତି ନାହିଁ ସେମାନଙ୍କ ପାଇଁ ସବୁକିଛି ପ୍ରାକୃତିକ । ଯଦି ଇଶ୍ୱରଙ୍କୁ ଏକ କାଳ୍ପନିକ କାହାଣୀ ବା ମିଥ୍ୟା ଭାବରେ ନିଆଯାଏ, ତେବେ ମଣିଷ ଦୁଃଖ, ପ୍ରତିବନ୍ଧକ ପରିସ୍ଥିତିରେ ଉଦ୍‌ବେଗ ପ୍ରକାଶ କରିବ ନାହିଁ । କାରଣ ସେ ଭାବିବ ଯେ, ମଣିଷ ହିଁ ତାର ପରସ୍ଥିତିର ମୁକାବିଲା କରିପାରିବ । ତେବେ ଏହି ପ୍ରକାରର ଏକ ଦୃଷ୍ଟିଭଙ୍ଗୀ ସୃଷ୍ଟିକରିବା ସହଜ ନୁହେଁ । ତାଦ୍ୱାରା ମଣିଷ ବିଚାରଶୀଳ ଓ ପ୍ରାଜ୍ଞ ହୋଇପାରିବ । ସେ ତାର ଦୁଃଖ ଓ ଉଦ୍‌ବିଗ୍ନ ଭାବକୁ ସଂପୂର୍ଣ୍ଣ ପରିହାର କରିପାରିବ । ତେବେ ସାମାଜିକ ପରିବେଶ ଯୋଗୁଁ ତା ପାଖରେ କିଛି ଭୟ ରହିପାରେ ।

ମୋକ୍ଷର ବାସ୍ତବ ତାତ୍ପର୍ଯ୍ୟ ହେଉଛି ସମସ୍ତ ଉତ୍‌କଣ୍ଠା ଓ ଦୁଃଖ କଷ୍ଟରୁ ମୁକ୍ତ ହେବା । ଯେଉଁମାନେ ସକଳ ଉତ୍‌କଣ୍ଠାକୁ ପରିହାର କରିଛନ୍ତି, ସେମାନେ କୌଣସି ଇଶ୍ୱର ଉପରେ ବିଶ୍ୱାସ ପୋଷଣ କରିବେ ନାହିଁ । ମଣିଷ ଯେତେ ଅଧିକ ଇଶ୍ୱରଙ୍କ ଉପରେ ଆସ୍ଥା ସ୍ଥାପନ କରିବ, ସେ ସେତିକି ସମସ୍ୟା ଭିତରକୁ ପ୍ରବେଶ କରିବ । ତାର କାମନା ଓ ଇଚ୍ଛାର ଶେଷ ହେବ ନାହିଁ ।

Digitized by srujanika@gmail.com

ଲୋକମାନେ କାହିଁକି ଆଜିକାଲି ଇଶ୍ୱରଙ୍କୁ ପୂଜା କରୁଛନ୍ତି ? ବ୍ୟକ୍ତିଗତ ସମସ୍ୟା ଯୋଗୁଁ ଅନେକ ଇଶ୍ୱରଙ୍କୁ ବିଶ୍ୱାସ କରନ୍ତି, ଜଣେ ବୁଦ୍ଧିମାନ ହେଉ ବା ନହେଉ ସେ ଇଶ୍ୱରଙ୍କ ଠାରୁ କିଛି ପାଇବାକୁ ଆଶା କରିଥାଏ । ଏହି ଆଶା ନେଇ ସେ ଇଶ୍ୱରଙ୍କ ପାଖରେ ତାର ବିଶ୍ୱାସକୁ ଦୃଢରଖେ ।

ଏପରିକି ଯେଉଁମାନେ ସବୁକିଛି ପରିତ୍ୟାଗ କରିଛନ୍ତି, ସେମାନେ ମଧ୍ୟ ସ୍ୱର୍ଗପ୍ରାପ୍ତି ପାଇଁ କାମନା ପୋଷଣ କରନ୍ତି । ନିଜର ପଛକରେ.ଆଉ ଗୋଟିଏ ଚକ୍ଷୁ ରହିବା କାମନାଭଳି ଏହି ବ୍ୟକ୍ତିମାନେ କାମନା କରନ୍ତି ।

ନିଜର କୌଣସି ଆବଶ୍ୟକତା ପୂରଣ ପାଇଁ ଲୋକମାନେ ଭକ୍ତି, ପାର୍ଥନା, ବିଶ୍ୱାସ, ପୂଜା ଆରାଧନା ଇତ୍ୟାଦି ଧାର୍ମିକ କର୍ମକାଣ୍ଡ ପାଳନ କରନ୍ତି । ଯଦି ବ୍ୟକ୍ତିର କୌଣସି କାମନା ବା ଇଚ୍ଛା ରହିବ ନାହିଁ, ତେବେ ଇଶ୍ୱରଙ୍କର କିଛି ଆବଶ୍ୟକତା ପଡିବ ନାହିଁ । କୌତୂହଳର ବିଷୟ ଯେଉଁମାନେ ନାନା ଭୁଲ୍, ଅନ୍ୟାୟ ବେଆଇନ୍ କାର୍ଯ୍ୟ କରନ୍ତି, ସେମାନଙ୍କ ପାଖରେ ଇଶ୍ୱର ବିଶ୍ୱାସ ଅତ୍ୟନ୍ତ ଦୃଢଥିବା ଦେଖାଯାଏ । ସମାଜର ଶୋଷଣକାରୀ, ଦୁର୍ନୀତିଗ୍ରସ୍ତ ଓ ଅର୍ଥ ଲିପ୍ସୁ ବ୍ୟକ୍ତିମାନେ ଇଶ୍ୱରଙ୍କୁ ପ୍ରାର୍ଥନା କରିବା ସହ ବହୁ ଜାକଜକମରେ ପୂଜା ପାର୍ବଣ କରିଥାନ୍ତି ।

ଦଶଥରରୁ ଅଧିକଥର ମୁଁ ବନ୍ଦୀଜୀବନ ବିତାଇଛି । ଅନୁଭୂତିରୁ ଦେଖିଛି ଯେ ନରହତ୍ୟା କରିଥିବା ଅପରାଧୀ ହୁଅନ୍ତୁ ବା ସାଧାରଣ ବନ୍ଦୀ ହୁଅନ୍ତୁ ସେମାନଙ୍କର କୋଠରି ଭିତରେ ସେମାନେ ଇଶ୍ୱରଙ୍କର କୌଣସି ଛବି ରଖିଥାନ୍ତି । କେତେକ ମଧ୍ୟ ଧର୍ମ ପୁସ୍ତକ ରଖି ତାକୁ ପଢନ୍ତି । ରାଜମହିନ୍ଦ୍ରି ଜେଲରେ ଥିବାବେଳେ ମୁଁ ଜଣେ ହତ୍ୟାକାରୀଙ୍କ ସ-ର୍କରେ ଆସିଲି, ଯେ ପ୍ରତିଦିନ ସକାଳେ ସ୍ନାନକରି ଅଧଘଣ୍ଟାଏ ପ୍ରାର୍ଥନା କରନ୍ତି । ସେ ଗୋଟିଏ ଗୋଡରେ ଛିଡା ହୋଇ କିଛି କଥା ଉଚ୍ଚାରଣ କରନ୍ତି । ସେ ଜଣେ ଶିକ୍ଷିତ ଓ ଧନୀ ବ୍ୟକ୍ତି ଥିଲେ । ମୁଁ ଯେତେବେଳେ ଏସବୁ ସେ କାହିଁକି କରୁଛନ୍ତି ବୋଲି ପଚାରିଲି, ସେ କହିଲେ ଯେ ସେ ଶୀଘ୍ର ଜେଲରୁ ମୁକ୍ତ ହେବାପାଇଁ ପ୍ରାର୍ଥନା କରୁଛନ୍ତି ।

ବୈଷ୍ଣବ, ଶୈବ, ମୁସଲମାନ, ଖ୍ରୀଷ୍ଟିଆନ ମାନଙ୍କ ମଧ୍ୟରେ ଆପଣ କେତେକ ଦୁର୍ନୀତି ଗ୍ରସ୍ତ ବ୍ୟକ୍ତିଙ୍କୁ ପାଇବେ, ଯେଉଁମାନେ ପ୍ରତ୍ୟହ ପୂଜାପ୍ରାର୍ଥନା

Digitized by srujanika@gmail.com

କରନ୍ତି । ସେମାନେ ଈଶ୍ୱରଙ୍କୁ କେବେ ବି ଭୁଲନ୍ତି ନାହିଁ। ବ୍ୟବସାୟୀ ମାନଙ୍କର ପୂଜା ପ୍ରାର୍ଥନା ବିଷୟରେ କିଛି କହିବା ଆବଶ୍ୟକ ନାହିଁ । ସେମାନେ ବଡ ଆଡମ୍ବରରେ ପ୍ରାର୍ଥନା କରନ୍ତି, କିନ୍ତୁ କେତେ ଲୋକ ସାଧୁତା ରକ୍ଷାକରନ୍ତି?

ମଣିଷର କାମନା ଓ ପୂରଣ ହୋଇ ପାରୁନଥିବା ଇଚ୍ଛା ଯୋଗୁଁ ହିଁ ମଣିଷ ଈଶ୍ୱରଙ୍କୁ ବିଶ୍ୱାସ କରେ। ତେବେ ଈଶ୍ୱର ବିଶ୍ୱାସ ଦ୍ୱାରା ଅନ୍ୟର କିଛି ଉପକାର ହୋଇନଥାଏ।

## ପ୍ରଶ୍ନୋତ୍ତର -

ପ୍ରଶ୍ନ- ଈଶ୍ୱରଙ୍କ ସଂପର୍କରେ ଲୋକମାନଙ୍କ ମଧ୍ୟରେ କଣ ସାଧାରଣ ଭାବନା ରହିଛି?

ଉତ୍ତର- ଅଧିକାଂଶ ଲୋକ ଈଶ୍ୱର ଯେ ସବୁ କିଛି ସୃଷ୍ଟି କରିଛନ୍ତି ଏହା ବିଶ୍ୱାସ କରନ୍ତି।

ପ୍ରଶ୍ନ- ତାପରେ ?

ଉତ୍ତର- ଈଶ୍ୱର ସବୁ ଦେଖୁଛନ୍ତି, ସବୁ ଜାଣୁଛନ୍ତି ଓ ସବୁଠି ଅଛନ୍ତି ଏହା ମଧ୍ୟ ସେମାନେ ବିଶ୍ୱାସ କରନ୍ତି।

ପ୍ର- ଈଶ୍ୱରଙ୍କ କାର୍ଯ୍ୟ ସମ୍ବନ୍ଧରେ ଲୋକମାନେ କ'ଣ ଭାବନ୍ତି?

ଉ- ଈଶ୍ୱର ନ୍ୟାୟବାନ ଓ ପବିତ୍ର ବୋଲି ଲୋକମାନେ କହନ୍ତି।

ପ୍ର- ଏହା ବ୍ୟତୀତ ଆଉ କଣ କହନ୍ତି ?

ଉ- ସେମାନେ କହନ୍ତି ଈଶ୍ୱର କରୁଣାମୟ।

ପ୍ର- ଈଶ୍ୱର ସର୍ବଦା କରୁଣାମୟ ବୋଲି ଲୋକମାନେ ଭାବନ୍ତି କି?

ଉ- ନା। ସମାଜରେ ଜ୍ଞାନ ଓ ଶୃଙ୍ଖଳାର ବୃଦ୍ଧି ଯୋଗୁଁ ସେମାନେ ଈଶ୍ୱର କରୁଣାମୟ ବୋଲି ଭାବିଛନ୍ତି।

ପ୍ର - ଦୟାକରି ଏହାକୁ ଟିକିଏ ବ୍ୟାଖ୍ୟା କରିବେ କି?

ଉ- ଅସଭ୍ୟ ଲୋକମାନଙ୍କର ଈଶ୍ୱର ଚୋର୍ ଥିଲେ। ଆରବୀୟ ମାନଙ୍କ ପାଇଁ ଈଶ୍ୱର ଥିଲେ ଜଣେ ଏକଛତ୍ରବାଦୀ ବ୍ୟକ୍ତି। ଜିଉମାନଙ୍କ ପାଇଁ ଈଶ୍ୱର

Digitized by srujanika@gmail.com

ଯୁଦ୍ଧପ୍ରିୟ। ଖ୍ରୀଷ୍ଟିଆନମାନଙ୍କ ପାଇଁ ଈଶ୍ୱର ହେଉଛନ୍ତି ଦଣ୍ଡଦାତା, ଛୋଟ ଛୋଟ ଅପରାଧ ପାଇଁ ଈଶ୍ୱର ସାଧାରଣ ଲୋକମାନଙ୍କୁ ଦଣ୍ଡ ଦେଇଥାନ୍ତି।

ପ୍ର- ଈଶ୍ୱରଙ୍କ ସଂପର୍କରେ ଆପଣଙ୍କର ଅନ୍ୟାନ୍ୟ ମତ କ'ଣ ?

ଉ- ଲୋକମାନଙ୍କର ଚିନ୍ତା, କଥା ଓ କାର୍ଯ୍ୟକୁ ଈଶ୍ୱର ନିୟନ୍ତ୍ରଣ କରନ୍ତି।

ପ୍ର - କାହିଁକି ?

ଉ- ଈଶ୍ୱରଙ୍କୁ ଯାହା ସନ୍ତୁଷ୍ଟ କରିବ ଆମେ ତାହା କଲେ ଈଶ୍ୱର ଆଶୀର୍ବାଦ କରିବେ। ଈଶ୍ୱରଙ୍କୁ ଆମର କାର୍ଯ୍ୟ ଅସନ୍ତୁଷ୍ଟ କଲେ ଈଶ୍ୱର ଦଣ୍ଡବିଧାନ କରିବେ।

ପ୍ର- ଈଶ୍ୱରଙ୍କୁ କେଉଁ ନାମରେ ନାମିତ କରାଯାଇଛି ?

ଉ- ବିଭିନ୍ନ ଅଞ୍ଚଳର ଲୋକ ଈଶ୍ୱରଙ୍କୁ ଭିନ୍ନ ଭିନ୍ନ ନାମରେ ଡାକନ୍ତି। ଗ୍ରୀକରେ ଈଶ୍ୱରଙ୍କୁ କିଆସ କୁହାଯାଏ। ରୋମରେ ଜୋ କୁହାଯାଏ। ପାର୍ଶୀମାନେ ଆର୍ମୁସଜିଦ ବୋଲି କହନ୍ତି। ହିନ୍ଦୁମାନେ ବ୍ରହ୍ମ ବୋଲି କହନ୍ତି। ଖ୍ରୀଷ୍ଟିଆନମାନେ ଯେହୁଦ୍ୱା ବୋଲି କହିଥାନ୍ତି। ମୁସଲମାନମାନେ ଆଲ୍ଲା ବୋଲି କହିଥାନ୍ତି।

ପ୍ର- ଅନ୍ୟ କିଛି ନାମ ରହିଛି କି?

ଉ- ପରମ ସତ୍ତା, ସୁଖଦାତା, ପରମାତ୍ମା, ନିତ୍ୟ ସାକ୍ଷୀ, ପ୍ରକୃତି, ସ୍ରଷ୍ଟା ଇତ୍ୟାଦି ଇତ୍ୟାଦି।

ପ୍ରଃ- ଏସବୁ କଣ ଜଣେ ଈଶ୍ୱରଙ୍କର ଭିନ୍ନ ଭିନ୍ନ ନାମ?

ଉ- ନା, କେତେକଙ୍କ ପାଇଁ ଈଶ୍ୱର ଜଣେ ବ୍ୟକ୍ତି, କେତେକଙ୍କ ପାଇଁ ସେ କେବଳ ଚୈତ୍ୟ, କାହା ପାଇଁ ସେ କେବଳ ନିୟମ ବା ଋତ, କେତେକଙ୍କ ପାଇଁ ସେ ଅବୋଧ୍ୟ।

ପ୍ର- ଲୋକମାନେ କଣ ଜଣେ ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି ?

ଉ- ଲୋକମାନେ ଏକ ଈଶ୍ୱର କିମ୍ବା ଏକାଧିକ ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି।

ପ୍ର- ଏକଠାରୁ ଅଧିକ ଈଶ୍ୱର ରହିବା ସମ୍ଭବ କି?

ଉ- ସାଧାରଣତଃ ଲୋକମାନେ ବହୁ ଈଶ୍ୱରରେ ବିଶ୍ୱାସ କରନ୍ତି।

Digitized by srujanika@gmail.com

ପ୍ର- ସେମାନଙ୍କ ନାମ କ'ଣ ?

ଉ- ମୂର୍ତ୍ତି ବିଶ୍ୱାସୀମାନେ ନାନା ନାମ ଦେଇଛନ୍ତି ।

ପ୍ର- କେଉଁ ଲୋକମାନେ ବହୁ ଈଶ୍ୱରରେ ବିଶ୍ୱାସ କରନ୍ତି ?

ଉ- ଇଜିପ୍ଟୀୟ, ହିନ୍ଦୁ, ଗ୍ରୀକ୍ ଓ ରୋମାନମାନେ ।

ପ୍ର- ସେମାନେ ପ୍ରଥମରୁ ଏକେଶ୍ୱରବାଦୀ ଥିଲେ କି ?

ଉ- ନା, ପ୍ରଥମରୁ ସବୁ ଲୋକମାନେ ବହୁ ଦେବାଦେବୀରେ ବିଶ୍ୱାସ ରଖିଥିଲେ ।

ପ୍ର- ବହୁ ଈଶ୍ୱର ଗୁଡିକ କିଏ ?

ଉ- ସୂର୍ଯ୍ୟ, ଚନ୍ଦ୍ର, ଆତ୍ମା, ଛାୟାମୂର୍ତ୍ତି, ଅଲୌକିକ ଦୈତ୍ୟ, ପଶୁ, ବୃକ୍ଷ, ପର୍ବତ, ପଥର, ନଦୀ, ଇତ୍ୟାଦି ।

ପ୍ର - ଆପଣ ଏହା କିପରି କହୁଛନ୍ତି ?

ଉ - ଲୋକମାନେ ସେମାନଙ୍କୁ ପୂଜା କରୁଥିଲେ । ସେମାନଙ୍କୁ ନେଇ ପୂଜାସ୍ଥଳ ନିର୍ମାଣ କରିଛନ୍ତି । ମନ୍ଦିର ଭିତରେ ନାନା ମୂର୍ତ୍ତି ରଖି ପୂଜା କରୁଛନ୍ତି ।

ପ୍ର- ସବୁ ଈଶ୍ୱର ମାନଙ୍କର ଏକା ଶକ୍ତି ରହିଛି ବୋଲି ଲୋକମାନେ ଭାବନ୍ତି କି?

ଉ- କେତେକ ବୁଦ୍ଧିମାନ ଲୋକଙ୍କ ମତରେ ଏ ସମସ୍ତ ଈଶ୍ୱର ଏକ ପରମେଶ୍ୱରଙ୍କ ଅଧସ୍ତନ ।

ପ୍ର- ଅଜ୍ଞ ଲୋକମାନଙ୍କର ମତ କଣ ?

ଉ- ସେମାନଙ୍କ ମତରେ କେତେକ ଈଶ୍ୱର ଅଧିକ କ୍ଷମତାଶାଳୀ, କେତେକ କାରୁଣିକ, କେତେକ ସୁନ୍ଦର ଓ କେତେକ ବୁଦ୍ଧିମାନ ।

ପ୍ର- ସେମାନେ କାହିଁକି ଏତେ ଈଶ୍ୱରଙ୍କୁ ସୃଷ୍ଟି କରିଛନ୍ତି?

ଉ- ଆଦିମ/ପ୍ରାଚୀନ ଯୁଗର ମଣିଷମାନେ ଶିଶୁ ଭଳି ଭୟାଳୁ ଥିଲେ । ଯାହା ତା ପାଇଁ ନୂଆ ସେ ତାକୁ ଭୟ କରୁଥିଲା । ଏପରି କିଛି ରହିଛି ଯାହାକୁ ସେ ଦେଖି ପାରିବ ନାହିଁ କି ଯାହାକୁ ସିଏ ବୁଝି ପାରିବ ନାହିଁ । ବିପଦ ବେଳେ ତାକୁ କେହି ଉଦ୍ଧାର କରି ପାରିବ ବୋଲି ସେ ଚାହିଁଛି । ମଣିଷ ସ୍ୱଭାବରେ ସାମାଜିକ । ତାହାର ନିରାପତ୍ତା ପାଇଁ ସେ ବିଭିନ୍ନ ନୂଆ ଈଶ୍ୱରଙ୍କୁ

Digitized by srujanika@gmail.com

କଳ୍ପନା କରିଛି । ମରଣଶୀଳତାର କାରଣରୁ ସେ ମଧ୍ୟ ଈଶ୍ୱରର ଭାବନା ସୃଷ୍ଟି କରିଛି ।

ପ୍ର - କିପରି?

ଉ - ଆମେ ଯଦି ଅବଶ୍ୟମ୍ଭାବୀ ମୃତ୍ୟୁକୁ ଏଡାଇ ଯାଇ ଅମର ହୋଇଥାନ୍ତେ ତେବେ ଆମେ ଈଶ୍ୱରଙ୍କର ଆବଶ୍ୟକତା କରନ୍ତେ ନାହିଁ । ମୃତ୍ୟୁ, ପୁନର୍ଜନ୍ମର ଭାବନାରୁ ମଣିଷ ଏସବୁ ଈଶ୍ୱରଙ୍କ ଦ୍ୱାରା ନିୟନ୍ତ୍ରିତ ବୋଲି କଳ୍ପନା କରିଛି । ଏସବୁ ଭାବନା ଦେଇ ଈଶ୍ୱର କଳ୍ପନା ସୃଷ୍ଟି କରିଛି । ଅନ୍ୟ ପ୍ରାଣୀ ମାନଙ୍କ ମଧ୍ୟରେ ଯେହେତୁ ମୃତ୍ୟୁ ଭାବନା ନାହିଁ, ସେମାନେ କେଉଁ ଈଶ୍ୱରଙ୍କୁ ଭାବିବାର ଆବଶ୍ୟକତା ନାହିଁ ।

ପ୍ର - ଈଶ୍ୱରଙ୍କ ସଂଖ୍ୟା ବୃଦ୍ଧି ପାଉଛି କି?

ଉ- ନା, ଏହା ହ୍ରାସ ପାଉଛି ।

ପ୍ର- କାହିଁକି ?

ଉ - ମଣିଷର ଜ୍ଞାନ ଯେତିକି ବୃଦ୍ଧି ପାଉଛି ନିଜର ନିରାପତ୍ତା ପାଇଁ ତାର ଆତ୍ମବିଶ୍ୱାସ ସେତିକି ବଢିବାରେ ଲାଗିଛି ।

ପ୍ର- ଅଜ୍ଞ ଲୋକମାନଙ୍କ ଅପେକ୍ଷା ବୁଦ୍ଧିମାନ ଲୋକଙ୍କର ଈଶ୍ୱର ସଂଖ୍ୟା କମ୍ କି?

ଉ- ହଁ, ଅସଭ୍ୟ ଲୋକମାନେ ହିଁ ବହୁ ଈଶ୍ୱରଙ୍କୁ ପୂଜା କରିଥାନ୍ତି ।

ପ୍ର- ଏକେଶ୍ୱରବାଦୀଙ୍କ ବିଷୟ କଣ ?

ଉ- ସଂପ୍ରତି ବହୁ ଲୋକ ଏକେଶ୍ୱରବାଦରେ ବିଶ୍ୱାସ କରନ୍ତି ।

ପ୍ର- ନିରୀଶ୍ୱରବାଦୀ କେହି ଅଛନ୍ତି କି?

ଉ- ହଁ, କେତେକ ବ୍ୟକ୍ତି ଅଛନ୍ତି ।

ପ୍ର- ସେମାନେ କାହିଁକି କୌଣସି ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି ନାହିଁ ?

ଉ- ସେମାନେ ଭାବନ୍ତି ଯେ ସମାଜର ପ୍ରଗତି କ୍ଷେତ୍ରରେ ଈଶ୍ୱର ପ୍ରତିବନ୍ଧକ ।

Digitized by srujanika@gmail.com

ପ୍ର- ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରମାଣ କରାଯାଇ ପାରିବ ନାହିଁ କି?

ଉ- କେତେକଙ୍କ ମତରେ କରାଯାଇ ପାରିବ, ଅନ୍ୟ କେତେକଙ୍କ ମତରେ କରାଯାଇ ପାରିବ ନାହିଁ। କିନ୍ତୁ ବର୍ତ୍ତମାନ ପର୍ଯ୍ୟନ୍ତ କେହି ପ୍ରମାଣ କରିପାରି ନାହିଁ।

ପ୍ର- ଈଶ୍ୱରଙ୍କ ପ୍ରମାଣ ପାଇଁ କଣ କାରଣ ଦିଆଯାଉଛି?

ଉ- କାର୍ଯ୍ୟ-କାରଣ ସିଦ୍ଧାନ୍ତର କେତେକ ଅବତାରଣା କରନ୍ତି। କେତେକଙ୍କର ଯୁକ୍ତି ହେଉଛି ପ୍ରତ୍ୟେକ କାର୍ଯ୍ୟର କାରଣ ରହିଛି। ଏହି ସାଦୃଶ୍ୟରେ ସେମାନେ ଯୁକ୍ତି କରନ୍ତି ଯେ ଏହି ପୃଥିବୀର କାରଣ ହେଉଛନ୍ତି କେହି ସ୍ରଷ୍ଟା। ଯଦି ଏହି ଯୁକ୍ତିକୁ ଗ୍ରହଣ କରାଯିବ, ତେବେ ପ୍ରଶ୍ନ ହେବ ଈଶ୍ୱରଙ୍କର କାରଣ କଣ ? ଈଶ୍ୱରଙ୍କୁ କିଏ ସୃଷ୍ଟି କରିଛନ୍ତି ?

ପ୍ର- ଈଶ୍ୱର କ'ଣ ସ୍ୱାଧୀନ ଭାବେ ରହିପାରିବେ ନାହିଁ ?

ଉ- ତେବେ ଏହି ସିଦ୍ଧାନ୍ତ ଭ୍ରମାତ୍ମକ ହୋଇଯିବ। ଯଦି ଈଶ୍ୱର ସ୍ୱାଧୀନ ଭାବେ ରହି ପାରିବେ, ତେବେ ପୃଥିବୀ ମଧ୍ୟ ସ୍ୱାଧୀନ ଭାବେ କାହିଁକି ରହିପାରିବ ନାହିଁ?

ପ୍ର- ଯଦି ଈଶ୍ୱରଙ୍କ ଅସ୍ତିତ୍ୱକୁ କଳ୍ପନା କରିବାଦ୍ୱାରା ଆମେ କିଛି ହରାଉଛୁ କି?

ଉ- ସେପରି ହେବାଦ୍ୱାରା କାରଣରୁ କାରଣ ଖୋଜି ଚାଲିବା ଓ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରିବା ନାହିଁ।

ପ୍ର- କେତେକଙ୍କ ମତରେ ଈଶ୍ୱର ପରିପୂର୍ଣ୍ଣ। ଆପଣଙ୍କର ମତ କଣ?

ଉ- ଈଶ୍ୱର ଯଦି ପ୍ରକୃତରେ ପରିପୂର୍ଣ୍ଣ, ତେବେ ସେ ପ୍ରତ୍ୟକ୍ଷ ହୋଇପାରନ୍ତେ ଓ ତାଙ୍କ ବିଷୟରେ ଆମର ସ୍ମୃତି ନିର୍ଦ୍ଦିଷ୍ଟ ହୋଇପାରନ୍ତା। କିନ୍ତୁ ଏହା ପ୍ରକୃତ ଘଟଣା ନୁହେଁ। ଆମେ କେବଳ ଏହି ଭାବନା ସୃଷ୍ଟି କରିଛୁ। ଏହି କଳ୍ପନାରୁ ଆମେ ଭାବିଛୁ ଯେ ଈଶ୍ୱର ପରିପୂର୍ଣ୍ଣ ଓ ମଣିଷ ମଧ୍ୟ ପରିପୂର୍ଣ୍ଣ। ଏତଦ୍ ବ୍ୟତୀତ ପରିପୂର୍ଣ୍ଣତା ଏକ ଲକ୍ଷଣ। ଆମେ କେବଳ କଳ୍ପନା କରିଛୁ

Digitized by srujanika@gmail.com

ବୋଲି ଏକ ସମୁଦ୍ର ତଳେ ଏକ ସହର ରହିବା ସମ୍ଭବ ନୁହେଁ । ଯାହା କଳ୍ପନା କରାଯାଏ ତାହାର ସ୍ଥିତି ରହିବା ଅନିବାର୍ଯ୍ୟ ନୁହେଁ ।

ପ୍ର- ଏହାକୁ ଟିକିଏ ଅଧିକ ବ୍ୟାଖ୍ୟା କରିବେ କି?

ଉ- ଆରମ୍ଭରୁ ଲୋକଙ୍କର ଧାରଣା ଥିଲା ଯେ ପୃଥିବୀ ହେଉଛି ସମତଳ । ତେବେ ଏହି ଧାରଣା ଏକ ସାର୍ବଜନୀନ ସତ୍ୟ ନୁହେଁ । କାରଣ ପୃଥିବୀ କେବେ ହେଲେ ସମତଳ ହୋଇ ରହି ନାହିଁ । କେତେକ ଈଶ୍ୱରଙ୍କୁ ସମୟ ସୂଚକ ସହ ତୁଳନା କରିଥାନ୍ତି । ସେମାନଙ୍କ ଯୁକ୍ତି ହେଉଛି ଆମ ସମ୍ମୁଖରେ ଥିବା ଘଣ୍ଟାର ଯେପରି କେହି ନିର୍ମାତା ରହିଛନ୍ତି, ସେହିପରି ପୃଥିବୀର କେହି ନିର୍ମାତା ରହିଛନ୍ତି । ପୃଥିବୀର ନିର୍ମାତା ହେଉଛନ୍ତି ଈଶ୍ୱର ।

ପ୍ର- ଆପଣଙ୍କର ମତ କ'ଣ ?

ଉ- ଆମେ ଗୋଟିଏ ଘଣ୍ଟା ବିଷୟରେ ସବୁ ବିଷୟ ଜାଣୁ । କିନ୍ତୁ ପୃଥିବୀ ବିଷୟରେ ସବୁ କିଛି ଜାଣିବା ଆମ ପକ୍ଷରେ ସମ୍ଭବ ନୁହେଁ । ଘଣ୍ଟାର କେହି କର୍ତ୍ତା ରହିବା ଅତ୍ୟନ୍ତ ସ୍ୱାଭାବିକ ଓ ଏହା ଆମର ଅନୁଭୂତିରୁ ସ୍ପଷ୍ଟ । ତେବେ କେଉଁ ଘଟଣାରୁ ପୃଥିବୀକୁ ଈଶ୍ୱର ସୃଷ୍ଟି କଲେ ତାହା କହିବା ଆଦୌ ସମ୍ଭବପର ନୁହେଁ । ସୁତରାଂ ଘଣ୍ଟାର ନିର୍ମାତାରୁ ପୃଥିବୀର ଏକ ନିର୍ମାତା କଳ୍ପନା କରିବା ଅବାନ୍ତର ମନେ ହୁଏ ।

ପ୍ର- ତେବେ ଏହି ସବୁ ଅସ୍ପଷ୍ଟତାକୁ ଦୂର କରିବାକୁ ଆପଣ କ'ଣ ପରାମର୍ଶ ଦେବେ ।

ଉ- ମଣିଷ ସବୁ ବିଷୟ ଚିନ୍ତା କରିବା ଆବଶ୍ୟକ । କୌଣସି ଚାପର ବଶବର୍ତ୍ତୀ ହୋଇ ଆମେ କିଛି ବିଶ୍ୱାସ କରିବା ଠିକ୍ ନୁହେଁ । ଅଧ୍ୟୟନ, ଅନୁଭୂତି ଆଧାରରେ ଆମେ ଯାହା କିଛି ବିଶ୍ୱାସ କରିବା ଆବଶ୍ୟକ । ମଣିଷ ମୁକ୍ତ ମନ ନେଇ ବିଚାରଶୀଳ ଭାବେ ନିର୍ଭୟର ସହ ଚିନ୍ତା କରିବା ଦରକାର । ମଣିଷ ବିଚାରଶୀଳ । ତାହାର ଚିନ୍ତା କରିବାର ସାମର୍ଥ୍ୟ ରହିଛି । ସେ ସ୍ୱାଧୀନ ଭାବରେ ଚିନ୍ତା କଲେ ସତ୍ୟକୁ ଜାଣି ପାରିବ ।



Digitized by srujanika@gmail.com

## ପରିଚ୍ଛେଦ - ୭

# ବିଚାରଶୀଳ ଚିନ୍ତନ

(ମେତୁପଲୟମଠାରେ ହେତୁବାଦୀ ସଂଘର ଉନ୍ମୋଚନ ଅବସରରେ
୨.୦୬.୧୯୨୪ ଦିନ ପ୍ରଦତ୍ତ ଭାଷଣ)

ବନ୍ଧୁଗଣ,

ମୁଁ ଏଠାରେ ଉପସ୍ଥିତ ଥିବାରୁ ବେଶ ଆନନ୍ଦିତ। ପ୍ରାୟ ୧୦ ବର୍ଷ ତଳେ ମୁଁ ଏଠାକୁ ଆସିଥିଲି। ତେବେ କେଉଁ ସମୟରେ ଆସିଥିଲି, ତାହା ମୋର ମନେ ନାହିଁ। ଆପଣମାନେ ମୋତେ ଏଠାକୁ ଆସିବାର ସୁଯୋଗ ଦେଇଥିବାରୁ ମୁଁ ଆନନ୍ଦ ଅନୁଭବ କରୁଛି। ଏଠାରେ କେତେକ ବିଜ୍ଞ ବ୍ୟକ୍ତି ଭାଷଣ ଦେଲେଣି। ସେମାନେ ଅତ୍ୟନ୍ତ ଭାବଗର୍ଭକ କଥା ଆପଣମାନଙ୍କୁ କହିଛନ୍ତି। ମୋର ଆପଣମାନଙ୍କୁ ଏକ୍ଷେତ୍ରରେ ଏକ ନିବେଦନ ଅଛି, ମୁଁ ଯାହା କହିବି, ତାହାକୁ ଗ୍ରହଣ କରିଯିବାକୁ ଆପଣମାନଙ୍କୁ ପରାମର୍ଶ ଦେବିନାହିଁ। ମୋର ବକ୍ତବ୍ୟକୁ ଆପଣମାନେ ବିଚାର କରିବାକୁ ମୁଁ ନିବେଦନ କରିବି। ଯଦି ମୋର ବକ୍ତବ୍ୟରେ ସତ୍ୟତା ଥିବା ଆପଣ ଅନୁଭବ କରିବେ, ତେବେ ତାହାକୁ ଗ୍ରହଣ କରିବେ। ଯାହା କରିବା ଯଥାର୍ଥ ବୋଲି ଆପଣମାନଙ୍କ ହୃଦବୋଧ ହେବ, ଆପଣ ତାହା ପାଳନ କରିବେ।

ମୁଁ ଏହା କହିଥିବାରୁ ଏହା ଗ୍ରହଣ ଯୋଗ୍ୟ ତାହା ଆପଣ ସ୍ୱୀକାର କରନ୍ତୁ ନାହିଁ, ବରଂ ଆପଣମାନେ ଏହା ଉପରେ ଚିନ୍ତା କରନ୍ତୁ। ଆପଣମାନେ କାହିଁକି ଚିନ୍ତାକରିବେ, ତାହା ମୁଁ କହିବାକୁ ଚାହେଁ।

ଆମେମାନେ ବିଚାରଶୀଳତାର ପ୍ରସାର ଚାହୁଁଛେ। ଆମର ଇଚ୍ଛା ଲୋକମାନେ ବିଚାରଶୀଳ ହୋଇ ଜୀବନ ନିର୍ବାହ କରନ୍ତୁ। କୌଣସି ଅବିଶ୍ୱାସନୀୟ ଘଟଣା ଆମେ ପ୍ରଚାର କରୁନାହୁଁ। ଈଶ୍ୱର, ଈଶ୍ୱର ପୁତ୍ର, ଅବତାର, ଧର୍ମ, ଶାସ୍ତ୍ର,

Digitized by srujanika@gmail.com

ପର-ରା ଇତ୍ୟାଦି ଆଧାରରେ ଆମେ କିଛି କହିବାକୁ ଚାହୁଁ ନାହୁଁ । ଆମର ଅନୁଭୂତି ଓ ବିଚାର ସମର୍ଥିତ କଥା ଆମେ କହୁଛୁ । ଆପଣମାନେ ସମସ୍ତେ ବିଚାରଶୀଳ ବ୍ୟକ୍ତି । ସମସ୍ତଙ୍କ ଭିତରେ ଚିନ୍ତା କରିବାର ସାମର୍ଥ୍ୟ ରହିଛି । ଯାହା ଆପଣମାନଙ୍କୁ ଯୁକ୍ତିଯୁକ୍ତ ମନେ ହେଉଛି ଓ ଯାହା ଆପଣଙ୍କ ପାଇଁ ଠିକ୍, ତାହାକୁ ଆପଣମାନେ ଗ୍ରହଣ କରନ୍ତୁ । ଯଦି ଆମ ସମାଜରେ ବିଚାରଶୀଳ ଦୃଷ୍ଟି ଓ ବୈଜ୍ଞାନିକ ମାନସିକତା ଯଥେଷ୍ଟ ଥାନ୍ତା, ତେବେ ଆମେ କୌଣସି ବିଷୟ ନେଇ ଏତେ ବ୍ୟସ୍ତତା ପ୍ରକାଶ କରନ୍ତେ ନାହିଁ । କିନ୍ତୁ ଆମର ଲୋକମାନେ ଯୁକ୍ତିଯୁକ୍ତ ଭାବରେ କିଛି କଥା ଗ୍ରହଣ କରିବାକୁ ପ୍ରତିବନ୍ଧକର ସମ୍ମୁଖୀନ ହୁଅନ୍ତି । କେତେକ ଲୋକ କହିଥାନ୍ତି-

"ଆମେ ଯାହା କହୁଛୁ ଆପଣ ତାହା ନିଶ୍ଚୟ ଶୁଣିବେ,
ଆମେ ଯାହା କହୁଛୁ ତାହା ହେଉଛି ଈଶ୍ୱରୀୟ ବାଣୀ,
ମୁଁ ହେଉଛି ଈଶ୍ୱରଙ୍କ ଅବତାର । ସୁତରାଂ ମୁଁ ଯାହା କହେ,
ଆପଣ ସେପରି କାର୍ଯ୍ୟ କରିବା ଉଚିତ୍ ।"

ଏହି ବକ୍ତବ୍ୟ ଓ ଏ ପ୍ରକାରର ଉପଦେଶ ଦିଆଯାଇ କେତେକ ଲୋକ ସେମାନଙ୍କର ଭାବନାକୁ ଲୋକମାନଙ୍କ ଉପରେ ଲଦି ଦେଇଛନ୍ତି । ପରିଣାମତଃ ଲୋକମାନେ ସ୍ୱାଧୀନ ଭାବରେ ଚିନ୍ତା କରିପାରୁ ନାହାନ୍ତି । ଏହି ବ୍ୟବସ୍ଥା ନିକଟରେ ସୃଷ୍ଟି ହୋଇ ନାହିଁ । ବରଂ ଦୁଇ ହଜାର, ତିନି ହଜାର ବର୍ଷ ଧରି କେତେକ ବିଶ୍ୱାସ ଲୋକମାନଙ୍କ ଉପରେ ଲଦି ଦିଆଯାଇଛି । ଲୋକମାନଙ୍କ ମଧ୍ୟରେ ଚିନ୍ତା କରିବା ସାମର୍ଥ୍ୟ ଥିଲେ ମଧ୍ୟ ପାର-ରିକ ବିଶ୍ୱାସ ପ୍ରଭାବରୁ ସେମାନେ ମୁକ୍ତ ହୋଇ ପାରୁନାହାନ୍ତି । ଏହାହିଁ ହେଉଛି ବଡ ପ୍ରହେଳିକା ।

ଆଜି ଆମେ ଏଠାରେ ଏକ ହେତୁବାଦୀ ସଂଘ ଉଦ୍‌ଘାଟନ କରିଛେ । ଏହା ଯେ ବିଚାରଶୀଳ ବ୍ୟକ୍ତିମାନଙ୍କର ଏକ ଅନୁଷ୍ଠାନ, ଏହା ସ୍ପଷ୍ଟ । ଆମେ ଏକ ଯଥାର୍ଥ ଜୀବନଧାରା ପ୍ରସଙ୍ଗରେ ଆଲୋଚନା କରୁଛେ ।

ଯେଉଁମାନେ ଚିନ୍ତା କରନ୍ତି ନାହିଁ ଓ ଅହେତୁକ ବ୍ୟବହାର ପ୍ରଦର୍ଶନ କରନ୍ତି, ସେମାନଙ୍କୁ କଣ କୁହାଯିବ ? ମୁଁ କାହିଁକି ଏହି ପ୍ରଶ୍ନ ଉଠାଉଛି? ସମସ୍ତ

Digitized by srujanika@gmail.com

ଜୀବିତ ପ୍ରାଣୀ ମାନଙ୍କ ମଧ୍ୟରେ ପଶୁମାନେ ଚିନ୍ତାଶୀଳ ନୁହଁନ୍ତି କିମ୍ବା ସେମାନଙ୍କର ବିଚାର କରିବାର ସାମର୍ଥ୍ୟ ନଥାଏ । ମଣିଷ ପଶୁଠାରୁ ଭିନ୍ନ, କାରଣ ସେ ବିଚାରଶୀଳ । ପ୍ରତ୍ୟେକ ପ୍ରାଣୀର କିଛି ଇନ୍ଦ୍ରିୟ ରହିଛି । କ୍ଷୁଦ୍ରଗଛ ଓ ଏପରିକି ଗୁଳ୍ମମାନଙ୍କର ଗୋଟିଏ ଇନ୍ଦ୍ରିୟ ଥିବା କୁହାଯାଏ । ସେମାନଙ୍କର ଅନ୍ୟ ଇନ୍ଦ୍ରିୟ ନାହିଁ । କୀଟ ପତଙ୍ଗ ମାନଙ୍କର ତିନୋଟି ଇନ୍ଦ୍ରିୟ ଥିବା କୁହାଯାଏ । ସେମାନଙ୍କର ବ୍ୟବହାରରେ ସାମାନ୍ୟ ସାମାନ୍ୟ ପରିବର୍ତ୍ତନ ହେଉଥାଏ । କେତେକ ପ୍ରାଣୀଙ୍କର ଚାରୋଟି ଇନ୍ଦ୍ରିୟ ଥାଏ । କେତେକଙ୍କର ପାଞ୍ଚଟି ଇନ୍ଦ୍ରିୟ ଥାଏ । ସ୍ୱାଧୀନଭାବରେ ଚିନ୍ତା କରିବା ହେଉଛି ଏକ ସାମର୍ଥ୍ୟ । ଏହି ବିଚାରଶୀଳ ସାମର୍ଥ୍ୟକୁ ଆମେ ଷଷ୍ଠ ଇନ୍ଦ୍ରିୟ ବୋଲି କହିପାରିବା । ଏହା କେବଳ ମଣିଷପାଖରେ ଥିବା ଦେଖାଯାଏ । କେତେକ ପ୍ରାଣୀ ଅଛନ୍ତି, ଯେଉଁମାନେ କେତେକ ବିଚିତ୍ର ବା ବିଶିଷ୍ଟ ଲକ୍ଷଣ ପ୍ରଦର୍ଶନ କରିଥାନ୍ତି । କେତେକ ପ୍ରାଣୀ ଏପରି କେତେକ କାର୍ଯ୍ୟ କରିପାରିବେ, ଯାହା ମଣିଷ ପାରିବ ନାହିଁ । ପି଼ିମ୍ପୁଡିର ଉଦାହରଣ ନିଅନ୍ତୁ । ମଣିଷ ତୁଳନାରେ ଏହାର ଘ୍ରାଣ ଶକ୍ତି ଅଧିକ । କେତେକ ପକ୍ଷୀର କଥା ନିଅନ୍ତୁ । କେତେକ ପକ୍ଷୀ ଉଚ୍ଚରେ ଉଡିପାରନ୍ତି ଓ ଶିଘ୍ର ଦୂରସ୍ଥାନକୁ ଯାଇପାରନ୍ତି, ଯାହା ମଣିଷ କରିପାରିବ ନାହିଁ । ମାଙ୍କଡର କଥା ଭାବନ୍ତୁ । ଗୋଟିଏ ଉଚ୍ଚ ଜାଗାରୁ ଏହା ଅନ୍ୟ ସ୍ଥାନକୁ ଡେଇଁ ପାରିବ । ଗୋଟିଏ ବାଘ ଗୋଟିଏ ହାତୀକୁ ମାରିଦେଇ ପାରିବ । ଏହିପରି ବିଭିନ୍ନ ପ୍ରାଣୀ ଅନେକ କାର୍ଯ୍ୟ କରିପାରନ୍ତି ଯାହା ମଣିଷ ପକ୍ଷେ କରିବା ସମ୍ଭବ ନୁହେଁ । ତେବେ ମଣିଷ ପାଖରେ ଚିନ୍ତା କରିବା ଓ ନିଜର ମାନସିକ ବିକାଶ ନେଇ ଅନୁସନ୍ଧିତ୍ସୁ ହେବା ଦେଖାଯାଏ । ମଣିଷ ନିଜର ଅନୁଭୂତିକୁ ନେଇ ସୁଖରେ ରହିବାକୁ ପ୍ରୟାସ କରେ । ଅନ୍ୟ କୌଣସି ପ୍ରାଣୀ ମଣିଷ ପରି ବିଚାରଶୀଳ ନୁହନ୍ତି ।

ପରିତାପର ବିଷୟ ବୁଦ୍ଧିମାନ ମଣିଷ ତାର ବିଚାରଶୀଳତାକୁ ପ୍ରୟୋଗ କରେ ନାହିଁ । ସେ ନିଜର ସାମର୍ଥ୍ୟକୁ ବିକାଶ କରାଇବାରେ ଅସମର୍ଥ ହୁଏ । ଏହାଯୋଗୁଁ ସେ ବହୁ କ୍ଷେତ୍ରରେ ବିକାଶ କରିପାରେ ନାହିଁ । ଆମେ ଯେତେବେଳେ ଆମର ଲୋକମାନଙ୍କୁ ଦେଖେ, ସେମାନେ ନିଜର ଆତ୍ମମର୍ଯ୍ୟାଦାରୁ ବଞ୍ଚିତ

Digitized by srujanika@gmail.com

ହୋଇଥିବା ଆମେ ଅନୁଭବ କରେ । ଆମର ଲୋକମାନେ ହେଉଥିବା ବିକାଶ ବିଷୟରେ ଜାଣୁଥିଲେ ମଧ୍ୟ ଆମ ଲୋକମାନେ ସେପରି ବିକାଶ କରି ପାରୁନାହାଁନ୍ତି । ଅନ୍ୟଦେଶମାନଙ୍କରେ ଅନେକ ପ୍ରଗତି ହୋଇଥିବା କଥା ଆମେ ଦେଖୁଛେ । ଅନ୍ୟଦେଶର ଲୋକମାନଙ୍କ ବିଷୟରେ ଆମେ ଅନେକ କଥା ମଧ୍ୟ ପଢୁଛେ ।

**ଆମେମାନେ ଶୂଦ୍ର-**

ଆମମାନଙ୍କୁ ଶୂଦ୍ର କୁହାଯାଇଛି । ଶୂଦ୍ରର ଅର୍ଥ ହେଉଛି ଏକ ଦେହଜୀବୀଙ୍କ ସନ୍ତାନ । ଆମେ ଯେତେବେଳେ ପ୍ରଶ୍ନ କରୁ ଆମେ କାହିଁକି ଶୂଦ୍ର ସେମାନେ ଉତ୍ତର ଦିଅନ୍ତି, ଏହା ଶାସ୍ତ୍ରରେ କୁହାଯାଇଛି । ଏହା କେହି ବିଶିଷ୍ଟ ଲୋକ କହିଛନ୍ତି କିମ୍ବା ବହୁ ଅତୀତରେ ଏହା ଈଶ୍ୱର କହିଛନ୍ତି । ଏସବୁ କଥାକୁ ନିରବରେ ବିଶ୍ୱାସ କରି ଆମେ ଆମ ଆତ୍ମମର୍ଯ୍ୟାଦା ଓ ସମ୍ମାନକୁ ହରାଇଛୁ । ଆମେ କେବଳ ଆମର ଖାଦ୍ୟ ନେଇ ଚିନ୍ତିତ । ଆମର ବିକାଶ ପ୍ରତିବନ୍ଧକର ସମ୍ମୁଖୀନ । ଆମେ ଆମର ଜୀବନ ଧାରଣର ସାଧନ ପାଇଁ ବ୍ୟସ୍ତ । ଏହା ହେଉଛି ଏକ ପଶୁ ସ୍ୱଭାବ । ଆମେ କେବଳ ପଶୁ ସ୍ତରରେ ଜୀବନ ବଞ୍ଚୁଛେ ।

ଆମ ଦେଶରେ ବିଚାରଶୀଳତା ସ-ର୍କରେ କେହି କହିବାକୁ ଆଗଭର ହେଉନାହାନ୍ତି । ବିଚାରଶୀଳତା ସ-ର୍କରେ ଯେଉଁ ସ୍ୱର ଉଠିଥିଲା ତାହା ଦୁଇ ହଜାର, ତିନି ହଜାର ବର୍ଷ ତଳର୍ଘଟଣା । ଏହି ଭାବନା ସେହି ସମୟରେ କିଛି ଲୋକ ଗ୍ରହଣ କରିଥିଲେ । ଏବେ ସେ ଭାବନାକୁ ପ୍ରଶ୍ରୟ ଦିଆଯାଉନାହିଁ । ଏହିସବୁ ବିଷୟରେ ଚିନ୍ତା କରିବାକୁ କାହାର ସାହାସ ମଧ୍ୟ ନାହିଁ । ଏହା କିପରି ହେଲା ? ଏହା ଏବେବି ଆମର ବୁଦ୍ଧିକୁ ସ୍ପର୍ଶ କରୁନାହିଁ । କାଳକ୍ରମେ କେତେକ ଈଶ୍ୱର ଭାବନା ସୃଷ୍ଟି କରିଛନ୍ତି । ସେମାନଙ୍କ ମତରେ ସବୁକିଛି ଈଶ୍ୱର ସୃଷ୍ଟି କରିଛନ୍ତି । ତାଙ୍କ ମତରେ ଈଶ୍ୱର ସର୍ବଶକ୍ତିମାନ ଓ ଈଶ୍ୱର ସମସ୍ତ ଶାସ୍ତ୍ରର ବାଣୀ ଦେଇଛନ୍ତି । ଈଶ୍ୱରଙ୍କର ପୁତ୍ର ମାନେ ଶାସ୍ତ୍ର ସୃଷ୍ଟି କରିଛନ୍ତି ବୋଲି ସେମାନେ କହନ୍ତି । କେତେକ ଈଶ୍ୱରଙ୍କ ଦୂତ ଏସବୁ କହିଛନ୍ତି ବୋଲି କହିଥାନ୍ତି । ଏହି ସବୁ ଭାବନାକୁ ସମାଜ ଉପରେ ଏପରି ଲଦି ଦିଆଯାଇଛି ଯେ ମଣିଷ ସ୍ୱାଧୀନ ଭାବରେ କିଛି ଚିନ୍ତା କରିପାରୁ

Digitized by srujanika@gmail.com

ନାହିଁ । ଏହି ସବୁ ମନ୍ଦ ଭାବନା ମଣିଷର ମନରେ ଅବକ୍ଷୟ ସୃଷ୍ଟି କରିଛି । ସେ କେବଳ ଅନ୍ଧବିଶ୍ୱାସୀ ହୋଇ ଗୁଡାଏ କଥା ଈଶ୍ୱରଙ୍କ ନାମରେ ବିଶ୍ୱାସ କରିଛି । ଅନେକ ବିଶ୍ୱାସକୁ ଈଶ୍ୱର ନିର୍ଦ୍ଦେଶିତ ବୋଲି ଭାବି ସେ ସେହିଭଳି ଆଚରଣ କରିଛି । ଏହାଦ୍ୱାରା ତାହାର ଭାବନା ରୁଦ୍ଧ ହୋଇ ଯାଇଛି । ଏହି ସବୁ କାରଣରୁ ସେ ବିକାଶ କରିପାରି ନାହିଁ । ଆମର ଉନ୍ନତି ପଥରେ ଏସବୁ କିପରି ଅନ୍ତରାୟ, ତାହା ଆପଣମାନେ ପଚାରିପାରନ୍ତି । ଅନ୍ୟଦେଶମାନଙ୍କୁ ଦେଖନ୍ତୁ ଓ ସେମାନଙ୍କର ବିକାଶକୁ ଲକ୍ଷ୍ୟ କରନ୍ତୁ । ଆଜି ଲୋକ ନିଜର ଚେଷ୍ଟାବଳରେ ପୃଥିବୀଠାରୁ ୨୩୦୦୦୦ ମାଇଲ ଦୂରରେ ଥିବା ଚନ୍ଦ୍ର ପୃଷ୍ଠରେ ଅବତରଣ କରିପାରୁଛି । ସେ ଘଣ୍ଟାକୁ ୫୦୦୦ ରୁ ୬୦୦୦ ମାଇଲ ଆକାଶ ପଥରେ ଯାଇ ପାରୁଛି । ଚିନ୍ତା କରିବା, ଗବେଷଣା କରିବା, ଜ୍ଞାନର ବିକାଶ ଘଟାଇବା ମଣିଷର ବିଚାରଶୀଳ ସାମର୍ଥ୍ୟ ଯୋଗୁଁ ସମ୍ଭବ ହୋଇଛି । ମଣିଷ ନିଜର ବିଚାରଶୀଳ ସାମର୍ଥ୍ୟ ଯୋଗୁଁ ଆଜି ଏପରି ବିକାଶ କରିବାରେ ସମର୍ଥ ହୋଇଛି । ଆମେ ସେପରି କିଛି କରିବାରେ ସମର୍ଥ ହୋଇପାରୁଛେ କି ? ଆମଦେଶରେ ବହୁ ଦାର୍ଶନିକ, ଭବିଷ୍ୟ ବକ୍ତା, ଧର୍ମପ୍ରବକ୍ତା ରହିଛନ୍ତି । ଆମ ଦେଶରେ ହଜାର ହଜାର ସାଧୁ, ବାବା, ମୁଲ୍ଲା, ବିଶପ ଧର୍ମ ପ୍ରବକ୍ତା ଗଣ ରହିଛନ୍ତି । ଆମଦେଶରେ ବହୁଧର୍ମ ରହିଛି । ଆମେ ପ୍ରକୃତରେ ଏସବୁରୁ କଣ ପାଇଛେ? ପୃଥିବୀରେ ମଣିଷର ପ୍ରଥମ ଆବିର୍ଭାବ ପରଠାରୁ ଏହି ଭିତରେ ବହୁ ବର୍ଷ ଅତିକ୍ରାନ୍ତ ହୋଇଗଲାଣି । ପୃଥିବୀରେ ମଣିଷର କେବେ ଆବିର୍ଭାବ ହୋଇଥିଲା ସଠିକ୍ ଭାବେ କହିବା ବୋଧହୁଏ ସମ୍ଭବ ନୁହେଁ । କେତେକ ଗବେଷକଙ୍କ ମତରେ ଏକଲକ୍ଷ ବର୍ଷ ତଳେ ଏହା ସମ୍ଭବ ହୋଇଥିଲା । ଅନ୍ୟ କେତେକ କୁହନ୍ତି ୧୮ ଲକ୍ଷ ବର୍ଷ ତଳେ ମଣିଷର ଉତ୍ପତ୍ତି ହୋଇଥିଲା । ଅନ୍ୟ କେତେକ କୁହନ୍ତି ଯେ ମଣିଷର ଉତ୍ପତ୍ତି ଅଧିକ ପୁରୁଣା । ସେମାନଙ୍କ ମତରେ ପୃଥିବୀ ସୃଷ୍ଟି ପରଠୁ ମଣିଷର ଉତ୍ପତ୍ତି ହୋଇଛି । ଏହି ସମୟ ଭିତରେ ଆମେ କ'ଣ ପାଇଛେ? ଏଇ ୧୦୦ ବର୍ଷ ଭିତରେ ଅନେକ ପରିବର୍ତ୍ତନ ହୋଇଥିବା ଆମେ ସାଧାରଣତଃ ଦେଖୁଛେ । ଆମଦେଶରେ କଣ ବିକାଶ ହୋଇଛି? ଏହି ଦୀର୍ଘ ସମୟ

Digitized by srujanika@gmail.com

ବ୍ୟବଧାନ ଭିତରେ ଆମେ କେତେ କଣ ପାଇ ନଥାନ୍ତେ। ଆପଣମାନେ କାହିଁକି ନୈରାଶ୍ୟ ଅନୁଭବ କରୁଛନ୍ତି? ଆମ ଦେଶରେ ଏତେ ଧର୍ମଗୁରୁ ଓ ଈଶ୍ୱର ଥାଇ କ'ଣ ବିକାଶ ହୋଇଛି? ଆମ ଜନ ଜୀବନରେ ଏତେ ଈଶ୍ୱର ଓ ଧର୍ମଗୁରୁଙ୍କ ଆବଶ୍ୟକତା ଅଛି କି ?

ଅନାୟାସରେ ଆମ ସମାଜରେ କୌଣସି ବ୍ୟକ୍ତି ମହାତ୍ମା, ଧର୍ମଗୁରୁ, ସାଧୁ ହୋଇ ପାରନ୍ତି। ତେବେ ଏହାଦ୍ୱାରା ସମାଜର କିଛି ଉପକାର ହୁଏ କି?

ଆଜି ଆମ ଜୀବନରେ ଯେତେ ସବୁ ସୁବିଧା ସୁଯୋଗ ପାଇଛେ, କିମ୍ବା ଯାହା ସବୁ ସୁଖ ସ୍ୱାଚ୍ଛନ୍ଦ୍ୟ ଲାଭ କରିଛେ, ସେଗୁଡିକ ଅନ୍ୟମାନଙ୍କ ଦ୍ୱାରା ଉଦ୍ଭାବିତ ହୋଇଛି। ଆମର ଈଶ୍ୱରମାନେ ବହୁଶକ୍ତିଶାଳୀ ବୋଲି କୁହାଯାଏ। ତେବେ ସେମାନେ କ'ଣ କରିଛନ୍ତି ? ଈଶ୍ୱରଙ୍କ ଅବତାର ନେଇ ଚମତ୍କାର କାହାଣୀ ରହିଛି। କେତେକ ଦେବତା ଅନ୍ୟକୁ ଅଭିଶାପ ଦେବାରେ ସମର୍ଥ ବୋଲି କୁହାଯାଇଛି। ଏପରିମଧ୍ୟ କୁହାଯାଇଛି ଯେ କେତେକ ଦେବତା ପର୍ବତ ସହିତ ଖେଳନ୍ତି, ସତେ ଯେପରି ପର୍ବତ ହେଉଛି ଏକ ଖେଳନାର ବସ୍ତୁ! ଆମର ଦେବତା ଓ ଈଶ୍ୱରମାନଙ୍କୁ ବହୁ ଅଲୌକିକ ଗୁଣରେ ଭୂଷଣ କରାଯାଇଛି। କିନ୍ତୁ ବାହାର ଦୁନିଆକୁ ସେପରି କିଛି ମୌଳିକ ଅବଦାନ ସେମାନେ ଦେଇଛନ୍ତି କି ? ଅନ୍ତତଃ ବର୍ତ୍ତମାନ ସୁଦ୍ଧା ଏହା ସମ୍ଭବ ହୋଇନାହିଁ।

ଯଦି ୟୁରୋପୀୟମାନେ ଏଠାକୁ ଆସି ନଥାନ୍ତେ, ତେବେ ଦିଆସିଲିଟିଏ ମଧ୍ୟ ଆମ ପାଖକୁ ଆସିନଥାନ୍ତା। ଆମେ ଅନ୍ଧକାର ମଧ୍ୟରେ ଥାନ୍ତେ। ଅଗ୍ନିପାଇଁ ଆମେ ଦୁଇଟି ପଥରକୁ ଘର୍ଷଣ କରୁଥାନ୍ତେ। ଯାତାୟତ ପାଇଁ ଆମେ ଶଗଡ଼ର ବ୍ୟବହାର କରୁଥିଲେ। ବର୍ତ୍ତମାନ ବିମାନ ସେବା ଉପଲବ୍ଧ ହେଲାଣି। ବିମାନ ସେବା କିପରି ଆସିଲା ? ଏହା କ'ଣ ପ୍ରାର୍ଥନାରୁ ଆସିଛି? ଶ୍ଳୋକ ପଢିବା ଦ୍ୱାରା ବା ପୂଜା ଦ୍ୱାରା ବିକାଶ ହୋଇଛି କି ? କେଉଁ ଦିଅଁ ଦେବତାଙ୍କୁ ଆରାଧନା ଦ୍ୱାରା ବିକାଶ ହେବନାହିଁ।

ଆମେ ସେଥିପାଇଁ ବିଚାରଶୀଳ ଆଚରଣ ପ୍ରଦର୍ଶନ କରିବାକୁ ଲୋକମାନଙ୍କୁ କହିଥାଉ। ଆମର ଲୋକମାନେ ସୁଖ ସ୍ୱାଚ୍ଛନ୍ଦ୍ୟରେ ବଞ୍ଚିବା ପାଇଁ

Digitized by srujanika@gmail.com

ସମର୍ଥ ହେଉନାହାଁନ୍ତି । ଈଶ୍ୱର, ଧର୍ମ, ଶାସ୍ତ୍ର, ମହାତ୍ମାମାନଙ୍କୁ ଅନ୍ଧଭାବରେ ବିଶ୍ୱାସ କରି ଆମେ ସେପରି କିଛି ମହତ୍ତ୍ୱପୂର୍ଣ୍ଣ ସଫଳତା ପାଇନାହୁଁ । ଆଧ୍ୟାତ୍ମିକ ଗୁରୁ ସେମାନଙ୍କର ବାଣୀ ପ୍ରତି ଧ୍ୟାନ ଦେଇ ଆମେ ଦରିଦ୍ର ଓ ଉତ୍ପୀଡିତ ହୋଇ ରହିଛେ ।

କେତେକ ବକ୍ତା ଆମର ଅଜ୍ଞତା ବିଷୟରେ ସୂଚନା ଦେଇଛନ୍ତି । ଶାସ୍ତ୍ର କ'ଣ କହିଛି ସେ ବିଷୟରେ ଚିନ୍ତିତ ହେବା ଆବଶ୍ୟକ ନାହିଁ । ଆମେ ସମାଜକୁ ପରିବର୍ତ୍ତନ କରିବା ପାଇଁ ଚିନ୍ତା କରିବା ଆବଶ୍ୟକ । ଯେତେବେଳେ ଆମ ଆଗରେ ବିରାଡିଟିଏ ଚାଲିଯାଉଛି, ଆପଣମାନେ ଦେଖିଥିବେ କେତେକ ଲୋକ ପଛକୁ ଫେରି କିଛି ସମୟ ରହି ଯାଇଥାନ୍ତି । ତାଙ୍କୁ ଏହାର କାରଣ ପଚାରନ୍ତୁ, ତାଙ୍କର ଉତ୍ତର ହେବ ବିରାଡି ଗୋଟିଏ ଅଶୁଭ ସଂକେତ । ତାଙ୍କ ମତରେ କିଛି ସମୟ ଅପେକ୍ଷାକରି ପୁଣି ଯିବା ଦ୍ୱାରା ଅଶୁଭ ପ୍ରଭାବ ପ୍ରତିହତ ହୋଇଥାଏ । କେତେକ ଲୋକ କାଉ ରାବ କଲାବେଳେ ଘରୁ ଯାଆନ୍ତି ନାହିଁ । ତାଙ୍କର ବିଶ୍ୱାସ ହେଉଛି ତାଙ୍କୁ ସତର୍କ କରିବା ପାଇଁ କାଉ ରାବ କରୁଛି । କୌଣସି ସମୟରେ ତାଙ୍କ ଉପରେ ପକ୍ଷୀଟିଏ ଉଡିଗଲେ ବା ତାଙ୍କୁ ଛୁଇଁ ଦେଲେ ସେ ଅପବିତ୍ର ହୋଇଯାଆନ୍ତି ବୋଲି ଭାବନ୍ତି । ସେ କାହାକୁ ସ୍ପର୍ଶ କରନ୍ତି ନାହିଁ । ସେ ନିଜର ପରିଧାନ ଲୁଗା ଧୋଇବା ସହ ନିଜେ ସ୍ନାନ କରନ୍ତି । କେତେକ ଲୋକ କେତେକ ମୁହୂର୍ତ୍ତକୁ ଶୁଭ ଓ ଆଉ କେତେକ ମୁହୂର୍ତ୍ତକୁ ଅଶୁଭ ମନେ କରନ୍ତି । ଏସବୁ ଅବାନ୍ତର ଭାବନାର କିଛି ଅର୍ଥ ଅଛି କି? ଏସବୁ ଅର୍ଥଶୂନ୍ୟ କାର୍ଯ୍ୟକୁ କିଏ ନିନ୍ଦା କରୁଛି ଲୋକମାନେ ନିଜର ବୁଦ୍ଧି ପ୍ରୟୋଗ କରିବାକୁ ତାଙ୍କୁ କିଏ ଶିକ୍ଷା ଦେଉଛି ? ଯୁଗ ଯୁଗ ଧରି ଆମ ସମାଜରେ ଏସବୁ କୁସଂସ୍କାର ବଦ୍ଧମୂଳ ହୋଇ ରହିଛି । ଆମର ଜ୍ଞାନ ଓ ଅନୁଭୂତି ଦ୍ୱାରା ଆମେ ଏସବୁକୁ ଦୂର କରୁଛେ କି? ଆମର ବୁଦ୍ଧି ଆମେ କେବେ ପ୍ରୟୋଗ କରି ଏସବୁ ବିଷୟରେ ଭାବୁଛେ କି ? ଆମେ ଏବେବି ଆଦିମ ଅବସ୍ଥାରେ ଏଠାରେ ରହିଛେ । ସୁଖର କଥା ଆମ ଜାଗାକୁ ବିଦେଶୀୟମାନେ ଆସିଲେ । ସେମାନେ ସାହାସର ସହିତ କେତେକ ସଂସ୍କାରକୁ ପ୍ରବର୍ତ୍ତନ କଲେ । ସେମାନେ ଆମର ଧର୍ମ ଓ ଶାସ୍ତ୍ର ଉପରେ ହସ୍ତକ୍ଷେପ କରୁଛନ୍ତି ବୋଲି ଆମେ ତାଙ୍କୁ ଅପବାଦ ଦେଲୁ । ଯଦି ଏଠାକୁ

Digitized by srujanika@gmail.com

ଇଂରେଜମାନେ ଆସିନଥାନ୍ତେ, ଆମେ ସେହିଭଳି ପଛୁଆ ହୋଇ ରହିଥାନ୍ତେ। କେତେକ ସୁବିଧାବାଦୀ ଲୋକ ବିଦେଶୀୟ ମାନଙ୍କ ବିରୋଧରେ ନାନା ଗୁପ୍ତ ଅନୁମାନ କରିଛନ୍ତି। ସେମାନେ ଚାଲିଗଲା ପରେ ଜନମାନସକୁ ଶିକ୍ଷିତ କରିବାକୁ ସେପରି ଉଦ୍ୟମ ହେଉନାହିଁ। ଏହି ପରିପ୍ରେକ୍ଷୀରେ ଆତ୍ମମର୍ଯ୍ୟାଦାକୁ ପ୍ରାଧାନ୍ୟ ଦେଉଥିବା ଆମେ ହେତୁବାଦୀମାନେ ବିଚାରଶୀଳତାର ବିକାଶ ପାଇଁ ସ୍ୱେଚ୍ଛା କୃତଭାବେ କେବଳ କାର୍ଯ୍ୟ କରୁଛେ। ଧର୍ମ ଓ ଈଶ୍ୱରଙ୍କ ନାମରେ ଚାଲିଥିବା ପ୍ରତାରଣାକୁ ଆମେ ବିରୋଧ କରୁଛେ। ଧର୍ମ ଧ୍ୱଜାଧାରୀ ବ୍ୟକ୍ତିମାନେ ଓ ରାଜନୈତିକ ଲୋକମାନେ ସମାଜରେ ବିଦ୍ୱେଷ ଓ ଧ୍ୱଂସର ପରିବେଶ ସୃଷ୍ଟି କରୁଛନ୍ତି। ଆମେ କିନ୍ତୁ ଜନଗଣଙ୍କ ଭିତରେ ବିଚାରଶୀଳତା ବିକାଶ କରାଇବାରେ ଯେଉଁ ପଦକ୍ଷେପ ନେଉଛେ, ସେଥିରେ ଅନେକ ବିପଦର ମଧ୍ୟ ସମ୍ମୁଖୀନ ହେଉଛେ। ତେବେ ବିଚାରଶୀଳତାର ମହତ୍ତ୍ୱକୁ ଲୋକମାନଙ୍କ ଭିତରେ ପ୍ରସାର କରିପାରିଲେ ଆମର ଅନେକ ଅନ୍ଧ ବିଶ୍ୱାସ ଦୂର ହୋଇ ପାରିବ। ସମାଜରେ ବିକାଶ ହେଉଛି ଆମର ଲକ୍ଷ୍ୟ ଆମର କାର୍ଯ୍ୟ ହେଉଛି ଲୋକମାନଙ୍କୁ ବିଚାରଶୀଳତା ଦିଗରେ ପ୍ରଭାବିତ କରିବା। ସେଥିପାଇଁ ଆମେ ଆତ୍ମ ମର୍ଯ୍ୟାଦା ଆନ୍ଦୋଳନ ଆରମ୍ଭ କରିଥିଲେ। ଏହାର ଉଦ୍ଦେଶ୍ୟ ଥିଲା ଲୋକମାନଙ୍କ ଭିତରେ ସ୍ୱାଭିମାନର ଭାବନା ଉଦ୍ରେକ କରାଇବା। ଯେଉଁ ସମୟରେ ଆମେ ଏହି ଆନ୍ଦୋଳନ ଆରମ୍ଭ କଲେ, ସେତେବେଳେ ଅନେକ ଆମକୁ ବିରୋଧ କରୁଥିଲେ। ଏପରିକି ଜଣେ ଦାୟିତ୍ୱସ-ନ୍ନ ମନ୍ତ୍ରୀ ଏକ ଦୀର୍ଘ ନିଶ୍ୱାସ ନେଇ ମୋତେ ପ୍ରଶ୍ନକଲେ - " ଆପଣ ଆତ୍ମମର୍ଯ୍ୟାଦା କହିଲେ କଣ ବୁଝନ୍ତି ? ଆପଣ କ'ଣ ଭାବୁଛନ୍ତି ଆମର ବର୍ତ୍ତମାନ ଆତ୍ମସମ୍ମାନ ନାହିଁ ? ଆପଣଙ୍କ ଆନ୍ଦୋଳନର ନାଁଟି ଶୁଣି ମୋତେ ବିରକ୍ତି ଲାଗୁଛି"। ଏହାଶୁଣି ହସ ଲାଗୁଛି। ମୁଁ ଶାନ୍ତ ଭାବରେ ତାଙ୍କୁ ଏହା ବୁଝାଇଲି। ମୁଁ ତାଙ୍କୁ କହିଲି "ଆମେବି ଏଥିପାଇଁ ଦୁଃଖ ଅନୁଭବ କରୁଛୁ। ତେବେ ଆପଣ ଦୟାକରି ମୋତେ କୁହନ୍ତୁ, ଆପଣ କିଏ ? ସେ ମୋତେ ପଚାରିଲେ -ମୁଁ କାହିଁକି ତାଙ୍କୁ ଏପ୍ରକାର ପ୍ରଶ୍ନ ପଚାରୁଛି? ମୁଁ ତାଙ୍କୁ ତାଙ୍କର ସାମାଜିକ ସ୍ଥିତି ବିଷୟରେ ପ୍ରଶ୍ନ କଲି। ସେ ମୋତେ କହିଲେ ଯେ ସେ ଜଣେ ମନ୍ତ୍ରୀ, ଏହାହିଁ ତାଙ୍କର ଜୀବନର ପରିଚୟ । ତେବେ ଜାତି ଦୃଷ୍ଟିରୁ ସେ

Digitized by srujanika@gmail.com

ଜଣେ ରେଡ୍ଡି ବୋଲି କହିଲେ। ରେଡ୍ଡି, ନାଇକର, ନାୟୁଡୁ ଗୌନ୍ଦର ଇତ୍ୟାଦି ସାଙ୍ଗିଆ ଗୁଡିକ ଜାତି ସୂଚକ, ଶାସ୍ତ୍ର ଅନୁଯାୟୀ ଏମାନେ ଶୂଦ୍ର। ଧର୍ମ ପର-ରାରେ ଶୂଦ୍ରମାନେ ହେଉଛନ୍ତି ଚତୁର୍ଥ ବର୍ଣ୍ଣ ଓ ନ୍ୟୂନ। ଏହି ବ୍ୟବସ୍ଥା ଦୀର୍ଘ ଦିନରୁ ଆମ ସମାଜରେ ପ୍ରଚଳିତ। ସାମାଜିକ ଭେଦଭାବ ବିରୋଧରେ ଆମ୍ଭେମାନେ ଆମର ଆନ୍ଦୋଳନ ଆରମ୍ଭ କରିଛୁ। ଏହାପରେ ଶୂଦ୍ରର ଅର୍ଥ କଣ ବୋଲି ମୁଁ ତାଙ୍କୁ ପ୍ରଶ୍ନ କଲି। ମୁଁ ତାଙ୍କୁ ବୁଝାଇଲି ଯେ ଶୂଦ୍ରମାନେ ହେଉଛନ୍ତି ଦେହଜୀବୀର ସନ୍ତାନ। ମୁଁ ପୁନଶ୍ଚ କହିଲି- "ଆପଣ ବି.ଏ., ବି.ଏଲ୍., ପାଶ କରି ଉଚ୍ଚ ଶିକ୍ଷା ଲାଭ କରିଛନ୍ତି। ଆପଣ ୩ ବର୍ଷ ଧରି ମନ୍ତ୍ରୀ ରହିଛନ୍ତି। ତଥାପି ମଧ୍ୟ ଆପଣ ଜଣେ ଶୂଦ୍ର। ଆପଣ ନିଜର ନିମ୍ନ ସାମାଜିକ ସ୍ଥିତି ନେଇ ଅପମାନିତ ବୋଧ କରୁନାହାଁନ୍ତି ? କିନ୍ତୁ ଯେ ଆପଣଙ୍କ ପାଖରେ ହାତ ପତାଉଛି, ନିଜକୁ ଉଚ୍ଚଜାତିର କହି ପରିଚୟ ଦେଉଛି, ଜାତି ଦୃଷ୍ଟିରୁ ଆପଣ ତାଙ୍କୁ ଉଚ୍ଚ ମାନୁଛନ୍ତି। ତାଙ୍କର ପାଦତଳେ ମୁଣ୍ଡ ନୁଆଇଁଛନ୍ତି। ଏବେ ଆପଣ ମୋତେ କୁହନ୍ତୁ, ଆପଣ ଆତ୍ମମର୍ଯ୍ୟାଦା ଆନ୍ଦୋଳନ ଚାହାଁନ୍ତି କି ନାହିଁ ? ତାଙ୍କର ସରଳ ଉତ୍ତରଟି ଥିଲା- "ଏସବୁ ସାମାଜିକ ବ୍ୟବସ୍ଥା ବହୁ ଅତୀତରୁ ରହି ଆସିଛି।"

ଏବେ ଆପଣ ଅନୁଭବ କରିବେ ଯେ ଆମ ଆନ୍ଦୋଳନର କାର୍ଯ୍ୟ ବେଶ୍ ଗୁରୁତ୍ୱପୂର୍ଣ୍ଣ। ଯଦିବା ଏହା ଏତେ ସହଜ ନୁହେଁ, ଆମକୁ ଏଥିପାଇଁ କଠିନ ପରିଶ୍ରମ କରିବାକୁ ହେବ। ଯେଉଁ କ୍ଷତ ଅଳ୍ପଦିନର, ତାହା ଶୀଘ୍ର ଆରୋଗ୍ୟ ହୋଇପାରିବ। ତେବେ ଯେଉଁ କ୍ଷତ ଏକ ଆବୁରେ ପରିଣତ ହୋଇ ଯାଇଛି, ତାହାର ଉପଶମ ପାଇଁ ଅସ୍ତ୍ରୋପଚାର ଆବଶ୍ୟକ। ଯେହେତୁ ଆମର ସାମାଜିକ ବ୍ୟବସ୍ଥା ମନ୍ଦ ଓ ଗଭୀର, ଏହାର ଦୂରୀକରଣ ପାଇଁ ଗଭୀର ପ୍ରୟାସ ଆବଶ୍ୟକ।

**ଆତ୍ମମର୍ଯ୍ୟାଦା ଆନ୍ଦୋଳନ (ହେତୁବାଦୀ ଆନ୍ଦୋଳନ)-**

ଆତ୍ମମର୍ଯ୍ୟାଦା ଆନ୍ଦୋଳନକୁ ଏକ ହେତୁବାଦୀ ସଂସ୍କାର କୁହାଯାଇ ପାରିବ। ତେବେ ତାର ମୂଳ ସିଦ୍ଧାନ୍ତ କ'ଣ ? ପ୍ରଥମେ ଯାହା ଆମକୁ ନ୍ୟୂନ କରି ରଖିଛି ତାହାର ଯଥାର୍ଥ କାରଣକୁ ବାହାର କରିବାକୁ ହେବ। ଯାହା ଆମକୁ ଏକ

Digitized by srujanika@gmail.com

ଅସମ୍ମାନିତ ସ୍ଥିତିରେ ରଖିଆସିଛି, ତାହାର କାରଣ ସମୂହକୁ ଖୋଜିବାକୁ ପଡିବ। ଯେହେତୁ ଈଶ୍ୱରଙ୍କୁ ଏକ କାରଣ ଭାବରେ ନେଉଛେ, ତେଣୁ ଈଶ୍ୱର ଭାବନାକୁ ଦୂର କରିବାକୁ ପଡିବ। କଂଗ୍ରେସ ଯେହେତୁ ଏହି ବ୍ୟବସ୍ଥାକୁ ରକ୍ଷା କରିବା ଦିଗରେ ଏକ କାରଣ, ଆମକୁ କଂଗ୍ରେସକୁ ପ୍ରତ୍ୟାଖ୍ୟାନ କରିବାକୁ ହେବ। ମହାତ୍ମା ଗାନ୍ଧୀ ଆମର ସ୍ୱାର୍ଥ ବିରୋଧରେ କାର୍ଯ୍ୟ କରୁଛନ୍ତି। ତାଙ୍କର ପ୍ରଭାବକୁ ଦୂର କରିବାକୁ ପଡିବ। ବ୍ରାହ୍ମଣବାଦ ଆମର ଏହି ଦୟନୀୟ ସ୍ଥିତି ପାଇଁ ଏକ ମୁଖ୍ୟ କାରଣ, ତେଣୁ ଆମେ ବ୍ରାହ୍ମଣବାଦକୁ ବିରୋଧ କରୁଛୁ। ଧର୍ମ ସୁସ୍ଥ ସମାଜ ପାଇଁ ପ୍ରତିବନ୍ଧକ। ଆମକୁ ଏଣୁ ଧର୍ମକୁ ପ୍ରତ୍ୟାଖ୍ୟାନ କରିବାକୁ ହେବ। ଆତ୍ମମର୍ଯ୍ୟାଦା ଆନ୍ଦୋଳନ ଏହି ମନ୍ଦ ଶକ୍ତି ବିରୋଧରେ ଏକ ଆଲୋଡନ। ଅନ୍ୟ ଭାବରେ କହିଲେ ଈଶ୍ୱର, ଧର୍ମ ଓ ବ୍ରାହ୍ମଣବାଦ ବିରୋଧରେ ଆତ୍ମମର୍ଯ୍ୟାଦା ଆନ୍ଦୋଳନ ଲଡିବାକୁ ହେବ। ଏହି ଶକ୍ତିମାନେ ଯେଉଁ କ୍ଷତିକାରକ ବ୍ୟବସ୍ଥାକୁ ଜାବୁଡି ଧରିଛନ୍ତି ଓ ଯାହା ଆମର ଲୋକମାନଙ୍କୁ ନ୍ୟୂନ କରି ରଖିଛି, ତାହା ବିରୋଧରେ ଆମକୁ ସଂଗ୍ରାମ କରିବାକୁ ପଡିବ। ଯେଉଁ ବ୍ୟବସ୍ଥା ଆମକୁ ସାମାଜିକ ସ୍ତରରେ ଦାସତ୍ୱର ବେଡି ପିନ୍ଧାଇଛି, ତାହାକୁ ପ୍ରତ୍ୟାଖ୍ୟାନ ନକଲେ ସାମାଜିକ ସ୍ତରରେ ଆମେ ମର୍ଯ୍ୟାଦାର ସହ ବଞ୍ଚିପାରିବା ନାହିଁ। ସେଥିପାଇଁ ଆମେ ଆତ୍ମ ମର୍ଯ୍ୟାଦା ଜରିଆରେ ଆମ ଲୋକଙ୍କର ଉଦ୍ଧାର ଚାହୁଁଛେ।

ଏହା କହିବାର ଅର୍ଥ ନୁହେଁ ଆମେମାନେ ରାଜନୀତିରେ ସଂପୃକ୍ତ ହେବା। ଆତ୍ମ ମର୍ଯ୍ୟାଦା ଆନ୍ଦୋଳନ ଏକ ରାଜନୈତିକ ସଂଗଠନ ନୁହେଁ। ଏହା ସଂପୂର୍ଣ୍ଣ ଭାବେ ଏକ ସମାଜ ସଂସ୍କାର ଆନ୍ଦୋଳନ। ଯେଉଁ ଶକ୍ତି ଗୁଡିକ ଆମ ବିକାଶର ପ୍ରତିକୂଳ ତାକୁ ବିରୋଧ କରିବା ଛଡା ଆମର ଅନ୍ୟ ଉପାୟ ନାହିଁ। ଆପଣମାନେ କଂଗ୍ରେସର ନୀତି ବିଷୟରେ ଚିନ୍ତା କରନ୍ତୁ। କଂଗ୍ରେସର ନୀତି ହେଉଛି ଧର୍ମ, ଜାତି ଓ ବ୍ରାହ୍ମଣମାନଙ୍କର ସ୍ୱାର୍ଥକୁ ରକ୍ଷାକରିବା । ବ୍ରାହ୍ମଣମାନେ ନିଜର ସ୍ୱାର୍ଥ ସାଧନ ପାଇଁ ଗାନ୍ଧୀଙ୍କର ସାହାଯ୍ୟ ଲୋଡିଥାନ୍ତି। ଯେହେତୁ ଗାନ୍ଧୀ ପ୍ରତିକ୍ରିୟାଶୀଳ ଭାବନାର ସମର୍ଥକ, ସେମାନେ ତାଙ୍କୁ ମହାତ୍ମା କରିଛନ୍ତି। ଗାନ୍ଧୀ ବ୍ରାହ୍ମଣମାନଙ୍କର କଥାର ସମର୍ଥକ।

Digitized by srujanika@gmail.com

ସେ ବହୁ ସମୟରେ ଈଶ୍ୱର, ଶାସ୍ତ୍ର, ବର୍ଣ୍ଣାଶ୍ରମଧର୍ମ, ହିନ୍ଦୁଧର୍ମ, ରାମଙ୍କ ବିଷୟରେ ଅହେତୁକ କଥାମାନ କହିଥାନ୍ତି । ତାଙ୍କର ପ୍ରଚାର ଜନଗଣଙ୍କୁ ଗୁରୁତ୍ୱପୂର୍ଣ୍ଣ ମନେ ହେଉଛି । ସ୍ତ୍ରୁତି ଅନେକ ପତ୍ରପତ୍ରିକା ବ୍ରାହ୍ମଣମାନଙ୍କର ଏକଚାଟିଆ ଅଧିକାରରେ ରହିଛି । ଆମମାନଙ୍କର କୌଣସି ପତ୍ରପତ୍ରିକା ନାହିଁ । ଆମର ଲୋକମାନେ ସେମାନଙ୍କ ପ୍ରଚାରଦ୍ୱାରା ପ୍ରଭାବିତ ହେଉଛନ୍ତି । ଯେଉଁ ମୁହୂର୍ତ୍ତରେ ଜଣେ ବ୍ରାହ୍ମଣଙ୍କର ସୂଚନା ଦିଆଯାଉଛି ଲୋକମାନେ ତାଙ୍କୁ ସମ୍ମାନ କରୁଛନ୍ତି । ସେଥିପାଇଁ ସମାଜରୁ ବ୍ରାହ୍ମଣବାଦ ଦୂର କରିବାକୁ ନିଷ୍ପତ୍ତି କରୁଛେ । ଏହା ସହିତ ଈଶ୍ୱର ଓ ଧର୍ମ ସମାଜରୁ ଦୂର ହେବା ଆବଶ୍ୟକ । ଗାନ୍ଧୀ ଯେଉଁ ବର୍ଣ୍ଣ ଧର୍ମକୁ ସମର୍ଥନ କରୁଛନ୍ତି ତାହାକୁ ବିରୋଧ କରାଯିବା ଆବଶ୍ୟକ । ଯେଉଁ ସରକାର ଦୃଢତାର ସହ ଏସବୁକୁ ସମର୍ଥନ କରିବାକୁ ନିୟମ କରିଛି ତାକୁ ବି ବିରୋଧ କରାଯିବା ଉଚିତ୍ । ଯେଉଁ ବ୍ରାହ୍ମଣ ମାନେ ଅନ୍ୟମାନଙ୍କୁ ପତିତ କରି ଯୁଗ ଯୁଗ ଧରି ଅତ୍ୟାଚାର କରିଆସିଛନ୍ତି, ସେମାନଙ୍କୁ ଜବାବ ଦେବା ଦରକାର । ସମାଜରେ ଯେଉଁ ଲଜ୍ଜାକର ପରିବେଶ ରହିଛି, ତାକୁ ପରିବର୍ତ୍ତନ କରିବା ଏକ ନୈତିକ ଦାୟିତ୍ୱ । ମୁଁ ଯାହା କହୁଛି, ତାହାର ସତ୍ୟା ସତ୍ୟନେଇ ଆପଣମାନେ ଚିନ୍ତାକରନ୍ତୁ । ମୋର କଥାକୁ ଅନ୍ଧାନୁକରଣ କରିବା ପାଇଁ ମୁଁ କହୁନାହିଁ । ମୋର ମତକୁ କେଉଁଶାସ୍ତ୍ର ବା ବେଦ ଆଧାରରେ ମୁଁ ଆପଣଙ୍କ ପାଖରେ ପ୍ରକାଶ କରୁନାହିଁ । ସମାଜର ଯେଉଁ ପରିବେଶ ମୁଁ ଦେଖୁଛି ଓ ଯାହା ମୋତେ ଆନ୍ଦୋଳିତ କରୁଛି, ମୁଁ ତାହା ହିଁ ଆପଣମାନଙ୍କୁ କହୁଛି । ଆପଣମାନେ ଏସବୁ ଉପରେ ଚିନ୍ତା କରନ୍ତୁ, ମୋର କଥାରେ ଯଦି କିଛି ସତ୍ୟ ପାଉଛନ୍ତି, ତାହାକୁ ଗ୍ରହଣ କରନ୍ତୁ । ନଚେତ୍ ତାକୁ ପ୍ରତ୍ୟାଖ୍ୟାନ କରନ୍ତୁ । କୌଣସି ବ୍ୟକ୍ତି ଅନ୍ଧଭାବରେ ମୋତେ ସମର୍ଥନ କରିବାକୁ ମୁଁ କହୁନାହିଁ । ମୋ ମତ ସହ ସହମତ ହେଉନଥିବା ଲୋକଙ୍କ ଉପରେ ମୁଁ ମୋର ମତକୁ ଲଦି ଦେଉନାହିଁ । କାହାକୁ ବିପଥଗାମୀ କରାଇବା ମୋର ଉଦ୍ଦେଶ୍ୟ ନୁହେଁ । ଆପଣମାନେ ଯେ ଚିନ୍ତା କରିବାକୁ ସମର୍ଥ ମୁଁ ଏହା ଆପଣମାନଙ୍କୁ କେବଳ ସ୍ମରଣ କରାଇ ଦେଉଛି । ଘଟଣାମାନଙ୍କୁ ମୂଲ୍ୟାୟନ କରି ଭଲମନ୍ଦ ଜାଣିବାର ସାମର୍ଥ୍ୟ

Digitized by srujanika@gmail.com

ଆପଣମାନଙ୍କର ଅଛି, ତେବେ ବ୍ରାହ୍ମଣମାନଙ୍କର ପ୍ରଚାର ଓ ସେମାନଙ୍କ ନିୟନ୍ତ୍ରିତ ସାଧନମାନଙ୍କର ପ୍ରଭାବରୁ ଆପଣମାନେ ନିଜ ବିଚାରକୁ ସ୍ୱାଧୀନ ଭାବରେ ପରିଚାଳିତ କରିପାରୁ ନାହାନ୍ତି । ସେଥିପାଇଁ ସମାଜ ସଂସ୍କାର ପାଇଁ ମୁଁ ପ୍ରାଧାନ୍ୟ ଦେଉଛି । ଅନ୍ୟ କେତେକ ନେତା ଜୀବନରେ କେବଳ ସଫଳତା ପାଇଁ ପ୍ରୟାସ କରୁଛନ୍ତି । ସାମାଜିକ ବାସ୍ତବତା ଠାରୁ ସ୍ୱାର୍ଥପର ଭାବରେ ସେମାନେ ଦୂରେଇ ଯାଉଛନ୍ତି । ଏକ୍ଷେତ୍ରରେ ଏହାହିଁ ମୋର ସୁଚିନ୍ତିତ ମତ ।

**ବିଚାରଶୀଳତା -**

ଆମ ସମାଜ କେତେକ କ୍ରାନ୍ତିକାରୀ ଶାସନ କୌଶଳ ଆବଶ୍ୟକ କରେ । ବିଚାରଶୀଳତାର ପ୍ରସାର ଆମ ପାଇଁ ଅତ୍ୟନ୍ତ ଜରୁରୀ ମନେହୁଏ । ଏହି ସୁ ଉଦ୍ଦେଶ୍ୟ ନେଇ ଆମେମାନେ ହେତୁବାଦୀ ସଂଘ ସ୍ଥାପନା କରିଛୁ । କେତେକ ବ୍ୟକ୍ତି ହେତୁବାଦୀ ସଂଘ ପ୍ରତିଷ୍ଠାକୁ ନିନ୍ଦାକରି ପାରନ୍ତି । ଆମର ଆନ୍ଦୋଳନ ଯେ ଅନ୍ୟମାନଙ୍କ ବିରୋଧରେ ଅଭିପ୍ରେତ, ସେମାନେ ଆମ ବିରୁଦ୍ଧରେ ଏହି ଅଭିଯୋଗ ଆଣିପାରନ୍ତି । ମୁଁ ଏଠାରେ ସ୍ପଷ୍ଟ କରିବାକୁ ଚାହେଁ ଯେ ଆମେ କାହା ବିରୁଦ୍ଧରେ କେବେ ନାହୁଁ । କୌଣସି ସମୟରେ ସାମାଜିକ ନ୍ୟାୟ ବା ବିଚାରଶୀଳତାକୁ ଆମେମାନେ ବିରୋଧ କରିନାହୁଁ । ବରଂ ଆମ ସଂଗଠନର ମୌଳିକ ଆଭିମୁଖ୍ୟ ହେଉଛି ନ୍ୟାୟ ଓ ବିଚାରଶୀଳତା ପ୍ରସାର ଘଟାଇବା । ଦୁଃଖର କଥା ଅନ୍ୟମାନେ ଆମକୁ ପଶୁ କହୁଛନ୍ତି । ଆମ ବିରୁଦ୍ଧରେ ଯାଇ ସେମାନେ ବର୍ଣ୍ଣାଶ୍ରମ ଧର୍ମ ସଂଘ ସ୍ଥାପନ କରିଛନ୍ତି । ଜାତି ବ୍ୟବସ୍ଥାକୁ ସୁରକ୍ଷା ଦେବାକୁ ସେମାନେ ଏହା କରୁଛନ୍ତି । ପ୍ରାଚୀନ ବ୍ୟବସ୍ଥାକୁ ଧରି ରଖିବାକୁ "ସନାତନ ଧର୍ମ ସଂଘ" ସେମାନେ ଗଠନ କରିଛନ୍ତି । ସେମାନେ ରାମ, କୃଷ୍ଣଙ୍କର ଅବତାରଣା କରି, ସେମାନେ ସମର୍ଥନ କରିଥିବା ଜାତି ବ୍ୟବସ୍ଥା ସପକ୍ଷରେ କହୁଛନ୍ତି । ପର-ରାକୁ ଯଥାର୍ଥ ବୋଲି ନେଇ ସେମାନେ ଆପଣମାନଙ୍କୁ ଚିନ୍ତାକରିବାର ଅବକାଶ ଦେଉନାହାଁନ୍ତି । ଧର୍ମ, ଈଶ୍ୱର, ଆଧ୍ୟାତ୍ମିକ ଗୁରୁ ଓ ଅନ୍ୟମାନଙ୍କ ସ-ର୍କରେ ଯାହା କୁହାଯାଇଛି ସେ ସମ୍ବନ୍ଧରେ ଚିନ୍ତା କରିବାର ଅଧିକାର ଆପଣମାନଙ୍କର ନାହିଁ । ଆମର ପ୍ରଚାର ଈଶ୍ୱର, ଶାସ୍ତ୍ର ଓ ଧର୍ମ ବିରୋଧରେ

Digitized by srujanika@gmail.com

ଉଚ୍ଛିଷ୍ଟ ବୋଲି ସେମାନେ ଭୁଲରେ ଭାବୁଛନ୍ତି । ଆମର ପ୍ରଚାର ସେମାନଙ୍କର ଭାବ ପ୍ରବଣତାକୁ ଆଘାତ ଦେଉଛି ବୋଲି ସେମାନେ ସମାଲୋଚନା କରୁଛନ୍ତି । ଏଥିରେ ଆମର କଣ କହିବାର ଅଛି ! କେତେ ଦିନ ଧରି ଶୂଦ୍ରର ପରିଚୟ ନେଇ ଆମେ ଅସମ୍ମାନକୁ ସହ୍ୟ କରୁଥିବା? ଅପମାନ, ବୈଷମ୍ୟ ଓ ଶୋଷଣକୁ ଆମେ କେତେଦିନ ମୁଣ୍ଡପାତି ସହିବା? ସେମାନଙ୍କର କଥାକୁ ଆମେ କେତେଦିନ ଅନ୍ଧଭାବରେ ବିଶ୍ୱାସ କରିବା? ଆଜି ଲୋକମାନେ ଉଡାଜାହାଜରେ ଯାତ୍ରା କରି ପାରୁଛନ୍ତି । ବିଜ୍ଞାନର ଅଗ୍ରଗତି ସତ୍ତ୍ୱେ ବ୍ରାହ୍ମଣ ମାନଙ୍କର ପାଦଧୋଇ ଲୋକେ ତାହାକୁ ପାନ କରୁଛନ୍ତି । ସେମାନଙ୍କର ଏହି ବ୍ୟବସ୍ଥା ବିରୋଧରେ ଆମେ ସ୍ୱର ଉତ୍ତୋଳନ କଲାବେଳେ ସେମାନଙ୍କ ଭାବପ୍ରବଣତା କାହିଁକି ଆଘାତ ପ୍ରାପ୍ତ ହେଉଛି? ଆମ ହୃଦୟ ଠାରୁ ସେମାନଙ୍କ ହୃଦୟ କେବେ.ବଡ ନୁହେଁ । ଆମେ ଆମର କର୍ତ୍ତବ୍ୟ କରୁଛେ । ତେବେ ଆମେ ବିପଦ ଓ ପ୍ରତିବନ୍ଧକ ସବୁ ସମୟରେ ସହ୍ୟ କରୁଛେ । ଏପରିକି ଆମେମାନେ ଆମର ମର୍ଯ୍ୟାଦା ପାଇଁ ଆମର ଜୀବନକୁ ବଳିଦେବା ଆବଶ୍ୟକ । ମୃତ୍ୟୁ ତ ଦିନେ ଆସିବ, ତେବେ ଅନ୍ୟାୟକୁ ଆମେ ନିରବରେ କାହିଁକି ସହିଯିବା ? ଅତୀତରେ ଆମେ ବହୁ ଅନ୍ୟାୟର ଶିକାର ହୋଇଛେ । ଆମର ସରଳତା ପାଇଁ ଆମେ ଶୋଷିତ ହୋଇ ରହିଛେ, ଫଳରେ ସାମାଜିକ ପ୍ରଗତି ସମ୍ଭବ ହୋଇନାହିଁ । ଶିକ୍ଷିତ ଲୋକମାନେ ମଧ୍ୟ ଅନ୍ୟାୟ ପ୍ରତି ସ୍ପର୍ଶକାତର ଶୂନ୍ୟ ହୋଇ ରହିଛନ୍ତି । ଧୂର୍ତ୍ତ ବଳଶାଳୀ ଲୋକମାନେ ଧର୍ମକୁ ସୁରକ୍ଷା ଦେଇ ଆସିଛନ୍ତି । ଏହା ହୋଇ ନଥିଲେ ବହୁ ବିକାଶ ହୋଇପାରିଥାନ୍ତା । ଖ୍ରୀଷ୍ଟିଆନମାନେ ଆମକୁ ଆକ୍ରମଣ କରିଥିବା ଆମେ କହୁଛେ । ମୁସଲମାନମାନେ ଆମକୁ ବିରୋଧ କରିବା ଆମେ କହିଆସିଛେ । ଆମେ ଯେତେବେଳେ ସେମାନଙ୍କୁ ଛାଡି ଆମଧର୍ମ ସ-ର୍କରେ କହୁଛେ, ବ୍ରାହ୍ମଣମାନେ ବିରୋଧ କରୁଛନ୍ତି । କିନ୍ତୁ ସେମାନେ ଏଥିପାଇଁ ସମ୍ମୁଖକୁ ଆସୁନାହାନ୍ତି । ଯେଉଁମାନେ ବାରନାରୀର ପୁତ୍ରବୋଲି ନିଜର ସାମାଜିକ ପରିଚୟକୁ ତଥାପି ସ୍ୱୀକାର କରୁଛନ୍ତି, ସେମାନଙ୍କୁ କ'ଣ କୁହାଯିବ? ଯେଉଁମାନେ ନିଜର କପାଳରେ ଚନ୍ଦନ ବୋଳି ଶିବ ଶିବ ଓ ରାମ ରାମ ଭଜୁଛନ୍ତି ସେମାନେ ହିଁ ଆମ ସହ ବିବାଦ କରୁଛନ୍ତି ।

Digitized by srujanika@gmail.com

ମୋ ବିରୁଦ୍ଧରେ କୋର୍ଟରେ କରାଯାଇଥିବା ମକଦମା ବିଷୟରେ ମୁଁ ଏଠାରେ କିଛି ଉଲ୍ଲେଖ କରିବାକୁ ଚାହୁଁ ନାହିଁ । ସାଲେମ ଠାରେ ମୁଁ ଯେତେବେଳେ ରାମଙ୍କ ଛବିରେ ଜୋତାମାଳ ଦେଲି କୌଣସି ବ୍ରାହ୍ମଣ ମୋ ବିରୁଦ୍ଧରେ ଅଦାଲତକୁ ଯାଇନଥିଲେ । ବରଂ ଆମରି ଲୋକ ହିଁ ମୋ ବିରୁଦ୍ଧରେ ମୋକଦମା କଲେ । ସେମାନଙ୍କର ଅଭିଯୋଗ ହେଲା ଯେ ମୋର କାର୍ଯ୍ୟ ସେମାନଙ୍କର ହୃଦୟକୁ ଆଘାତ ଦେଇଛି । ମୁଁ ବିଚାରାଳୟରୁ ନିର୍ଦ୍ଦେଶ ପାଇଲି । ଆପଣମାନେ ଏହା ସମ୍ବାଦ ପତ୍ରରୁ ପଢିଥିବେ । ଏହି ପୁରୁଣା ବ୍ୟାଧିକୁ ଦୂର କରିବାକୁ ହେଲେ ଆମକୁ ଗମ୍ଭୀରତାର ସହ ପଦକ୍ଷେପ ନେବାକୁ ହେବ । ଏହି ସାମାଜିକ ବ୍ୟାଧିର ମୂଳକୁ ଯିବାକୁ ହେବ । କେବଳ ଭାଷଣ ଦେଲେ ସୁଫଳ ମିଳିବ ନାହିଁ । କେତେକ ବୈପ୍ଳବିକ ବିଚାରର ପ୍ରସାର ପାଇଁ ଆମେ ହେତୁବାଦୀ ସଂଘ ଗଠନ କରିଛେ । ଯଦି ଆମେ ନିଜକୁ ହିନ୍ଦୁକରିବା ତେବେ ଆମ ପରିଚୟ ହେବ ଆମେ ଶୂଦ୍ର । ଏହାର ତାତ୍ପର୍ଯ୍ୟ ହେବ ଆମେ ଛୋଟ, ନ୍ୟୂନ ଓ ପତିତ । ଏହା ସହିତ ଆମକୁ ଶାସ୍ତ୍ର, କର୍ମକାଣ୍ଡ, ଈଶ୍ୱର ଓ ରକ୍ଷଣଶୀଳ ପର-ମ୍ପରାକୁ ମାନିନେବାକୁ ହେବ ।

ଆମେ କାହିଁକି ଶୂଦ୍ର ବା ବାରନାରୀର ସନ୍ତାନ ଏହି ପ୍ରଶ୍ନ ପଚାରିବା ଯଥାର୍ଥ ନୁହେଁ କି ? ଯଦି କୁହାଯାଏ ଏହା ଗୀତାରେ କୁହାଯାଇଛି ବା ଏହାକୁ ଭଗବାନ କୃଷ୍ଣ କହିଛନ୍ତି ଆମେ ସେମାନଙ୍କୁ ପ୍ରତ୍ୟାଖ୍ୟାନ କରିବା ଯଥାର୍ଥ ହେବନାହିଁ କି? ଏହା କରିବାରେ ଆପଣମାନେ ଯଦି ଭୟାଳୁ ହେବେ, ତେବେ ଆପଣମାନେ ଶୂଦ୍ର ହୋଇ ରହିବେ । ସେହିଭଳି ମଧ୍ୟ ରାମଙ୍କର କଥା । ତାଙ୍କମତରେ ଆମେମାନେ ଶୂଦ୍ର ଓ ନ୍ୟୂନ । ଶମ୍ବୁକ ଶୂଦ୍ର ହୋଇଥିବାରୁ ତାକୁ ରାମ ହତ୍ୟାକରିବା ଆପଣମାନେ ଜାଣନ୍ତି । ତାଙ୍କର ଅପରାଧ ଥିଲା ସେ ବ୍ରାହ୍ମଣ ନ ହୋଇ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲେ । ଏଥିପାଇଁ ରାମଚନ୍ଦ୍ର ତାଙ୍କର ଶିରଛେଦ କଲେ । ଈଶ୍ୱରଙ୍କୁ ପ୍ରାର୍ଥନା ଅଧିକାର ମଧ୍ୟ ଶୂଦ୍ରମାନଙ୍କର ନାହିଁ । କେବଳ ବ୍ରାହ୍ମଣମାନେ ଈଶ୍ୱରଙ୍କୁ ପୂଜା ବା ପ୍ରାର୍ଥନା କରିବେ । ଏହା ହିଁ ରାମ କହିଛନ୍ତି । ଜଣେ ଶୂଦ୍ର ଈଶ୍ୱରଙ୍କୁ ପ୍ରାର୍ଥନା କରିବାରୁ ଜଣେ ବ୍ରାହ୍ମଣଙ୍କର ମୃତ୍ୟୁ ହେବା କାହାଣୀକୁ ଏହା ସହିତ ଯୋଡା ଯାଇଛି । ବ୍ରାହ୍ମଣର ମୃତ୍ୟୁପାଇଁ ଶୂଦ୍ରର ପ୍ରାର୍ଥନାକୁ ରାମ ଦାୟୀ କରିଛନ୍ତି ।

Digitized by srujanika@gmail.com

ଜଣେ ବ୍ରାହ୍ମଣ ଏପରି କିପରି ମୃତ୍ୟୁବରଣ କଲା ମୁଁ ଆପଣମାନଙ୍କୁ ପଚାରୁଛି । ସେତ ମୃତ୍ୟୁରେ ସ୍ୱର୍ଗକୁ ଯିବା କଥା, ଜଣେ ବ୍ରାହ୍ମଣଙ୍କର ମୃତ୍ୟୁ କାହିଁକି ଏତେ ଗୁରୁତ୍ୱ ପୂର୍ଣ୍ଣ ?

କାହାଣୀଟିରେ କୁହାଯାଇଛି ଯେ ରାମଙ୍କ ଶାସନକାଳରେ ଅଧର୍ମ ହୋଇଥିବାରୁ ବ୍ରାହ୍ମଣ ମୃତ୍ୟୁବରଣ କଲା । କେଉଁଠି ଅନ୍ୟାୟ ହେଲା ବୋଲି ରାମ ପ୍ରଶ୍ନ କଲେ? କିଏ ଓ କିପରି ଅନ୍ୟାୟ କରୁଛି ତାହା ଜାଣିବାକୁ ରାମ ଚାହିଁଲେ । ବ୍ରାହ୍ମଣମାନେ କୌଣସି ସନ୍ତୋଷ ଜନକ ଉତ୍ତର ଦେଇ ପାରିଲେ ନାହିଁ । ରାମ ନିଜେ ଯାଇ ଏହା ଅନୁସନ୍ଧାନ କରିବାକୁ ସେମାନେ ରାମଙ୍କୁ କହିଲେ. ରାମ ଯାଇ ଦେଖିଲେ ଯେ ଶମ୍ବୁକ ତପସ୍ୟା କରୁଛନ୍ତି । "ତୁମେ କଣ କରୁଛ" ? ସେ କହିଲେ- ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି" । ରାମ ଉତ୍‌କ୍ଷିପ୍ତ ହେଲେ । ରାମ କହିଲେ, ତୁ ଶୂଦ୍ର ତୁ କେବଳ ବ୍ରାହ୍ମଣଙ୍କୁ ପୂଜା କରିବୁ । ତୁ ବ୍ରାହ୍ମଣଙ୍କୁ ପୂଜାକରିବା ପରିବର୍ତ୍ତେ କେଉଁ ସାହସରେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛୁ ? ଏହା ଅଧର୍ମ, ତୋର ଶିରଚ୍ଛେଦ ଦରକାର । ରାମ ତତ୍‌କ୍ଷଣାତ୍ ଶମ୍ବୁକକୁ ହତ୍ୟା କରିଥିଲେ ।

ଆପଣମାନେ ଭାବନ୍ତୁ ଆମେମାନେ ଏଠାରେ ନଥିଲେ ବ୍ରାହ୍ମଣମାନେ କଣ କରନ୍ତେ ? ଈଶ୍ୱରଙ୍କୁ ପୂଜା କରୁଥିବା ବ୍ୟକ୍ତି ମାନଙ୍କୁ ବ୍ରାହ୍ମଣମାନେ ହତ୍ୟା କରିବା ପାଇଁ ପଶ୍ଚାଦପଦ ହୁଅନ୍ତେ କି? ଶାସ୍ତ୍ରକୁ ଆମେ ଅବମାନନା କରୁଛେ ବୋଲି ସେମାନେ କହୁଛନ୍ତି । ବର୍ଣ୍ଣାଶ୍ରମ ଧର୍ମ ବା ଜାତି ବ୍ୟବସ୍ଥାକୁ କଡା କଡିଭାବେ ପାଳନ କରୁ ନଥିବାରୁ ସେମାନେ ଶାସକମାନଙ୍କୁ ଅପବାଦ ଦେଉଛନ୍ତି ।

**ଗୀତା**

ବ୍ରାହ୍ମଣମାନଙ୍କ ମତରେ କ୍ରିଷ୍ଣ ଜାତିପ୍ରଥା ସୃଷ୍ଟି କରିଛନ୍ତି । କ୍ରିଷ୍ଣ ପ୍ରତ୍ୟେକ ଜାତିର ବୃତ୍ତି ନିରୁପଣ କରିଛନ୍ତି ବୋଲି କୁହାଯାଏ । ସେ ଶୂଦ୍ର ଜାତିର ଲୋକମାନଙ୍କୁ ସୃଷ୍ଟି କରିଛନ୍ତି । ଶୂଦ୍ରମାନେ ପାଦରୁ ଜନ୍ମ, ତାର ଅର୍ଥ ସେମାନଙ୍କର ସ୍ଥାନ ତଳେ । ସେମାନେ ଯେହେତୁ ଚତୁର୍ଥ ବର୍ଣ୍ଣର ଲୋକ, ସେମାନେ କୌଣସି ସମ୍ମାନର ଅଧିକାରୀ ନୁହଁନ୍ତି । ସେମାନେ ବ୍ରାହ୍ମଣ ମାନଙ୍କର ଦାସ, ଓ ବ୍ରାହ୍ମଣ ମାନଙ୍କ ପାଇଁ କାର୍ଯ୍ୟ

Digitized by srujanika@gmail.com

କରିବାକୁ ସୃଷ୍ଟି ହୋଇଛନ୍ତି । ସେମାନଙ୍କର ସେବା ନକଲେ ସେମାନେ ଦଣ୍ଡନୀୟ । କୁହାଯାଏ ଶୂଦ୍ରମାନଙ୍କୁ କ୍ରିଷ୍ଣ ନରକରେ ଦଣ୍ଡ ଦେବେ ।

ଏହାହିଁ ହେଉଛି ଗୀତାର ବାଣୀ । ଗୀତାରେ ଯେହେତୁ ବ୍ରାହ୍ମଣମାନଙ୍କୁ ଉଚ୍ଚସ୍ଥାନ ଦିଆଯାଇଛି, ବ୍ରାହ୍ମଣମାନେ ଗୀତାକୁ ସର୍ବଶ୍ରେଷ୍ଠ ସମ୍ମାନ ଦେଇଥାନ୍ତି । ସେହି କ୍ରିଷ୍ଣଙ୍କୁ ପ୍ରତ୍ୟାଖ୍ୟାନ ନକଲେ ଆମର ଭବିଷ୍ୟତ କେଉଁଠି? ଆମେ ଏକଥା କହିଲାବେଳେ ଲୋକମାନେ କ୍ରୋଧାନ୍ୱିତ ହୋଇପଡନ୍ତି । କିନ୍ତୁ ଆମେମାନେ ଯେ ବାରନାରୀର ସନ୍ତାନ, ସେ ଏହା କହିଲାବେଳେ ଅନ୍ୟମାନେ ଏଥିରେ କ୍ରୋଧ ପ୍ରକାଶ କରନ୍ତି ନାହିଁ । ଆମର ମା ମାନେ ଯେ ବାରନାରୀ ଥିଲେ ଆମେ ଏହାକୁ ଗ୍ରହଣ କରିବାକି ? ଈଶ୍ୱର ଓ ଶାସ୍ତ୍ରକୁ ଅସ୍ୱୀକାର ନକରିବା ପାଇଁ ବ୍ରାହ୍ମଣମାନେ ଯାହା କହିଛନ୍ତି ତାହାକୁ ମାନିବା ଦ୍ୱାରା ସେମାନେ ଆମକୁ ଧ୍ୱଂସ କରିଛନ୍ତି । କୌଣସି ପ୍ରତିବାଦ କରିବାକୁ ଆମକୁ ବାରଣ କରାଯାଇଛି । ଆମେ ଯେତେବେଳେ ସତକଥା କହୁଛେ ଏହା ସେମାନଙ୍କୁ ଆଘାତ ଦେଉଛି ବୋଲି ସେମାନେ ଅଭିଯୋଗ କରୁଛନ୍ତି । ଆମର ପ୍ରତିବାଦ ପାଇଁ କିଛି ଅଘଟଣ ଘଟିବ ବୋଲି ସେମାନେ ଧମକ ଦେଉଛନ୍ତି । ପ୍ରଚଳିତ ସାମାଜିକ ବ୍ୟବସ୍ଥାରେ ସେମାନେ ଆମର ଲୋକମାନଙ୍କୁ ପ୍ରତିକ୍ରିୟାଶୀଳ କରୁଛନ୍ତି । ସେମାନେ ଆମକୁ ନ୍ୟୂନ କରି ରଖିଛନ୍ତି । ଦେଶରେ ଜାତିଗତ ବୈଷମ୍ୟ ପୂରା ରହିଛି । ଏପରିକି ଶିକ୍ଷିତ ଲୋକମାନେ ଜାତିଗତ ବୈଷମ୍ୟରୁ ମୁକ୍ତ ହୋଇ ପାରୁନାହାନ୍ତି । କୌଣସି ବିଦେଶୀୟ ଆମର ଜାତିଗତ ବୈଷମ୍ୟକୁ ଦେଖିଲେ ଆମକୁ କେଉଁ ଦୃଷ୍ଟିରେ ଦେଖିବେ !

ମନେକରନ୍ତୁ ଜଣେ ବିଦେଶୀୟ ଆମର ଜଣେ ଧର୍ମପ୍ରାଣ ଲୋକଙ୍କୁ ଦେଖିଲେ । ତାଙ୍କୁ ପଚାରିଲେ- ଆପଣ କୁଆଡେ ଯାଉଛନ୍ତି ? ସେ ଉତ୍ତର ଦେବେ ମୁଁ ପୂଜା କରିବାକୁ ମନ୍ଦିରକୁ ଯାଉଛି ।

କେଉଁ ଈଶ୍ୱରକୁ ?

ସେଠାରେ ଥିବା ପ୍ରତିମାକୁ - ଏହାହିଁ ଉତ୍ତର ହେବ ।

ଆପଣ କେତେ ନିର୍ବୋଧ । ଗୋଟିଏ ପଥର ବା ପ୍ରତିମା କିପରି ଈଶ୍ୱର ହେବେ ? ଏହା ଈଶ୍ୱର ବୋଲି ଆପଣଙ୍କୁ କିଏ କହିଲେ ?

Digitized by srujanika@gmail.com

ଜଣେ ବିଦେଶୀୟ୍ ଏପରି ପ୍ରଶ୍ନ ପଚାରିପାରିବେ । କିନ୍ତୁ ଆମର ଲୋକମାନେ ଏପରି ପ୍ରଶ୍ନ ପଚାରିବାକୁ କୁଣ୍ଠାବୋଧ କରିବେ । ଏପରିକି ମୁସଲମାନମାନେ ଗୋଟିଏ ପଥରରେ ଈଶ୍ୱର କିପରି ଅଛନ୍ତି ପ୍ରଶ୍ନ ପଚାରିବାକୁ ଆଗଭର ହେବେ ନାହିଁ । ସେମାନେ ହିନ୍ଦୁଙ୍କର ସଂଖ୍ୟା ଗରିଷ୍ଠତା ପାଇଁ ଏପରି ପ୍ରଶ୍ନ ପଚାରିବାକୁ ଭୟ୍ କରିବେ । ଖ୍ରୀଷ୍ଟିୟ୍ାନମାନେ ମଧ୍ୟ ଏହି ପ୍ରଶ୍ନ ଉଠାଇବେ ନାହିଁ ।

ପଥରରେ ଈଶ୍ୱର ଅଛନ୍ତି ବୋଲି ପ୍ରମାଣ ଦେବାକୁ କେହି ଅଗ୍ରସର ହେବେ କି? ତେବେ ପଥର ଭିତରେ ଯେ ଈଶ୍ୱର ଅଛନ୍ତି, ଏହା ନିରବରେ ବିଶ୍ୱାସ କରିବାକୁ ସମସ୍ତଙ୍କୁ କୁହାଯାଇଛି । ସ୍ୱର୍ଗ, ନରକ କେହି ଦେଖିଛନ୍ତି କି? ମୁକ୍ତି ପାଇଁ କେଉଁମାନେ ଲଢିବେ ? ଯଦି ଆମର ଲୋକମାନେ ଭକ୍ତସାଜି ବ୍ରାହ୍ମଣଙ୍କର ପାଦତଳେ ପଡିବେ, ତେବେ ଆମର ଉଦ୍ଧାର କିପରି ହେବ? ସେଥିପାଇଁ ହେତୁବାଦୀ ସଂଘକୁ ସୁଦୃଢ଼ କରିବାକୁ ମୁଁ ଆପଣମାନଙ୍କୁ ନିବେଦନ କରୁଛି । ଏହାକୁ ଯେପରି ହେଲେ କରିବାକୁ ହେବ । ତାହାହେଲେ ମଣିଷ ସମ୍ମାନର ସହ ବଞ୍ଚିପାରିବ । ପ୍ରତ୍ୟେକ ଯେପରି ମଣିଷ ଭଳି ବ୍ୟବହାର ଦେଖାଇବେ, ସେଥିପାଇଁ ଆମକୁ ଅନେକ କିଛି ନିଷ୍ଠାର ସହ କରିବାକୁ ହେବ । ଆମର ପ୍ରଚାର ପାଇଁ ଆମକୁ ସାହସୀ ହେବାକୁ ହେବ । ଏକ୍ଷେତ୍ରରେ ଯାହା ଆହ୍ୱାନ ଆସିବ, ତାକୁ ସମ୍ମୁଖୀନ ହେବାକୁ ହେବ । ମୁସଲମାନମାନେ ତାଙ୍କର ଧର୍ମର ସୁରକ୍ଷା ପାଇଁ କାର୍ଯ୍ୟକରିଥାନ୍ତି । ସେମାନେ ତ୍ୟାଗ ସହି ନାହାନ୍ତି କି? ଖ୍ରୀଷ୍ଟିୟ୍ାନମାନେ ତାଙ୍କ ଧର୍ମର ସୁରକ୍ଷା ପାଇଁ ଅନେକ କଷ୍ଟ ସ୍ୱୀକର କରିଛନ୍ତି । ଆମର ରାସ୍ତାରେ ମୁଁ ଅନେକ ସଙ୍କେତ ପାଉଛି । ଆମ ସପକ୍ଷରେ ଅନୁକୂଳ ବାତାବରଣ ଆସିଛି । ସୁତରାଂ ଏହି ସୁଯୋଗ ନେଇ ଆମେ ଆମର ଆତ୍ମ ମର୍ଯ୍ୟାଦା ପାଇଁ ସଂଗ୍ରାମ କରିବା ଆବଶ୍ୟକ ।

ବ୍ରାହ୍ମଣମାନେ ବୌଦ୍ଧଧର୍ମକୁ କିପରି ଧ୍ୱଂସ କଲେ? ସେମାନେ ଅନେକ ହିଂସାର ପଥ ଅବଲମ୍ବନ କରିଛନ୍ତି । ଅନେକ ବୌଦ୍ଧଙ୍କୁ ହତ୍ୟା କରାଯାଇଛି । ସେମାନଙ୍କ ଘର ଦୁଆର ପୋଡିଦିଆଯାଇଛି । ସେମାନଙ୍କ ମଠ ମାନଙ୍କୁ ଦଖଲ କରି ନିଆଯାଇଛି ।

Digitized by srujanika@gmail.com

ଶ୍ରମଣ ଧର୍ମକୁ କିପରି ନଷ୍ଟ କରାଗଲା ? ଶ୍ରମଣ ଧର୍ମାବଲମ୍ବୀମାନଙ୍କୁ ନିର୍ମମ ଭାବେ ହତ୍ୟା କରାଯାଇ ନାହିଁକି ? ଆଠ ହଜାର ଶ୍ରମଣମାନଙ୍କୁ ଏହି ଦଶା ଭୋଗିବାକୁ ହୋଇଛି । ସେମାନଙ୍କୁ ନିର୍ମମ ଭାବେ କରାଯାଇଥିବା ହତ୍ୟା ପାଇଁ ଏବେ ଉତ୍ସବ ପାଳନ କରାଯାଉଛି । ଏହି ଅମାନୁଷିକ କାର୍ଯ୍ୟକୁ ସେମାନେ ନଥିଭୁକ୍ତ କରି ରଖିଛନ୍ତି । ସେବରମ ଓ ପ୍ରବନ୍ଦମ ଗ୍ରନ୍ଥରେ ଏହାର ବିବରଣୀ ରହିଛି ।

ଆମେ ଆଜି ଯାହା କହୁଛୁ ତାହା ସେମାନଙ୍କ ପାଇଁ ରୁକ୍ଷ ଓ ଅସହ୍ୟ ହେଉଛି ବୋଲି ସେମାନେ ଅଭିଯୋଗ କରିଛନ୍ତି । ପ୍ରବନ୍ଦମରେ କଣ କୁହାଯାଇଛି, ଲକ୍ଷ୍ୟ କରନ୍ତୁ । ଏହା କ'ଣ ହିଂସା ପ୍ରଚାର କରୁ ନାହିଁ ? ଅନ୍ୟ ଧର୍ମ ଓ ବିଶ୍ୱାସକୁ ଧ୍ୱଂସ କରି ଦେବାକୁ ଏହା କହୁନାହିଁ କି?

ଆପଣମାନେ ଅନେକ ଭକ୍ତଙ୍କୁ ଦେଖିବେ ଯେଉଁମାନେ ଧର୍ଷଣ କରିବା ପାଇଁ, ଅନ୍ୟ ଧର୍ମାବଲମ୍ବୀ ଲୋକଙ୍କୁ ଯନ୍ତ୍ରଣା ଦେବାପାଇଁ ବା ହତ୍ୟା କରିବା ପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କରିଥାନ୍ତି । ପ୍ରବନ୍ଦମ୍ ଗ୍ରନ୍ଥରେ ଅନ୍ୟଧର୍ମାବଲମ୍ବୀ ଲୋକଙ୍କୁ ହତ୍ୟା କରିବାକୁ ବା ଯନ୍ତ୍ରଣା ଜର୍ଜରିତ କରିବାକୁ ହିନ୍ଦୁମାନଙ୍କୁ ଶକ୍ତିଶାଳୀ କରିବାକୁ କୁହାଯାଇଛି । ବାଇବେଲ୍‌ରେ କ'ଣ କୁହାଯାଇଛି ଦେଖନ୍ତୁ । ଏଥିରେ କୁହାଯାଇଛି ଯେ- ଯେ ଈଶ୍ୱରଙ୍କୁ ବିଶ୍ୱାସ କରେ ନାହିଁ ସେ ଜଣେ ନିର୍ବୋଧ । ସବୁ ଧର୍ମରେ ଏହି ପ୍ରକାରର ଭାବନା ରହିଛି ।

ସେପରି ସ୍ଥଳେ ଆମେ କାହିଁକି ନିରବ ରହିବା? ଯେ ଧର୍ମର ପ୍ରସାର କରନ୍ତି ଓ ଈଶ୍ୱରଙ୍କୁ ପୂଜା କରନ୍ତି ସେ ଜଣେ ନିର୍ବୋଧ । ଏହା କହିବା ପଷ୍ଟାତରେ କଣ ତ୍ରୁଟି ରହିଛି ! କୌଣସି ବ୍ୟକ୍ତିଙ୍କୁ ଆକ୍ରମଣ କରିବା ପରିବର୍ତ୍ତେ ଆମର ମନ୍ତବ୍ୟ ହେଉଛି ।

ଈଶ୍ୱର ଅସ୍ତିତ୍ୱହୀନ ।
କୌଣସି ଈଶ୍ୱର ଥିବା ଅମୂଳକ ।
ଯେ ଈଶ୍ୱରଙ୍କୁ ସୃଷ୍ଟି କଲେ, ସେ ଜଣେ ନିର୍ବୋଧ ।

Digitized by srujanika@gmail.com

ଯେ ଈଶ୍ୱରଙ୍କ ବିଷୟରେ ପ୍ରଚାର କରନ୍ତି, ସେ ଧୂର୍ତ୍ତ ।

ଯେ ଈଶ୍ୱରଙ୍କୁ ପୂଜା କରନ୍ତି, ସେ ଆଦିମ ।

ମୁଁ ଏପରି କାହିଁକି କହୁଛି ତାହାକୁ ବୁଝାଇବା ଆବଶ୍ୟକ। ଯେ ଆତ୍ମା, ସ୍ୱର୍ଗ, ନରକ ଇତ୍ୟାଦି ଭାବନା ଦେଇଛନ୍ତି ସେ ସ-ୂର୍ଣ୍ଣ ଅହେତୁକ। ଏଥିରେ ବିଶ୍ୱାସ ସ୍ଥାପନ କରୁଥିବା ବ୍ୟକ୍ତି ନିର୍ବୋଧ। ଯେଉଁମାନେ ଆମକୁ ବିଚାରହୀନ ବୋଲି ଆକ୍ଷେପ କରୁଛନ୍ତି ସେମାନେ ପ୍ରକୃତରେ ନିର୍ବୋଧ ଓ ଧୂର୍ତ୍ତ।

ଆମେ ସେମାନଙ୍କର ମିଥ୍ୟା ପ୍ରଚାର ଓ ଆକ୍ଷେପ ମୂଳକ ମନ୍ତବ୍ୟରେ ଲଜ୍ଜିତ ହେବା ଠିକ୍ ନୁହେଁ। ପରବର୍ତ୍ତୀ ଜନ୍ମ କଣ ହେବ ତାହା କେହି ବୁଝାଇ ପାରିବ କି ? ମୃତ ପିତାମାତା କୌଣସି ସ୍ଥାନରେ ଯେ ରହୁଛନ୍ତି ଏହା ଆପଣମାନେ ଭାବୁଛନ୍ତି କି? ବ୍ରାହ୍ମଣମାନେ ହିଁ ଏହି ବିଶ୍ୱାସ ପ୍ରଚାର କରିଥାନ୍ତି। ମୃତ ଲୋକଙ୍କର ମଙ୍ଗଳ ପାଇଁ ଆମର ଅଜ୍ଞ ଲୋକମାନେ ବ୍ରାହ୍ମଣମାନଙ୍କୁ ଦାନଦେଇ ସେମାନଙ୍କ ପାଦତଳେ ଲମ୍ବ ହୋଇ ପଡିଥାନ୍ତି। ବ୍ରାହ୍ମଣମାନେ ଆମର ପୂର୍ବପୁରୁଷଙ୍କୁ ଦେବା ପାଇଁ ଦାନ ନେଉଛନ୍ତି ବୋଲି କହିଥାନ୍ତି। ଆମର ମୃତ ବାପାମାଙ୍କୁ କେଉଁ ସ୍ୱର୍ଗରେ, ନରକରେ ବା ଏହି ପୃଥିବୀରେ କେଉଁଠି ଜନ୍ମ ହୋଇ ରହିଛନ୍ତି ବୋଲି ବ୍ରାହ୍ମଣମାନେ ଦେଖିଛନ୍ତି କି ବୋଲି ଆପଣ ସେମାନ୍ନଙ୍କୁ ପଚାରନ୍ତୁ? ଆପଣ ଏଥିରେ କୌଣସି ସନ୍ତୋଷ ଜନକ ଉତ୍ତର ପାଇବେ ନାହିଁ। ବ୍ରାହ୍ମଣମାନେ ଆମର ଲୋକମାନଙ୍କୁ ବିଭ୍ରାନ୍ତ କରି ଆମକୁ ଠକିଥାନ୍ତି। ନିଜର ମୃତ ପିତାଙ୍କ ଉଦ୍ଦେଶ୍ୟରେ ଦିଆଯାଉଥିବା ଦାନ ସ-ର୍କରେ ବ୍ରାହ୍ମଣମାନଙ୍କୁ ପ୍ରଶ୍ନ ପଚାରନ୍ତୁ। ତାଙ୍କର ଉତ୍ତର ହେବ, ମୁଁ ଏ ବିଷୟରେ ଅଜ୍ଞ। ଆମର ଲୋକମାନେ ନିଜର ପତ୍ନୀ ଓ ପିଲାଙ୍କ ସହ ବ୍ରାହ୍ମଣର ପାଦତଳେ ପଡିଥାନ୍ତି। ଲୋକମାନଙ୍କର ଏହି ଅହେତୁକ କାର୍ଯ୍ୟକୁ ଆପଣମାନେ କିଭଳି ବିଚାର କରିବେ? ସେମାନଙ୍କୁ ନିର୍ବୋଧ କହିବାରେ କେଉଁଠି ତ୍ରୁଟି ଅଛି ?

**ଈଶ୍ୱର :-**

ଈଶ୍ୱରଙ୍କ ଅସ୍ତିତ୍ୱ ବିଷୟରେ କେଉଁମାନେ କହୁଛନ୍ତି ? କେହି ଈଶ୍ୱରଙ୍କୁ ଦେଖାଇ ନାହାନ୍ତି। କେହି ବି ଈଶ୍ୱରଙ୍କୁ ଦେଖି ନାହାନ୍ତି। ଈଶ୍ୱରଙ୍କ ବିଷୟରେ

Digitized by srujanika@gmail.com

ଏପରି ପ୍ରଶ୍ନ ପଚାରିଲେ ସେମାନେ କେବଳ ଆଖି ମିଟିକା ମାରନ୍ତି । ସେମାନେ କୁହନ୍ତି ଅନ୍ୟମାନେ ଏହା କହିଛନ୍ତି । ଆଧ୍ୟାତ୍ମିକ ନେତାମାନେ କୁହନ୍ତି ଯେ ଈଶ୍ୱରଙ୍କୁ କେହି ସୃଷ୍ଟି କରି ନାହିଁ । ଈଶ୍ୱର ସ୍ୱୟଂ ସୃଷ୍ଟ । ଏ କ୍ଷେତ୍ରରେ ସେମାନଙ୍କର ମୋ ସହିତ କେଉଁଠି ବିରୋଧ ରହିଛି ? ଯେଉଁମାନେ ଈଶ୍ୱରଙ୍କୁ ସୃଷ୍ଟି କରିଛନ୍ତି, ମୁଁ ସେହିମାନଙ୍କ ବିରୋଧରେ କହିଥାଏ । ସେମାନେ ତ କୁହନ୍ତି ଈଶ୍ୱର କାହାଦ୍ୱାରା ସୃଷ୍ଟି ହୋଇ ନାହାଁନ୍ତି । ସେ କ୍ଷେତ୍ରରେ ମୁଁ ପୁନଶ୍ଚ ପ୍ରଶ୍ନ କରିଥାଏ- ଈଶ୍ୱରଙ୍କ ବିଷୟରେ ବ୍ରାହ୍ମଣମାନେ କିପରି ଜାଣିବାର ଅବକାଶ ପାଇଲେ ? ଯଦି ଈଶ୍ୱର କାହା ଦ୍ୱାରା ସୃଷ୍ଟି ହୋଇ ନାହାଁନ୍ତି, ତେବେ ଈଶ୍ୱର କିପରି ବ୍ରାହ୍ମଣମାନଙ୍କ ଦ୍ୱାରା ଜ୍ଞେୟ ହେଲେ? ସେମାନଙ୍କ ବକ୍ତବ୍ୟ ହେଉଛି ଈଶ୍ୱର ସର୍ବଶକ୍ତିମାନ, ସେମାନେ ଏହା କିପରି ଜାଣିଲେ? ଅନ୍ୟମାନେ କାହିଁକି ଏହା ଜାଣି ପାରିଲେ ନାହିଁ ? ଅନ୍ୟମାନେ କଣ ନିର୍ବୋଧ? ଈଶ୍ୱର ସ-ର୍କୀୟ ଭାବନା କେବଳ ବ୍ରାହ୍ମଣମାନେ କିପରି ପାଇଲେ? ଈଶ୍ୱରଙ୍କ ସ-ର୍କରେ ଈଶ୍ୱର କାହିଁକି ଅନ୍ୟମାନଙ୍କୁ ଜଣାଇଲେ ନାହିଁ ? ଆମର ବୁଦ୍ଧିଦ୍ୱାରା ଆମେମାନେ ଏହି ପ୍ରଶ୍ନକୁ ବ୍ୟାଖ୍ୟା କରିବା ଯଥାର୍ଥ ହେବ ନାହିଁ କି ?

**ଈଶ୍ୱରଙ୍କର ଉତ୍ପତ୍ତି -**

ସଭ୍ୟତାର ଆରମ୍ଭ ପର୍ବରେ କେଉଁଠି କିଛି ଈଶ୍ୱର ବୋଲି ନଥିଲେ । ଗତ ୩ ହଜାର ବର୍ଷ ଭିତରେ ଈଶ୍ୱର ଭାବନା ଉଦ୍ଭବ ହୋଇଛି । ତାହା ପୂର୍ବରୁ ଈଶ୍ୱରଙ୍କ ବିଷୟରେ କୌଣସି ଭାବନା ନଥିଲା କି କେହିବି ଈଶ୍ୱର ବିଷୟରେ କିଛି ଜାଣି ନଥିଲେ । ଯେତେବେଳେ ମଣିଷ ଘଡ ଘଡିର ଶବ୍ଦ ଶୁଣିଛି, ଭୟାତୁର ହୋଇ କୌଣସି ଶକ୍ତିଶାଳୀ ସତ୍ତାର କଳ୍ପନା କରିଛି । ବର୍ଷାକୁ ଦେଖି ବର୍ଷା କରାଉଥିବା କୌଣସି ଶକ୍ତି ବିଷୟ ସେ ଭାବିଛି । ଯେତେବେଳେ ପବନ ବୋହିଛି କାହାର ନିୟନ୍ତ୍ରଣରେ ପବନ ବୋହୁଥିବା ସେ ପରିକଳ୍ପନା କରିଛି । ସେହି ପରି ଅନ୍ଧକାରକୁ ଦେଖି ବା ଆଲୋକକୁ ଦେଖି ଅନୁରୂପ ଚିନ୍ତା ତା ମନକୁ ଆସିଛି ।

ଏହି ପ୍ରକାର ଭାବନାରୁ ମଣିଷ ଈଶ୍ୱର ଓ ଦେବତାଙ୍କ ବିଷୟରେ ଅନୁମାନ କରିଛି । କାଳକ୍ରମେ ବିଭିନ୍ନ ଈଶ୍ୱର ଓ ଦେବତାର ଭାବନା ସେ ଚିନ୍ତା କରିଛି

Digitized by srujanika@gmail.com

ଯେଉଁମାନେ ସବୁକିଛିକୁ ନିୟନ୍ତ୍ରଣ କରୁଛନ୍ତି। ପରେ ଦେବତାମାନଙ୍କ ମଧ୍ୟରେ ଜଣେ ରାଜା ଥିବା ସେ ଚିନ୍ତା କରିଛି ଓ ତାଙ୍କୁ ଇନ୍ଦ୍ର ବୋଲି କହିଛି। କାଳକ୍ରମେ ଅନେକ ଇଶ୍ୱରଙ୍କର ସୃଷ୍ଟି ହୋଇଛି ଓ ପ୍ରତ୍ୟେକ ଇଶ୍ୱର ଜୀବନର କୌଣସି ନା କୌଣସି କ୍ଷେତ୍ରକୁ ନିୟନ୍ତ୍ରଣ କରୁଥିବା ସେ ଅନୁମାନ କରିଛି। ଜନ୍ମ, ପାଳନ ଓ ଜୀବର ମୃତ୍ୟୁକୁ ଜଣେ ଜଣେ ଇଶ୍ୱର ନିୟନ୍ତ୍ରଣ କରୁଥିବା ସେ ଅନୁମାନ କରିଛି। ବ୍ରହ୍ମା ବିଷ୍ଣୁ ଓ ଶିବର ପରିକଳ୍ପନା ସେ ସୃଷ୍ଟି କରିଛି। ଯେଉଁ ବିଷୟକୁ ସେ ବୁଝିପାରି ନାହିଁ ସେ ଭାବିଛି ଯେ, ତାହାକୁ କୌଣସି ଇଶ୍ୱର ନିୟନ୍ତ୍ରଣ କରୁଛନ୍ତି। ସେ ତାଙ୍କୁ ସମ୍ମାନ କରିଛି। ଯେପରି ଏକ ମନ୍ତ୍ରୀମଣ୍ଡଳରେ ବିଭିନ୍ନ ମନ୍ତ୍ରୀଥାଇ ବିଭିନ୍ନ ବିଭାଗକୁ ନିୟନ୍ତ୍ରଣ କରନ୍ତି, ସେହିପରି ପ୍ରକୃତିରେ ବିଭିନ୍ନ କଥାକୁ କେହି କେହି ନିୟନ୍ତ୍ରଣ କରୁଛନ୍ତି। ସମସ୍ତଙ୍କ ଉପରେ ଜଣେ ରହି ସମସ୍ତଙ୍କର କାର୍ଯ୍ୟ ଶୃଙ୍ଖଳିତ କରୁଛନ୍ତି। ବେଦ ମତରେ ଜଣେ ସର୍ବୋଚ୍ଚ ସତ୍ତା ଅଛନ୍ତି, ଯେ କି ସବୁ କିଛିର ନିୟନ୍ତ୍ରକ। ଖ୍ରୀଷ୍ଟିୟାନ ମାନେ ୨୦୦୦ ବର୍ଷ ତଳେ ଇଶ୍ୱରଙ୍କୁ ବିଶ୍ୱାସ କଲେ। ମୁସଲମାନମାନେ ମଧ୍ୟ ସେହି ୨୦୦୦ ବର୍ଷ ତଳେ ଇଶ୍ୱରଙ୍କୁ ବିଶ୍ୱାସ କଲେ। ପ୍ରାୟ ୧୫୦୦ ବର୍ଷତଳେ ଇସଲାମରେ ଏକ ବଡ ପରିବର୍ତ୍ତନ ହୋଇଥିଲା। ବ୍ରାହ୍ମଣମାନେ ୩୦୦୦ ବର୍ଷତଳେ ଇଶ୍ୱର ଭାବନା ସୃଷ୍ଟି କରିଥିଲେ। ବେଦମାନଙ୍କର ସର୍ଜନା ପରେ ଏହା ସମ୍ଭବ ହୋଇଥିଲା। ବୈଦିକ ଯୁଗରେ କାଳକ୍ରମେ ଇଶ୍ୱର ଭାବନା ଆସ୍ତେ ଆସ୍ତେ ରୂପ ନେଲା। ବେଦ ସୃଷ୍ଟି ପରେ ହିନ୍ଦୁମାନଙ୍କର ବିଭିନ୍ନ ଇଶ୍ୱରମାନ ସୃଷ୍ଟି ହେଲେ।

ସେତେବେଳେ ଇଶ୍ୱରଙ୍କ ସ-ର୍କରେ ବ୍ରାହ୍ମଣମାନେ କ'ଣ ସବୁ କହିଛନ୍ତି? ଇଶ୍ୱର କେଉଁଠି ଅଛନ୍ତି ପ୍ରଶ୍ନ ତାଙ୍କୁ ଯେତେବେଳେ ପଚରାଗଲା , ବ୍ରାହ୍ମଣ ଉତ୍ତର ହେଲେ - ସେ ଅଦୃଶ୍ୟ । ଜଣେ ବ୍ରାହ୍ମଣ କଣ ପ୍ରକୃତରେ କୌଣସି ଇଶ୍ୱରକୁ ଦେଖିଛି କି ବୋଲି ଜିଜ୍ଞାସାରେ ତାଙ୍କର ଉତ୍ତର ହେଲା - ସେ ଆମ ସ୍ପର୍ଶର ଊର୍ଦ୍ଧ୍ୱରେ। ସେମାନେ କହିଲେ ଯେ ଇଶ୍ୱରଙ୍କର କୌଣସି ରୂପ ନାହିଁ। ଇଶ୍ୱର ଅଦୃଶ୍ୟ, ଅସ୍ପୃଶ୍ୟ ଓ ଅପ୍ରତ୍ୟକ୍ଷ ।

ଯଦି ଏହାହିଁ ସତ୍ୟ ହୁଏ, ତେବେ ବ୍ରାହ୍ମଣମାନେ ଯେ ନିର୍ବୋଧ ନୁହଁନ୍ତି ଏହା କିପରି କୁହାଯିବ। ଯଦି ଇଶ୍ୱର ଅଦୃଶ୍ୟ, ଅପ୍ରତ୍ୟକ୍ଷ ଓ ଅନନୁଭବ୍ୟ ତେବେ

Digitized by srujanika@gmail.com

ବ୍ରାହ୍ମଣମାନେ କିପରି ସେହି ଈଶ୍ୱରଙ୍କୁ ଜାଣିବାକୁ ସମର୍ଥ ହେଲେ ? ବ୍ରାହ୍ମଣମାନେ ଯାହା ପ୍ରଚାର କରିଛନ୍ତି, ଆମର ଲୋକମାନେ ତାହାକୁ ଅନ୍ଧ ଭାବରେ ଗ୍ରହଣ କରିଛନ୍ତି । ଏହା ନିର୍ବୋଧତା ନୁହେଁ କି ? ଈଶ୍ୱରଙ୍କର ଅସ୍ତିତ୍ୱକୁ ପ୍ରମାଣ କରିବାକୁ କେହି କିଛି ଆଧାର ଦେଇପାରିବେ କି ?

ବ୍ରାହ୍ମଣମାନେ କେବଳ ସେତିକିରେ ସନ୍ତୁଷ୍ଟ ହୋଇ ନାହାଁନ୍ତି, ବ୍ରାହ୍ମଣଙ୍କ ମତରେ ଈଶ୍ୱର ସର୍ବଶକ୍ତିମାନ । ଆମ ସଂସାରରେ ଯାହା କିଛି ହୁଏ, ତାହା ଈଶ୍ୱରଙ୍କ ନିର୍ଦ୍ଦେଶରେ ହୁଏ ବୋଲି କୁହନ୍ତି । ସେମାନେ ଈଶ୍ୱରଙ୍କୁ ଅନେକ ମହତ ଗୁଣରେ ଭୂଷିତ କରିଥାନ୍ତି । ଏସବୁକୁ କିପରି ବିଶ୍ୱାସ କରାଯିବ ବୋଲି କେହି ଜିଜ୍ଞାସା କଲେ, ସେମାନେ ଯାହା କିଛି କହୁଛନ୍ତି, ତାହାକୁ ବିଶ୍ୱାସ କରିବା ପାଇଁ କହିଥାନ୍ତି । ଯଦି ଈଶ୍ୱରଙ୍କର ଅଲୌକିକ ଶକ୍ତି ରହିଛି, ତେବେ ମୋ ଭିତରେ ସେ କାହିଁକି ତାଙ୍କ ପ୍ରତି ବିଶ୍ୱାସ ସୃଷ୍ଟି କରୁନାହାନ୍ତି ? ସେ ଯଦି ଏହା କରିବାକୁ ଅସମର୍ଥ, ତେବେ ମୁଁ କିପରି ତାଙ୍କୁ ସମ୍ମାନ କରିବି ? ତାଙ୍କର ଶକ୍ତି କେଉଁଠି ରହିଛି ? ତାଙ୍କର ଶକ୍ତି ଦ୍ୱାରା ସେ ଲୋକମାନଙ୍କୁ ତାଙ୍କ ଉପରେ ଆସ୍ଥା ରଖିବାକୁ ଭାବନା ଆଣିପାରୁ ନାହାନ୍ତି । ଏହି ଭଳି ଜଣେ ଈଶ୍ୱରଙ୍କୁ ଅସ୍ୱୀକାର କରିବା ଦ୍ୱାରା ଆମ ପୃଥିବୀ କିଛି ହରାଉଛି କି ? ପୃଥିବୀର ଲୋକସଂଖ୍ୟା ୪୫୦ କୋଟି ବୋଲି କଳ୍ପନା କରାଯାଉଛି । ଏହି ଜନସଂଖ୍ୟା ମଧ୍ୟରୁ ୨୦୦ କୋଟି ଲୋକ ନିରୀଶ୍ୱରବାଦୀ ଥିବା ଜଣାଯାଏ । କୌଣସି ଈଶ୍ୱର ଜଣେ ନିରୀଶ୍ୱରବାଦୀଙ୍କୁ ଈଶ୍ୱର ବିଶ୍ୱାସରେ ପରିଣତ କରିବାରେ ଅସମର୍ଥ ।

ଈଶ୍ୱରଙ୍କୁ ସୃଷ୍ଟିକଲା ପରେ ବ୍ରାହ୍ମଣମାନେ ନିରବ ରହିଛନ୍ତି କି ? ସେମାନେ ଈଶ୍ୱର ଭାବନାର ପ୍ରସାର ମଧ୍ୟ କରିଛନ୍ତି । ସେଥିପାଇଁ ତ ମୁଁ ସେମାନଙ୍କୁ ଧୂର୍ତ୍ତ ବୋଲି କହୁଛି । ବ୍ରାହ୍ମଣମାନଙ୍କ ମତରେ ଈଶ୍ୱର ସର୍ବଶକ୍ତିମାନ । ଜଣେ ସର୍ବଶକ୍ତିମାନ ଈଶ୍ୱରଙ୍କ ବିଷୟରେ ପ୍ରଚାର କରିବାର କାହିଁକି ଆବଶ୍ୟକତା ପଡୁଛି? ବ୍ରାହ୍ମଣମାନେ କ'ଣ କରୁଛନ୍ତି ଆପଣମାନେ ଦେଖନ୍ତୁ । ସେମାନେ ମନ୍ଦିର ନିର୍ମାଣ କରୁଛନ୍ତି । ଈଶ୍ୱରଙ୍କୁ ରୂପଦେଇ ମନ୍ଦିରରେ ସ୍ଥାପନ କରୁଛନ୍ତି । ଈଶ୍ୱରଙ୍କର ରୂପ ନାହିଁ ବୋଲି

Digitized by srujanika@gmail.com

ସେମାନେ କହୁଛନ୍ତି । ଅପର ପକ୍ଷରେ ଈଶ୍ୱରଙ୍କୁ ବିଭିନ୍ନ ରୂପଦେଇ ମନ୍ଦିରରେ ପୂଜା କରୁଛନ୍ତି । ଈଶ୍ୱରଙ୍କର ରୂପ ସେ କେଉଁଠାରୁ ପାଇଲେ ? ଯେଉଁମାନେ ଈଶ୍ୱରଙ୍କ ବିଷୟରେ କହୁଛନ୍ତି, ସେମାନେ ଈଶ୍ୱରଙ୍କୁ ମଣିଷ ରୂପରେ ଚିତ୍ରଣ କରୁଛନ୍ତି । ଅନ୍ୟ ଧର୍ମ ମାନଙ୍କରେ ଈଶ୍ୱରଙ୍କର କୌଣସି ରୂପ ନଥିବା କଥା କୁହାଯାଇଛି । କେବଳ ବ୍ରାହ୍ମଣମାନେ ବିଭିନ୍ନ ଦେବତାଙ୍କୁ ନାନା ରୂପ ଦେଇ ପୂଜା କରୁଛନ୍ତି । ଏହାର ତାତ୍ପର୍ଯ୍ୟ କଣ ? ଈଶ୍ୱରଙ୍କର ରୂପକୁ ଏହିପରି ଚିରସ୍ଥାୟୀ କରାଯାଇଛି । ବିଭିନ୍ନ ଈଶ୍ୱରଙ୍କୁ ବିଭିନ୍ନ ରୂପରେ ପରିକଳ୍ପନା କ୍ଷେତ୍ରରେ କିଛି ଅର୍ଥ ଅଛି କି ? କେଉଁ ଈଶ୍ୱରଙ୍କର ଗୋଟିଏ ମସ୍ତକ, ଅନ୍ୟ ଏକ ଈଶ୍ୱରଙ୍କର ୨ଟି ଅନ୍ୟ କେଉଁ ଈଶ୍ୱରଙ୍କର ୪ କିମ୍ବା ୫ କିମ୍ବା ୬ ମୁଣ୍ଡ ରହିଛି । ସେତିକିରେ ମଧ୍ୟ ସେମାନେ ସନ୍ତୁଷ୍ଟ ହୋଇ ନାହାନ୍ତି । ରାମଙ୍କୁ ବିରୋଧ କରିଥିବା ରାବଣଙ୍କର ୧୦ଟି ମୁଣ୍ଡ ଥିବା ବର୍ଣ୍ଣନା ଅଛି । ଏହା କାହିଁକି ଆପଣ ମାନେ ଜାଣନ୍ତି । ଏହାର ଉଦ୍ଦେଶ୍ୟ ହେଉଛି ରାମଙ୍କର ମହନୀୟତାକୁ ପ୍ରତିଷ୍ଠା କରିବା । ମୁଣ୍ଡପରି ସେମାନେ ଈଶ୍ୱରଙ୍କର ହାତ ସ-ର୍କରେ ନାନା କଳ୍ପନା କରିଛନ୍ତି । କେଉଁ ଈଶ୍ୱରଙ୍କର ୨ଟି ହାତ, କାହାର ୬ଟି ହାତ ମଧ୍ୟ ଅଛି । କେତେକ ଈଶ୍ୱରଙ୍କର ବହୁ ହାତ ରହିଛି । ଲୋକମାନଙ୍କୁ ବିଭ୍ରାନ୍ତ କରିବା ପାଇଁ ଏପରି କରାଯାଇଛି । ବିଭିନ୍ନ କାଳ୍ପନିକ କାହାଣୀ ଦ୍ୱାରା ଲୋକମାନଙ୍କୁ ପ୍ରତାରିତ କରାଯାଇଛି । ସାଧାରଣ ବୁଦ୍ଧିଥିବା ଜଣେ ବ୍ୟକ୍ତି ଏସବୁ ଉଦ୍ଭଟ କଥାରେ ବିଶ୍ୱାସ ସ୍ଥାପନ କରିବା ଯଥାର୍ଥ କି ? ଏହିଭଳି ଆଇମା କାହାଣୀ ଗୁଡିକରେ ବିଶ୍ୱାସ ସ୍ଥାପନ ନକରିବା ଦ୍ୱାରା ଆମେ କିଛି ହରାଇବା କି ?

ଜଣେ ବିଚାରଶୀଳ ବ୍ୟକ୍ତି ଏସବୁକୁ ଚିନ୍ତା କରିବା ଠିକ୍ ନୁହେଁ କି ? ଏହି ସବୁ ଅବାନ୍ତର ଗପ ଗୁଡିକୁ ଆମେମାନେ ଶୁଣି ବିଶ୍ୱାସ କରୁଥିବା ଓ ନିରବରେ ଏସବୁକୁ ମାନି ନେଇ ଆମକୁ ଶୂଦ୍ର ଜାତ କହି ନିରବ ରହୁଥିବା ଠିକ୍ କି ? ଯଦି ଆମର କୌଣସି ଆତ୍ମସମ୍ମାନ ଥାଏ, ତେବେ ଆମେ ଏସବୁ କାଳ୍ପନିକ କାହାଣୀମାନଙ୍କୁ ପ୍ରତ୍ୟାଖ୍ୟାନ କରିବା ଯଥାର୍ଥ ନୁହେଁ କି ? ଏପରି କୌଣସି ଈଶ୍ୱର ନାହାଁନ୍ତି ଯାହାଙ୍କ ପାଖରେ ଆମ କଳ୍ପିତ ଗୁଣ ଗୁଡିକ ରହିଛି ।

Digitized by srujanika@gmail.com

ଶିବଙ୍କ ଉଦାହରଣ ନିଅନ୍ତୁ । ତାଙ୍କର ପାଞ୍ଚଟି ମସ୍ତକ ଥିବା କୁହାଯାଏ । ଆଉ ଜଣେ ଈଶ୍ୱର ବ୍ରହ୍ମାଙ୍କର ୫ଟି ମୁଣ୍ଡ ଥିବା ବର୍ଣ୍ଣନା ରହିଛି । ଶିବଙ୍କ ପତ୍ନୀ ପାର୍ବତୀ ଏହାଦ୍ୱାରା ପାର୍ଥକ୍ୟ ବାରି ନପାରି ବିଭ୍ରାନ୍ତ ହୋଇଛନ୍ତି । ସେ ତାଙ୍କ ସ୍ୱାମୀଙ୍କୁ ତାଙ୍କର ସମସ୍ୟା ନେଇ ଅବଗତ କରାଇଛନ୍ତି । ଏହାଦ୍ୱାରା ଶିବ କ୍ଷୁବ୍ଧ ହୋଇଛନ୍ତି । ତତ୍ କ୍ଷଣାତ୍ କିଛି କରିବାକୁ ନିଷ୍ପତ୍ତି କରିଛନ୍ତି । ସେ କଣ କଲେ ଓ ଆପଣମାନେ ପୁରାଣରୁ ଜାଣନ୍ତି । ସେ ବ୍ରହ୍ମାଙ୍କର ଗୋଟିଏ ମୁଣ୍ଡକୁ ନଷ୍ଟ କରିଛନ୍ତି, ଯଦ୍ୱାରା ପାର୍ବତୀଙ୍କୁ ଚିହ୍ନିବାରେ ଅସୁବିଧା ହେବ ନାହିଁ । ଈଶ୍ୱରଙ୍କ ସ-ର୍କିତ ଏହି କାହାଣୀ ବିଷୟରେ ଆପଣମାନେ କ'ଣ ଭାବୁଛନ୍ତି ? ଶିବଙ୍କର ବ୍ୟବହାର ଠିକ୍ ଥିଲାବୋଲି ଆପଣ ଭାବୁଛନ୍ତି କି ?

ଜଣଙ୍କର ଚାରୋଟି ବା ପାଞ୍ଚଟି ମୁଣ୍ଡ ରହିବାର କ'ଣ ଆବଶ୍ୟକତା ଅଛି? ଏତେ ମୁଣ୍ଡରେ ଥିବା ପାଟିରେ ଖାଦ୍ୟ ଖାଇବା ପାଇଁ ଏସବୁ ରହିଛି କି ? ସେମାନଙ୍କର ଯୁକ୍ତି ହେଉଛି, ଚାରୋଟି ମୁଣ୍ଡ ଚାରିଦିଗରେ ଦୃଷ୍ଟି ନିକ୍ଷେପ କରିପାରିବ । ଯେଉଁ ମାନଙ୍କର ୫ଟି ମୁଣ୍ଡ ଅଛି ସେମାନେ ଚାରିଦିଗଛଡା ପଞ୍ଚମ ମୁଣ୍ଡରେ ଆକାଶକୁ ମଧ୍ୟ ଦେଖି ପାରିବେ । ଏସବୁ କାହାଣୀର କୌଣସି ଯୁକ୍ତିଶୀଳ ଆଧାର ଅଛି କି? ଏଗୁଡିକ କେବଳ ଗୁଡିଏ ଅବାନ୍ତର ମନଗଢା କାହାଣୀ ନୁହେଁ କି ?

ଯେଉଁମାନେ ଈଶ୍ୱରଙ୍କୁ ସୃଷ୍ଟି କରିଛନ୍ତି, ଈଶ୍ୱର ଯେ ରୂପହୀନ ସେମାନେ ଏହା କହିଥାନ୍ତି । ଈଶ୍ୱର ଯେ ବହୁଶିର ବିଶିଷ୍ଟ ଏହା ସେମାନେ କୁହନ୍ତି ନାହିଁ । ସେମାନଙ୍କ ପାଇଁ ଈଶ୍ୱର ଏକ ଧାରଣା ସେହି ଈଶ୍ୱର ଆମ ପ୍ରତ୍ୟକ୍ଷର ଊର୍ଦ୍ଧ୍ୱ । ଅନେକଙ୍କର ମତରେ ଈଶ୍ୱର ଆକୃତିହୀନ । ତେବେ ବର୍ତ୍ତମାନର ଈଶ୍ୱରମାନେ କିପରି ଏପରି ଆକୃତି ନେଇ ଆମ ସମ୍ମୁଖକୁ ଆସିଛନ୍ତି ? ମନ୍ଦିରମାନଙ୍କରେ ବିଭିନ୍ନ ମୂର୍ତ୍ତି ରଖି ତାଙ୍କୁ ଈଶ୍ୱର କହିବା କେତେ ଦୂର ଯଥାର୍ଥ! ଈଶ୍ୱରଙ୍କୁ ଏପରି ସୃଷ୍ଟି କରିଥିବା ବ୍ୟକ୍ତି ଧୂର୍ତ୍ତ ନୁହଁନ୍ତି କି ? ଈଶ୍ୱରଙ୍କୁ ନିର୍ଦ୍ଦିଷ୍ଟ ରୂପ ଦେଇଥିବା ବ୍ୟକ୍ତି ନିର୍ବୋଧ ନୁହଁନ୍ତି କି ? ଯଦି ଏକଥା ସତ୍ୟ ଯେ ଈଶ୍ୱରଙ୍କୁ ଦେଖିହେବ ନାହିଁ କିମ୍ବା

Digitized by srujanika@gmail.com

ସ୍ପର୍ଶ କରିହେବ ନାହିଁ, ତେବେ ତାଙ୍କ ପାଖରେ ଦିନକୁ ଛଅଥର ଭୋଗ ଦେବା ସ-ମ୍ପୂର୍ଣ୍ଣ ଅର୍ଥଶୂନ୍ୟ ନୁହେଁ କି ? ଏହିକାର୍ଯ୍ୟକୁ ଯେହେତୁ ନିର୍ବୋଧ ଲୋକେ ଅର୍ଥ ଦେଇ କରୁଛନ୍ତି, କିଛି ଧୂର୍ତ୍ତ ଲୋକ ଠକିବାର ଅବକାଶ ପାଉଛନ୍ତି । ଈଶ୍ୱରଙ୍କୁ କେହି ଖାଦ୍ୟ ଗ୍ରହଣ କରିବାର ଦେଖିଛନ୍ତି କି ? ଈଶ୍ୱର ନିଜର ସ୍ଥିତି ପାଇଁ ଛଅ ଥର ଖାଦ୍ୟ ରଖିଛନ୍ତି କି ? ଖାଦ୍ୟ ଖାଉଥିବା ଈଶ୍ୱର କେବେ ପାଇଖାନା ଯାଆନ୍ତି କି ? କେହି ତାଙ୍କୁ ମଳ ମୂତ୍ର ତ୍ୟାଗ କରିବା ଦେଖିଛନ୍ତି କି ? ଈଶ୍ୱର ତ ଅଚଳ ବୋଲି କୁହାଯାଉଛି । ଏକ ଅଚଳ ଈଶ୍ୱର କିପରି ପ୍ରାକୃତିକ କାର୍ଯ୍ୟ ସାଧନ କରିବେ? ଯେଉଁମାନେ ଏସବୁ ପ୍ରସଙ୍ଗ ଭାବନ୍ତି ନାହିଁ, କିମ୍ବା ଏସ-ମ୍ପର୍କରେ କୌତୂହଳତା ପ୍ରକାଶ କରନ୍ତି ନାହିଁ, ସେମାନଙ୍କୁ ମହାନ ଈଶ୍ୱର ବିଶ୍ୱାସୀ ବୋଲି କୁହାଯାଏ ।

ଯଦି ଏହା ସତ୍ୟ ଯେ ଈଶ୍ୱର କିଛି କାମନା କରନ୍ତି ନାହିଁ, ତେବେ ବ୍ରାହ୍ମଣମାନେ ଈଶ୍ୱର ମାନଙ୍କୁ କାହିଁକି ବିବାହ କରାଉଛନ୍ତି? କେଉଁଥି ପାଇଁ ପତ୍ନୀ ବା ସନ୍ତାନ ଆବଶ୍ୟକ ?

କେଉଁ ଈଶ୍ୱରଙ୍କର ଦୁଇ ସ୍ତ୍ରୀ ତ, କେଉଁ ଈଶ୍ୱରଙ୍କର ବହୁପତ୍ନୀ ରହିଛନ୍ତି । ଈଶ୍ୱର କାହିଁକି ବହୁପତ୍ନୀ ଦରକାର କରୁଛନ୍ତି ? ଏହି ପ୍ରଶ୍ନ ଉପରେ ସେମାନେ କେହି ଚିନ୍ତା କରନ୍ତି ନାହିଁ, କିମ୍ବା କୌଣସି ଉତ୍ତର ଦିଅନ୍ତି ନାହିଁ । ଏପରିକି ସେମାନେ ନିଜର ବିଶ୍ୱାସକୁ ମଧ୍ୟ ପରିହାର କରନ୍ତି ନାହିଁ, ଏହି ବିବାହ ସେମାନେ ଥରେ ମାତ୍ର ନକରି ବରଂ ପ୍ରତିବର୍ଷ ସମାପନ କରନ୍ତି । ଆମର ଲୋକମାନେ ଭକ୍ତି ଭାବରେ ଈଶ୍ୱରଙ୍କର ବିବାହ ଉତ୍ସବରେ ଯୋଗ ଦେଲା ବେଳେ, ବିଗତ ବର୍ଷର ବିବାହ କ'ଣ ହେଲା ବୋଲି ପ୍ରଶ୍ନ କରନ୍ତି ନାହିଁ । ଈଶ୍ୱରଙ୍କ ପତ୍ନୀଙ୍କର କ'ଣ ବିୟୋଗ ହେଲା ନା ସେ ଅନ୍ୟ କାହା ସହ ଚାଲିଗଲେ ? ଈଶ୍ୱରଙ୍କ କ୍ଷେତ୍ରରେ ବିବାହ କଣ ଗୋଟିଏ ବର୍ଷ ପାଇଁ ବୈଧ କି ? ଏହି ସବୁ ପ୍ରଶ୍ନ କାହିଁକି କେହି ଉଠାଉ ନାହାନ୍ତି? ଈଶ୍ୱରଙ୍କର ବିବାହରେ ପ୍ରତିବର୍ଷ ଯୋଗ ଦେଉଥିବା ଲୋକମାନେ କାହିଁକି ଏହି ପ୍ରଶ୍ନ ପଚାରୁ ନାହାନ୍ତି? ଆମେ କିପରି ନିର୍ବୋଧ ରହିଛେ, ତାହା ଆପଣମାନେ ଚିନ୍ତା କରନ୍ତୁ । ଯଦି କୁହାଯାଏ ଈଶ୍ୱର ସମସ୍ତ ଆଦର୍ଶର ପ୍ରତି ରୂପ, ତେବେ ଈଶ୍ୱର

Digitized by srujanika@gmail.com

କିପରି ପ୍ରତିବର୍ଷ ବିବାହ କରୁଛନ୍ତି କିମ୍ବା ଏତେ ପତ୍ନୀ ରଖୁଛନ୍ତି- ତାହା କାହିଁକି ଆମେ ପଚାରିବା ନାହିଁ ?

ପୁରାଣ ଅନୁଯାୟୀ ସୁବ୍ରମଣ୍ୟ, ଶିବ, ବିଷ୍ଣୁ, କ୍ରିଷ୍ଣ ଇତ୍ୟାଦି ଇଶ୍ୱରମାନେ ବହୁ ପତ୍ନୀ ରଖୁଛନ୍ତି। ସେମାନେ କାହିଁକି ବହୁ ପତ୍ନୀ କିମ୍ବା ରକ୍ଷିତା ମାନଙ୍କୁ ରଖୁଛନ୍ତି? ଏହି ପ୍ରଶ୍ନ କିଏ ପଚାରୁଛି କି ?

ଯେଉଁମାନେ ବହୁ ଇଶ୍ୱରଙ୍କୁ ସୃଷ୍ଟି କରିଛନ୍ତି ସେମାନେ ସେତିକିରେ ସନ୍ତୁଷ୍ଟ ନୁହନ୍ତି। ଇଶ୍ୱରମାନଙ୍କର ଚରିତ୍ର ବିଷୟରେ ନାନା କାହାଣୀର ଅବତାରଣା କରିଛନ୍ତି। ତେବେ ସେହି କଳ୍ପିତ ଇଶ୍ୱରମାନେ ଚାରିତ୍ରିକ ସ୍ତରରେ ଏପରି ଭ୍ରଷ୍ଟ ହେବା ଆମକୁ କେଉଁ ଶିକ୍ଷା ଦେବ?

କେତେକ ଇଶ୍ୱର ଅନ୍ୟମାନଙ୍କ ପତ୍ନୀଙ୍କ ସହ ଅବୈଧ ମିଳନ କରିଥିବା କାହାଣୀ କୁହାଯାଇଛି। କେତେକ ଜାଗାରେ ସେମାନେ ଧରାପଡିଛନ୍ତି। କେତେକ କ୍ଷେତ୍ରରେ ସେମାନେ ଧରାପଡି ଅଭିଶାପ ପାଇଛନ୍ତି । ଏସବୁ ଇଶ୍ୱରଙ୍କ ନାମରେ ସୃଷ୍ଟି କରାଯାଇଛି। ଏହି ସବୁ ଘଟଣାକୁ ନେଇ ମନ୍ଦିର ମାନଙ୍କରେ ବିଭିନ୍ନ ପର୍ବ ବି ପାଳିତ ହେଉଛି। ଗୋଟିଏ କାହାଣୀ ଅନୁଯାୟୀ ଶ୍ରୀରଙ୍ଗମ ଇଶ୍ୱର ଜଣେ ଦେହଜୀବୀଙ୍କର ସନ୍ଧାନ କରି ଆସି ଭରୟପୁରରେ ପହଁଞ୍ଚିଲେ। ସେହି ଇଶ୍ୱରଙ୍କୁ ବ୍ରାହ୍ମଣମାନେ ତାଙ୍କ କାନ୍ଧରେ ନେଇ ସମଗ୍ର ରାତିଟି ଅପେକ୍ଷାକଲେ। ପୁଣି ସକାଳେ ସେମାନେ ପଥର ପ୍ରତିମାକୁ ନେଇ ଶ୍ରୀରଙ୍ଗମକୁ ଫେରି ତାଙ୍କୁ ମନ୍ଦିରରେ ରଖୁବେ। ଏହାକୁ ଏକ ପର୍ବ ଭାବରେ ପ୍ରତିବର୍ଷ ପାଳନ କରାଯାଉଛି। ଏହିପରି ପର୍ବ ସମୟରେ କେତେକ ଇଶ୍ୱରଙ୍କୁ ବାରନାରୀଙ୍କ ଘରକୁ ନିଆଯାଏ। କୌଣସି ଇଶ୍ୱରଙ୍କର ନୈତିକତା ପ୍ରତି ସମ୍ମାନ ନଥିବା ଏଥିରୁ ଜଣାପଡେ। ଶିବ ଓ ବିଷ୍ଣୁଙ୍କ ଚରିତ୍ରକୁ ବହୁ ଅନୈତିକ ଭାବେ ଚିତ୍ରଣ କରାଯାଇଛି। ସେହି ଦେବତା ମାନଙ୍କର ଆଚରଣକୁ ଆମର ଆଦର୍ଶ ଭାବେ ନିଆଯାଇ ପାରିବ କି? ଅନୈତିକତାକୁ ସମାଜର ଆଦର୍ଶ ବୋଲି ନିଆଯିବା ଯଥାର୍ଥ କି ? ଇଶ୍ୱରମାନଙ୍କ ପାଇଁ ଜଣେ ପତ୍ନୀ ସହ କେତେକ ବାରନାରୀ ରହିବା ଠିକ୍ କି ? ଆମ ପୁରାଣ ମାନଙ୍କର ଅନୈତିକ ଘଟଣାକୁ କୌଣସି ବିଚାରଶୀଳ ଲୋକ ଗ୍ରହଣ କରିପାରିବ କି ?

Digitized by srujanika@gmail.com

**ଈଶ୍ୱର କରୁଣାମୟ କି ?**

ସେମାନଙ୍କ ମତରେ ଈଶ୍ୱର ହେଉଛନ୍ତି ପ୍ରେମ ଓ କରୁଣାର ମୂର୍ତ୍ତି ମନ୍ତରୂପ । ଆପଣମାନେ କିନ୍ତୁ ଯାଇ ଈଶ୍ୱରମାନଙ୍କ ରୂପକୁ ଦେଖନ୍ତୁ । ଈଶ୍ୱର ମାନଙ୍କ ହାତରେ ଖଣ୍ଡା , ତ୍ରିଶୂଳ, ଧନୁ, ତୀର, ବର୍ଛା ବା ତୀକ୍ଷ୍ଣ ଅସ୍ତ୍ର ଥିବା ଦେଖିବେ । ଏହି ଈଶ୍ୱରମାନେ କରୁଣାର ପ୍ରତୀକ, ନା ହିଂସାର ? ଯଦି ଶିବ ହେଉଛନ୍ତି ପ୍ରେମର ପ୍ରତୀକ ତେବେ ତାଙ୍କ ହାତରେ ତ୍ରିଶୂଳ କାହିଁକି ରହିଛି ? ମୁଁ ଏକଥା ବ୍ୟଙ୍ଗକରି କହୁନାହିଁ, ଆପଣମାନେ ଏହି ପ୍ରଶ୍ନକୁ ଗମ୍ଭୀରତାର ସହ ବିଚାର କରନ୍ତୁ । ଈଶ୍ୱରଙ୍କର ନାମରେ ଆମକୁ କିପରି ନିର୍ବୋଧ କରାଯାଇଛି, ଶିବ, ବିଷ୍ଣୁଭଳି ବହୁ ଈଶ୍ୱରଙ୍କ ବିଷୟରେ ଯେତେ ଯାହା କୁହାଯାଇଛି, ସେ ସବୁର କ'ଣ ପ୍ରାସଙ୍ଗିକତା ରହିଛି ? ଏହି ଈଶ୍ୱରମାନେ ଆମ ପାଇଁ କ'ଣ କରିଛନ୍ତି ?

ଏହା କୁହାଯାଇଛି ଯେ ଏହି ଈଶ୍ୱରମାନେ ଅନେକ ଅସୁର, ରାକ୍ଷାସ ଓ ଅଗଣିତ ଲୋକମାନଙ୍କୁ ହତ୍ୟା କରିଛନ୍ତି । ଜଣେ ଘାତକ ଛେଳିମାନଙ୍କୁ ମାରିଲାଭଳି ଏହି ଈଶ୍ୱରମାନେ ଅନେକ ମଣିଷମାନଙ୍କୁ ହତ୍ୟା କରିଛନ୍ତି ! ଏମାନେ କ'ଣ ଘାତକ ? ରାମାୟଣରେ କୁହାଯାଇଛି ଯେ ରାମ ତିନିକୋଟି ଲୋକଙ୍କୁ ମାରିଛନ୍ତି । ଏହା କରି ସେ ଧରିତ୍ରୀମାତାର ବୋଝକୁ ଲାଘବ କରିଛନ୍ତି । ଆମ ପୁରାଣମାନଙ୍କରେ ମାରିବା, ଗଣହତ୍ୟା କରିବା କାର୍ଯ୍ୟ ଈଶ୍ୱରମାନଙ୍କୁ ଦିଆଯାଇଛି । ଆପଣମାନେ ଯଦି ଚିନ୍ତାକରିବେ ଆପଣମାନେ ଦେଖିବେ ଯେ ଈଶ୍ୱର, ମନ୍ଦିର, ଧର୍ମ ନାମରେ କେତେ ସବୁ ଉଦ୍ଭଟ କଥା ରହିଛି । ଯେଉଁମାନେ ଏସବୁ ଉପରେ କୌଣସି ଗଭୀର ଚିନ୍ତା ନକରି ଏସବୁକୁ ବିଶ୍ୱାସ କରିଯାଆନ୍ତି, ସେମାନେ ନିର୍ବୋଧ ନୁହନ୍ତିତ ଆଉ କ'ଣ ?

ଆମମାନଙ୍କୁ କିପରି ଏସବୁ କଥାରେ ଲୋକମାନେ ଠକି ଆସିଛନ୍ତି, ତାହା ବିଚାର କରନ୍ତୁ । ମନ୍ଦିର, ଈଶ୍ୱର, ଶାସ୍ତ୍ର, ଧର୍ମଗ୍ରନ୍ଥ ଇତ୍ୟାଦିରୁ ଆମର କୌଣସି ଉପକାର ହୋଇଛି କି ?

ହିନ୍ଦୁଧର୍ମରେ ଗୋଟିଏ ପୁରାଣ ନାହିଁ, ବରଂ ଅସଂଖ୍ୟ ପୁରାଣ ରହିଛି । ରାମାୟଣ, କନ୍ଦପୁରାଣ, ବିନାୟକ ପୁରାଣ ପରି ନାନା ପୁରାଣର କାହାଣୀ ଆମକୁ

Digitized by srujanika@gmail.com

କୁହାଯାଇଛି । ଯେକୌଣସି ଗୋଟିଏ ପୁରାଣ ନିଅନ୍ତୁ, ସେଥିରେ ଆପଣ ଅନେକ ଅଶ୍ଳୀଳତା ଓ ଅବିଶ୍ୱାସନୀୟ ଘଟଣାମାନ ପାଇବେ ।

ପୁରାଣମାନଙ୍କରେ ବହୁ ଈଶ୍ୱରମାନଙ୍କର କଥା କୁହାଯାଇଛି । ଏବେ କୌଣସି ଈଶ୍ୱର ଅସୌଜନ୍ୟତା, ଅନୈତିକତା ଓ ମନ୍ଦ ବ୍ୟବହାରରୁ ମୁକ୍ତ ନୁହଁନ୍ତି । ଅନ୍ତତଃ ପୁରାଣ ମାନଙ୍କର ଈଶ୍ୱରମାନଙ୍କ ସହିତ ସୌଜନ୍ୟତା, ସତ୍ୟ ଓ ନୈତିକତା ସଂଶ୍ଲିଷ୍ଟ ହେବା ଯଥାର୍ଥ ନୁହେଁ କି? ଈଶ୍ୱରଙ୍କ ନାମରେ ନାନା ଅସତ୍ୟ ମୂଳକ ଓ ପ୍ରବଞ୍ଚନାପୂର୍ଣ୍ଣ କାହାଣୀମାନ କୁହାଯାଇଛି । ବ୍ରାହ୍ମଣମାନେ ସରଳ ବିଶ୍ୱାସୀ ଲୋକମାନଙ୍କୁ ଏହିଭଳି କାହାଣୀମାନ କହି ବିଭ୍ରାନ୍ତ କରିଛନ୍ତି । ତେବେ ଈଶ୍ୱରମାନଙ୍କୁ ଯେଉଁଭଳି ଧୂର୍ତ୍ତ, ଅନୈତିକ ଓ ହତ୍ୟାକାରୀ ଭାବେ ଚିତ୍ରଣ କରାଯାଇଛି, ତାହା ମୋତେ ଚିନ୍ତିତ କରୁଛି । କେଉଁ ଈଶ୍ୱରଙ୍କୁ ଜଣେ ମଣିଷ ଶ୍ରଦ୍ଧା ସହ ବିଶ୍ୱାସ କରିବ?

ଆମ ସମାଜରେ ଅନେକ ବିଚାରାଳୟ, ପୁଲିସ ଓ କାରାଗାର ରହିଛି। ଈଶ୍ୱରମାନଙ୍କ ଉଦ୍ଦେଶ୍ୟରେ ଏସବୁ କରାଯାଇଛି କି ?

ଆମର ଏହି ସବୁ ବହୁ ଈଶ୍ୱର ଭାବନାରୁ ଆମର ଲୋକମାନେ ନିର୍ବୋଧ ହୋଇଛନ୍ତି । ବହୁ ଦେବାଦେବୀ ଈଶ୍ୱର ଆମର ଅନୈତିକତା ଓ ଅପରାଧ ପ୍ରସାର କରିବାରେ ସାହାଯ୍ୟ କରୁ ନାହାଁନ୍ତି ତ! ଆମର ଲୋକମାନେ ଅବଶ୍ୟ ଭଲମନ୍ଦ, ନ୍ୟାୟ ଅନ୍ୟାୟ ନିର୍ବିଶେଷରେ ଯେ କୌଣସି କାର୍ଯ୍ୟ କରିବାକୁ ସାହାସ ଦେଖାଇଛନ୍ତି ।

ଯଦି ଆମେ ଏକ ଉନ୍ନତ ସମାଜର ପରିକଳ୍ପନା କରିବା, ତେବେ ଆମ ଭିତରେ ଏକ ବିଚାରଶୀଳ ଦୃଷ୍ଟିର ବିକାଶ କରିବାକୁ ହେବ । ଜଣେ ବ୍ୟକ୍ତି ଥରେ ବିଚାରଶୀଳ ହେଲେ ସେ କେବେହେଲେ ଅନ୍ୟର ଅନିଷ୍ଟଚିନ୍ତା କରିବ ନାହିଁ । ଜଣେ ହେତୁବାଦୀ ଅନ୍ୟ ପ୍ରତି ଦରଦୀ ହୋଇଥାଏ । ସେ ତା'ର ପଡୋଶୀଟିକୁ ମଣିଷ ଭଳି ସମ୍ମାନ କରେ ଓ ନିଜ ଭଳି ଭାବେ, କିନ୍ତୁ ଆଜି ସମାଜରେ ଆମେ କ'ଣ ଦେଖୁଛେ ? ଯେଉଁମାନେ ଅତୀତରେ ଅନ୍ୟମାନଙ୍କୁ ଶୋଷଣ କରିଛନ୍ତି,

Digitized by srujanika@gmail.com

ସେମାନେ ଏହି ଶୋଷଣ ପାଇଁ ଅଧିକ ସୁଯୋଗ ପାଉଛନ୍ତି । ସେମାନେ ଅନେକ ଅସାମାଜିକ କାର୍ଯ୍ୟରେ ଲିପ୍ତ । ସୁତରାଂ ଆପଣମାନେ ଆମର ଅବକ୍ଷୟ ପାଇଁ ଚିନ୍ତା କରିବା ଉଚିତ୍ । ଆମର ଦୟନୀୟ ଜୀବନର କାରଣ କ'ଣ ? ନିୟୁତ ନିୟୁତ ଲୋକ କାହିଁକି ଏପରି ଦୟନୀୟ ସ୍ଥିତିରେ ରହିଛନ୍ତି ? ପ୍ରଗତି ଓ ବିକାଶ କାହିଁକି ହୋଇପାରି ନାହିଁ !

ଧର୍ମ, ଈଶ୍ୱର; ଶାସ୍ତ୍ର, ପର-ରା, ଧର୍ମଗୁରୁମାନେ ଆମ ଅଧୋପତନ ପାଇଁ ଦାୟୀ ନୁହଁନ୍ତି କି ? କେଉଁଥି ପାଇଁ ଆମେ ଆଜି ଏତେ ପଛୁଆ ଓ ଦରିଦ୍ର ହୋଇ ରହିଛେ? ମୁଁ ଯାହା କହୁଛି, ଆପଣମାନେ ସେ ସବୁ ବିଷୟରେ ଚିନ୍ତା କରନ୍ତୁ । ମୋର ବିଶ୍ୱାସ ଆପଣମାନେ ମୋ ସହିତ ଏକମତ ହେବେ ।

ବ୍ରାହ୍ମଣମାନେ ଏସବୁ କେବେ ସୃଷ୍ଟି କଲେ ? ପ୍ରାୟ ଦୁଇତିନି ହଜାର ବର୍ଷ ତଳେ ଏତେ ଈଶ୍ୱରମାନଙ୍କୁ ସୃଷ୍ଟି କରିଥିଲେ । ତାହାପରେ ଈଶ୍ୱରମାନଙ୍କ ସ-ର୍କରେ ଭାବନା ସୃଷ୍ଟି ହେଲା । ମୋର ଧାରଣା ରାମାୟଣ ଦୁଇ ହଜାର ବର୍ଷ ତଳେ ପ୍ରଣିତ ହୋଇଥିଲା । ସେହିପରି ଦୁଇହଜାର ବର୍ଷତଳେ ଖ୍ରୀଷ୍ଟିୟାନ ଧର୍ମ ଓ ଦେଢ ହଜାର ବର୍ଷ ତଳେ ଇସଲାମର ଉତ୍ପତ୍ତି ହୋଇଥିଲା ।

**ଆଦିମ ମଣିଷ**

ଆଦିମ ମଣିଷ କିପରି ବଞ୍ଚୁଥିଲା ? ଦେଢ ହଜାରରୁ ଦୁଇ ହଜାର ବର୍ଷତଳେ ମଣିଷର ଜୀବନଶୈଳୀ କିପରି ଥିଲା ? ସେତେବେଳେ ସେ କି ପ୍ରକାର ପୋଷାକ ପିନ୍ଧୁଥିଲା ? ଅନେକ ଲୋକ ଶରୀରକୁ ଆବୃତ୍ତ କରିବା ପାଇଁ ପତ୍ର ଓ ଗଛର ବକଳା ବ୍ୟବହାର କରୁଥିଲେ, ସେ ବଣ ଜଙ୍ଗଲରେ ଘୂରି ବୁଲୁଥିଲା । ସବୁଜ ପରିବା ଓ କଞ୍ଚାଫଳ ସେ ଖାଉଥିଲା । ତା ପୂର୍ବରୁ ସେ ପଶୁମାଂସକୁ ବିନା ରୋଷେଇ କରି ଖାଉଥିଲା । ତେବେ ଜ୍ଞାନ ଓ ଅନୁଭୂତି ଆଧାରରେ ତାର ଜୀବନ ପରିଚାଳିତ ହୋଇଥିଲା । ସେତେବେଳର ଜ୍ଞାନ ଓ ଅନୁଭୂତି ଆଧାରରେ ତାର ଜୀବନ ପଚ୍ଚିଚାଳିତ ହୋଇଥିଲା । ଆଜିର ଶିକ୍ଷା ସେ ଯୁଗରେ ଅଚିନ୍ତନୀୟ ଥିଲା । ଏହି ସାମାଜିକ ପରିବେଶରେ କେତେକ ବୁଦ୍ଧିମାନ ଲୋକ ଅନ୍ୟମାନଙ୍କର ଅଜ୍ଞତାର

Digitized by srujanika@gmail.com

ସୁଯୋଗ ନେଇ ଅନେକ ଅବିଶ୍ୱାସନୀୟ କାହାଣୀମାନ ସୃଷ୍ଟି କରିଥିଲେ। ପ୍ରତ୍ୟେକ ଧର୍ମରେ ଏପରି ଅନେକ ଅବାନ୍ତର କଥା ରହିଛି, ଯାହା ଯୁକ୍ତିଶୀଳତା ପରିପନ୍ଥୀ। ଅସତ୍ୟ ଓ ମିଥ୍ୟା ଆଧାରରେ ଧର୍ମଗୁଡିକ ବିକଶିତ ହେଲେ। ରାମାୟଣ, ଭାରତପୁରାଣ, ହିନ୍ଦୁଧର୍ମ, ଶୈବଧର୍ମ, ବୈଷ୍ଣବ ଧର୍ମ, ଖ୍ରୀଷ୍ଟଧର୍ମ, ଇସଲାମ ଧର୍ମ କଥା ବିଚାର କରନ୍ତୁ। କୌଣସି ଧର୍ମ ସତ୍ୟକୁ ଆଧାର କରି ଗଡି ଉଠିଛି କି ? ଯେଉଁ ସମୟରେ ଏହି ସବୁ ଧର୍ମମାନଙ୍କର ଉତ୍ପତ୍ତି ହୋଇଛି, ସେ ସମୟରେ ମଣିଷର ଚିନ୍ତା ଚେତନା ନିମ୍ନ ସ୍ତରରେ ରହିଥିଲା। ସେତେବେଳେ ଅନେକ ମିଥ୍ୟା କାହାଣୀ ଆଧାରରେ ଧର୍ମର ବିକାଶ ହୋଇଥିଲା। ଏବେ ଯଦି କେହି ଏକ ଧର୍ମ ସୃଷ୍ଟି କରିବାକୁ ପ୍ରୟାସ କରିବେ, ତେବେ ସେ ବର୍ତ୍ତମାନର ପରିସ୍ଥିତି ଅନୁଯାୟୀ ଏହା କରିବେ। ସେ ବାସ୍ତବ ଘଟଣା, ବିକଶିତ ଜ୍ଞାନ ଓ ଯୁକ୍ତିଶୀଳ ଆଧାରରେ ନୂତନଧର୍ମର ଭିତ୍ତି ପକାଇବେ। ଅତୀତରେ ଅଜ୍ଞତା ଆଧାରରେ ଧର୍ମମାନେ ଗଡିଉଠିଥିଲେ।

ଅତୀତରେ ପ୍ରତ୍ୟେକ ଧର୍ମ ପାଇଁ ଏକ ଈଶ୍ୱର ଅବଶ୍ୟମ୍ଭାବୀ ଥିଲା ଓ ଈଶ୍ୱରମାନଙ୍କର ଅଲୌକିକ ଶକ୍ତି ଥିବା କଳ୍ପନା କରାଯାଇ ଥିଲା। ହିନ୍ଦୁଧର୍ମରେ ଆମେ ଏହାର ଅନେକ ଦୃଷ୍ଟାନ୍ତ ଦେଖୁ। ଅନ୍ୟ ଧର୍ମ ଗୁଡିକ ହିନ୍ଦୁଧର୍ମ ଭଳି ଅନେକ କଳ୍ପନା ଆଧାରରେ ଗଡିଉଠିଛନ୍ତି। ଗାଈର ଗୋବରକୁ ଚନ୍ଦନର ପେଷ୍ଟରେ ପରିଣତ କରିବା ଜଣେ ଆଧ୍ୟାତ୍ମିକ ବ୍ୟକ୍ତି ପାଖରେ ସମ୍ଭବ ବୋଲି ହୁଏତ କେହି କହିପାରନ୍ତି। ତେବେ ଏହା କିପରି ସମ୍ଭବ କେହି ଚିନ୍ତା କରିବ ନାହିଁ। ଅତୀତରେ ଏଭଳି କଥାକହି ଲୋକମାନଙ୍କୁ ବିଭ୍ରାନ୍ତ କରାଯାଇଛି। ଜଣେ ମୃତ ବ୍ୟକ୍ତିକୁ ବଞ୍ଚାଇ ଦେବା କାହାଣୀମାନ ଧର୍ମ ନାମରେ କୁହାଯାଇଛି। ଏହିଭଳି ଅନେକ ମିଥ୍ୟା ଓ କାଳ୍ପନିକ କାହାଣୀ ଲୋକମାନଙ୍କୁ ସେମାନେ ଶୁଣାଇଛନ୍ତି। ଧର୍ମ ଗୁରୁମାନଙ୍କର ଅନେକ ଚମତ୍କାରିତା ଥିବା କୁହାଯାଇଛି। ଅନେକ ଅଲୌକିକ ଶକ୍ତିକୁ ଆରୋପ କରାଯାଇ ଧର୍ମ ଗୁରୁମାନଙ୍କୁ ଦିବ୍ୟ ପୁରୁଷରେ ଚିତ୍ରଣ କରାଯାଇଛି। ଦିବ୍ୟପୁରୁଷମାନଙ୍କୁ ନାନା ଅଲୌକିକ ଚମତ୍କାରିତା ଓ ଆଧ୍ୟାତ୍ମିକ ଶକ୍ତିର ଅଧିକାରୀ ବୋଲି କୁହାଯାଇଛି।

Digitized by srujanika@gmail.com

ଏହି ସବୁ କହିଥିବା କଥା ମାନ ଯେ ସ-ମ୍ପୂର୍ଣ୍ଣ ମିଛ ଏହା ନିଃସନ୍ଦେହ । ମିଥ୍ୟାବାଦୀମାନେ ଲୋକମାନଙ୍କୁ ଅସତ୍ୟ କାହାଣୀ କହି ବିଭ୍ରାନ୍ତ କରିଛନ୍ତି ।

**ପୁରାଣ**

ରାମାୟଣ ଓ ମହାଭାରତ ପୁରାଣ ଗୁଡିକୁ ବିଚାର କରନ୍ତୁ । ଗୁଡିଏ କାଳ୍ପନିକ ବିଶ୍ୱାସ ଛଡା ସେମାନଙ୍କର ସ୍ଥାୟିତ୍ୱ ନାହିଁ । ରାମାୟଣରେ କୁହାଯାଇଛି ରାମଙ୍କ ପିତା ଦଶରଥ ଷାଠିଏ ହଜାର ବର୍ଷ ବଞ୍ଚିଥିଲେ ଓ ତାଙ୍କର ଚାଳିଶି ହଜାର ପତ୍ନୀ ଥିଲେ । ଜଣେ ମଣିଷ ଷାଠିଏ ହଜାର ବର୍ଷ ବଞ୍ଚିବା ସମ୍ଭବ କି? ଏବେ ସେ କେଉଁଠି ଅଛନ୍ତି ? ଏଗୁଡିକ କେବଳ ଗାଲୁଗପ ନୁହେଁ କି! ଏହାଛଡା ଜଣେ ବ୍ୟକ୍ତି ଚାଳିଶି ହଜାର ସ୍ତ୍ରୀ ଲୋକମାନଙ୍କୁ ବିବାହ କରିବାର କ'ଣ ଆବଶ୍ୟକତା ଅଛି ? ଯଦି ପ୍ରତିଦିନ ସେ ଜଣେ ପତ୍ନୀଙ୍କ ପାଖକୁ ଯାଆନ୍ତି, ତେବେ ତାଙ୍କୁ ପୁଣି ଥରେ ଦେଖା କରିବାକୁ ପାଖାପାଖି ୧୧୦୦ ବର୍ଷ ଲାଗିବ । ଜଣେ ପତ୍ନୀ ଏହି ବର୍ଷ ଗୁଡିକଧରି ତାଙ୍କୁ ଅପେକ୍ଷା କରିବା ଦ୍ୱାରା ସେ ଜଣେ ସମ୍ମାନନୀୟା ମହିଳା ହୋଇ ରହିବେ କି? ଏହି ପ୍ରକାର କାହାଣୀର କୌଣସି ଗୁରୁତ୍ୱ ଅଛି କି? ଏହାକୁ କାହିଁକି ବିଶ୍ୱାସ କରାଯିବ? ଏହିଭଳି ମିଥ୍ୟା କହିବାର ସୀମା ଅଛି କି ନାହିଁ ? ଏହି ସବୁ ଅବାନ୍ତର କଥା ଯେଉଁ ଥିରେ କୁହାଯାଇଛି, ସେଥିରେ ଜଣେ ରାମଙ୍କୁ କାହିଁକି ଈଶ୍ୱର ବୋଲି ଗ୍ରହଣ କରିବ? ଈଶ୍ୱର ମାନଙ୍କୁ ସୃଷ୍ଟି କରିବା କ୍ଷେତ୍ରରେ କିଛି ତ୍ରୁଟି ରହିବା ଯଥାର୍ଥ କି ନୁହେଁ? ପୁରାଣ ଲେଖୁଥିବା ବ୍ୟକ୍ତିମାନେ ଈଶ୍ୱରଙ୍କୁ ଅନ୍ତତଃ ସମ୍ମାନ ଦେବା ଠିକ୍ ନୁହେଁ କି ? ରାମଙ୍କର କାର୍ଯ୍ୟକୁ ଦେଖନ୍ତୁ । ସେ ଅଶ୍ୱମେଧ ଯଜ୍ଞ ଆୟୋଜନ କରିଥିଲେ । ସେ ଏହାକୁ ଜଣେ ମଣିଷ ଭାବେ କରିଥିଲେ କି ନାହିଁ ? ଏହି ଯଜ୍ଞ କରି ତାଙ୍କ ପତ୍ନୀଙ୍କୁ ବାହାର କରିଦେବା ତାଙ୍କର ଉଦ୍ଦେଶ୍ୟ ଥିଲା ନା କ'ଣ ? ତାଙ୍କ ପତ୍ନୀ କିପରି ତାଙ୍କର ପିଲାମାନଙ୍କୁ ଜନ୍ମ ଦେଲେ ? ମୁଁ ଏହା ମୋ ମନରୁ କହୁନାହିଁ । ଯଜ୍ଞ ବିଷୟରେ ଏହାହିଁ ରାମାୟଣରେ କୁହାଯାଇଛି ।

ଏହା କୁହାଯାଇଛି ଯେ ସେ ସମୟରେ ବିବାହିତା ମହିଳାମାନଙ୍କୁ ଶାରୀରିକ ସ-ମ୍ପର୍କ ପାଇଁ ବ୍ରାହ୍ମଣମାନଙ୍କୁ ଦିଆଯାଉଥିଲା । ସ୍ତ୍ରୀ ଲୋକମାନେ ବ୍ରାହ୍ମଣ

Digitized by srujanika@gmail.com

ଲୋକମାନଙ୍କର ରେତ ସେବନ କରି ପିଲାମାନଙ୍କୁ ଜନ୍ମ ଦେଉଥିଲେ । ଏହିକାର୍ଯ୍ୟ ପାଇଁ ବ୍ରାହ୍ମଣମାନଙ୍କୁ ଅନେକ ଦାନ ବି ଦେବାକୁ ପଡୁଥିଲା । ଦଶରଥ ମଧ୍ୟ ଏହି ଧାରାରେ ତାଙ୍କର ସନ୍ତାନମାନଙ୍କୁ ପାଇଥିଲେ । ରାମ ପ୍ରକୃତରେ ତାଙ୍କର ସନ୍ତାନ ଏହା କିପରି କହିହେବ ? ତାଙ୍କ ପତ୍ନୀଙ୍କର ବ୍ରାହ୍ମଣଙ୍କ ସହ ଶାରୀରିକ ସ-ର୍କରୁ ସେ ଯେ ସନ୍ତାନ ପାଇଛନ୍ତି ଏହା ଲେଖାଯାଇଛି ।

ରାମ ଈଶ୍ୱରଙ୍କର ଅବତାର ବୋଲି କୁହାଯାଇଛି । ତାଙ୍କ ଜନ୍ମ ବିଷୟରେ ବିସ୍ତୃତ କାହାଣୀ ରହିଛି । ବ୍ରାହ୍ମଣମାନେ ରାମଙ୍କର ମା କୌଶଲ୍ୟାଙ୍କୁ ବିବସ୍ତ୍ରକରି ଭୂମିରେ ଶୁଆଇ ଦେଲେ । ଏକ ଅଶ୍ୱକୁ ଆଣି କୌଶଲ୍ୟାଙ୍କ ସହ ସହବାସ କରାଇଲେ । ଏହାପରେ ଅଶ୍ୱମେଧ ଯଜ୍ଞ ଆରମ୍ଭ କରାଗଲା । ଆପଣମାନେ ମୋ କଥାକୁ ବିଶ୍ୱାସ କରି ନପାରନ୍ତି । ଆପଣମାନେ ନିଜେ ରାମାୟଣ ପଢନ୍ତୁ, ଆପଣମାନେ ତାହାର ବର୍ଣ୍ଣନା ଦେଖିବେ । ଏସବୁ ବିସ୍ତୃତ ଭାବେ କହିବାରେ ମୋର କ'ଣ ଉଦ୍ଦେଶ୍ୟ ଅଛି ? ସେ ଯୁଗରେ ଲୋକମାନେ କେତେ ଅଜ୍ଞ ଥିଲେ ତାହା ଆପଣମାନଙ୍କୁ ଜଣାଇବାକୁ ମୁଁ ଚାହେଁ । ଲୋକମାନଙ୍କର ଅଜ୍ଞତାର ସୁଯୋଗ ନେଇ ବ୍ରାହ୍ମଣମାନେ ଚତୁରତାର ସହ ଈଶ୍ୱରଙ୍କୁ ସୃଷ୍ଟି କରିଛନ୍ତି । ଅତୀତର ସେହି ଅଜ୍ଞ ଲୋକଙ୍କ ଭଳି ଆମେ ଅଜ୍ଞ ରହିବା କିଁ? ମୁଁ ନିଃସନ୍ଦେହରେ କହିବାକୁ ଚାହେଁ ଯେ ବ୍ରାହ୍ମଣମାନେ କଳ୍ପନା ପୂର୍ବକ ଈଶ୍ୱର ମାନଙ୍କୁ ସୃଷ୍ଟି କରିଛନ୍ତି ।

ରାମାୟଣକୁ ଏକ କାଳ୍ପନିକ କାହାଣୀ ଭାବରେ ଆମେ ଗ୍ରହଣ କରିପାରେ । ରାମଙ୍କର ଜନ୍ମ ବିଷୟରେ ଯାହା କୁହାଯାଇଛି, ତାହାକୁ ବାଦ ଦେଲା ପରେ ମଧ୍ୟ ବ୍ରାହ୍ମଣମାନେ ତାଙ୍କୁ ଜଣେ ମହତ ଗୁଣଧାରୀ ଆଦର୍ଶ ବ୍ୟକ୍ତି ଭାବେ ଚିତ୍ରଣ କରିବା ଠିକ୍ ହୋଇ ନଥାନ୍ତା କି ? କିନ୍ତୁ ସେମାନେ ତାଙ୍କୁ କିପରି ଚିତ୍ରଣ କରିଛନ୍ତି ? ରାକ୍ଷାସ, ଅସୁର, ବାଳି ଓ ଅନେକ ବ୍ୟକ୍ତିଙ୍କୁ ରାମ ହତ୍ୟା କରିଥିବା ସେମାନେ ଲେଖିଛନ୍ତି । ସେ କେଉଁମାନଙ୍କୁ ଓ କାହିଁକି ହତ୍ୟା କରିଛନ୍ତି ତାହା ଧ୍ୟାନର ସହ ଦେଖନ୍ତୁ । ରାମ ନିଜେ କହିଛନ୍ତି- "ତୁମେ ମୋତେ ଜାଣ କି? ବ୍ରାହ୍ମଣମାନଙ୍କର ବିରୋଧୀ ମାନଙ୍କୁ ଗଣହତ୍ୟା କରିବା ପାଇଁ ମୁଁ ଜନ୍ମ ଗ୍ରହଣ କରିଛି" । ବନ୍ଧୁଗଣ, ଆପଣମାନେ ଏହା ରାମାୟଣରେ ପାଇବେ ।

Digitized by srujanika@gmail.com

ଯଦି ଏହା ସତ୍ୟ ହୁଏ, ସେଥିରୁ ଆମେ କଣ ବୁଝିବା ? ଆମମାନଙ୍କୁ ନ୍ୟୁନ ଓ ଅସମ୍ମାନ ଜନକ ସ୍ଥିତିରେ ରଖିବା ପାଇଁ ବ୍ରାହ୍ମଣମାନେ ରାମାୟଣ ରଚନା କରି ନାହାଁନ୍ତି କି ? ଆମକୁ କାହିଁକି ଶୂଦ୍ର କୁହାଯିବ? ରାମ କାହିଁକି ଶୂଦ୍ରମାନଙ୍କୁ ହତ୍ୟା କରିବେ? ଆମେ ଶୂଦ୍ର ହୋଇ ଅସମ୍ମାନ ଜନକ ପରିଚୟ ନେଇ ନିଜକୁ କାହିଁକି ହିନ୍ଦୁ କହିବା? ଆମେ କାହିଁକି ରାମଙ୍କୁ ଆମର ଈଶ୍ୱର ଭାବେ ପୂଜା କରିବା?

ବ୍ରାହ୍ମଣମାନେ ନିଜକୁ ନିରାପଦ ରଖିବା ପାଇଁ କଣ ସବୁ କରିଛନ୍ତି ତାହା ଦେଖନ୍ତୁ । ଆମକୁ ନିର୍ବୋଧ କରି ସେମାନେ ଆମକୁ ଶୋଷଣ କରିଛନ୍ତି ।

ରାମାୟଣ ଲେଖିଥିବା ବ୍ୟକ୍ତି ଶୂଦ୍ରମାନଙ୍କୁ ତାଚ୍ଛଲ୍ୟ କରିଛନ୍ତି । ତେବେ ସେ ଏହା କରି ରାମଙ୍କୁ ଜଣେ ସମ୍ମାନନୀୟ ଈଶ୍ୱର ବୋଲି ଚିତ୍ରଣ କରିଛନ୍ତି କି? ତାଙ୍କର ପତ୍ନୀଙ୍କର ସ୍ୱଭାବ ଦେଖନ୍ତୁ । ଗୋଟିଏ ଜାଗାର ବର୍ଣ୍ଣନା ଅନୁଯାୟୀ, ରାମଙ୍କ ପତ୍ନୀଙ୍କୁ ହରଣ କରାଯାଇଛି । ଯଦି ରାମ ଈଶ୍ୱର ହୋଇଥାନ୍ତେ, ତେବେ ସେ କିପରି ଏହା ଜାଣି ପାରିଲେ ନାହିଁ? ଜଣେ ବ୍ୟକ୍ତି ଆସି ବଳପୂର୍ବକ ହରଣ କରି ନେଇଯିବ, ରାମ ଏତିକି ବି ଜାଣିବାକୁ ସମର୍ଥ ହେଲେ ନାହିଁ । ନିଜର ପତ୍ନୀକୁ ସୁରକ୍ଷା ଦେବାରେ ସେ ସମର୍ଥ ହେଲେ ନାହିଁ କାହିଁକି ? ଏଥିରେ ରାମଙ୍କୁ ସର୍ବ ଶକ୍ତିମାନ ଈଶ୍ୱର ବୋଲି କାହିଁକି ଗ୍ରହଣ କରିବା ! ସୀତାଙ୍କ ବିଷୟରେ ଗୁଡ଼ିଏ ଅବାନ୍ତର କାହଣୀ ମଧ୍ୟ ଦେଖିବାକୁ ମିଳେ ।

ବନ୍ଧୁଗଣ, ଈଶ୍ୱରଙ୍କୁ ଆଧାର କରି ଏପ୍ରକାରର ମନଗଢା କାହାଣୀ ଲେଖିବା କେତେ ଦୂର ଯଥାର୍ଥ? ସେଥିପାଇଁ ଆମେ ରାମାୟଣକୁ ଗ୍ରହଣ କରୁନାହୁଁ । ବ୍ରାହ୍ମଣମାନେ ରାମ ଓ ସୀତାଙ୍କୁ ଈଶ୍ୱର କରି ଦେଇ ସେମାନଙ୍କୁ ପୂଜା କଲେ । କିନ୍ତୁ ରାମଙ୍କ ଚରିତ୍ର ଭିତରେ ଏପରି ମହନୀୟତା ଅଛି କି ? ତଥାପି ବ୍ରାହ୍ମଣମାନେ ରାମଙ୍କୁ ଈଶ୍ୱର ଓ ସୀତାଙ୍କୁ ଏକ ଦେବୀ ଭାବରେ ଉପସ୍ଥାପନା କଲେ । ଜଣେ ବିଦେଶୀୟ ଏହା ପଢିଲେ, ଆମ ଈଶ୍ୱର ଓ ଦେବୀଙ୍କ ଚରିତ୍ରରେ କଣ ଦେଖିବେ?

Digitized by srujanika@gmail.com

ଏହାକୁ ଆମେ ଚିନ୍ତା କରିବା ଠିକ୍ ନୁହେଁ କି ? ଆତ୍ମସମ୍ମାନ ଥିବା ବ୍ୟକ୍ତି ଏସବୁ ଅବାନ୍ତର କାହାଣୀକୁ ବିଶ୍ୱାସ କରିବା ଓ କେତେକ ଚରିତ୍ରକୁ ଇଶ୍ୱର କହିବା ଉଦ୍‌ଭଟ ମନେ ହେଉ ନାହିଁ କି? ସେହିଭଳି କ୍ରିଷ୍ଣ, କନ୍ଦ, ମୁରୁଗା, ବିନାୟକ, ଶିବ, ବିଷ୍ଣୁ ଆଦି ଇଶ୍ୱରମାନଙ୍କ ଜନ୍ମ ବିଷୟରେ କଣ କୁହାଯାଇଛି ଲକ୍ଷ୍ୟ କରନ୍ତୁ ।

**କ୍ରିଷ୍ଣଙ୍କ ଜନ୍ମ**

କ୍ରିଷ୍ଣଙ୍କର ଜନ୍ମ କାହାଣୀକୁ ଦେଖନ୍ତୁ । ଏହାକୁ ବ୍ରାହ୍ମଣମାନେ କିପରି ବ୍ୟକ୍ତ କରିଛନ୍ତି- ତାହା ବିଚାର କରନ୍ତୁ । ବର୍ଣ୍ଣନା ଅନୁଯାୟୀ ମହାବିଷ୍ଣୁ ତାଙ୍କ ଶରୀରରୁ ଦୁଇଟି କେଶ ନେଲେ । ଗୋଟିଏ କେଶରୁ କ୍ରିଷ୍ଣ ଓ ଅନ୍ୟ କେଶରୁ ତାଙ୍କ ଭାଇ ସୃଷ୍ଟି ହେଲେ । ଦୁଇଟି କେଶ ମଧ୍ୟରୁ ଗୋଟିଏ ଥିଲା ଧଳା ଓ ଅନ୍ୟଟି ଥିଲା କଳା । କୌଣସି ଇଶ୍ୱର କେଶରୁ ସୃଷ୍ଟି ହେବା କେତେ ଦୂର ସଙ୍ଗତ ମନେ ହୁଏ ? ପୁରାଣମାନଙ୍କରେ ଦିଆଯାଇଥିବା ଏହି ବର୍ଣ୍ଣନାକୁ ନିଜେ ପଢନ୍ତୁ । ଇଶ୍ୱରମାନଙ୍କର ଜନ୍ମକୁ ଏପରି ବ୍ୟକ୍ତ କରିବା ଅତ୍ୟନ୍ତ ଅବାନ୍ତର ନୁହେଁ କି ?

**ବିନାୟକ ପୁରାଣ**

ଆଉ ଜଣେ ଇଶ୍ୱରଙ୍କୁ ବ୍ରାହ୍ମଣମାନେ କିପରି ସୃଷ୍ଟି କରିଛନ୍ତି ତାହା ଦେଖନ୍ତୁ । ବିନାୟକ ହେଉଛନ୍ତି ଆଉ ଜଣେ ହିନ୍ଦୁ ଦେବତା । ତାଙ୍କର ଜନ୍ମ କିପରି ହୋଇଥିଲା ଶୁଣନ୍ତୁ ।

ଶିବ ଓ ପାର୍ବତୀ ଜଙ୍ଗଲରେ ଭ୍ରମଣ କରୁଥିଲେ । ସେହି ସମୟରେ ସେମାନେ ଦୁଇଟି ହାତୀ ରମଣ କରୁଥିବା ଦେଖିଲେ । ଏହା ଦେଖି ପାର୍ବତୀ ଶିବଙ୍କ ସହ ଜଣେ ହାତୀ ଭାବରେ ରମଣ କରିବାକୁ ଚାହିଁଲେ । ଶିବ ସମ୍ମତ ହେଲେ । ଉଭୟ ହାତୀ ବେଶ ଧରିଲେ । ସେମାନଙ୍କର ରମଣରୁ ହାତୀ ଶୁଣ୍ଢ ଥିବା ଏକ ପୁତ୍ର ସନ୍ତାନ ସେମାନଙ୍କର ଜନ୍ମ ହେଲା । ଏହା କିପରି ଅବିଶ୍ୱାସନୀୟ ତାହା ଭାବନ୍ତୁ । ଜଣେ ଇଶ୍ୱରଙ୍କୁ ଏଭଳି ସୃଷ୍ଟି କରିବା ଏକ ସଭ୍ୟ ଜୀବନ ଦୃଷ୍ଟି କି? ଏହି ବିନାୟକ ଇଶ୍ୱରଙ୍କୁ ଆପଣମାନେ ତାମିଲ୍‌ନାଡୁରେ ସର୍ବତ୍ର ଦେଖିବେ । ସେ ଭାରି ଲୋକ ପ୍ରିୟ ଇଶ୍ୱର, ତେବେ ଏହି ଇଶ୍ୱରଙ୍କୁ ଅଳ୍ପ ଦିନ ମଧ୍ୟରେ ସୃଷ୍ଟି କରାଯାଇଛି ।

Digitized by srujanika@gmail.com

ଗୋଟିଏ କାହାଣୀ ଅନୁଯାୟୀ ବାତପି ନାମରେ ଜଣେ ରାଜା ଥିଲେ। ସେହି ରାଜା ଏହି ଈଶ୍ୱରଙ୍କୁ ଆଣିଥିବା କୁହାଯାଏ। ଆପଣମାନେ ଶ୍ରୀ ମୀନାକ୍ଷୀ ସୁନ୍ଦରମଙ୍କୁ ଜାଣନ୍ତି। ସେ ଜଣେ ବିଦ୍ୱାନ ବ୍ୟକ୍ତି ଓ ଜଣେ ବିଶ୍ୱବିଦ୍ୟାଳୟର କୁଳପତି। ସେ ଗବେଷଣା କରି କେତେକ ସତ୍ୟ ବାହାର କରିଛନ୍ତି। ବିନାୟକ ଈଶ୍ୱରଙ୍କୁ ଉତ୍ତର ଭାରତରୁ ତାମିଲ ନାଡୁକୁ ଅଣାଯାଇଥିବା ସେ ନିଃସନ୍ଦେହରେ ପ୍ରତିପାଦନ କରିଛନ୍ତି। ବିନାୟକଙ୍କୁ ତାମିଲନାଡୁକୁ ବାରଶହ, ତେରଶହ ବର୍ଷତଳେ ଅଣାଯାଇଥିବା ସେ ସୂଚାଇଛନ୍ତି। ସ୍‌ତି ହିନ୍ଦୁ ଜଗତରେ ସେ ଏକ ପ୍ରସିଦ୍ଧ ଈଶ୍ୱର ଭାବେ ପରିଗଣିତ ହେଉଛନ୍ତି।

**ସୁବ୍ରମଣ୍ୟ ଈଶ୍ୱର**

ସୁବ୍ରମଣ୍ୟ ଈଶ୍ୱରଙ୍କୁ ଦୁଇ ହଜାର ବର୍ଷ ତଳେ ସୃଷ୍ଟି କରାଯାଇଥିଲା। ଏହି ଈଶ୍ୱରଙ୍କର ଜନ୍ମ ନେଇ ବ୍ରାହ୍ମଣମାନେ ଦୁଇଟି ପୃଥକ କାହାଣୀର ଅବତାରଣା କରିଛନ୍ତି। ଗୋଟିଏ କାହାଣୀ ରାମାୟଣରେ ଅଛି। ମୋ ପାଖରେ ଏଠାରେ ଏହି ପୁସ୍ତକର ଖଣ୍ଡିଏ କପି ଅଛି। (ବହିଟିକୁ ପେରିୟାର୍ ସଭାପତିଙ୍କୁ କେତେ ଗୁଡିଏ ପଦ ପଢିବାକୁ ଦେଲେ)। ବନ୍ଧୁଗଣ, ଆମର ଲୋକମାନେ କେବଳ ଯେ ନିର୍ବୋଧ ଥିଲେ ତାହା ନୁହେଁ, ସେମାନେ କୌଣସି ଆତ୍ମମର୍ଯ୍ୟାଦା ଭାବନା ରଖୁନଥିଲେ।

କାହାଣୀ ଅନୁଯାୟୀ ଶିବ ଓ ପାର୍ବତୀ ରହୁଥିବା କୈଳାସ ପର୍ବତକୁ ଦେବତାମାନେ ଗଲେ। ସେମାନେ ଜଣେ ସେନାପତି ପାଇଁ ଶିବଙ୍କୁ ବିନୀତ ପ୍ରାର୍ଥନା କଲେ। ଦେବତାମାନଙ୍କର ଇଚ୍ଛା ପୂରଣ କରିବା ପାଇଁ ଶିବ ସମ୍ମତି ହେଲେ। ଦେବତାମାନେ ବିଦାୟ ନେଲେ। ଶିବ ପାର୍ବତୀଙ୍କ ପାଖକୁ ଯାଇ ଦେବତାମାନଙ୍କୁ ଜଣେ ସେନାପତି ଦେବାକୁ ହେବ ବୋଲି କହିଲେ। ଏଥି ପାଇଁ ଶିବ ପାର୍ବତୀ ରତିକ୍ରିୟାରେ ମଗ୍ନ ହେଲେ।

ଜଣେ ସେନାପତି ସୃଷ୍ଟିପାଇଁ ସେମାନେ ଏପରି ପରସ୍ପରକୁ ଉପଭୋଗ କରିବା ହୁଏତ ଅବାନ୍ତର ନୁହେଁ। ତେବେ ଶିବ ପାର୍ବତୀ ସେମାନଙ୍କର ରତିକ୍ରିୟା କୌଣସି ଦିନ ମାସ ବା ବର୍ଷରେ ସୀମିତ ରଖୁନଥିଲେ। ସେମାନେ ଏହି କାର୍ଯ୍ୟରେ ଏକ ହଜାର ବର୍ଷ ଲିପ୍ତ ରହିଲେ। ଏହା ସତ୍ତ୍ୱେ ସେମାନେ ସନ୍ତାନଟିଏ ପାଇଲେ

Digitized by srujanika@gmail.com

ନାହିଁ । ଦେବତାମାନେ ଏଥିରେ ବିବ୍ରତ ଓ ଭୟଭୀତ ହେଲେ । ଶେଷରେ ସେମାନେ ଶିବ ପାର୍ବତୀ ଦ-ତିଙ୍କୁ ସାକ୍ଷାତ କରି ସେମାନଙ୍କର ବିତୃଷ୍ଣା ଜଣାଇଲେ । ଦେବତାମାନଙ୍କୁ ଦେଖି ସେମାନଙ୍କର ଆସିବାର କାରଣ ଶିବ ପଚାରିଲେ । ଯଦି ହଜାର ବର୍ଷର ଅବିରତ ରତିକ୍ରିୟାପରେ ଏକ ସନ୍ତାନ ଜନ୍ମ ହୋଇଥିବ ତେବେ ସେହି ସନ୍ତାନ ଦେବତା ମାନଙ୍କୁ ଧ୍ୱଂସ କରି ଦେଇ ପାରିବ ବୋଲି ଦେବତାମାନେ ଆଶଙ୍କା କଲେ । ଶିବ, ପାର୍ବତୀ ତାଙ୍କ କାର୍ଯ୍ୟ ବନ୍ଦ କଲେ । ତେବେ ଏକ ହଜାର ବର୍ଷ ଧରି ତାଙ୍କର ଯୌନ କ୍ରିୟାରୁ ନଦୀ ତୁଲ୍ୟ ରେତ ସ୍ଖଳିତ ହେଲା । ତାହା ନଦୀ ମଧ୍ୟ ଦେଇ ସମୁଦ୍ରରେ ପତିତ ହେଲା । ଏହା ସମୁଦ୍ରରେ ଭାସିଲା ଓ ତାହା ଛଅ ଶିର ବିଶିଷ୍ଟ ଏକ ବ୍ୟକ୍ତି ପରି ଦେଖାଦେଲା ।

ଏହା କିପରି ଗଣନା କରାଯାଇଛି? ଏହା କାହିଁକି ଛଅ ଶିର ବିଶିଷ୍ଟ ପ୍ରତୀତ ହେଲା ? ଏହାକୁ କେହି ବ୍ୟାଖ୍ୟା କରିପାରିବ କି?

ଛଅଧାର ବିଶିଷ୍ଟ ରେତ ଗଙ୍ଗାରେ ମିଶିଲା । ସେ ସମୟରେ ଜଣେ ସ୍ତ୍ରୀଲୋକ ନଦୀରେ ସ୍ନାନ କରିବାକୁ ଯାଇ ଏହାକୁ ନିଜ ଅଞ୍ଜୁଳାରେ ଧରିଲେ । ତତ୍କ୍ଷଣାତ୍ ଛଅ ଶିର ବିଶିଷ୍ଟ ଏକ ମଣିଷରେ ଏହା ରୂପାନ୍ତରିତ ହୋଇଗଲା । ସ୍ତ୍ରୀ ଲୋକଟି ଏହି ଛଅଶିର ବିଶିଷ୍ଟ ସନ୍ତାନଙ୍କୁ ସ୍ତନ୍ୟପାନ କରାଇଲେ । ବୈଷ୍ଣବମାନେ ଏହି କାହାଣୀକୁ ରାମାୟଣରୁ ଉଲ୍ଲେଖ କରିଥାନ୍ତି ।

ଶୈବବାଦୀମାନେ ଏହାର ଏକ ପୃଥକ୍ ବର୍ଣ୍ଣନା ଦେଇଥାନ୍ତି । ସେମାନଙ୍କ ମତରେ ଦେବତା ମାନେ ଏକ ହଜାର ବର୍ଷ ଅପେକ୍ଷା କରି ଶିବ ପାର୍ବତୀଙ୍କୁ ସାକ୍ଷାତ କଲେ । ସେମାନେ ସେମାନଙ୍କ ପାଖରେ ଲମ୍ବକରି ପଡିଗଲେ । ଦେବତାମାନେ ଶିବ ପାର୍ବତୀଙ୍କୁ ତାଙ୍କର କ୍ରିୟା ବନ୍ଦ କରିବାକୁ ନିବେଦନ କଲେ । ଶିବ ମନାକଲେ । ଶିବ କହିଲେ ଯେ ଯଦି ସେ ଏହିକାର୍ଯ୍ୟ ବନ୍ଦ କରନ୍ତି, ତେବେ ତାଙ୍କର ରେତ ଅତ୍ୟନ୍ତ ବେଗରେ ବାହାରିବ । ସୁତରାଂ ଦେବତାମାନେ ଛିଡାହୋଇ ସେମାନଙ୍କର ହାତକୁ ଧରିବା ପାଇଁ ଶିବ ପରାମର୍ଶ ଦେଲେ । ଶିବଙ୍କ କଥାନୁଯାୟୀ ଦେବତା ମାନେ ଭୂମିରୁ ଉଠି ଦଣ୍ଡାୟମାନ ହେଲେ । ଶିବଙ୍କ ଶରୀରର ବାହାରୁ ଥିବା ରେତକୁ ଦେବତାମାନେ ନିଜ ହାତରେ ଧରିଲେ । ଏହାକୁ ନେଇ ଦେବତାମାନେ କଣ କରିବେ

Digitized by srujanika@gmail.com

ବୋଲି ଶିବଙ୍କୁ ପଚାରିଲେ । ଏହାକୁ ପାନ କରିବାକୁ ଶିବ ନିର୍ଦ୍ଦେଶ ଦେଲେ । ଦେବତାମାନେ ଏହାକୁ ପାନକରି ତତ୍ କ୍ଷଣାତ୍ ଗର୍ଭଧାରଣ କଲେ । ଏହାପରେ ସେମାନେ ବ୍ୟସ୍ତ ହୋଇ ଶିବଙ୍କୁ ନିବେଦନ କଲେ । ଶିବ ସେମାନଙ୍କର ଗର୍ଭନଷ୍ଟ କରିବାକୁ ଏକ ପରାମର୍ଶ ଦେଲେ । ଗୋଟିଏ ନିର୍ଦ୍ଦିଷ୍ଟ ଜଳାଶୟରେ ସ୍ନାନକରିବାକୁ ଉପଦେଶ ଦେଲେ । ସେମାନେ ଏହା ଶୁଣି ସେଠାକୁ ଗଲେ । ସେଠାରେ ସ୍ନାନ କରିବାରୁ ସେମାନଙ୍କର ଗର୍ଭ ନଷ୍ଟ ହୋଇଗଲା ।

ବନ୍ଧୁଗଣ, ଏହିସବୁ କାହାଣୀ ପୁରାଣ ମାନଙ୍କରେ ବିସ୍ତୃତ ଭାବରେ ଲେଖାଯିବା ଆମେ ଦେଖୁ । ଏହିସବୁ ଘଟଣା ପରେ ଶିବଙ୍କ ରେତ କିଛି ଅଂଶ ମିଶିଯାଇ, ସୁବ୍ରମଣ୍ୟମ୍ ଈଶ୍ୱର ସୃଷ୍ଟି ହେଲେ । ତାହାଙ୍କୁ ମଧ୍ୟ କନ୍ଦନ କୁହାଯାଏ । କନ୍ଦନର ଅର୍ଥ ହେଉଛି ରେତ । ସଂସ୍କୃତରେ ଏହାକୁ ସ୍କନ୍ଦନ କୁହାଯାଏ । ବ୍ରାହ୍ମଣମାନେ ଈଶ୍ୱରଙ୍କୁ କି ପ୍ରକାର ସମ୍ମାନ ଦେଇଛନ୍ତି ତାହା ବିଚାରକରନ୍ତୁ । ଅତ୍ୟନ୍ତ ଅରୁଚିକର ଭାବେ ଏହି ପରି ପୁରାଣ ମାନଙ୍କୁ ସେମାନେ ସୃଷ୍ଟି କରିଛନ୍ତି ।

**ବ୍ରହ୍ମା**

ଆଉ ଜଣେ ଈଶ୍ୱର ବ୍ରହ୍ମାଙ୍କ କଥା ବିଚାର କରନ୍ତୁ । ପୁରାଣ ଅନୁଯାୟୀ ବ୍ରହ୍ମା ତାଙ୍କର କନ୍ୟା ସରସ୍ୱତୀଙ୍କୁ ବିବାହ କଲେ ।

ବ୍ରହ୍ମା ଜଣେ ଝିଅଙ୍କୁ ସୃଷ୍ଟି କଲେ । ଝିଅଟି ଅତ୍ୟନ୍ତ ସୁନ୍ଦରୀ ଥିଲା । ସେ ଝିଅର ରୂପରେ ଆକୃଷ୍ଟ ହେଲେ । ତାଙ୍କ ଝିଅ ବ୍ରହ୍ମାଙ୍କ ଇଚ୍ଛା ପ୍ରତି ସମ୍ମାନ ଦେଲେ ନାହିଁ । ସେ ଗୋଟିଏ ହରିଣ ହୋଇ ଦୌଡିବାକୁ ଲାଗିଲେ, ବ୍ରହ୍ମା ମଧ୍ୟ ହରିଣ ହୋଇ ତାଙ୍କୁ ଅନୁଧାବନ କଲେ । ଉଭୟ ଦୌଡିକରି ଆସି ଶିବଙ୍କ ପାଖରେ ପହଞ୍ଚିଲେ । ଝିଅଟି ତାଙ୍କ ବାପାଙ୍କ ବ୍ୟବହାରକୁ ନେଇ ଶିବଙ୍କ ପାଖରେ ଅଭିଯୋଗ କଲେ । ଶିବ ବ୍ରହ୍ମାଙ୍କୁ ତିରସ୍କାର କଲେ । ବ୍ରହ୍ମା କହିଲେ ଯେ ଝିଅକୁ ଦେଖି ତାଙ୍କ ଭିତରେ କାମନା ଉଦ୍ରେକ ହେଲା । ପ୍ରେମ କାମନାରେ ପରିଣତ ହେଲେ ତାହାକୁ ନିୟନ୍ତ୍ରଣ କରାଯାଇ ପାରିବ ନାହିଁ । ମା, ଭଉଣୀ ଓ କନ୍ୟା ଭିତରେ ଜଣେ ପାର୍ଥକ୍ୟ କରିବ କି ନାହିଁ ? ଶିବ ବ୍ରହ୍ମାଙ୍କ କନ୍ୟା ପାଖରେ କାମନା ପ୍ରକାଶ କଲେ । ଶିବ ଯେ ନିଜର କନ୍ୟାକୁ ଭଲ ପାଉଥିଲେ, ଏହା ବ୍ରହ୍ମାଙ୍କ ଝିଅ ଜାଣିପାରିଲେ ।

Digitized by srujanika@gmail.com

ବନ୍ଧୁଗଣ, ଏହି ପ୍ରକାରର କାହଣୀ କାହିଁକି ଲେଖାଯାଇଛି? କାହା ପାଇଁ ଲେଖାଯାଇଛି? ଏସବୁ ଗପର କଣ ମହତ୍ତ୍ୱ ରହିଛି? ଯେତେବେଳେ ଲୋକମାନେ ନିରକ୍ଷର ଥିଲେ, ସେତେବେଳେ ଏହିସବୁ କାହାଣୀ ଲେଖା ଯାଉଥିଲା। ସେତେବେଳେ ଲୋକମାନେ କୌଣସି ବିଷୟରେ ଗଭୀର ଭାବରେ ଚିନ୍ତା କରୁନଥିଲେ। ସ୍‌ପ୍ରତି ଲୋକମାନେ ବିଭିନ୍ନ ବିଷୟରେ ଜାଣିବାର ସୁଯୋଗ ପାଉଛନ୍ତି। ବିଭିନ୍ନ ବିଷୟରେ ଚିନ୍ତା କରିବା ଓ ବିଚାର କରିବାର ସାମର୍ଥ୍ୟ ସେମାନଙ୍କର ଅଛି।

ପୁରାଣମାନଙ୍କର କାହାଣୀମାନ ଯେ ଅସତ୍ୟ ଏହା ଆପଣମାନେ ନିଶ୍ଚିତ ଅନୁଭବ କରୁଥିବେ। ଏସବୁ କାହାଣୀକୁ ଅଶ୍ଳୀଳ, ଅବାନ୍ତର ଓ ପ୍ରଗତିର ପରିପନ୍ଥୀ ବୋଲି ନିଆଯାଇ ପାରେ ।

ଆତ୍ମମର୍ଯ୍ୟାଦା ଆନ୍ଦୋଳନ ଲୋକମାନଙ୍କ ଭିତରେ ଏକ ବିଚାରଶୀଳ ଦୃଷ୍ଟି ସୃଷ୍ଟି କରିଥାଏ। ହେତୁବାଦର ମର୍ମ ହେଉଛି ସତ୍ୟକୁ ଏହାର ସ୍ୱରୂପରେ ଜାଣିବା। କେତେ ବାବା ଓ କଥାକଥିତ ଆଚାର୍ଯ୍ୟମାନେ ବିକାଶ ଠାରୁ ଲୋକମାନଙ୍କର ଦୃଷ୍ଟିକୁ ଭୁଲ୍‌ଦିଗରେ ପ୍ରଭାବିତ କରିଥାନ୍ତି। ଏହି ଧର୍ମ ଗୁରୁମାନେ ଆଧ୍ୟାତ୍ମିକତା ନାମରେ ଲୋକମାନଙ୍କୁ ବିଭ୍ରାନ୍ତ କରିଥାନ୍ତି। ଲୋକମାନେ ଭ୍ରମରେ ପଡି ସେମାନଙ୍କୁ ବିଶ୍ୱାସ କରନ୍ତି। ସେଥିପାଇଁ ଆମେମାନେ ଏକ ସ୍ୱତନ୍ତ୍ର ସଂଗଠନ କରି ଲୋକମାନଙ୍କୁ ଶିକ୍ଷିତ କରିବାକୁ ପ୍ରୟାସ କରୁଛୁ। ବିଚାରଶୀଳତା ପ୍ରସାର ନହେଲେ ଲୋକମାନଙ୍କ ଭିତରେ ସଚେତନତା ସୃଷ୍ଟି ହେବ ନାହିଁ।

ଥରେ ମୋର ଗୋଟିଏ ସଭାରେ ମୁଁ କୁନ୍ନକୁଡି ଆଡଗଲାର ନାମକ ଜଣେ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଲି। ମୁଁ ପୁରାଣ ଓ ଈଶ୍ୱରଙ୍କ ବିଷୟରେ କିଛି ବକ୍ତବ୍ୟ ରଖିଥିଲି। ଈଶ୍ୱର ଯେ ଏକ କଳ୍ପନା ଓ ମିଥ୍ୟା, ଏହା ପ୍ରକାଶ କରିଥିଲି। ପୁନଶ୍ଚ ମୋର ବକ୍ତବ୍ୟ ଥିଲା ଯେ ନିର୍ବୋଧ ମାନେ ଈଶ୍ୱରମାନଙ୍କୁ ବିଶ୍ୱାସ କରିଥାନ୍ତି। ଯେତେବେଳେ ସେ ଭଦ୍ରଲୋକ ଭାଷଣ ଦେଲେ, ସେ କହିଲେ ଯେ ସେ ଈଶ୍ୱରଙ୍କୁ ବିଶ୍ୱାସ୍ କରନ୍ତି। ମୁଁ ନିରୀଶ୍ୱର ବାଦର ପ୍ରସାର କରୁଥିବାରୁ ସେ ମୋତେ ଆକ୍ଷେପ କଲେ। ତେବେ ଅତୀତରେ ଯେଉଁମାନେ ଈଶ୍ୱର ମାନଙ୍କୁ ସୃଷ୍ଟି କରିଛନ୍ତି ସେମାନଙ୍କୁ

Digitized by srujanika@gmail.com

ସେ ସମାଲୋଚନା କଲେ। ତାଙ୍କର ଯୁକ୍ତି ଦ୍ୱାରା ସେ ମୋର ମତକୁ ·ଖଣ୍ଡନକରି ପାରିଲେ ନାହିଁ। ସେ ଚତୁରତାର ସହ ପ୍ରସଙ୍ଗଟିକୁ ଏଡାଇଗଲେ। ଯେତେବେଳେ ପୁରାଣର କାହାଣୀମାନ ଏପରି ଖରାପ କଥାକୁ ନେଇ ଲେଖା ଯାଇଛି, ସେତେବେଳେ ହେତୁବାଦୀ ମାନଙ୍କୁ କିପରି ପ୍ରତ୍ୟାଖ୍ୟାନ କରାଯାଇ ପାରିବ? ପ୍ରଶ୍ନ ହେଉଛି ଦୁଇହଜାର ବର୍ଷତଳେ ଏପରି ଅବାନ୍ତର କାହାଣୀମାନ କାହିଁକି ଲେଖାଯାଇ ଥିଲା ? ସେତେବେଳେ ଲୋକମାନେ ନିର୍ବୋଧ ଥିଲେ। ଏବେବି ଲୋକମାନେ ମନ୍ଦିର ନିର୍ମାଣ କରି ଈଶ୍ୱରମାନଙ୍କୁ ସୃଷ୍ଟି କରୁଛନ୍ତି। ସେମାନେ ଅନ୍ୟ ମାନଙ୍କୁ ନିର୍ବୋଧ ଭାବି କୁସଂସ୍କାରକୁ ପ୍ରସାର କରୁଛନ୍ତି। ଏହି ପରିପ୍ରେକ୍ଷୀରେ ହେତୁବାଦୀ ଆନ୍ଦୋଳନ ପ୍ରତି ସେମାନେ କାହିଁକି ଅସହିଷ୍ଣୁ ହେଉଛନ୍ତି? ଆମେ ଲୋକମାନଙ୍କୁ ବିଚାରଶୀଳ କଲାବେଳେ ସେମାନେ ଲୋକମାନଙ୍କୁ ଅନ୍ଧ ବିଶ୍ୱାସୀ କରାଉଛନ୍ତି।

ଆଜି ପର୍ଯ୍ୟନ୍ତ ଆମର ସରକାର ପ୍ରତିଷ୍ଠା ହୋଇ ପାରିନାହିଁ, ଅତୀତରେ ଯେଉଁ ରାଜାମାନେ ଶାସନ କରୁଥିଲେ, ସେମାନେ ବ୍ରାହ୍ମଣମାନଙ୍କୁ ପୂର୍ଣ୍ଣ ସମର୍ଥନ ଦେଉଥିଲେ। ବ୍ରାହ୍ମଣମାନଙ୍କ ପାଖରେ ରାଜାମାନେ ନତମସ୍ତକ ହୋଇ ରହିଥିଲେ। ଚେର, ଚୋଳ, ପାଣ୍ଡ୍ୟ ରାଜାମାନେ ବ୍ରାହ୍ମଣମାନଙ୍କୁ ଗଭୀର ସମ୍ମାନ ସହ ସେମାନଙ୍କର ବୋଲକରା ସାଜିଥିଲେ।

ଏହି ଶତାବ୍ଦୀରେ ପରିସ୍ଥିତିରେ ପରିବର୍ତ୍ତନ ଆରମ୍ଭ ହୋଇଛି। ମୁଁ ଯେତେବେଳେ ବାଳକଟିଏ ଥିଲି ସେତେବେଳେ ଜଣେ ବ୍ରାହ୍ମଣଙ୍କର ଦର୍ଶନ ଏକ ପୂଣ୍ୟ କାର୍ଯ୍ୟ ବୋଲି ସ୍ତ୍ରୀଲୋକମାନେ ବିଶ୍ୱାସ କରୁଥିଲେ, ଜଣେ ବ୍ରାହ୍ମଣଙ୍କର ଦର୍ଶନ ଦ୍ୱାରା ସ୍ୱର୍ଗପ୍ରାପ୍ତି ହୋଇପାରିବ ବୋଲି ବିଶ୍ୱାସ ଥିଲା। ସେହି ପରିବେଶ ବିଷୟରେ ଆପଣମାନେ ଏବେ କଳ୍ପନା କରିପାରିବେ ନାହିଁ। ମୁଁ ଆପଣ ମାନଙ୍କୁ ଅତୀତର କଥା କହୁଛି। ବର୍ତ୍ତମାନ ଯଦି ଗାଈର ଗୋବରକୁ ଛୁଇଁବା ପବିତ୍ର ମନେକରାଯାଉଛି, ତେବେ ବ୍ରାହ୍ମଣଙ୍କୁ ସେତେବେଳେ ପବିତ୍ର ମନେ କରିବା ଲୋକଙ୍କ ପାଖରେ ଅତି ସ୍ୱାଭାବିକ ଥିଲା।

Digitized by srujanika@gmail.com

## ନିରୀଶ୍ୱରବାଦ

ବର୍ତ୍ତମାନ ପୃଥିବୀରେ ଆମେ କେତେ ପରିବର୍ତ୍ତନ ଦେଖୁଛେ । ବର୍ତ୍ତମାନ ପୃଥିବୀର ଲୋକସଂଖ୍ୟା ଚାରିଶହରୁ ଚାରିଶହ ପଚାଶ କୋଟି ହେବ ବୋଲି କୁହାଯାଉଛି । ଏହି ଲୋକମାନଙ୍କ ଭିତରୁ ଶହେ ପଚିଶ କୋଟି ଲୋକ ନିରୀଶ୍ୱରବାଦୀ ବୋଲି ଘୋଷଣା କରିଛନ୍ତି । ଶହେ କୋଟି ଗର୍ବର ସହ ହେତୁବାଦୀ ବୋଲି ପରିଚୟ ଦେଇଥାନ୍ତି । କେବଳ ରୁଷରେ ପଇଁତିରିଶ କୋଟି ନିରୀଶ୍ୱରବାଦୀ ଅଛନ୍ତି । ସେମାନେ ଚର୍ଚ୍ଚକୁ ନଷ୍ଟ କରିଛନ୍ତି । ସେମାନେ ବାଇବେଲକୁ ପ୍ରତ୍ୟାଖ୍ୟାନ କରିଛନ୍ତି । କେତେକ ପୂଜକମାନଙ୍କୁ ହତ୍ୟା କରାଯାଇଛି । ପରିଣାମ କଣ ହୋଇଛି? ଆପଣମାନେ ଏହାଜାଣିବା ଆବଶ୍ୟକ । ଚାଇନାରେ ୮୫ କୋଟି ଲୋକଙ୍କ ମଧ୍ୟରୁ ୭୫ କୋଟି ଲୋକ ହେଉଛନ୍ତି ବୌଦ୍ଧ ଧର୍ମାବଲମ୍ବୀ । ବର୍ମାରେ ୨କୋଟି ବୌଦ୍ଧ ଧର୍ମାବଲମ୍ବୀ ଅଛନ୍ତି । ଶ୍ରୀଲଙ୍କାରେ ଦୁଇତୃତୀୟାଂଶ ଲୋକ ହେଉଛନ୍ତି ବୌଦ୍ଧଧର୍ମାବଲମ୍ବୀ । ସିଆମରେ ତିନି ଚତୁର୍ଥାଂଶ ଲୋକ ବୌଦ୍ଧଧର୍ମ ଗ୍ରହଣ କରିଛନ୍ତି । ଏହି ସବୁ ଲୋକମାନେ ଈଶ୍ୱରଙ୍କର ଅସ୍ତିତ୍ୱକୁ ଅସ୍ୱୀକାର କରିଥାନ୍ତି । ସେମାନେ ହେଉଛନ୍ତି ନିରୀଶ୍ୱରବାଦୀ ।

ୟୁରୋପରେ ଅନେକ ଗୁଡିଏ ହେତୁବାଦୀ ସଂଗଠନ ରହିଛି । ଜର୍ମାନି, ସ୍ପେନ, ଗ୍ରୀସରେ ନିରୀଶ୍ୱରବାଦୀ ସଂଗଠନ ସଭ୍ୟତାର ମାପକାଠି ହୋଇଛି । ଗବେଷଣା କେନ୍ଦ୍ର, ସତ୍ୟାନୁସନ୍ଧାନୀ ସମାଜ, ବିଚାରଶୀଳ ସଂଗଠନ, ନିରୀଶ୍ୱରବାଦୀ ସଂଗଠନ ଗଢି ଉଠିଛି । ପ୍ରତ୍ୟେକ ଜାଗାରେ ଏହି ସବୁ ସଂଗଠନ ମାନଙ୍କରେ ହଜାର ହଜାର ଲୋକ ସଭ୍ୟ ହୋଇଛନ୍ତି । ମୁଁ ଏସମସ୍ତ ସ୍ଥାନମାନଙ୍କୁ ଯାଇଛି । ପ୍ୟାରିସ୍‌ରେ ନିରୀଶ୍ୱରବାଦୀ ସଂସ୍ଥାରେ ଆତିଥ୍ୟ ଗ୍ରହଣ କରିଛି । ସେମାନେ ଗୋଟିଏ ପତ୍ରିକା ପ୍ରକାଶ କରନ୍ତି । ଆପଣମାନେ ଦେଖିବେ ଗୋଟିଏ କ୍ରସକୁ ଏକ ଖଡ୍‌ଗଦ୍ୱାରା ଛେଦନ ହୋଇଥିବା ଚିତ୍ର ଅଛି । କ୍ରସ ହେଉଛି ଏକ କାଳ୍ପନିକ ଖେଳନାର ପ୍ରତୀକ । ଈଶ୍ୱରଙ୍କୁ ପ୍ରତୀକଟିରେ ହତ୍ୟା କରାଯାଇଛି । ଧର୍ମନାମରେ ବକ୍ତବ୍ୟକୁ ଇସଲାମରେ ସୀମିତ କରାଯାଇଛି । ସେମାନେ ସାମାଜିକ ସଂହତିକୁ ଅଧିକ ପ୍ରାଧାନ୍ୟ ଦେଇଥାନ୍ତି ।

Digitized by srujanika@gmail.com

## ପର୍ବପର୍ବାଣୀ

ଆମର ଅନେକ ମନ୍ଦିର ରହିଛି । ଏକ ମାଇଲ୍ ଭିତରେ ପାଞ୍ଚ ଛଅ ଟି ମନ୍ଦିର ଦେଖିବାକୁ ମିଳେ । ପ୍ରତ୍ୟେକ ଗାଆଁରେ ବି ମନ୍ଦିର ରହିଛି । ଗୋଟିଏ ଗୋଟିଏ ମନ୍ଦିରରେ କୋଡିଏ ତିରିଶ ଏପରିକି ଶହେଟି ଦେବାଦେବୀ ମୂର୍ତ୍ତି ଥିବା ଆପଣମାନେ ଦେଖିବେ । ସବୁ ଦେବଦେବୀ ବା ଈଶ୍ୱରଙ୍କୁ ପ୍ରତ୍ୟେକ ଦିନ ବହୁ ବାର ପୂଜା କରାଯାଏ ।

ଏହାଛଡା ପ୍ରତ୍ୟେକ ବର୍ଷ ଅନେକ ପର୍ବ ପର୍ବାଣୀ ପାଳିତ ହୁଏ । ମନ୍ଦିରରେ ପର୍ବପର୍ବାଣୀ ସମୟରେ ଯୁବକମାନେ ଝିଅମାନଙ୍କୁ ଦେଖିବା ପାଇଁ ଉତ୍କଣ୍ଠା ପ୍ରକାଶ କରିଥାନ୍ତି । ପୁଅଝିଅମାନେ ସୁନ୍ଦର ପୋଷାକ ପିନ୍ଧି ପରସ୍ପରର ଦୃଷ୍ଟି ଆକର୍ଷଣ କରିବାକୁ ମନ୍ଦିର ଆସନ୍ତି । ପର୍ବ ସମୟରେ ପୁଅଝିଅମାନେ ପରସ୍ପର ସହ ସାକ୍ଷାତ କରିବାକୁ ଅଧିକ ଶ୍ରଦ୍ଧା ଦେଖାଇଥାନ୍ତି । କିଛି ବର୍ଷ ତଳେ ଅଧିକ ଲୋକଙ୍କୁ ଆକୃଷ୍ଟ କରିବାକୁ ବାରଙ୍ଗନାମାନଙ୍କୁ ମନ୍ଦିର ତରଫରୁ ନିମନ୍ତ୍ରଣ କରାଯାଉଥିଲା । କୌଣସି ମନ୍ଦିରର ଏକ ବିଶିଷ୍ଟ ପର୍ବବେଳେ ଏପରିକି ଶହେ ଜଣ ବାରଙ୍ଗନା ଆମନ୍ତ୍ରିତ ହୋଇ ଆସୁଥିଲେ । ପ୍ରତ୍ୟେକ ବାରଙ୍ଗନା ନିଜ ଅଞ୍ଚଳର ମନ୍ଦିରରେ ପାଳିତ ପର୍ବକୁ ନିଶ୍ଚୟ ଯାଉଥିଲେ । ଏହାହିଁ ସେତେବେଳର ପର-ରା ଥିଲା । କାଳକ୍ରମେ ଏହି ପର-ରା ଆସ୍ତେ ଆସ୍ତେ କମି ଆସିଲାଣି । ସ-ତି ବାହାରକୁ ଯିବାପାଇଁ ମହିଳାମାନଙ୍କୁ ଆମେ ଅନୁମତି ଦେଇ ନଥାଉ । ତେବେ ମନ୍ଦିରକୁ ଯାଇ ପର୍ବରେ ଯୋଗ ଦେବାର ସ୍ୱାଧୀନତା ସେମାନେ ଉପଭୋଗ କରନ୍ତି । ମହିଳାମାନେ ମନ୍ଦିରକୁ ଗଲେ ପୁରୁଷମାନେ ପ୍ରାୟତଃ ନିରବ ରହିଥାନ୍ତି । ମହିଳାମାନେ ମନ୍ଦିରକୁ ଯିବା ଅବସରରେ ଅନ୍ୟମାନଙ୍କୁ ସାକ୍ଷାତ କରିବାର ଅବକାଶ ପାଆନ୍ତି । ମନ୍ଦିରରେ ପାଳିତ ହେଉଥିବା ପର୍ବପର୍ବାଣୀ ସମୟରେ ଅବିବାହିତ ପୁଅଝିଅମାନେ ପରସ୍ପରକୁ ସାକ୍ଷାତ କରିବାର ସୁଯୋଗ ପାଆନ୍ତି । ଅଧିକ ଲୋକଙ୍କୁ ଆକୃଷ୍ଟ କରିବା ପାଇଁ ମନ୍ଦିର କର୍ତ୍ତୃପକ୍ଷ ଉଦ୍ୟମ କରିଥାନ୍ତି । ବହୁ ସମୟରେ ଦିଅଁ ଦେବତାଙ୍କ ପ୍ରଚାର ପାଇଁ ଉଦ୍ୟମ ହୋଇଥାଏ । ଅନେକ ସାଜସଜ୍ଜା, ପ୍ରଚାର ପର୍ବପର୍ବାଣୀରେ କରାଯାଏ ।

Digitized by srujanika@gmail.com

ଏତେ ଯାଜଯଜ୍ଞ ଓ ପ୍ରଚାର କେଉଁ ଉଦ୍ଦେଶ୍ୟରେ ହୁଏ ? ଏତେ ପର୍ବପର୍ବାଣୀ କାହିଁକି ପାଳିତ ହୁଏ ?

ଏତେ ଦେଉଳ ମନ୍ଦିର, ଦିଅଁ ଦେବତା, ପର୍ବପର୍ବାଣୀର କିଛି ଉପଯୋଗିତା ଅଛିକି ? ଏକ ସୁନ୍ଦର ପରିବେଶ ପାଇଁ ସେ ସବୁ ଆବଶ୍ୟକ କି ? ଏସବୁ କାହିଁକି କରାଯାଉଛି ? ଏସବୁ ପ୍ରଚାରର କଣ ଉଦ୍ଦେଶ୍ୟ ଅଛି ? ଆମେ ଲୋକମାନଙ୍କୁ ଏହି ପ୍ରଶ୍ନ ପଚାରୁଛୁ। ଆମେ ଲୋକମାନଙ୍କୁ ବିଚାରଶୀଳ ଓ ସଚେତନ କରିବା ଆବଶ୍ୟକ। ଲୋକମାନେ ଏହି ଦୁର୍ଗତିରୁ ମୁକ୍ତ ନହେଲେ ସେମାନଙ୍କର ବିକାଶ ସମ୍ଭବ ନୁହେଁ। ଆମେ ଲୋକମାନଙ୍କୁ ସଚେତନ କରାଉଥିବା ଯୋଗୁ କେତେକ ବ୍ୟକ୍ତି ଆମ ଉପରେ ଗଭୀର ଅସନ୍ତୋଷ ପ୍ରକାଶ କରନ୍ତି। ଆମର ଉଦ୍ଦେଶ୍ୟ ହେଉଛି ଲୋକମାନଙ୍କୁ ସଚେତନ କରାଇ ତାଙ୍କ ଭିତରେ ଆତ୍ମ ମର୍ଯ୍ୟାଦାର ଭାବ ଜାଗ୍ରତ କରାଇବା। ଦିଅଁ, ଦେବତା, ଦେଉଳ, ମନ୍ଦିର, ଧର୍ମ ଇତ୍ୟାଦି ପ୍ରାଚୀନ ପର-ଗାରୁ ମୁକ୍ତ ନହେଲେ ଲୋକମାନଙ୍କର ସାମାଜିକ ସ୍ଥିତିରେ ପରିବର୍ତ୍ତନ ଆସିବ ନାହିଁ। ପୃଥିବୀରେ ହେଉଥିବା ପରିବର୍ତ୍ତନକୁ ଲକ୍ଷ୍ୟ କରନ୍ତୁ। ଦୁନିଆଁ କିପରି ବଦଳିଚାଲିଛି, ତାକୁ ଦେଖନ୍ତୁ। ପ୍ରଗତିର ସିଡିରେ ଆମେ କାହିଁକି ତଳେ ରହିଛେ? ଶିକ୍ଷା ଦୃଷ୍ଟିରୁ ଆମେ ଅତ୍ୟନ୍ତ ପଛୁଆ। ଦୁଇ ହଜାର ବର୍ଷତଳେ ହଜାରେ ଲୋକରେ ଜଣେ ମାତ୍ର କିଛି ଶିକ୍ଷା କରୁଥିଲେ। ସେହିବ୍ୟକ୍ତି ଥିଲେ ବ୍ରାହ୍ମଣ। ସେ ବି ପ୍ରକୃତ ଶିକ୍ଷା ପାଉ ନଥିଲେ। ସେ କେବଳ ଯାହା ଶୁଣୁଥିଲେ, ତାକୁ ସ୍ମୃତି ଭିତରେ ରଖୁଥିଲେ। ସେତେବେଳର ପରିବେଶ ଭିତରେ ଲେଖାପଡା ପ୍ରାୟତଃ ନଥିଲା।

ଆପଣ ସଂସ୍କୃତ ବିଷୟରେ କ'ଣ ଭାବୁଛନ୍ତି? ସେମାନେ ସଂସ୍କୃତ ଭାଷାକୁ ନେଇ ଗର୍ବ କରିଥାନ୍ତି। ଏହି ଭାଷାର କୌଣସି ଲିପି ରହିଛି କି ? ସେମାନେ ବେଦର ଏତେ ପ୍ରଶଂସା କରିଥାନ୍ତି। ବେଦର କୌଣସି ଲିପି ଥିଲା କି? କେତେକ ଶବ୍ଦକୁ ଲୋକମାନେ ଶୁଣି ସେସବୁ ବିଷୟରେ ସ-ତି ଲିପିଦ୍ୱାରା ଲେଖାଯାଇ ତାହାର ଉନ୍ନତି ହୋଇଛି।

**ଜନସଂଖ୍ୟା :-**

ଖ୍ରୀଷ୍ଟାବ୍ଦ ଆରମ୍ଭ ବେଳକୁ ପୃଥିବୀର ଜନସଂଖ୍ୟା ମାତ୍ର କୋଡିଏ କୋଟି ଥିଲା। ୧୪୬୦ ମସିହା ବେଳକୁ ପଥିବୀର ଲୋକ ସଂଖ୍ୟା ୪୭ କୋଟି ହେଲା।

Digitized by srujanika@gmail.com

ଅର୍ଥାତ୍ ପୃଥିବୀର ଲୋକ ସଂଖ୍ୟା ୧୫୦୦ ବର୍ଷ ପରେ ଦୁଇ ଗୁଣ ହେଲା । ୧୮୦୦ ମସିହା ବେଳକୁ ଲୋକସଂଖ୍ୟା ୭୪ କୋଟି ରେ ପହଞ୍ଚିଲା । ଚିକିତ୍ସା ବିଜ୍ଞାନର ବିକାଶ ଯୋଗୁଁ ଲୋକ ସଂଖ୍ୟା ବୃଦ୍ଧି ପାଇ ଚାଲିଲା । ୧୯୧୪ ମସିହା ବେଳକୁ ପୃଥିବୀର ଜନସଂଖ୍ୟା ୧୬୫ କୋଟି ହେବା ଜଣାଯାଏ । ଏହାପରେ ଜନସଂଖ୍ୟା ର ଦ୍ରୁତ ବୃଦ୍ଧି ସମ୍ଭବ ହୋଇଛି । ପ୍ରତି ପନ୍ଦର ବର୍ଷରେ ଲୋକସଂଖ୍ୟା ଦୁଇ ଗୁଣ ହୋଇ ଯାଉଛି । ୧୯୫୫ ମସିହାରେ ଲୋକସଂଖ୍ୟା ୩୬୦ କୋଟି ହେଲା । ୧୯୬୪ ରେ ଲୋକ ସଂଖ୍ୟା ୩୮୦ କୋଟି ଓ ୧୯୭୦ ମସିହାରେ ଏହା ୪୦୦ କୋଟି ହେବ ବୋଲି ଜନଗଣନାରୁ ଜଣାଯାଏ । ବିଜ୍ଞାନ ଓ ଚିକିତ୍ସା ଜ୍ଞାନର ଅଭିବୃଦ୍ଧି ଯୋଗୁଁ ଏହି ଶହେ ବର୍ଷ ଭିତରେ ଲୋକ ସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଇଛି । ତାମିଲ ନାଡୁରେ ଲୋକସଂଖ୍ୟା ୪ କୋଟିରୁ ୫ କୋଟିକୁ ବଢିଛି । ମୃତ୍ୟୁହାର ସଂଖ୍ୟା ବହୁତ କମିଯିବାରୁ ଜନସଂଖ୍ୟା ନିରାପଦ ଭାବରେ ବଢି ବଢି ଚାଲିଛି ।

ସମ୍ପ୍ରତି ଆମ ଦେଶରେ ଲୋକମାନଙ୍କର ହାରାହାରି ଆୟୁ ୪୫ ବର୍ଷ । ପାଶ୍ଚାତ୍ୟ ଦେଶରେ ଏହା ସତୁରି ବର୍ଷ । ଆଗାମୀ ତିରିଶ ବର୍ଷ ଭିତରେ ଆମର ହାରାହାରି ଆୟୁ ୭୫ ବର୍ଷ ହେବ ବୋଲି ଅନୁମାନ କରା ଯାଉଛି । ସେତେବେଳେ ଜଣେ ୟୁରୋପୀୟର ୧୦୦ ବର୍ଷ ହେବ ବୋଲି ଜଣାଯାଉଛି । ଏହି ହାରାହାରି ଆୟୁକୁ କେତେକ ଅନୁସନ୍ଧିତ୍ସାଦ୍ୱାରା ନିରୂପଣ କରାଯାଇଛି । ଆୟୁ ଏପରି କାହିଁକି ବୃଦ୍ଧି ପାଉଛି, ତାହାର କାରଣ ଅନେକ ଲୋକ ପ୍ରାୟ ଜାଣନ୍ତି ନାହିଁ ।

ଅତୀତରେ ଥରେ ଯଦି ଗାଆଁରେ ହଇଜା ଆରମ୍ଭ ହୁଏ, ତେବେ ଅନେକ ଲୋକ ମୃତ୍ୟୁ ବରଣ କରୁଥିଲେ । ନିକଟରେ ଏକ ସମ୍ବାଦ ଅନୁଯାୟୀ ଏକ ବଡ ସହରରେ ମାତ୍ର ଆଠ ଜଣ ବ୍ୟକ୍ତି ହଇଜାରେ ମୃତ୍ୟୁ ବରଣ କଲେ । ଏଥିପାଇଁ ସ୍ୱାସ୍ଥ୍ୟ ବିଭାଗକୁ ନାନା ସମାଲୋଚନା କରାଗଲା । ସେମାନେ ଠିକ୍ ସମୟରେ କାହିଁକି ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କଲେ ନାହିଁ ବୋଲି ନାନା ପ୍ରଶ୍ନ ଉଠିଲା । ଆଧୁନିକ ବିଜ୍ଞାନର ବିକାଶ ଯୋଗୁଁ ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ବିଭିନ୍ନ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରାଯାଇ ପାରୁଛି । ଲୋକଙ୍କୁ ସ୍ୱାସ୍ଥ୍ୟ ସେବା ଯୋଗାଇବା ସହ ରୋଗ ବିଷୟରେ ସଚେତନ କରାଯାଇଛି । ଏହା ଅତୀତରେ ସମ୍ଭବ ନଥିଲା ।

Digitized by srujanika@gmail.com

ମୋ ଅଞ୍ଚଳରେ ଗୋଟିଏ ଗ୍ରାମର ଘଟଣା ମୋର ପୂରା ମନେ ଅଛି । ଥାଥାମୂର୍ତ୍ତି ମୋର ଅଜାଘର ଗାଆଁ । ସେଠାରେ ହଇଜା ଆରମ୍ଭ ହୋଇ ୫୦ ଟି ପରିବାରର ସବୁଲୋକ ମୃତ୍ୟୁ ମୁଖରେ ପଡିଲେ । ସେହି ଗାଆଁରେ ଏବେ ମାତ୍ର ତିନି ଚାରୋଟି ଘର ରହିଛି ।

ଅତୀତରେ ଯଦି ହଇଜା ଆରମ୍ଭ ହେଉଥିଲା, ତେବେ ଗୋଟିଏ ବର୍ଷରେ ୨୦୦୦ ରୁ ୩୦୦୦ ଲୋକ ମୃତ୍ୟୁ ବରଣ କରୁଥିଲେ । ମୁଁ ଯେତେବେଳେ ଏରୋଡରେ ଚେୟାରମ୍ୟାନ୍ ଥିଲି, ଗୋଟିଏ ବର୍ଷ ଚାରିଶହ ଲୋକ ହଇଜାରେ ମୃତ୍ୟୁବରଣ କରିଥିଲେ । ଏବେ ହଇଜାରେ କାଁ ଭାଁ ଲୋକ ମରୁଛନ୍ତି । ଏହି ପରିବର୍ତ୍ତନ କିପରି ହେଲା ? ସ୍ୱାସ୍ଥ୍ୟ ବିଭାଗ ଅନେକ ପ୍ରତିଷେଧକ ବ୍ୟବସ୍ଥା ନେଉଛନ୍ତି । କେନାଲ ଖୋଳାଯାଇ ବିଶୁଦ୍ଧ ଜଳ ଲୋକମାନଙ୍କୁ ଯୋଗାଇ ଦିଆଯାଉଛି । କେତେକ ରାସାୟନିକ ଜିନିଷ ଜଳରେ ମିଶାଇ ଏହାକୁ ଶୁଦ୍ଧ ଓ ଜୀବାଣୁ ମୁକ୍ତ କରାଯାଉଛି । ପ୍ରତିଷେଧକ ବ୍ୟବସ୍ଥା ସ୍ୱରୂପ ଲୋକମାନଙ୍କୁ ଇଂଜେକସନ ଦିଆଯାଉଛି । ଫଳରେ ହଇଜା ବ୍ୟାପୁନାହିଁ । କିମ୍ବା କୌଣସି ବ୍ୟକ୍ତି ହଇଜାରେ ମୃତ୍ୟୁ ବରଣ କରୁନାହିଁ । ଅତୀତରେ ଯଦି କାହାକୁ ଯକ୍ଷ୍ମା ହେଉଥିଲା, ତେବେ ସେ ଅଳ୍ପଦିନ ମଧ୍ୟରେ ମୃତ୍ୟୁ ବରଣ କରୁଥିଲା । ଏବେ ତାହା ହେଉନାହିଁ । ଅନେକ ଯକ୍ଷ୍ମା ରୋଗୀ ଚିକିତ୍ସା ଦ୍ୱାରା ସୁସ୍ଥ ହେଉଛନ୍ତି । ମୋ ପିଲାବେଳେ ଅନେକ ରୋଗର କୌଣସି ଚିକିତ୍ସା ଉପଲବ୍ଧ ନଥିଲା । ସ୍ପ୍ରତି ହସ୍‌ପିଟାଲ ମାନଙ୍କରେ ଅନେକ ରୋଗର ଚିକିତ୍ସା ଓ ଆରୋଗ୍ୟ ସମ୍ଭବ ହୋଇଛି ।

ବନ୍ଧୁଗଣ, ବିଜ୍ଞାନ ଓ ଚିକିତ୍ସା କ୍ଷେତ୍ରରେ ଅନେକ ନୂଆ ନୂଆ ଔଷଧର ଉଦ୍ଭାବନ ବିଷୟରେ ଆପଣମାନେ ବେଳେବେଳେ ପଢୁଥିବେ । ସ୍ପ୍ରତି ଲୋକଙ୍କର ବୃକକ୍, ହୃଦ୍‌ଯନ୍ତ୍ରରେ କିଛି ଅସୁବିଧା ଦେଖାଗଲେ ସେ କ୍ଷେତ୍ରରେ ଅସ୍ତ୍ରୋପଚାର କରାଯାଇ ପାରୁଛି । ଏହା କୌଣସି କାଳ୍ପନିକ କାହାଣୀ ନୁହେଁ । ଅସ୍ତ୍ରୋପଚାର କ୍ଷେତ୍ରରେ ଆହୁରି ଅନେକ ଚମକ ପ୍ରଦ ସଫଳତା ହୁଏତ ଆଗକୁ ମିଳିବ । ୨୦୦୦ ମସିହା ବେଳକୁ ଲୋକମାନଙ୍କର ସାଧାରଣ ଆୟୁ ହୁଏତ ଆହୁରି ଅଧିକ ବଢିଥିବ । ଭବିଷ୍ୟତରେ ଲୋକମାନେ ହୁଏତ ଚିକିତ୍ସା ବିଜ୍ଞାନ ଯୋଗୁଁ ୧୫୦ ବର୍ଷ ବଞ୍ଚିବାକୁ

Digitized by srujanika@gmail.com

ସମର୍ଥ ହୋଇ ପାରନ୍ତି । ହେତୁବାଦ ଓ ବୈଜ୍ଞାନିକ ଗବେଷଣା ମଣିଷକୁ ଭବିଷ୍ୟତରେ ବହୁ ସଫଳତା ଆଣିଦେବ ।

ମୋର ବୟସ ବର୍ତ୍ତମାନ ୯୨ ବର୍ଷ ହେଲାଣି, କେତେକ ବ୍ୟକ୍ତି ବିଶ୍ରାମ କରିବାକୁ ମୋତେ ପରାମର୍ଶ ଦେଉଛନ୍ତି । ମୁଁ ଏଥିରେ ଅସନ୍ତୋଷ ପ୍ରକାଶ କରେ । ମୋର ବିଶ୍ରାମ କାହିଁକି ଆବଶ୍ୟକ? ଧନୀ ଲୋକ ବା ଯେଉଁମାନେ ନିଜକୁ ବଡଲୋକ ବୋଲି ଭାବନ୍ତି, ସେମାନେ ବିଶ୍ରାମ ନିଅନ୍ତୁ । ମୋର ବିଶ୍ରାମ କାହିଁକି ଆବଶ୍ୟକ ? ମୋର ଧାରଣା କର୍ମ ବିମୁଖତା ଏକ ରୋଗ । ଆପଣମାନେ ଜାଣନ୍ତି ମୋର ସେପରି କିଛି ସ-ତ୍ତି କିମ୍ବା ସାଧନ ନାହିଁ । ମୁଁ ଯେଉଁଠିକି ଯାଏ, ଯାହାଟିକେ ମିଳିଲା ତାକୁ ଖାଇଥାଏ । ଅନେକ ରାତ୍ରି ମୁଁ ଆକାଶ ତଳେ କଟାଇଛି । କେତେ ବର୍ଷାରେ ତିନ୍ତିଛି । ତଥାପି ଆଜି ମୁଁ ୯୨ ବର୍ଷରେ କାର୍ଯ୍ୟକ୍ଷମ ଅଛି । ଯଦି ଆପଣମାନେ ପୁରାକାଳର କୁସଂସ୍କାର ବିଷୟରେ ଭାବିବେ, ତେବେ ମୁଁ ତ ବହୁ ପୂର୍ବରୁ ମରିସାରିଥାନ୍ତି । ମୁଁ କୌଣସି ଦିଅଁ ଦେବତାଙ୍କୁ ବିଶ୍ୱାସ କରେନାହିଁ । ଜୋତାମାଡି ସେଠାକୁ ଯାଏ । ମୋପରି ଜଣେ ବ୍ୟକ୍ତି କିପରି ଏପରି ଦୀର୍ଘ ଜୀବନ ବଞ୍ଚିଛି ! ଏହି ବୟସରେ ମୋର ଦୃଷ୍ଟି ଶକ୍ତି ହୁଏତ ନଷ୍ଟ ହୋଇସାରନ୍ତାଣି । କେତେକ ରୋଗ ମୋତେ ମାଡି ବସନ୍ତାଣି । କିନ୍ତୁ ଆପଣମାନେ ମୋତେ କଣ ଦେଖୁଛନ୍ତି ? ମୁଁ ଏବେବି ସୁସ୍ଥ ଓ କାର୍ଯ୍ୟକ୍ଷମ ରହିଛି । ବିଭିନ୍ନ ପ୍ରକାରର ରୋଗ ପାଇଁ ଏବେତ ଚିକିତ୍ସା ବାହାରିଛି ।

କିଛି ଦିନ ତଳେ ମୋର ପରିଶ୍ରା ନେଇ କେତେକ ସମସ୍ୟା ହେଲା । ଡାକ୍ତରମାନେ ଅସ୍ତ୍ରୋପଚାର ଦ୍ୱାରା ଏହାର ଆରୋଗ୍ୟ କଲେ । ମୁଁ ସେ ବିଷୟରେ କିଛି ଧାରଣା ରଖି ନଥିଲି । ମୋର ଅସ୍ତ୍ରୋପଚାର କରାଯିବାରେ ମୁଁ ସମ୍ମତ କି ବୋଲି ମୋତେ ଡାକ୍ତର ପଚାରିଲେ । ସେମାନଙ୍କ ଜ୍ଞାନରେ ଯାହା ମୋ ପାଇଁ ଆବଶ୍ୟକ, ତାହା ସେମାନେ କରି ପାରନ୍ତି ବୋଲି ମୁଁ ଡାକ୍ତରମାନଙ୍କୁ କହିଲି । ମୁଁ ଡାକ୍ତରଖାନା ବେଡରେ ଶୋଇଥିଲି । ସେହି ଅବସ୍ଥାରେ ସେମାନେ ମୋତେ ଅପରେସନ ଗୃହକୁ ନେଲେ । ସେମାନେ ଅଢେଇ ଘଣ୍ଟା ଲାଗି ମୋର ଅସ୍ତ୍ରୋପଚାର କରି ମୋ ବେଡକୁ ମୋତେ ଆଣିଲେ । ପ୍ରାୟ ଦୁଇ ଘଣ୍ଟା ପରେ ମୋର ଚେତା

Digitized by srujanika@gmail.com

ଆସିଲା । ମୋର ଯେ ଏହା ଭିତରେ ଅପରେସନ ହୋଇ ସାରିଛି ମୁଁ ଜାଣିପାରିଲି ନାହିଁ । ମୁଁ ଏହା ପାଚାରିବାରୁ ମୋର ସବୁ କାର୍ଯ୍ୟ ସରିଯାଇଛି ବୋଲି ମୋତେ କହିଲେ । ତାପରଦିନ ହିଁ ମୁଁ ସବୁ କଥା ଜାଣିବାକୁ ପାଇଲି । ଏସବୁ କଥା କିପରି ଘଟିଲା ? ଡାକ୍ତର କେତେକ ଔଷଧର ଇଂଜେକ୍ସନ ମୋତେ ଦେଲେ । ମୁଁ ଅଚେତ ହୋଇଗଲି । ସେହି ଅବସ୍ଥାରେ ମୋର ଅସ୍ତ୍ରୋପଚାର କରାଗଲା । ନିଶ୍ଚେତକ ପରି ଅନେକ ଔଷଧ ଏବେ ଚିକିତ୍ସା କ୍ଷେତ୍ରରେ ଉପଲବ୍ଧ ହୋଇପାରୁଛି । କିନ୍ତୁ ଆମର ମାନସିକତା କେଉଁଠି ଅଛି? ଏବେ ବି ଆମେ ନିର୍ମିତ ହୋଇଥିବା ପଥର ମୂର୍ତ୍ତିକୁ ପୂଜା କରୁଛେ । ପଥର ମୂର୍ତ୍ତି ମାନଙ୍କୁ ନେଇ ବିବାହ କରାଉଛୁ । ପଥର ମୂର୍ତ୍ତିକୁ ଆମେ ପରଂପରା ନାମରେ ବାରଙ୍ଗନା ଘରକୁ ନେଉଛେ । ରଥରେ ବସାଇ କେତେ ପ୍ରକାରର ପର୍ବ ପାଳନ କରୁଛେ । ଏହି ସବୁ କାର୍ଯ୍ୟ କରି ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ଆମେ କଣ ହାସଲ କରୁଛେ ?

ଏଥିପାଇଁ ଆମେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟ କରୁଛେ । ଯେଉଁ ରଥ ନିର୍ମାଣ କରୁଛେ ତାହାର ଓଜନ ୧୫୦ ଟନ ହେବ । ପାଞ୍ଚ ହଜାର ଲୋକ ସେହି ରଥକୁ ଟାଣିବାକୁ ଦରକାର । ପ୍ରତ୍ୟକଙ୍କୁ ଏଥିପାଇଁ ଦୁଇ ଟଙ୍କା ପାରିଶ୍ରମିକ ଦିଆଯାଉଛି । ୧୯୭୧ ମସିହାରେ ସରକାର ସେସବୁକୁ ସମର୍ଥନ କରୁଛନ୍ତି । ଆମର ନିର୍ବୋଧତାକୁ ଦେଖନ୍ତୁ । ଆମ ପାଇଁ ମୁକ୍ତିର ଅର୍ଥ କ'ଣ ?

ବନ୍ଧୁଗଣ, ଆମେମାନେ ସଭ୍ୟ ହେବା ଆବଶ୍ୟକ । ଅନ୍ଧ ପରଂପରା, ଈଶ୍ୱର, ଧର୍ମ, ଶାସ୍ତ୍ର ଇତ୍ୟାଦିରୁ ଆମେ ମୁକ୍ତ ହେବା ଦରକାର । ଆମର ପୁରାଣ ମାନଙ୍କୁ ଆମେ ପ୍ରତ୍ୟାଖ୍ୟାନ କରି ଡଷ୍ଟ ବିନକୁ ଫିଙ୍ଗିବା ଉଚିତ୍ । ମଣିଷ ଠାରୁ ଯେ ଅଧିକ କେହି ଶକ୍ତିଶାଳୀ ରହିଛି ଏହି ଭାବନା ପରିହାର କରିବା ଆବଶ୍ୟକ । ଈଶ୍ୱର ବୋଲି କେଉଁଠି କିଛି ଶକ୍ତି ହିଁ ନାହିଁ ।

ବନ୍ଧୁଗଣ, ମୁଁ ବହୁତ ସମୟ ନେଲିଣି । ତଥାପି ଅନେକ ବିଷୟରେ ମୁଁ ସୂଚନା ଦେଇନାହିଁ । ଆମ ସମାଜରେ ବ୍ରାହ୍ମଣ ଶୂଦ୍ର ଭିତରେ ଥିବା ଭେଦଭାବ ନେଇ ଯେତେ କାହାଣୀ ରହିଛି, ସେପରି କେଉଁଠି ଆପଣ ଦେଖିବାକୁ ପାଇବେ ନାହିଁ ।

Digitized by srujanika@gmail.com

ଏପରିକି ଏହି ପୁରାଣର କାହାଣୀ ଗୁଡିକ ଶିକ୍ଷିତ ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ ବୋଲି ନିକଟରେ ଶଙ୍କରାଚାର୍ଯ୍ୟ ସ୍ୱୀକାର କରିଛନ୍ତି । ଏହି କାହାଣୀ ଗୁଡିକ ନିରକ୍ଷର ଲୋକଙ୍କ ପାଇଁ। ସେମାନେ କିପରି ଈଶ୍ୱର ବିଶ୍ୱାସୀ ହୋଇ ରହିବେ ସେ ପାଇଁ ସେମାନଙ୍କ ଉଦ୍ଦେଶ୍ୟରେ ଏହି ଗପ ଗୁଡିକ ଲେଖାଯାଇଛି ।

ଯଦି ଆପଣମାନେ ନିରବରେ ଏହି ସବୁ କାହାଣୀକୁ ସ୍ୱୀକାର କରିନିଅନ୍ତି, ଆପଣମାନେ ପ୍ରଗତି କରିପାରିବେ ନାହିଁ। ଆପଣମାନଙ୍କ ଅଜ୍ଞତାର ସୁଯୋଗ ବ୍ରାହ୍ମଣମାନେ ନେବେ। ସେଥିପାଇଁ ଆତ୍ମମର୍ଯ୍ୟାଦା ନେଇ ଆମେ ଲୋକମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିବାକୁ ପ୍ରୟାସ କରୁଛୁ। ନିଜର କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ଦୂର କରିବାକୁ ଆମେ ଲୋକ ମାନଙ୍କୁ ନିବେଦନ କରୁଛୁ। ପୃଥିବୀର ଅନ୍ୟ ଦେଶରେ ଲୋକମାନେ ଯେପରି ସମାଜରେ ସମ୍ମାନର ସହ ବଞ୍ଚୁଛନ୍ତି ସେହିପରି ଆତ୍ମ- ମର୍ଯ୍ୟାଦା ସହ ବଞ୍ଚିବାକୁ ଆମେ ଜନଗଣଙ୍କ ସଚେତନ କରାଉଛୁ।

ଶେଷରେ ମୁଁ ଯାହା ସବୁ କହୁଛି ତାହାକୁ ବିଶ୍ୱାସ କରିଯିବାକୁ ଆପଣମାନଙ୍କୁ କହୁ ନାହିଁ। ଆପଣମାନେ ନିଜର ବୁଦ୍ଧି ପ୍ରୟୋଗ କରନ୍ତୁ। ନିଜ ପାଇଁ ଚିନ୍ତା କରନ୍ତୁ। ମୁଁ ଯାହା କହୁଛି ଯଦି ତାହା ଆପଣମାନଙ୍କ ପାଇଁ ହୃଦବୋଧ ହେଉଛି ତେବେ ସେହି ଅନୁଯାୟୀ ଆପଣମାନଙ୍କର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆଣନ୍ତୁ ଓ ଜୀବନକୁ ନୂତନ ଧାରାରେ ବଞ୍ଚନ୍ତୁ। ଆପଣମାନେ ଯଦି ଆମ ସଂଗଠନରେ ସଂପୃକ୍ତ ହେବାକୁ ଚାହାନ୍ତି, ତେବେ ଦେଉଳ ମନ୍ଦିର ଯିବା ବନ୍ଦ କରନ୍ତୁ। ଜାତିଗତ ଭେଦଭାବ ଓ ଚିହ୍ନକୁ ପ୍ରତ୍ୟାଖ୍ୟାନ କରନ୍ତୁ। କୌଣସି ପୂଜକମାନଙ୍କୁ ଆପଣଙ୍କ ରୋଜଗାରର ଅର୍ଥ ଦାନ କରନ୍ତୁ ନାହିଁ। ପୂଜକଗୋଷ୍ଠୀର ଆଧିପତ୍ୟ ଓ ଶୋଷଣକୁ ସମର୍ଥନ ଦିଅନ୍ତୁ ନାହିଁ। ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖନ୍ତୁ ଓ ଆତ୍ମ ମର୍ଯ୍ୟାଦାର ସହ ବଞ୍ଚନ୍ତୁ ଓ ଏହି ଭାବନାକୁ ସମାଜରେ ପ୍ରସାର କରନ୍ତୁ। ଏତିକି କହି ମୋର ବକ୍ତବ୍ୟକୁ ସମାପ୍ତ କରୁଛି।



Digitized by srujanika@gmail.com

## ପରିଚ୍ଛେଦ - ୮

# ସଂରକ୍ଷଣ ପାଇଁ ସରକାରୀ ନିର୍ଦ୍ଦେଶ କାହିଁକି ?

(ସମସ୍ତ ଦଳଦ୍ୱାରା ଆୟୋଜିତ ସାଧାରଣ ସଭାରେ
୧୩.୦୮.୧୯୯୦ ଦିନ ପ୍ରଦତ୍ତ ଭାଷଣ)

ସଭାପତି ମହୋଦୟ, ଉପସ୍ଥିତ ସୁଧୀବୃନ୍ଦ ଓ ବନ୍ଧୁଗଣ, ଆପଣମାନେ ଜାଣନ୍ତି କେତେକ ଲୋକ କିପରି ଗୁପ୍ତ ଭାବରେ ସଂରକ୍ଷଣ ଜନିତ ସରକାରୀ ନିର୍ଦ୍ଦେଶନାମାକୁ ନଷ୍ଟ କରିବା ପାଇଁ ଚକ୍ରାନ୍ତ କରିଛନ୍ତି । ଏହା ଜାଣିବା ପରେ ଆସନ୍ତା କାଲି ହରତାଳ କରିବା ପାଇଁ ମୁଁ ଏକ ନିବେଦନ କରିଛି । ଛାତ୍ରମାନେ ସ୍କୁଲ କଲେଜରେ ଯୋଗ ନଦେବା ପାଇଁ ମୁଁ ସେମାନଙ୍କୁ ନିବେଦନ କରିଛି । ସମସ୍ତ ବ୍ୟବସାୟ ପ୍ରତିଷ୍ଠାନ ଓ ଦୋକାନ ବଜାର ବନ୍ଦ ରଖିବାକୁ ଅନୁରୋଧ ଜଣାଇଛି । ସମସ୍ତ ଶ୍ରେଣୀର ଲୋକମାନଙ୍କୁ ସରକାରୀ ନିର୍ଦ୍ଦେଶନାମାକୁ ସମର୍ଥନ କରିବାକୁ ଆନ୍ଦୋଳନ ପାଇଁ ନିବେଦନ କରିଛି । ଆମରାଜ୍ୟର ବିଭିନ୍ନ ସ୍ଥାନରେ ଲୋକମାନେ ଶୋଭାଯାତ୍ରାରେ ଯାଇ ଜନମତ ବ୍ୟକ୍ତ କରିବାକୁ ମୁଁ ସବୁଶ୍ରେଣୀର ଲୋକମାନଙ୍କୁ ଅନୁରୋଧ କରିଛି ।

ମୋର ଏହି ନିବେଦନ ପରିପ୍ରେକ୍ଷୀରେ କେତେକ ବ୍ୟକ୍ତି ମୋତେ ସମାଲୋଚନା କରିଛନ୍ତି । ସମ୍ଭବତଃ ସେମାନେ ମୋତେ ଭୁଲ୍ ବୁଝିଛନ୍ତି । ସେମାନଙ୍କର ଅଭିଯୋଗ ହେଉଛି ଏହି ଆନ୍ଦୋଳନ୍ ସେମାନଙ୍କ ପାଇଁ ଅସୁବିଧା ସୃଷ୍ଟି କରିବ । ଏପରିକି କେତେକ୍ ମନ୍ତ୍ରୀ ସେପରି ମତ ବ୍ୟକ୍ତ କରିଛନ୍ତି । କଂଗ୍ରେସ ଲୋକମାନେ ମୋ ପ୍ରତି ରାଜନୈତିକ ଉଦ୍ଦେଶ୍ୟ ଆରୋପ କରିଛନ୍ତି । ଯିଏ ଯାହା ଭାବିଛନ୍ତି, ସେପରି କଥା ଲେଖି ପ୍ରକାଶ କରୁଛନ୍ତି । ସେମାନେ ଯାହା କଲେ ମଧ୍ୟ ମୁଁ ସେଥିରେ ଚିନ୍ତିତ ହେଉନାହିଁ ।

Digitized by srujanika@gmail.com

ମୁଁ ଆପଣଙ୍କୁ ଏହା କହୁଛି ବୋଲି ଆପଣମାନେ ଏହା କରିବା ମୁଁ ଚାହୁଁ ନାହିଁ। କୌଣସି କଥାରେ ଅନ୍ଧ ଭାବେ ପ୍ରଭାବିତ ହୋଇ କିଛି କରିବା ଠିକ୍ ନୁହେଁ। ମୋର ବା ଅନ୍ୟ କାହାର କଥାରେ ଆପଣମାନେ ଢଳିଯିବା ଠିକ୍ ନୁହେଁ। ବରଂ ଯାହା ସତ୍ୟ ଓ ନ୍ୟାୟସମ୍ମତ ତାହାକୁ ବିଚାରଶୀଳ ଭାବେ କରିବାକୁ ମୁଁ ଆପଣମାନଙ୍କୁ ନିବେଦନ କରୁଛି। ଯେକୌଣସି ବିଷୟରେ ଭଲ-ମନ୍ଦ, ନ୍ୟାୟ୍-ଅନ୍ୟାୟ୍ ଓ ଠିକ୍-ଭୁଲ ପ୍ରଶ୍ନଟିକୁ ଗମ୍ଭୀରତାର ସହ ଚିନ୍ତାକରି ନିଷ୍ପତ୍ତି ନେବାକୁ ମୁଁ ଆପଣମାନଙ୍କୁ ଅନୁରୋଧ କରୁଛି। ମୋ ବିଚାରରେ ଆପଣମାନେ ଯଦି ନ୍ୟାୟ୍, ସତ୍ୟ ଓ ଯୁକ୍ତିଶୀଳତା ଦେଖୁଛନ୍ତି, ତେବେ ଆପଣମାନେ ତାହାକୁ ଗ୍ରହଣ କରିବାକୁ ମୁଁ ଆପଣଙ୍କୁ ନିବେଦନ କରୁଛ। ଆପଣମାନେ ଯାହା ଯଥାର୍ଥ ମନେ କରୁଛନ୍ତି ତାହା ନିଜର ବିବେକ ଖଟାଇ ପାଳନ କରିବାକୁ କହୁଛି। ଶ୍ରେଣୀଭିତ୍ତିକ ପ୍ରତିନିଧିତ୍ୱ ଆଜିର କଥା ନୁହଁ। ୧୯୧୬ ମସିହାରୁ ଏହା ଏକ ଗମ୍ଭୀର ପ୍ରସଙ୍ଗ ହୋଇ ଆସିଛି। ସେତେବେଳେ ବି ଆମର ନେତାଗଣ, ବୟୋଜ୍ୟେଷ୍ଠ ବ୍ୟକ୍ତିଗଣ ଓ ପ୍ରଜ୍ଞାବାନ ପୂର୍ବସୁରୀମାନେ ଏହି ଶ୍ରେଣୀଭିତ୍ତିକ ପ୍ରତିନିଧିତ୍ୱ ଗ୍ରହଣ କରିବା ପାଇଁ ଦାବିକରି ଆସିଛନ୍ତି। ସବୁଶ୍ରେଣୀର ଲୋକମାନେ କିପରି ନ୍ୟାୟ୍ ପାଇବେ ଓ ବିଶେଷ କରି ଶିକ୍ଷା ଓ କର୍ମ ସଂସ୍ଥାନର ସୁଯୋଗ ଲାଭ କରିବେ, ସେଥିପାଇଁ ସେମାନେ ଉଦ୍ୟମ କରିଛନ୍ତି। ଏହା ଲୋକସଂଖ୍ୟା ଅନୁପାତରେ ଓ ବିଭିନ୍ନ ଗୋଷ୍ଠୀର ପ୍ରତିନିଧିତ୍ୱ ପାଇଁ ରାସ୍ତା ପରିଷ୍କାର କରିବ। ଯେଉଁମାନେ ପ୍ରଥମରେ ଏହି ଦାବି ଉଠାଇଥିଲେ ସେମାନେ କିଛି ଦିନ ପାଇଁ କଂଗ୍ରେସରେ ସଂଯୁକ୍ତ ଥିଲେ। ଅନ୍ୟ ଭାଷାରେ କହିଲେ, ଶ୍ରେଣୀଭିତ୍ତିକ ପ୍ରତିନିଧିତ୍ୱର ଦାୟିତ୍ୱ ବୁଝିବା ପର୍ଯ୍ୟନ୍ତ ସେମାନେ କଂଗ୍ରେସ ସହିତ ଥିଲେ। ସେମାନେ ଯେତେବେଳେ ଅନୁଭବ କଲେ ଯେ ଭାରତୀୟ୍ ଜାତୀୟ୍ କଂଗ୍ରେସ ଦ୍ୱାରା ସବୁ ଶ୍ରେଣୀର ଲୋକମାନେ ନ୍ୟାୟପାଇବେ ନାହିଁ, ସେମାନେ କଂଗ୍ରେସ ପରିତ୍ୟାଗ କଲେ। ଆସ୍ତେ ଆସ୍ତେ ଏହା ସ୍ପଷ୍ଟ ହେଲା ଯେ କଂଗ୍ରେସ ଦଳ କେବଳ ଗୋଟିଏ ନିର୍ଦ୍ଦିଷ୍ଟ ବର୍ଗର ପ୍ରଗତି ଚାହେଁ, କଂଗ୍ରେସ ଦଳ ସବୁଶ୍ରେଣୀର ଉପକାର ଚାହେଁନାହିଁ। ସେମାନେ ଯେତେବେଳେ ଅନୁଭବ କଲେ ଯେ ସବୁ ଶ୍ରେଣୀର ପ୍ରଗତି

Digitized by srujanika@gmail.com

ପାଇଁ କଂଗେସ ଦଳକୁ ସ୍ୱୀକୃତି କରିହେବ ନାହିଁ, ସେତେବେଳେ ସେମାନେ ବାଧ୍ୟ ହୋଇ କଂଗ୍ରେସ ଛାଡିଲେ। ପଛୁଆ ବର୍ଗ ଓ ଅନୁସୂଚିତ ଜାତିର ଲୋକମାନେ ରହିଥିବା ଅନ୍ଧକାରରୁ ମୁକ୍ତ ହୋଇ କିପରି ଶିକ୍ଷା ଓ ବିକାଶ କ୍ଷେତ୍ରରେ ଆଗକୁ ଯିବେ, ଏହା ସେମାନଙ୍କର ବିଚାର ହୋଇ ରହିଲା। ସେମାନେ ସବୁଗୋଷ୍ଠୀର ନ୍ୟାୟ ପାଇଁ ସ୍ୱର ଉଠାଇଲେ। ଲୋକମାନେ ସେମାନଙ୍କର ଅଧିକାର ପାଇଁ ତୀବ୍ର ସ୍ୱର ଉଠାଇଲେ। ଏହିଭଳି ଏକ ସଚେତନତାର ପରିବେଶ ଏଠାରେ ସୃଷ୍ଟି ହେଲା।

ଉତ୍ତର ଭାରତରେ ଏହି ପ୍ରସଙ୍ଗ ୧୯୦୦ ମସିହାରେ ଉଠି ଥିଲା। ଜନସଂଖ୍ୟା ଅନୁଯାୟୀ ସବୁଗୋଷ୍ଠୀର ପ୍ରତିନିଧିତ୍ୱ ପାଇଁ ସେମାନେ ମଧ୍ୟ ଦାବି କରିଥିଲେ। ମୁସଲମାନମାନେ ସାମ୍ପ୍ରଦାୟିକ ପ୍ରତିନିଧିତ୍ୱ ପାଇଁ ପ୍ରଥମେ ସ୍ୱର ଉଠାଇଲେ। ଏହି ଉଦ୍ଦେଶ୍ୟରେ ସେମାନେ ପ୍ରଥମେ ଆନ୍ଦୋଳନ ଆରମ୍ଭ କଲେ। ଇତିହାସର ଏହି ସତ୍ୟଟିକୁ ସମ୍ଭବତଃ ଆମଭିତରୁ ଅଧିକାଂଶ ଜାଣିନାହାଁନ୍ତି। ତେବେ ଆମ ଭିତରେ ବୟସ୍କ ଲୋକମାନେ ଏହା ସ୍ମୃତି ଭିତରକୁ ଆଣିପାରିବେ। ମୋପରି କେତେକ ଲୋକ ଏହାକୁ ସମ୍ପୂର୍ଣ୍ଣ ମନେ ରଖିଛୁ। ମୁସଲିମ୍‌ମାନେ ସାମ୍ପ୍ରଦାୟିକ ପ୍ରତିନିଧିତ୍ୱ ପାଇଁ ପ୍ରଥମେ ଦାବି କରିଥିବାରୁ କଂଗ୍ରେସ ଲୋକମାନେ ମୁସଲିମ୍‌ମାନଙ୍କୁ ବିରୋଧ କରିଥିଲେ। କଂଗ୍ରେସର ବିରୋଧ ସତ୍ତ୍ୱେ ସାମ୍ପ୍ରଦାୟିକ ପ୍ରତିନିଧିତ୍ୱ ବ୍ୟବସ୍ଥାର ପ୍ରବର୍ତ୍ତନ ହେଲା। ସେତେବେଳର ବ୍ରିଟିଶ ସରକାର ମୁସଲିମ୍ ମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ମଞ୍ଜୁର କଲେ। ୧୯୦୦ ମସିହାଠାରୁ ସାମ୍ପ୍ରଦାୟିକ ପ୍ରତିନିଧିତ୍ୱ ବ୍ୟବସ୍ଥା କାର୍ଯ୍ୟକାରୀ ହେଉଛି। ସମସ୍ତ ଗୋଷ୍ଠୀ ପ୍ରତି ନ୍ୟାୟ ଦେବାକୁ ସେମାନେ ପଦକ୍ଷେପ ନେଇଛନ୍ତି। ସାମ୍ପ୍ରଦାୟିକ ପ୍ରତିନିଧିତ୍ୱ ଦ୍ୱାରା ସବୁ ଶ୍ରେଣୀର ଲୋକଙ୍କୁ ଯେ ନ୍ୟାୟ ଦେଇହେବ ଏହା ସେତେବେଳେ ସରକାରଙ୍କ ଲକ୍ଷ୍ୟ ଥିଲା। ସେତେବେଳେ ଭାରତର ରାଜଧାନୀ କଲିକତା ଥିଲା। କଲିକତାର ଅଧିକାଂଶ ବାସିନ୍ଦା ମୁସଲିମ୍ ଥିଲେ। ସୁତରାଂ ମୁସଲମାନ ମାନେ ସହଜରେ ଏହି ଲକ୍ଷ୍ୟ ହାସଲ କରିପାରିଲେ। କଂଗ୍ରେସର ଦୃଷ୍ଟିଭଙ୍ଗୀ ଦ୍ୱାରା ଶାସକମାନେ ପ୍ରଭାବିତ ହେଲେ ନାହିଁ। ମୋଟ ଉପରେ ମୁସଲିମ୍ ମାନେ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଦାବିରେ ସଫଳ

Digitized by srujanika@gmail.com

ହେଲେ । ଇଂରେଜମାନେ ସବୁଗୋଷ୍ଠୀ ଓ ସବୁ ସମ୍ପ୍ରଦାୟର ଲୋକମାନେ ସରକାରରେ ପ୍ରତିନିଧିତ୍ୱ ପାଇବା ପାଇଁ ସବୁଜ ସଙ୍କେତ ଦେଲେ ।

ଏହାପରେ କଂଗ୍ରେସ ସ୍ୱଦେଶୀ ଆନ୍ଦୋଳନ ଆରମ୍ଭ କଲା । ମୁସଲିମମାନଙ୍କୁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଦିଆନଯିବା ବିରୁଦ୍ଧରେ ଏହି ଆନ୍ଦୋଳନ ଅଭିପ୍ରେତ ଥିଲା । ଏହା ମଧ୍ୟ ବଙ୍ଗ ପ୍ରଦେଶ ବିଭାଜନକୁ ବିରୁଦ୍ଧ କରୁଥିଲା । ନେତାମାନେ ଯାହା କହିଲେ ଅଜ୍ଞ ଜନଗଣ ତାହାକୁ ସହଜରେ ବିଶ୍ୱାସ କରିନେଲେ । ସ୍ୱଦେଶୀ ଆନ୍ଦୋଳନ ବିଷୟରେ ସେମାନେ ବହୁ ଉଚ୍ଚ ଆଶା ପୋଷଣ କରିଥିଲେ । ଲୋକମାନେ ଆନ୍ଦୋଳନ ପଛରେ ଥିବା ପ୍ରକୃତ ଉଦ୍ଦେଶ୍ୟକୁ ବୁଝିନପାରି ଆନ୍ଦୋଳନ ଦ୍ୱାରା ଚମତ୍କାରିତା ସୃଷ୍ଟି ହେବ ବୋଲି ଭାବିଥିଲେ । ମୁସଲିମ୍ ମାନଙ୍କୁ ସେମାନଙ୍କର ପ୍ରତିନିଧିତ୍ୱରୁ ବଞ୍ଚିତ କରିବା ଯଥାର୍ଥ ନୁହେଁ ବୋଲି ସେମାନେ ଅନୁଭବ କରି ନଥିଲେ । ସେମାନଙ୍କର ଏହି ଅଜ୍ଞତାର କାରଣ କଣ ହୋଇ ପାରେ? ଆମ ଭିତରୁ ଅନେକ ଲୋକ ଏବେବି ରାଜନୀତିର ମୌଳିକ ଆଦର୍ଶ ବିଷୟରେ ଅଜ୍ଞ ଅଟନ୍ତି । ସାଧାରଣ ଲୋକଟିଏ ଆମ ଦେଶର ନେତାମାନେ ଯାହା କୁହନ୍ତି, ତାହାକୁ ନିର୍ବିବାଦରେ ବିଶ୍ୱାସ କରେ । ଲୋକମାନେ ଠିକ୍ ଭୁଲ ଜାଣିବାରେ ଏତେ ସଚେତନ ବା ଶିକ୍ଷିତ ନୁହନ୍ତି । ସେ ସମୟରେ ଅବସ୍ଥା ତ ଅଧିକ ଖରାପ ଥିଲା । ସେମାନେ ବିଶ୍ୱାସ କରୁଥିଲେ ଯେ ସ୍ୱଦେଶୀ ଆନ୍ଦୋଳନ ଏକ ଦେଶପ୍ରେମ ଜନିତ ଆନ୍ଦୋଳନ । ତେବେ ମୁସଲିମ୍‌ମାନେ ସଂଗଠିତ ଓ ଦୃଢଥିଲେ । କଂଗ୍ରେସର ଦୃଢ ବିରୋଧ ସତ୍ତ୍ୱେ ସେମାନଙ୍କର ନ୍ୟାଯ୍ୟ ଅଧିକାରକୁ ହାସଲ କରିବାରେ ସଫଳ ହୋଇଥିଲେ ।

ଏପରିକି ୧୯୧୦ ମସିହାରେ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ହିନ୍ଦୁ ଓ ମୁସଲିମ୍ ମାନଙ୍କୁ ବଣ୍ଟନ କରାଯାଇଥିଲା । ପୁଣି ଯେତେବଳେ ଏହାକୁ ଭାଗଭାଗ କରାଗଲା ସେତେବେଳେ ସମସ୍ୟା ସୃଷ୍ଟି ହେଲା । ଏହି ଆଧାରରେ ନିର୍ବାଚନ ମଣ୍ଡଳୀ ମାନଙ୍କୁ ଉଦ୍ଭବ କରାଇବା ଜଟିଳ କାର୍ଯ୍ୟ ଥିଲା । ଶେଷରେ କେତେକ ନିର୍ବାଚନ ମଣ୍ଡଳୀକୁ ମୁସଲିମ୍ ମାନଙ୍କୁ ଦିଆଗଲା ଓ ଅନ୍ୟ ନିର୍ବାଚନ ମଣ୍ଡଳୀଗୁଡିକୁ ଅଣ ମୁସଲିମ୍ ନିର୍ବାଚନ ମଣ୍ଡଳୀ ବୋଲି କୁହାଗଲା । ମୁସଲିମ୍ ବିରୁଦ୍ଧରେ ଥିବା କଂଗ୍ରେସ ନିଜ

Digitized by srujanika@gmail.com

କାର୍ଯ୍ୟରେ ବିଫଳ ହେଲା । ତେବେ ଏହା ନିଜର ପରାଜୟକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନଥିଲା । ଶେଷରେ କଂଗ୍ରେସ ଏଥିରେ ସମ୍ମତ ହେବା ଛଡା ଅନ୍ୟପନ୍ଥା ପାଇଲା ନାହିଁ । ବେଙ୍ଗଲକୁ ଭାଗ ଭାଗ ନକରିବା ସର୍ତ୍ତରେ କଂଗ୍ରେସ ସମର୍ଥ ହୋଇ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଭାବନାକୁ କଂଗ୍ରେସ ଗ୍ରହଣ କରିଗଲା । ଶେଷରେ ଏହି ରାଜିନାମା ହେଲା । ପରିଣାମତଃ ୧୯୧୦ ମସିହାରେ ମୁସଲିମ୍ ମାନେ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ପାଇଲେ । ଏହାପରେ କଂଗ୍ରେସ ଏହାର ମୁସଲିମ୍ ବିରୋଧୀ ନିୟମ ଜାରି ରଖିଲା । ଏହାଦ୍ୱାରା ମୁସଲିମ୍ ମାନଙ୍କ ହାତ ଦୃଢ ହୋଇଗଲା । ମୁସଲିମ୍ ଲିଗ୍ କଂଗ୍ରେସ ବିରୁଦ୍ଧରେ ଏକ ଶକ୍ତିଶାଳୀ ରାଜନୈତିକ ସଂଗଠନ ଭାବେ ଉଭା ହେଲା । କଂଗ୍ରେସର ସମସ୍ତ ବିରୋଧ ସତ୍ତ୍ୱେ ମୁସଲିମ୍ ଲିଗ୍ ଶକ୍ତିଶାଳୀ ହେବା ସହ କଂଗ୍ରେସର ଉଦ୍ୟମ ବିଫଳ ହୋଇ ଚାଲିଲା । ଶେଷରେ ଲକ୍ଷ୍ନୌଠାରେ କଂଗ୍ରେସ ଓ ଲିଗ୍ ଭିତରେ ଏକ ବୁଝାମଣା ହେଲା । କଂଗ୍ରେସ ଇତିହାସରେ ଏହା ଲକ୍ଷ୍ନୌ ପ୍ୟାକ୍ଟ ଭାବେ ଜଣାଶୁଣା । ଏହିଚୁକ୍ତି ଦ୍ୱାରା ଲିଗ୍ ଏକ ଶକ୍ତିଶାଳୀ ସଂଗଠନରେ ପରିଣତ ହୋଇ ଏକ ସାର୍ବଭୌମ ରାଷ୍ଟ୍ର ପାଇଁ ଦାବି ଉପସ୍ଥାପନ କଲା । ଏହାର ପରିଣତି ହେଲା ପାକିସ୍ତାନର ସୃଷ୍ଟି ।

ଉତ୍ତର ଭାରତରେ ଏହି ପରିସ୍ଥିତିରୁ ପ୍ରେରଣା ନେଇ ଏଠାରେ କେତେକ ବ୍ୟକ୍ତି ସ୍ୱତନ୍ତ୍ର ପ୍ରତିନିଧିତ୍ୱ ପାଇଁ ବିଚାର କଲେ । ମୁସଲିମ୍‌ମାନେ ଏକ ସଂଖ୍ୟା ଲଘୁ ଶ୍ରେଣୀ ଭାବେ ସବୁ କ୍ଷେତ୍ରରେ ସ୍ୱତନ୍ତ୍ର ଭାଗ ସେମାନଙ୍କର ଏକତା ପାଇଁ ହାସଲ କଲେ । ସେମାନଙ୍କର ସଙ୍କଳ୍ପ ଓ ସଂଗ୍ରାମ ସେମାନଙ୍କର ଅଧିକାର ଲାଭ ପାଇଁ ସହାୟକ ହୋଇଥିଲା । ଉତ୍ତର ଭାରତରେ ଏହି ପରିସ୍ଥିତି ବେଳେ ଏଠିକାର ପରିବେଶ କିଛିଟା ଭିନ୍ନ । ଏଠାରେ ଲୋକସଂଖ୍ୟାର ୯୦ ଭାଗ ସବୁକ୍ଷେତ୍ରରୁ ପ୍ରାୟ ବଞ୍ଚିତ ହୋଇ ରହିଛନ୍ତି । ଏକ ନିର୍ଦ୍ଦିଷ୍ଟ ଶ୍ରେଣୀ ଯେଉଁମାନଙ୍କ ସଂଖ୍ୟା ଲୋକସଂଖ୍ୟାର ଶତକଡା ୩ଭାଗ, ସେମାନେ ସମସ୍ତ ସରକାରୀ ଚାକରିକୁ ଏକଚାଟିଆ ଭାବେ ଦଖଲ କରିନେଇଛନ୍ତି । ଏକ ସଂଖ୍ୟାଲଘୁ ଶ୍ରେଣୀ ଏକ ସଂଖ୍ୟାଗରିଷ୍ଠଙ୍କ ଉପରେ ସବୁ କ୍ଷେତ୍ରରେ ପ୍ରାଧାନ୍ୟ ବିସ୍ତାର କରି ରହିଛନ୍ତି ।

Digitized by srujanika@gmail.com

ଯେଉଁମାନେ ସଂଖ୍ୟା ଗରିଷ୍ଠ ସେମାନେ ଅତ୍ୟନ୍ତ ଦୟନୀୟ ସ୍ଥିତିରେ ଜୀବନ ଧାରଣ କରୁଛନ୍ତି । ସାର୍.ପି. ଥେଗରାୟ୍ ଜଣେ ଅତ୍ୟନ୍ତ ଶକ୍ତିଶାଳୀ କଂଗ୍ରେସ ନେତା, ଯେକି ମାଡ୍ରାସ ଠାରେ ହୋଇଥିବା କଂଗ୍ରେସ ଅଧିବେଶନର ସ-।ଦକ ଥିଲେ। ୧୯୧୬ ମସିହା ପର୍ଯ୍ୟନ୍ତ ପ୍ରବୀଣ ଗବେଷକ ଓ ସମାଜସେବୀ ଡ. ଟି.ଏମ୍.ନାୟର ଓ ସାର ପି. ଥୋଗରାୟଙ୍କ ମଧ୍ୟରେ ଭଲ ସ-ର୍କ ନଥିଲା । ସେମାନେ ପରସ୍ପରର ବିରୋଧୀ ଥିଲେ। ସେମାନେ ଅନୁଭବ କଲେ ଯେ, ସେମାନଙ୍କ ଭିତରେ ଥିବା ତିକ୍ତତା ଓ ବିରୋଧ ଯୋଗୁଁ ବ୍ରାହ୍ମଣମାନେ ଅବ୍ରାହ୍ମଣମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରୁଛନ୍ତି । ସେମାନେ ଅନୁଭବ କଲେ ଯେ ସେମାନଙ୍କ ଭିତରେ ବ୍ରାହ୍ମଣମାନେ ତିକ୍ତତା ସୃଷ୍ଟିକରି ସେମାନଙ୍କ ସପକ୍ଷରେ ସବୁ ସୁବିଧା ହାସଲ କରୁଛନ୍ତି । ଅତୀତର ସମସ୍ତ ଅବୁଝାମଣା ଓ ତିକ୍ତତାକୁ ଭୁଲିଯାଇ ସେମାନେ ଏକ ଅଣବ୍ରାହ୍ମଣ ଆନ୍ଦୋଳନ ଗଡିତୋଳିବାକୁ ପ୍ରୟାସ କଲେ। ସେମାନେ ନିଜକୁ ଦ୍ରାବିଡ କହିବା ସାହସ କଲେ ନାହିଁ। ସେମାନଙ୍କ ଆନ୍ଦୋଳନକୁ ସେମାନେ ସାଉଥ ଇଣ୍ଡିଆନ ଲିବେରାଲ ଫେଡରେସନ୍ (SILF) ନାମ ଦେଲେ, ପରେ ଯାହା ଜଷ୍ଟିସ୍ ପାର୍ଟି ହିସାବରେ ପରିଚିତ ହେଲା। (SILF) ର ବିଧାନ ଗୁଡିକ ଅତ୍ୟନ୍ତ ଯୁକ୍ତିଯୁକ୍ତ ଥିବାରୁ ଏହା ଅଣବ୍ରାହ୍ମଣ ମାନଙ୍କର ସମର୍ଥନ ଲାଭ କଲା। ୧୯୨୦ ମସିହାରେ ହୋଇଥିବା ସାଧାରଣ ନିର୍ବାଚନରେ ସେମାନେ ଅଂଶ ଗ୍ରହଣ କରି ଉଲ୍ଲେଖନୀୟ ସଫଳତା ହାସଲ କଲେ। ମୁଁ ସେତେବେଳେ କଂଗ୍ରେସ ଦଳରେ ଥିଲି।

ଜଷ୍ଟିସ୍ ପାର୍ଟିର ସଫଳତା ଓ ଜନପ୍ରିୟତାରେ କଂଗ୍ରେସ ଦଳରେ ଥିବା ବ୍ରାହ୍ମଣମାନେ ଅତ୍ୟନ୍ତ ଈର୍ଷାନ୍ୱିତ ହେଲେ। ଅଣବ୍ରାହ୍ମଣ ମାନଙ୍କର ରାଜନୈତିକ ସ୍ତରରେ ଏହି ପ୍ରଭାବକୁ ସେମାନେ ପ୍ରତିରୋଧ କରିବା ପାଇଁ ବିଭିନ୍ନ କୌଶଳ ବିଷୟ ଚିନ୍ତାକଲେ। ସେମାନେ ଗାନ୍ଧୀଙ୍କର ପରାମର୍ଶ ନେଲେ। ସେହି ସମୟରେ ଭାରତୀୟ ରାଜନୀତିରେ ଶ୍ରୀମତୀ ଆନିବେସାନ୍ତ ବେଶ୍ ଜନପ୍ରିୟ ଥିଲେ। ତାଙ୍କ ଜନପ୍ରିୟତାର କାରଣ ଥିଲା ସେ ଜଣେ ବିଦେଶୀନୀ ଥିଲେ ଓ ବ୍ରାହ୍ମଣ ମାନଙ୍କର ବିକାଶ ପାଇଁ ତାଙ୍କର ବଡ ଅବଦାନ ଥିଲା। କିନ୍ତୁ ତାଙ୍କର ସେବା ଯୋଗୁଁ ଆୟେର

Digitized by srujanika@gmail.com

ଗୋଷ୍ଠୀ ବହୁତ ଉପକୃତ ହୋଇଥିବାରୁ ଆୟେଙ୍ଗର ବ୍ରାହ୍ମଣମାନେ ତାଙ୍କୁ ଘୃଣା କରୁଥିଲେ । ଆନିବେସାନ୍ତ ଆୟେଙ୍ଗର ବ୍ରାହ୍ମଣମାନଙ୍କୁ ଗୁରୁତ୍ୱ ନଦେଇ ଆୟେରମାନଙ୍କୁ ସହଯୋଗ ଦେଉଥିଲେ । ସଦାଶିବ ଆୟେର, ମଣି ଆୟେର, ସାର ସି.ପି. ରାମସ୍ୱାମୀ ଆନିବେସାନ୍ତଙ୍କ ଠାରୁ ସାହାଯ୍ୟ ପାଇଥିଲେ। ଏହାକୁ ଆୟେଙ୍ଗରମାନେ ଘୃଣା ଦୃଷ୍ଟିରେ ଦେଖୁଥିଲେ। ସେମାନଙ୍କର ଆଶଙ୍କା ଥିଲା ଶୈବବାଦୀ ବ୍ରାହ୍ମଣମାନେ ସେମାନଙ୍କ ଠାରୁ ଆଗେଇ ଯିବେ। ଶୈବବାଦୀ ବ୍ରାହ୍ମଣମାନେ ବୈଷ୍ଣବବାଦୀ ବ୍ରାହ୍ମଣମାନଙ୍କ ଠାରୁ ସବୁ କ୍ଷେତ୍ରରେ ଆଗରେ ରହିବେ ବୋଲି ସେମାନେ ଆଶଙ୍କା ପ୍ରକାଶ କଲେ। ସେମାନେ ଜଣେ ନୂଆ ନେତାଙ୍କୁ ଅନୁସନ୍ଧାନ କଲେ, ଯିଏ ସେମାନଙ୍କ ସ୍ୱାର୍ଥ ପାଇଁ କାର୍ଯ୍ୟ କରିବ । ସେମାନେ ଏଥିପାଇଁ ସି.ରାଜଗୋପାଳଚାରୀଙ୍କୁ ସ୍ଥିର କଲେ। ସେମାନେ ଗାନ୍ଧୀଙ୍କ ପାଖକୁ ଯାଇ ତାଙ୍କର ପରାମର୍ଶ ଓ ସମ୍ମତି ଚାହିଁଲେ। ଏହି ସୂତ୍ରରେ ରାଜଗୋପାଳଚାରୀ ବ୍ରାହ୍ମଣମାନଙ୍କର ନେତା ପାଲଟିଲେ । ଗାନ୍ଧୀ ରାଜଗୋପାଳଚାରୀଙ୍କୁ ଉପରକୁ ନେଲେ ଓ ରାଜାଜୀ ଗାନ୍ଧୀଙ୍କୁ ଦକ୍ଷିଣ ଭାରତରେ ବଡ଼ ନେତାର ସମ୍ମାନ ଦେଲେ। ଏହି ସମୟରେ ରାଜାଜୀଙ୍କର ପ୍ରେରଣାରେ ମୁଁ କଂଗ୍ରେସରେ ଯୋଗ ଦେଲି। କଂଗ୍ରେସର ରଚନାତ୍ମକ କାର୍ଯ୍ୟ କ୍ରମ ମୋତେ ବେଶ୍ ସ୍ପର୍ଶ କରିଥିଲା। ମୋପରି ଅନେକ ବ୍ୟକ୍ତି ଓ କେତେକ ବିଶିଷ୍ଟ ଲୋକ କଂଗ୍ରେସ ପ୍ରତି ଆକୃଷ୍ଟ ହେଲେ ଓ ଗାନ୍ଧୀ ଙ୍କର ଅନୁଗାମୀ ପାଲଟିଗଲେ।

ଗାନ୍ଧୀ ଆମ ପାଇଁ କଣ ବାର୍ତ୍ତା ରଖିଥିଲେ? ତାଙ୍କର ପ୍ରଥମ ସନ୍ଦେଶ ଥିଲା ହିନ୍ଦୁ ମୁସଲିମ୍ ସଂହତି। ଦ୍ୱିତୀୟ କାର୍ଯ୍ୟ ଥିଲା ଅସ୍ପୃଶ୍ୟତାର ବିଲୋପ। ତୃତୀୟରେ ଗରିବ ଲୋକଙ୍କର ଉତ୍ଥାନ ପାଇଁ ସେ ଖଦଡକୁ ପ୍ରାଧାନ୍ୟ ଦେଉଥିଲେ। ଚତୁର୍ଥରେ ନିଶା ନିବାରଣ ତାଙ୍କର କାର୍ଯ୍ୟ ସୂଚୀ ଥିଲା। ଏତଦ୍ ବ୍ୟତୀତ ଗାନ୍ଧୀଙ୍କର ଉଦ୍ଦେଶ୍ୟ ଥିଲା କଂଗ୍ରେସ ନିର୍ବାଚନ ଲଢି କୌଣସି ପଦ ପଦବୀ ହାସଲ କରିବ ନାହିଁ। କଂଗ୍ରେସ ଯେ ଏକ ସମାଜ ସଂସ୍କାର ଆନ୍ଦୋଳନ ଜନିତ ସଂଗଠନ ମୁଁ ଏଥିରେ ପୂର୍ଣ୍ଣ ବିଶ୍ୱାସ କରୁଥିଲି। ମୁଁ ଅତ୍ୟନ୍ତ ନିଷ୍ଠାର ସହ କଂଗ୍ରେସ ପାଇଁ କାର୍ଯ୍ୟ

Digitized by srujanika@gmail.com

କରୁଥିଲି । କଂଗ୍ରେସ ବି ବେଶ୍ ଜନପ୍ରିୟ ଥିଲା । ଯେତେବେଳେ ଜଷ୍ଟିସ୍ ପାର୍ଟି ନିର୍ବାଚନରେ ଜିତି ମନ୍ତ୍ରୀମଣ୍ଡଳ ଗଠନ କଲା କଂଗ୍ରେସ ତା ବିରୁଦ୍ଧରେ ନାନା ପ୍ରଚାର ଆରମ୍ଭ କଲା । ଜଷ୍ଟିସ୍ ପାର୍ଟି କରୁଥିବା ଲୋକ ହିତକର କାର୍ଯ୍ୟକୁ କଂଗ୍ରେସ କୌଣସି ସ୍ୱୀକୃତି ମଧ୍ୟ ଦେଉନଥିଲା । ସେମାନେ ଶସ୍ତା ରାଜନୀତି ପ୍ରତି ଆକୃଷ୍ଟ ହେଲେ । ସେମାନେ ନିଜର ରାଜନୈତିକ ମର୍ଯ୍ୟାଦାଠାରୁ ନ୍ୟୂନ ସ୍ତରକୁ ଖସି ଆସିଲେ । ସବୁ କ୍ଷେତ୍ରରେ ବିନାକାରଣରେ ସେମାନେ ଜଷ୍ଟିସ୍ ପାର୍ଟିକୁ ଆକ୍ରମଣ କଲେ । ମନ୍ତ୍ରୀମାନଙ୍କ ଦରମାନେଇ ସେମାନେ ନାନା ତୁମ୍ବିତୋଫାନ ଆରମ୍ଭ କଲେ । ଟ୍ରେନମ୍ୟାନଙ୍କରେ ପ୍ରଥମ ଶ୍ରେଣୀରେ ମନ୍ତ୍ରୀମାନେ ଯାତ୍ରାକରୁଥିବାରୁ ସେମାନେ ତାଙ୍କୁ କଟୁ ସମାଲୋଚନା କଲେ । ଏପରିକି ସେମାନଙ୍କ ଚଷମା, ଟୋପିକୁ ମଧ୍ୟ ଅଶାଳୀନ ଭାବରେ ଆକ୍ଷେପ କରିବାକୁ ଲାଗିଲେ । ଏହିପରି ଆକ୍ଷେପ ମୂଳକ ସମାଲୋଚନା କରି ସେମାନେ ଗରିବ ଜନସାଧାରଣଙ୍କର ସମର୍ଥନ ଲାଭ କରିବାକୁ ପ୍ରୟାସ କଲେ । ସେମାନେ ଏହିଭଳି ଏକ ପରିବେଶ ସୃଷ୍ଟି କରିବାକୁ ଚାହିଁଲେ ଯେ ସେମାନେ ଗରିବ ଲୋକଙ୍କର ଯଥାର୍ଥ ଶୁଭାକାଂକ୍ଷୀ । ଏହିଭଳି ସେମାନେ ଜନଗଣଙ୍କୁ ବିଭ୍ରାନ୍ତ କରି ୧୯୨୬ ନିର୍ବାଚନରେ ଜଷ୍ଟିସ୍ ପାର୍ଟିକୁ ନିର୍ବାଚନରେ ହରାଇଲେ ।

କଂଗ୍ରେସ ଏହିଭଳି ଏକ ବିକଳ୍ପ ସରକାର ସ୍ୱାଧୀନ ବିଧାୟକ ଡଃ ଶୁଭରାଜନଙ୍କ ସମର୍ଥନରେ ଗଠନ କଲା । ରଙ୍ଗନାଥନ ମୁଦାଲିଅର ଓ ଆରୋଗ ସ୍ୱାମୀ ମୁଦାଲିଆର ଏହି ମନ୍ତ୍ରୀ ମଣ୍ଡଳରେ ଯୋଗ ଦେଲେ । ଏହି ସରକାର କ୍ଷମତାରେ ରହି ପାରିଲା ନାହିଁ । ଡଃ ଶୁଭରାଜନଙ୍କ ବ୍ୟତୀତ ସମସ୍ତ ମନ୍ତ୍ରୀମାନେ ଇସ୍ତଫା ଦେଲେ । ପରେ ଏସ୍.ମୁଥିଆ ମୁଦାଲିଆର ଓ ସେଥୁରଥିନା ଆୟେର ମନ୍ତ୍ରୀ ମଣ୍ଡଳରେ ଯୋଗ ଦେଲେ । ଜଷ୍ଟିସ ପାର୍ଟି ଏହି ସରକାରକୁ ସମର୍ଥନ ଦେଲା । ଏହି ମନ୍ତ୍ରୀମଣ୍ଡଳ ଜନସାଧାରଣଙ୍କ ପାଇଁ ଅନେକ ଭଲକାମ କଲା । ଜଷ୍ଟିସ୍ ପାର୍ଟି କ୍ଷମତାରେ ଥିଲାବେଳେ ଯାହା କରିବାନେଇ ଦ୍ୱନ୍ଦ୍ୱ ଭିତରେ ଥିଲା, ଏହି ମନ୍ତ୍ରୀ ମଣ୍ଡଳ ସାହସର ସହିତ ସେ ସବୁ କାର୍ଯ୍ୟକାରୀ କଲା । ସରକାର ଯେଉଁ ସବୁ ଭଲ ପଦକ୍ଷେପ ନେଇଥିଲା ସେ ମଧ୍ୟରେ ଶ୍ରେଣୀ ଭିତ୍ତିକ ସଂରକ୍ଷଣ ନିର୍ଦ୍ଦେଶ ଥିଲା

Digitized by srujanika@gmail.com

ସବୁଠାରୁ ଉଲ୍ଲେଖନୀୟ ଘଟଣା । କୌଣସି ବିରୋଧକୁ ଭ୍ରୂକ୍ଷେପ ନକରି ମୁଥିଆ ମୁଦଲିଆର ସମସ୍ତ ଗୋଷ୍ଠୀର ପ୍ରତିନିଧିତ୍ୱ ପାଇଁ ଏହି ଆଇନ ପ୍ରଣୟନ କରି.ଥିଲେ । ସବୁଗୋଷ୍ଠୀର ଲୋକ ଯେପରି ନ୍ୟାୟ ପାଇବେ, ସେ ଏହି ସଂରକ୍ଷଣ ଆଇନ ପାସ୍ କରାଇଥିଲେ ।

ସବୁ ଶ୍ରେଣୀର ଲୋକମାନେ କିପରି ନ୍ୟାୟ ପାଇବେ ସେଥିପାଇଁ ମୁଥିଆ ମୁଦାଲିଅର ଯେଉଁ ଉଦ୍ୟମ କରିଥିଲେ ବ୍ରାହ୍ମଣମାନେ ତାହାକୁ ତୀବ୍ର ଭାବରେ ଆଘାତ କରିବାକୁ ଚାହିଁଲେ । ଏପରିକି ମୁଦାଲିଅରଙ୍କୁ ସେମାନେ ରାକ୍ଷାସ ବୋଲି କହି ଦୁଇଥର ତାଙ୍କୁ ନିର୍ବାଚନରେ ପରାସ୍ତ କରାଇଲେ । ମୁଦାଲିଅର କିନ୍ତୁ ଏଥିରେ ବିଚଳିତ ହେଲେ ନାହିଁ । ବରଂ ଦଳିତ ଜାତିର ଲୋକମାନଙ୍କର ଉତ୍ଥାନ ପାଇଁ ସେ ନିଷ୍ଠାପର ଭାବରେ କାର୍ଯ୍ୟ କଲେ । ନିଜର ଭଲ କାର୍ଯ୍ୟ ପାଇଁ ସମସ୍ତ ତିରସ୍କାରକୁ ସେ ପୁରସ୍କାର ଭାବେ ଗ୍ରହଣ କଲେ ।

ସଂରକ୍ଷଣଜନିତ ସରକାରୀ ନିର୍ଦ୍ଦେଶନାମାର ସେ ଯେହେତୁ ପଥପ୍ରଦର୍ଶକ ଥିଲେ, ସେ ତାହାକୁ ରକ୍ଷା କରିବା ପାଇଁ ଉଦ୍ୟମ କଲେ । ସେହି ନିର୍ଦ୍ଦେଶକୁ ଆଇନ ଦ୍ୱାରା ଅଚଳ କରିବା ପାଇଁ ଯେଉଁ ଉଦ୍ୟମ ହେଉଥିଲା, ତାହା ବିରୁଦ୍ଧରେ ସେ ଦୃଢଭାବରେ ପ୍ରୟାସକଲେ । ପୂର୍ବରୁ ସରକାରୀ ନିର୍ଦ୍ଦେଶକୁ କିପରି ସୁରକ୍ଷା ଦିଆଯିବ ସେଥିପାଇଁ ତାଙ୍କର ଉଦ୍ୟମଥିଲା ଅତ୍ୟନ୍ତ ପ୍ରଶଂସନୀୟ । ତେବେ ତାଙ୍କ ବିରୋଧରେ ଓ ସରକାରୀ ନିର୍ଦ୍ଦେଶକୁ ଦୂର କରିବା ପାଇଁ ବହୁ ଶତ୍ରୁ ଲାଗି ପଡିଲେ । କେତେକ ଲୋକ ତାଙ୍କୁ କଠୋର ସମାଲୋଚନା କରିଛନ୍ତି । ସେ ଅବଶ୍ୟ ଏଥିପାଇଁ ବିବ୍ରତ ହୋଇଛନ୍ତି । ଯଦି ସରକାରୀ ନିର୍ଦ୍ଦେଶ ପାଇଁ ସେ ଉଦ୍ୟମ ନ କରନ୍ତି, ତେବେ ଏହା ପାଇଁ କିଏ ଦାୟିତ୍ୱ ନେଇ ଏହା କରିବ ! ତାଙ୍କର ସମାଲୋଚକମାନେ ଏହା ବୁଝିବା ଆବଶ୍ୟକ ।

ସଂରକ୍ଷଣ ସରକାରୀ ନିର୍ଦ୍ଦେଶକୁ ଯେତେବେଳେ ଷ୍ଟାଚୁଟାରି ସ୍ୱୀକୃତି ଦିଆଗଲା, ମୁଁ ସେତେବେଳେ କଂଗ୍ରେସ ଦଳରେ ଥିଲି । ମୁଁ ଯଦିବା କଂଗ୍ରେସରେ ଥିଲି, ଜଷ୍ଟିସ ପାର୍ଟିର ଏହି ନିୟମକୁ ମୁଁ ଗ୍ରହଣ କରୁଥିଲି । ଏହା ଯେହେତୁ ଦଳିତ

Digitized by srujanika@gmail.com

ଲୋକମାନଙ୍କର ସ୍ୱାର୍ଥର ସୁରକ୍ଷା ପାଇଁ ଉଦ୍ଦିଷ୍ଟ ଥିଲା, ମୁଁ ଏହାକୁ ସମର୍ଥନ ଦେଉଥିଲି। କଂଗ୍ରେସ ଏହାକୁ ଯେ ପ୍ରୟୋଗ କରିବ, ଏଥିରେ ମୋର ଆସ୍ଥାଥିଲା। ସେହି ସମୟରେ କଂଗ୍ରେସ ଭିତରେ ଭିକା ଓ ଭାରାଦାରଜୁଲୁ ନାଇଡୁ ଶ୍ରେଣୀ ଭିତ୍ତିକ ପ୍ରତିନିଧିତ୍ୱକୁ ବିରୋଧ କରୁଥିଲେ। ମୁଁ କିନ୍ତୁ ମୋର ମତରେ ଅତ୍ୟନ୍ତ ଦୃଢ଼ଥିଲି। ମୋତେ ବି ରାଜଗୋପାଳଚାରୀ ସମର୍ଥନ କରୁଥିଲେ। ତାଙ୍କର ମତ ଥିଲା ଯେ ଅନ୍ତତଃ କେତୋଟି ସ୍ଥାନ ଅବ୍ରାହ୍ମଣମାନଙ୍କ ପାଇଁ ସଂରକ୍ଷିତ ହୋଇ ରହିବା ଦରକାର। ତେବେ ସଂରକ୍ଷଣ ଜନିତ ସରକାରୀ ନିର୍ଦ୍ଦେଶକୁ ସେ ପୂର୍ଣ୍ଣଭାବରେ ସମର୍ଥନ କରୁନଥିଲେ। ଏପରିକି ଶ୍ରେଣୀଭିତ୍ତିକ ସରକାରୀ ନିର୍ଦ୍ଦେଶ ଶିରୋନାମାଟିକୁ ସେ ଗ୍ରହଣ କରୁନଥିଲେ। ମୁଁ କିନ୍ତୁ ଶିରୋନାମା ଉପରେ କୌଣସି ଗୁରୁତ୍ୱ ଦେଉନଥିଲି। ଯଦି କୌଣସି ନିର୍ଦ୍ଦେଶ ସାଧାରଣ ମଣିଷର ଉପକାର ପାଇଁ ଉଦ୍ଦିଷ୍ଟ, ଯେଉଁ ଶିରୋନାମାରେ ଏହାକୁ ପ୍ରକାଶ କରାଯାଉନା କାହିଁକି, ତାହା ମୋ ପାଇଁ ବିଶେଷ ଫରକ ନଥିଲା। ସୁତରାଂ ମୁଁ ରାଜାଜୀଙ୍କ ପ୍ରସ୍ତାବରେ ରାଜି ହୋଇଥିଲି।

ରାଜାଜୀଙ୍କ ସହ ଏହି ବୁଝାମଣା ପରିପ୍ରେକ୍ଷୀରେ ଆମେମାନେ ମାଡ୍ରାସ ପ୍ରେସିଡେନ୍‌ସି ସଂଘ ଗଠନ କଲୁ। ଜଷ୍ଟିସ ପାର୍ଟି ଓ ଅବ୍ରାହ୍ମଣ ଆନ୍ଦୋଳନକୁ ପ୍ରତିହତ କରିବା ଏହାର ଉଦ୍ଦେଶ୍ୟ ଥିଲା। ଫଳରେ ଜଷ୍ଟିସ ପାର୍ଟି ବିରୁଦ୍ଧରେ ଆମେ କାର୍ଯ୍ୟକଲୁ। କେଶବ ମେନନ ଆମ ସଂଘର ସଭାପତି, ଗୋବିନ୍ଦ ଦାସ ଓ ମୁଁ ଏହାର ଉପସଭାପତି ଓ ଡଃ ଭରଦାର କୁଲୁ ନାଇଡୁ ସ-ାଦକ ହେଲେ। ଅବ୍ରାହ୍ମଣ ମାନଙ୍କ ପାଇଁ ଶତକଡା ୫୦ ଭାଗ ସଂରକ୍ଷଣ କରିବାକୁ ନିଷ୍ପତ୍ତି ହୋଇଥିଲା।

କସ୍ତୁରୀ ରଙ୍ଗା ଆୟେଙ୍ଗର, ଏସ. ସତ୍ୟମୂର୍ତ୍ତି ଆୟେର, ଶ୍ରୀନିବାସ ଆୟେଙ୍ଗର ଓ କଂଗ୍ରେସର ଅନ୍ୟ ବ୍ରାହ୍ମଣ କର୍ତ୍ତୃବର୍ଗ ଏହାକୁ ଆଦୌ ଗ୍ରହଣ କରୁନଥିଲେ। ରାଜାଜୀ ମୋତେ ସମର୍ଥନ କରୁଥିବାରୁ ସେମାନେ ତାଙ୍କୁ ନିନ୍ଦା କରୁଥିଲେ। ସେମାନଙ୍କର ଭାବନା ଥିଲା ଯେ ରାଜାଜୀ ମୋ ପ୍ରଭାବକୁ ଭୟ କରୁଛନ୍ତି। ଏପରିକି ସେମାନେ ରାଜାଜୀଙ୍କୁ ବହିଷ୍କାର କରିବାକୁ ଚିନ୍ତା କରୁଥିଲେ। ସେମାନେ ଅନ୍ୟ ଏକ ଜାତୀୟ ସଂଗଠନ ଗଠନ କଲେ। ସେଥିରେ ବିଜୟ

Digitized by srujanika@gmail.com

ରାଘବଚାରୀଙ୍କୁ ସଭାପତି ଏବଂ ରାଜାଜୀ, ଟି ପ୍ରକାଶନ ଓ ମୋତେ ସ-ାଦକ ଭାବେ ମନୋନୀତ କରାଗଲା । କସ୍ତୁରୀ ରଙ୍ଗା ଆୟେଙ୍ଗର ଓ ଭିଓସିଙ୍କୁ ଉପସଭାପତି ଭାବେ ନିର୍ବାଚିତ କରାଗଲା । ଏଥିରେ ସ୍ଥିର ହେଲା ଯେ ସମସ୍ତେ ଜାତୀୟତାର କଥା କହିବେ । ଏବଂ ସମସ୍ତ ଜାତୀୟ ସଂଗଠନ କ୍ଷେତ୍ରରେ ସବୁ ଗୋଷ୍ଠୀ ଓ ଶ୍ରେଣୀକୁ ଉଚିତ୍ ପ୍ରତିନିଧିତ୍ୱ ଦିଆଯିବ । ଅବ୍ରାହ୍ମଣ ମାନଙ୍କୁ ଶତକଡା ୫୦ ସ୍ଥାନ ଦେବାକୁ ସ୍ଥିର ହେଲା । ଆମେ ଯେହେତୁ ଅବ୍ରାହ୍ମଣ ମାନଙ୍କ ପାଇଁ ଶତକଡା ୫୦ ଭାଗ ଦେବାକୁ ଘୋଷଣା କଲୁ, ଆମର ଜାତୀୟ ସଂଘ ସର୍ବସାଧାରଣଙ୍କ ସମର୍ଥନ ଲାଭକଲା । କିନ୍ତୁ ରଙ୍ଗସ୍ୱାମୀ ଆୟେଙ୍ଗର ଓ ଏସ୍. ସତ୍ୟମୂର୍ତ୍ତି ଏଥିରେ ଅନେକ ଇର୍ଷାଳୁ ହେଲେ । କଂଗ୍ରେସର କାର୍ଯ୍ୟ କାରିତା ନେଇ ସେମାନେ ଗୁପ୍ତ ଯୋଜନା କଲେ । ସେମାନଙ୍କର ଯୋଜନାକୁ କାର୍ଯ୍ୟକାରୀ କମିଟି ଅନୁମୋଦନ କଲା । କଂଗ୍ରେସ ଯେ ସମାନୁପାତିକ ପ୍ରତିନିଧିତ୍ୱକୁ ସ୍ୱୀକାର କରୁଛି, ଏହା ସ୍ପଷ୍ଟ ହୋଇଥିଲା । ଜନସଂଖ୍ୟା ଅନୁଯାୟୀ ପ୍ରତ୍ୟେକ ଗୋଷ୍ଠୀକୁ ନ୍ୟାୟ ଦେବା ଏହାର ଉଦ୍ଦେଶ୍ୟ ଥିଲା ।

୧୯୨୪ ମସିହାରେ ଥିରୁବନ ମଲାଇ ଠାରେ ତାମିଲନାଡୁ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହେଲା । ମୁଁ ଏଥିରେ ସଭାପତିତ୍ୱ କଲି । ସେହି ସମ୍ମିଳନୀରେ ରଙ୍ଗସ୍ୱାମୀ ଆୟେଙ୍ଗର ଓ ଶ୍ରୀନିବାସ ଆୟେଙ୍ଗର ସାର୍.ପି.ଥେଗରାୟ ଚେଟିୟାର ଓ ଜଷ୍ଟିସ ପାର୍ଟିର ଅନ୍ୟମାନଙ୍କୁ କଠୋର ସମାଲୋଚନା କରିବା ପାଇଁ ତାଙ୍କର ସମର୍ଥକ ମାନଙ୍କୁ ପ୍ରବର୍ତ୍ତାଇଲେ । ଏପରିକି ସେମାନେ ଅଶାଳୀନ ଭାଷାରେ ଗାଳି ଗୁଲଜ କଲେ । ସେମାନଙ୍କର ଏହି ବ୍ୟବହାରରେ ମୁଁ ବଡ଼ ବିରକ୍ତ ହେଲି । ଏସ୍ ରାମନାଥନ୍ ଓ ମୁଁ ସେମାନଙ୍କୁ ଉଚିତ୍ ଜବାବ ଦେବାକୁ ଚାହିଁଲୁ । ମୁଁ ଯେହେତୁ ସଭାପତିତ୍ୱ କରୁଥିଲି, ମୁଁ ରାମନାଥନଙ୍କୁ କହିବାର ସୁଯୋଗ ଦେଲି । ସେ ବ୍ରାହ୍ମଣମାନଙ୍କୁ ଅତ୍ୟନ୍ତ ସା-ଦାୟିକ ବୋଲି ମନ୍ତବ୍ୟ ଦେଲେ । ଏହାପରେ ସେଫ୍ ମହମ୍ମଦ କହିବାକୁ ଆସିଲେ । ସେ ରାମନାଥଙ୍କୁ ବିନାକାରଣରେ ସମାଲୋଚନା କଲେ । ଏହାପରେ ଆନାମଲାଇ ପିଲାଇ ଓ ଭେଙ୍କଟକ୍ରିଷ୍ଣ ପଲାଇ ଆସି ସେଫ୍

Digitized by srujanika@gmail.com

ମହମ୍ମଦଙ୍କୁ ଉତ୍ତର ହେଲେ । ମୋର ଆପଣମାନଙ୍କୁ ଏସବୁ କହିବାର ଉଦ୍ଦେଶ୍ୟ ହେଉଛି ଯେ ଯଦିବା ବ୍ରାହ୍ମଣ ନେତାମାନଙ୍କ ସହ ମୋର ମତ ପାର୍ଥକ୍ୟ ଥିଲା, ତଥାପି ମୁଁ କଂଗ୍ରେସ ଭିତରେ ରହିଥିଲି ।

୧୯୨୫ ମସିହାରେ କଂଗ୍ରେସର ଅନ୍ୟ ଏକ ଅଧିବେଶନ କାଞ୍ଚିପୁରମ୍ ଠାରେ ଅନୁଷ୍ଠିତ ହେଲା । ଏଠାରେ ଭିକା ସଭାପତିତ୍ୱ କଲେ । ସମ୍ମିଳନୀ ହେବାର ପୂର୍ବଦିନ ଅବ୍ରାହ୍ମଣ ମାନଙ୍କର ମୁଁ ଏକ ସଭା ଆହୂତ କଲି । ମୁଥାଇ ମୁଦାଲିଅର, ସାର ଆର.କେ. ମନୁଗମ୍ ଚେଟ୍ଟି, ଭେଲିଙ୍ଗିରି ଗାଉଁଣ୍ଡର, ରାମଲିଙ୍ଗ ଚେଟିୟାର ଓ ଅନ୍ୟ ଅବ୍ରାହ୍ମଣ ନେତାମାନେ ସେହି ସଭାରେ ଯୋଗଦେଲେ । ଆମେ ନିଷ୍ପତ୍ତି କଲୁଯେ ସଂରକ୍ଷଣ ଭିତ୍ତିକ ସରକାରୀ ନିର୍ଦ୍ଦେଶକୁ ଗ୍ରହଣ କରିବା ପାଇଁ କଂଗ୍ରେସ ଅଧିବେଶନରେ ଏହା ଉପସ୍ଥାପନ କରାଯିବ । ଏହି ନିଷ୍ପତ୍ତି ମୁଁ ଷ୍ଟାରକିଙ୍ଗ କମିଟିରେ ଉପସ୍ଥାପନ କଲି , ଏହାକୁ ବ୍ରାହ୍ମଣମାନେ ତୀବ୍ର ବିରୋଧ କଲେ । ଏହାକୁ କଂଗ୍ରେସ ଅଧିବେଶନରେ ପାସ ନକରି ଦେବାକୁ ସେମାନେ ପ୍ରତିବାଦ କଲେ । ସେଥିରେ ମୁଁ ଯୁକ୍ତି ଉପସ୍ଥାପନ କଲି । ଆମର ପ୍ରଚାରରେ ଆମେ ଜଷ୍ଟିସ୍ ପାର୍ଟିକୁ ସମାଲୋଚନା କରୁଛେ, ଆମର ମତ ହେଉଛି କଂଗ୍ରେସ ହେଉଛି ସମସ୍ତ ଅବ୍ରାହ୍ମଣ ମାନଙ୍କର ଯଥାର୍ଥ ପ୍ରତିନିଧି । କଂଗ୍ରେସ ଶ୍ରେଣୀଭିତ୍ତିକ ପ୍ରତିନିଧିତ୍ୱ ସଂରକ୍ଷଣ ନିୟମକୁ ସ୍ୱୀକାର କରି ନେଇଛି । ଅବ୍ରାହ୍ମଣ ମାନଙ୍କ ପାଇଁ ଶତକଡା ୫୦ ଭାଗ ସଂରକ୍ଷଣ ରଖିବାକୁ ଏହା ନୀତିଗତ ଭାବରେ ନିଷ୍ପତ୍ତି କରିଛି । ସୁତରାଂ ଏହି ନିଷ୍ପତ୍ତିକୁ ଉପସ୍ଥାପନ କରାଇ ନଦେବା ସମ୍ପୂର୍ଣ୍ଣ ଅନ୍ୟାୟ । ମୋର କୌଣସି ଯୁକ୍ତିର ସେମାନେ କୌଣସି ଉତ୍ତର ଦେଲେ ନାହିଁ । ସେମାନେ କେବଳ ପ୍ରସ୍ତାବଟିକୁ ସଭାରେ ଉପସ୍ଥାପନ କରାଇବାରେ ପ୍ରତିବନ୍ଧକ କଲେ । ମୁଁ ସଙ୍ଗେ ସଙ୍ଗେ ଛିଡାହୋଇ କହିଲି ଯେ ଏବେ ଯେହେତୁ କଂଗ୍ରେସ ଆସେମ୍ବିଲ୍‌ରେ ପ୍ରବେଶ କରିବାକୁ ନିଷ୍ପତ୍ତି କରିଛି, ସେ ଦୃଷ୍ଟିରୁ ପ୍ରସ୍ତାବଟିକୁ ଉପସ୍ଥାପନ କରିବା ଅତ୍ୟନ୍ତ ଆବଶ୍ୟକ । ଅବ୍ରାହ୍ମଣମାନଙ୍କୁ ନିର୍ବାଚନ ପୃଷ୍ଠଭୂମିରେ ଏହି ପ୍ରତୁଶ୍ରୁତି ଦେବା ଆମର ଏକ ନୈତିକ କର୍ତ୍ତବ୍ୟ । ଏସବୁ ପରେ ଆଗାମୀ ଦିନର ସାଧାରଣ ଅଧିବେଶନରେ ଏହାକୁ ଉପସ୍ଥାପନ କରିବା ପାଇଁ

Digitized by srujanika@gmail.com

ସଭାପତି ମତବ୍ୟକ୍ତ କଲେ । ମୁଁ ସେଥିରେ ଏକମତ ହେଲି । ସେହି ରାତିରେ ବ୍ରାହ୍ମଣ ନେତାମାନେ ମିଳିତ ହେଲେ । ସେମାନେ ଗୁପ୍ତରେ ଏକ ଯୋଜନା ପ୍ରସ୍ତୁତ କଲେ । ମୋ ପଛରେ ପ୍ରତିନିଧିମାନଙ୍କର ଯେ ସମର୍ଥନ ନାହିଁ ଏହା ଭାବି ସେମାନେ ମୋତେ କହିଲେ ଯେ ଏହାକୁ ଉପସ୍ଥାପନା କରିବା ପାଇଁ ୩୦ ଜଣ ବ୍ୟକ୍ତିଙ୍କର ଦସ୍ତଖତ ଜନିତ ସମର୍ଥନ ଆବଶ୍ୟକ । ମୁଁ ସେମାନଙ୍କ ସର୍ତ୍ତରେ ରାଜି ହୋଇ ୫୦ ଜଣ ପ୍ରତିନିଧି ମାନଙ୍କର ଦସ୍ତଖତ ସଂଗ୍ରହ କଲି । ଏସବୁ ସତ୍ତ୍ୱେ ପ୍ରସ୍ତାବଟିକୁ ସେମାନେ ଉପସ୍ଥାପନ କରାଇଲେ ନାହିଁ । ସେମାନଙ୍କର ଯୁକ୍ତିଥିଲା ଯେ ଏହା କଂଗ୍ରେସର ମୌଳିକ ନୀତିର ପରିପନ୍ଥୀ ।

ଏହି ନିଷ୍ପତ୍ତିରେ ମୁଁ ବ୍ୟଥିତ ହେଲି । ମୁଁ ଛିଡାହୋଇ କହିଲି ଆପଣମାନେ ୩୦ ଜଣ ପ୍ରତିନିଧିଙ୍କର ସମର୍ଥନ ଚାହୁଁଥିଲେ । ମୁଁ ୫୦ ଜଣ ବ୍ୟକ୍ତିଙ୍କର ସମର୍ଥନ ଲାଭ କରିଛି । ଆଜି ପ୍ରସ୍ତାବଟିର ଉପସ୍ଥାପନ ପାଇଁ ଗତକାଲି ନିଷ୍ପତ୍ତି ହୋଇଥିଲା । ଏସବୁ ସତ୍ତ୍ୱେ ପ୍ରସ୍ତାବଟି ଉପସ୍ଥାପିତ ନହେବା ପଛରେ କୌଣସି ଯଥାର୍ଥତା ଅଛିକି? ମୁଁ ସଭାପତିଙ୍କ ଠାରୁ ସ୍ପଷ୍ଟ ଉତ୍ତର ଚାହୁଁଛି ।

ଏହା ପରେ ପରେ ବ୍ରାହ୍ମଣମାନେ ପାଟି କରିବାକୁ ଲାଗିଲେ । ସଭାପତି ତାଙ୍କର ନିଷ୍ପତ୍ତି ଶୁଣାଇ ପରବର୍ତ୍ତୀ କାର୍ଯ୍ୟକ୍ରମକୁ ଯିବାକୁ ନିର୍ଦ୍ଦେଶ ଦେଲେ । ଏବେ କିଛି କରିହେବ ନାହିଁ । ଆପଣ ବସନ୍ତୁ ବୋଲି ଆକ୍ଷେପ କଲେ । ସେଦିନ ବ୍ରାହ୍ମଣମାନେ ଏହିଭଳି ପ୍ରତିକ୍ରିୟା ଦେଖାଇଲେ । ମୁଁ ଉତ୍ତର ଦେଲି ଏହା ସଭାପତି ଓ ମୋ ଭିତରେ ସୀମିତ ଥିଲା । ପାଟି କରୁଥିବା ସଭ୍ୟମାନଙ୍କୁ ମୁଁ କହିଲି ପ୍ରସ୍ତାବଟିକୁ ଉପସ୍ଥାପନ କରିବି କି ନାହିଁ? ଯଦି ସେ ମୋତେ କହିବାର ଅନୁମତି ଦେବେ ନାହିଁ ତେବେ ମୁଁ ତାଙ୍କର ନିର୍ଦ୍ଦେଶକୁ ମାନିବି । ଆପଣମାନେ ଦୟାକରି ନିରବ ରୁହନ୍ତୁ । ମୋର ଏହି ନିବେଦନ ସତ୍ତ୍ୱେ ବସ ବସ ବୋଲି ବ୍ରାହ୍ମଣମାନେ ମୋ ଉଦ୍ଦେଶ୍ୟରେ ଚିତ୍କାର କରୁଥିଲେ ।

ସେମାନଙ୍କ ଉଦ୍ଦେଶ୍ୟରେ ମୁଁ କହିଲି, " ଆପଣମାନେ ଏଭଳି ପାଟି କରିବା କୌଣସି ଆବଶ୍ୟକ ନାହିଁ । ଆପଣମାନେ ବଡପାଟି କରି ପାରନ୍ତି କିନ୍ତୁ ଆମ

Digitized by srujanika@gmail.com

ଲୋକମାନେ ଯଦି ପାଟି କରିବେ ତେବେ ଆପଣଙ୍କର ସ୍ୱର ଆମଠାରୁ କେବେ ହେଲେ ଅଧିକ ହେବ ନାହିଁ । ସମ୍ମିଳନୀରେ ବିଶୃଙ୍ଖଳା ସୃଷ୍ଟି ହେଲା । ଏହି ପରିସ୍ଥିତିରେ ସେଠାରେ ରହିବା ମୋ ପାଇଁ କୌଣସି ଅର୍ଥ ନଥିଲା । ମୁଁ ନିରବରେ ସମ୍ମିଳନୀରୁ ଚାଲିଆସିଲି । ମୋ ପଛେ ପଛେ ଅନେକ ଲୋକ ସଭା ଛାଡି ଚାଲିଗଲେ । ସମାନୁପାତିକ ପ୍ରତିନିଧିତ୍ୱ ପାଇଁ ସରକାରୀ ନିର୍ଦ୍ଦେଶ ରକ୍ଷାକରିବା ଉଦ୍ଦେଶ୍ୟରେ ମୁଁ କଂଗ୍ରେସ ପରିତ୍ୟାଗ କଲି ।

ଏହାପରେ ମୋର ବନ୍ଧୁ ରାଜାଜୀ ଓ ଭିକା ମୁଁ କଂଗ୍ରେସରେ ଯୋଗ ଦେବା ପାଇଁ ମୋତେ ଚାରି ପାଞ୍ଚଥର ସାକ୍ଷାତ କରି ପ୍ରବର୍ତ୍ତାଇଲେ । କଂଗ୍ରେସରେ ସେ ପର୍ଯ୍ୟନ୍ତ କିଛି ବ୍ୟକ୍ତି ଥିଲେ ଯେଉଁମାନେ ଶ୍ରେଣୀ ଆଧାରିତ ପ୍ରତିନିଧିତ୍ୱକୁ ସମର୍ଥନ କରୁଥିଲେ । କାଞ୍ଚିପୁରମ୍ କଂଗ୍ରେସ ଅଧିବେଶନରେ ମୋ ସହ ୩୦ ରୁ ୪୦ ପ୍ରତିନିଧି ଚାଲି ଆସିଥିଲେ । ମୋତେ ସମର୍ଥନ କରୁଥିବା ଯେଉଁ ବ୍ୟକ୍ତିମାନେ ତଥାପି କଂଗ୍ରେସରେ ଥିଲେ, ସେମାନେ ଦୃଢ ନିଷ୍ପତ୍ତି ନେବାରେ ସେପରି ସାହସୀ ନଥିଲେ ।

କଂଗ୍ରେସ ଛାଡିବାପରେ ମୁଁ ଆତ୍ମମର୍ଯ୍ୟାଦା ଆନ୍ଦୋଳନ ଆରମ୍ଭ କଲି । ରାଜନୈତିକ ସଂସ୍କାର ସହ ସାମାଜିକ ସଂସ୍କାରକୁ ମୁଁ ପ୍ରାଧାନ୍ୟ ଦେଲି । ସମସ୍ତ ସାମାଜିକ ବୈଷମ୍ୟକୁ ବିଲୋପ କରିବାକୁ ମୁଁ ପ୍ରାଥମିକତା ଦେଉଥିଲି । ମୁଥାଇ ମୁଦଲିଅର ଯେତେବେଳେ କ୍ୟାବିନେଟ୍ ମନ୍ତ୍ରୀ ହେଲେ, ସେ ଶ୍ରେଣୀଭିତ୍ତିକ ସଂରକ୍ଷଣ ବିଲ୍ ଆଣିଲେ । ମୁଁ ସେଥିରେ ବହୁତ ଖୁସି ହେଲି । ତାଙ୍କର ଏହି କାର୍ଯ୍ୟକୁ ମୁଁ ମୋର ବିଜୟ ବୋଲି ଭାବିଲି । ମୁଁ ଯଦି କଂଗ୍ରେସରେ ଥାନ୍ତି ତେବେ ନିଶ୍ଚୟ ଏକ ଉଚ୍ଚ ପଦ ଲାଭ କରିଥାନ୍ତି । ତେବେ ମୁଁ କାହିଁକି କଂଗ୍ରେସ ପରିତ୍ୟାଗ କଲି? ମୁଁ କୌଣସି ଆଶା ରଖି କଂଗ୍ରେସ ଛାଡିଥିଲି କି ? ଶ୍ରେଣୀ ଆଧାରିତ ପ୍ରତିନିଧିତ୍ୱ ସରକାରୀ ନିର୍ଦ୍ଦେଶର ମୁଁ ଯେ ବଡ ପ୍ରବକ୍ତା ବୋଲି ଚିତ୍ରିତ ହେବି, ଏହା ମୁଁ କେବେ ବି ଭାବିନଥିଲି । ସେଥିପାଇଁ ଶ୍ରେଣୀଭିତ୍ତିକ ସରକାରୀ ନିର୍ଦ୍ଦେଶନାମା ପାଇଁ ଆମେ ଏବେ ଏତେ ବ୍ୟସ୍ତତା ପ୍ରକାଶ କରୁଛେ । ଏହା ବିରୁଦ୍ଧରେ ହେଉଥିବା ଯୋଜନା ପାଇଁ ଆମେ ଚିନ୍ତିତ ହେଉଛେ । ଏହା ପ୍ରତ୍ୟାଖ୍ୟାତ ହେବା ଆମେ କେବେ ଚାହିଁବା

Digitized by srujanika@gmail.com

ନାହିଁ । ସେଥିପାଇଁ ଏହା ସପକ୍ଷରେ ସଂଗ୍ରାମ କରିବାକୁ ହେବ । ଯେହେତୁ ହାଇକୋର୍ଟ ଏହି ସରକାରୀ ନିର୍ଦ୍ଦେଶକୁ ଅବୈଧ ଘୋଷଣା କରିଛି, ସେଥିପାଇଁ ଆମେ ପ୍ରତିବାଦ କରିବାକୁ ଚାହୁଁନାହୁଁ । କାଲି ଯଦି ହାଇକୋର୍ଟ ନିର୍ଦ୍ଦେଶକୁ ସୁପ୍ରିମକୋର୍ଟ ପ୍ରତ୍ୟାଖ୍ୟାନ କରେ, ତଥାପି ପ୍ରତ୍ୟେକ ସ୍ତରରେ ଏହାର କାର୍ଯ୍ୟକାରିତା ପାଇଁ ଆମକୁ ସଂଗ୍ରାମ କରିବାକୁ ହେବ । ମୁଁ ଏପରି କାହିଁକି କହୁଛି?

ସମସ୍ତ ଶ୍ରେଣୀର ଲୋକମାନଙ୍କୁ ସମାନୁପାତିକ ପ୍ରତିନିଧିତ୍ୱ ଦେବାପାଇଁ ଏହି ସରକାରୀ ନିର୍ଦ୍ଦେଶନାମାରେ ମଧ୍ୟ ବ୍ୟବସ୍ଥା ନାହିଁ । ବର୍ତ୍ତମାନର ସରକାରୀ ନିର୍ଦ୍ଦେଶନାମା ଅନୁଯାୟୀ ବ୍ରାହ୍ମଣମାନଙ୍କର ସଂଖ୍ୟା ଲୋକସଂଖ୍ୟାର ଶତକଡ଼ା ୩ ଭାଗ ହେଲେବି ସେମାନଙ୍କ ପାଇଁ ଶତକଡ଼ା ୧୪ ଭାଗ ସଂରକ୍ଷଣର ବ୍ୟବସ୍ଥା ହୋଇଛି । ଖ୍ରୀଷ୍ଟିଆନଙ୍କ ଲୋକସଂଖ୍ୟା ଶତକଡ଼ା ୩ ଭାଗ ହେଲେବି ସେମାନେ ଶତକଡ଼ା ୭ ଭାଗ ସଂରକ୍ଷଣ ସୁବିଧା ପାଇଛନ୍ତି । ଅବ୍ରାହ୍ମଣମାନଙ୍କ ସଂଖ୍ୟା ଲୋକସଂଖ୍ୟାର ଶତକଡ଼ା ୮୭ ଭାଗ ହେଲେବି ସେମାନେ ଶତକଡ଼ା ୭୨ ଭାଗ ସଂରକ୍ଷଣ ପାଉଛନ୍ତି । ଆପଣମାନେ ଏହି ପରିସଂଖ୍ୟାନୁକୁ ଅନୁଧ୍ୟାନ କରନ୍ତୁ । ସମସ୍ତ ଶ୍ରେଣୀ ଓ ସଂପ୍ରଦାୟକୁ ସମାନୁପାତିକ ପ୍ରତିନିଧିତ୍ୱ ପାଇଁ ଏପର୍ଯ୍ୟନ୍ତ ବ୍ୟବସ୍ଥା ହୋଇ ପାରିଛି କି? ବ୍ରାହ୍ମଣମାନେ ଲୋକସଂଖ୍ୟାର ଶତକଡ଼ା ୩ ଭାଗ ହେଲେବି, ସେମାନେ ସରକାରୀ ନିର୍ଦ୍ଦେଶ ଅନୁଯାୟୀ କାହିଁକି ଶତକଡ଼ା ୧୪ ଭାଗ ସଂରକ୍ଷଣର ସୁବିଧା ପାଇବେ? ଅବ୍ରାହ୍ମଣମାନେ ୮୨ ଭାଗ ହେଲେ ବି କାହିଁକି ୭୨ ଭାଗ ପ୍ରତିନିଧିତ୍ୱ ପାଇବେ? ସେମାନେ କାହିଁକି ତାଙ୍କ ଲୋକ ସଂଖ୍ୟାର ସମାନ ଭାଗ ପାଇ ପାରିବେ ନାହିଁ ? ଏହି ପରିସ୍ଥିତିରେ ଆମେମାନେ ପ୍ରତିରୋଧ କରିବା ଯଥାର୍ଥ ନୁହେଁ କି? ଚାକିରି କ୍ଷେତ୍ରରେ ବ୍ରାହ୍ମଣ ମାନେ କାହିଁକି ଆଧିପତ୍ୟ ବିସ୍ତାର କରିବେ? ସମସ୍ତ ଚାକିରି କ୍ଷେତ୍ରରେ ଗୋଟିଏ ଗୋଟିଏ ବିଭାଗରେ ସେମାନଙ୍କର ସଂଖ୍ୟା ଶତକଡ଼ା ୬୦ ଓ ୭୦ ଭାଗରୁ ମଧ୍ୟ ଅଧିକ । ସବୁ ବିଭାଗରେ ସେମାନେ ଉଚ୍ଚ ପଦପଦବୀରେ ରହିଛନ୍ତି । ସେମାନେ ସେମାନଙ୍କ ଲୋକକୁ ୯୦ ଭାଗବି ନିଯୁକ୍ତି ଦେଉଛନ୍ତି । ଗତ କିଛିଦିନ ତଳେ ବିଦ୍ୟୁଥଲାଇରେ ପ୍ରକାଶ ପାଇଥିବା ଏସବୁ ପରିସଂଖ୍ୟାନ ବିଷୟରେ ଆପଣମାନେ ପ୍ରାୟ ପଢିଥିବେ ।

Digitized by srujanika@gmail.com

ଏସବୁ ସତ୍ତ୍ୱ ସରକାରୀ ନିର୍ଦ୍ଦେଶ ନାମାକୁ ମାଡ୍ରାସ ହାଇକୋର୍ଟ ବେଆଇନ ଘୋଷଣା କରିଛନ୍ତି । ଯଦିବି ନ୍ୟାୟାଳୟ ଏହାକୁ ଆଇନ୍ ସମ୍ମତ ବୋଲି ଘୋଷଣା କରିଥାନ୍ତେ, ତେବେ ଏହାକୁ ଏକ ଯଥାର୍ଥ ସରକାରୀ ନିର୍ଦ୍ଦେଶନାମା ବୋଲି ଆପଣମାନେ ବିଚାର କରୁଛନ୍ତି କି ? ସମସ୍ତ ଶ୍ରେଣୀକୁ ନ୍ୟାୟ ଦେବା ପାଇଁ ଏକ ବ୍ୟବସ୍ଥା ଆମର ଏପର୍ଯ୍ୟନ୍ତ ହୋଇ ନାହିଁ । ନ୍ୟାୟ ପାଇବା ପାଇଁ ବିଗତ କେତେ ବର୍ଷ ହେଲା ଆମ୍ଭେମାନେ ଦାବି କରି ଆସିଛୁ । ମାଡ୍ରାସ ହାଇକୋର୍ଟ ବିରୋଧରେ ସୁପ୍ରିମକୋର୍ଟ ଯଦି ନିଷ୍ପତ୍ତି ଦେଇ ସରକାରୀ ନିର୍ଦ୍ଦେଶ ନାମାକୁ ଆଇନ ସମ୍ମତ କହେ. ତା ସତ୍ତ୍ୱେ ଜନସଂଖ୍ୟା ଆଧାରରେ ସମାନୁପାତିକ ପ୍ରତିନିଧିତ୍ୱ ପାଇଁ ଆମକୁ ପ୍ରତିବାଦ କରିବାକୁ ହେବ । ଯେତେବେଳେ ହେଲେ ଆନ୍ଦୋଳନ କରି ଆମକୁ ଆମର ନ୍ୟାୟୋଚିତ ଦାବି ହାସଲ କରିବାକୁ ପଡିବ । ଆମେ ବସି ରହିଲେ ଚଳିବ ନାହିଁ । ସମସ୍ତ ଶ୍ରେଣୀର ଲୋକଙ୍କ ପାଇଁ ଜନସଂଖ୍ୟା ଅନୁପାତରେ ନ୍ୟାୟ ପାଇବା ପାଇଁ ଆମକୁ ସ୍ୱର ଉଠାଇବାକୁ ହେବ ।

ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଉଛି, ଏହି ସରକାରୀ ନିର୍ଦ୍ଦେଶ ନାମା କେବଳ ରାଜ୍ୟସ୍ତରରେ କାର୍ଯ୍ୟକାରୀ ହେଉଛି । ଏହି ସରକାରୀ ନିର୍ଦ୍ଦେଶନାମା କେନ୍ଦ୍ର ସରକାର ସ୍ତରରେ ବାଧ୍ୟତାମୂଳକ ହୋଇନାହିଁ । ଚାକିରୀ କ୍ଷେତ୍ରରେ ନିଯୁକ୍ତି ଦେବାବେଳେ ଅନେକ ଅବୈଧ କାର୍ଯ୍ୟ କରାଯାଉଛି । ବ୍ରାହ୍ମଣମାନେ ରାଜ୍ୟ ସ୍ତରରେ ହେଉ ବା କେନ୍ଦ୍ର ସ୍ତରରେ ହେଉ କର୍ମସଂସ୍ଥାନ ପାଇଁ ଯେକୌଣସି ପନ୍ଥାର ଆଶ୍ରୟ ନେଉଛନ୍ତି । ସା୍ତିକ ପରିସ୍ଥିତିରେ ସରକାର ନିର୍ଦ୍ଦେଶନାମାକୁ ଯଥାର୍ଥରେ କାର୍ଯ୍ୟକାରୀ କରିବା ପାଇଁ ଗୁରୁତ୍ୱ ଦିଆଯାଉ ନାହିଁ । ସେଥିପାଇଁ ସମସ୍ତ କେନ୍ଦ୍ରସରକାରୀ ଚାକିରି କ୍ଷେତ୍ରରେ ବ୍ରାହ୍ମଣମାନେ ପ୍ରାଧାନ୍ୟ ବିସ୍ତାର କରି ରହିଛନ୍ତି । ସମସ୍ତ ଉଚ୍ଚପଦ ପଦବୀରେ ସେହି ମାନେ ହିଁ ରହିଛନ୍ତି । ରାଜ୍ୟ ସ୍ତରରେ ଚାକିରି କ୍ଷେତ୍ରରେ ବ୍ରାହ୍ମଣମାନେ ସତୁରିରୁ ଅଶି ଭାଗ ସ୍ଥାନରେ ଅଛନ୍ତି । କେନ୍ଦ୍ର ସରକାରୀ ଚାକିରି କ୍ଷେତ୍ରରେ ସମସ୍ତ ପଦ ପଦବୀ ସେମାନେ ହିଁ ମାଡି ବସିଛନ୍ତି । ସେମାନେ ଅକ୍ଲେଶରେ କର୍ମ ସଂସ୍ଥାନ ପାଇପାରୁଛନ୍ତି । ସତେ ଯେପରି ସରକାର ତାଙ୍କରି

Digitized by srujanika@gmail.com

ନିର୍ଦ୍ଦେଶରେ ଚାଲିଛି । ସେମାନେ ଅକ୍ଳେଶରେ ଖାଲିସ୍ଥାନ ସୃଷ୍ଟି କରୁଛନ୍ତି । ଯେତେବେଳେ ଜଣେ ବ୍ରାହ୍ମଣ ଛୁଟିନେଇ ଯାଉଛନ୍ତି ତାଙ୍କ ସ୍ଥାନରେ ଅସ୍ଥାୟୀ ଭାବରେ ଅନ୍ୟ ଜଣେ ବ୍ରାହ୍ମଣଙ୍କୁ ନିଯୁକ୍ତି ଦେଇ ଯାଉଛନ୍ତି । ଯେଉଁ ସମୟରେ ଜଣଙ୍କର ଛୁଟି ସରିଯାଉଛି ଆଉ ଜଣେ ଛୁଟି ନେଇ ଯାଉଛନ୍ତି । ଏହିପରି ଭାବରେ ଜଣଙ୍କୁ ସ୍ଥାୟୀ କରି ରଖିବାରେ ଏହି ଭଳି ପନ୍ଥା ସେମାନେ ପ୍ରୟୋଗ କରୁଛନ୍ତି । ଜଣେ ବ୍ୟକ୍ତି ଏହାଦ୍ୱାରା ସେତେବେଳକୁ ମାସକୁ ୫୦୦ ଟଙ୍କା ବେତନ ପାଉଛନ୍ତି । ଏହି ପ୍ରକାର ଭାବରେ ବ୍ରାହ୍ମଣମାନେ ତାଙ୍କ ନିଜ ଜାତିର ଲୋକମାନଙ୍କୁ ସାହାଯ୍ୟ କରିବାରେ ଲାଗିଛନ୍ତି । ରେଳ ବିଭାଗରେ ପରିସ୍ଥିତିକୁ ଲକ୍ଷ୍ୟକରନ୍ତୁ । ସେମାନଙ୍କ ହାତରେ ସମସ୍ତ ନିୟନ୍ତ୍ରଣ ରହିଛି । ବିଦେଶୀ ଶାସନ ସମୟରେ ଅନ୍ତତଃ ଆମେ କିଛି କର୍ମ ସଂସ୍ଥାନ ପାଉଥିଲୁ । ଏବେ ରେଳ ବିଭାଗ କ୍ଷେତ୍ରରେ ଆୟଙ୍ଗର ବ୍ରାହ୍ମଣମାନେ ସମସ୍ତ ଚାକିରିକୁ ଏକ ଚାଟିଆ କରିନେଇଛନ୍ତି । କର୍ମ ସଂସ୍ଥାନ ବିଭାଗକୁ ସେମାନେ ମାଡ୍ରାସଠାରୁ ବମ୍ବେକୁ ଉଠାଇ ନେଇଛନ୍ତି । ବୋର୍ଡରେ ଚାକିର ମନୋନୟନ କରୁଥିବା ସମସ୍ତ ମେମ୍ବର ମାନେ ପ୍ରାୟତଃ ବ୍ରାହ୍ମଣ । ଏହି ପରିସ୍ଥିତିରେ ଆମର ଲୋକମାନେ କିପରି ସେଥିରେ କର୍ମସଂସ୍ଥାନଟିଏ ପାଇବେ? ଆମେ ଯେତେ ସଂଖ୍ୟା ଗରିଷ୍ଠ ହେଲେ ମଧ୍ୟ ଆମ ପାଇଁ କର୍ମସଂସ୍ଥାନ ମିଳି ପାରିବ ନାହିଁ । କେବଳ ମାତ୍ର କେତେକ ୪ର୍ଥ ଶ୍ରେଣୀ କର୍ମଚାରୀ ଚାକିରି ଆମେ ପାଇବା । ସ_ତି ଏପରିକି ପିଅନ ଚାକିରିଟିଏ ପାଇଁ ବ୍ରାହ୍ମଣମାନେ ପ୍ରତିଯୋଗିତା ବି କରୁଛନ୍ତି । ୬୫ ହଜାର ପିଅନମାନଙ୍କ ଭିତରୁ ୧୩୦୦ ବ୍ରାହ୍ମଣ ପିଅନ ମଧ୍ୟ ଅଛନ୍ତି ।

ଏହି ପରିସ୍ଥିତିରେ ବ୍ରାହ୍ମଣମାନେ ନ୍ୟାୟାଳୟକୁ ଯିବା ଯଥାର୍ଥ କି? ସେମାନଙ୍କର ଆପତ୍ତି ହେଉଛି ଶିକ୍ଷାନୁଷ୍ଠାନରେ ସେମାନେ ନାମଲେଖା ସୁଯୋଗରୁ ବଞ୍ଚିତ ହେଉଛନ୍ତି । ବାସ୍ତବ ସ୍ଥିତିଟି କଣ ତାହା ବିଚାରକୁ ନିଆଯାଉ । ଆମେ ଯେତେବେଳେ ପରିସଂଖ୍ୟାନ ନେଇ ସରକାରଙ୍କ ପାଖରେ ଦାବି କଲୁ, ଆମେ ସରକାରୀ ହିସାବରୁ ଏହାର ଚିତ୍ର ପାଇଲୁ । କଲେଜମାନଙ୍କରେ ସେମାନେ ୯୦ ଭାଗ ସ୍ଥାନ ନେଇଛନ୍ତି । ଏସତ୍ତ୍ୱେ ସେମାନଙ୍କୁ ପାତର ଅନ୍ତର କରାଯାଉଛି ବୋଲି

Digitized by srujanika@gmail.com

ସେମାନେ କୋର୍ଟର ଆଶ୍ରୟ ନେଉଛନ୍ତି । ଅନ୍ୟ ଶ୍ରେଣୀ ପ୍ରତି ଯେଉଁ ଅନ୍ୟାୟ ହେଉଛି ସେମାନେ ସେ ସ-ର୍କରେ କୌଣସି ବ୍ୟସ୍ତତା ପ୍ରକାଶ କରୁନାହାଁନ୍ତି । ଏପରିକି ଏଘଟଣା ନେଇ ସେମାନେ ସମର୍ଥନ ପାଇଁ ଗାନ୍ଧୀଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । ଗାନ୍ଧୀ ଉତ୍ତରରେ ଲେଖିଲେ " ଆପଣମାନେ ବହୁସଂଖ୍ୟାରେ ଶିକ୍ଷାଲାଭ କରିଛନ୍ତି । ଯଦି ଆପଣମାନେ କିଛି ସମୟ ପାଇଁ ସେବାରେ ନିଜକୁ ନିୟୋଜିତ କରିବେ ତାହା ଯଥେଷ୍ଟ ମଙ୍ଗଳକର ହେବ । ଅବ୍ରାହ୍ମଣ ମାନେ ଯେଉଁମାନେ ଏପର୍ଯ୍ୟନ୍ତ ଶିକ୍ଷାର ଆଲୋକ ପାଇ ନାହାଁନ୍ତି ସେମାନେ ପଢିବାରେ ସୁଯୋଗ ପାଆନ୍ତୁ । ଏହାହିଁ ଗାନ୍ଧୀଙ୍କର ବକ୍ତବ୍ୟ । ଗାନ୍ଧୀଙ୍କର ଏହି ଉତ୍ତରରେ ବ୍ରାହ୍ମଣମାନେ ନିରୁତ୍ସାହିତ ହୋଇଥିଲେ । ଏହାର କିଛି ଦିନ ପରେ ଗାନ୍ଧୀଙ୍କର ଦେହାନ୍ତ ହେଲା ।

ମୁଁ ଏସବୁ ଆପଣମାନଙ୍କୁ କହିବାର ଉଦ୍ଦେଶ୍ୟ ହେଉଛି ଯେ ଆମେ ଯେ ନ୍ୟାୟରେ ଅଛେ ଏହା ଆପଣଙ୍କୁ ସଚେତନ କରାଇବା । ଯେକୌଣସି ବୁଦ୍ଧିମାନ ଲୋକ ଆମର ଦାବିକୁ ନିଶ୍ଚୟ ସମର୍ଥନ କରିବ । ଯଦି ସରକାରୀ ନିର୍ଦ୍ଦେଶନାମା ପାଇ ଆମେମାନେ ବ୍ୟଗ୍ରତା ପ୍ରକାଶ କରିବା ନାହିଁ, ତେବେ ଆମର ଭବିଷ୍ୟତ କଣ ହେବ ?ଆମର ପର ପିଢିର ଲୋକମାନଙ୍କର ଅବସ୍ଥା କ'ଣ ହେବ? ସମାଜରେ ଆମର ସ୍ଥାନ ଓ୍ ମର୍ଯ୍ୟାଦାନେଇ ଆମେ ସଂଗ୍ରାମ କରୁଛେ । ଆମର ସ୍ୱର ଯୋଗୁଁ ଆମକୁ ସେମାନେ ମଣିଷ ବୋଲି ସ୍ୱୀକାର କରୁଛନ୍ତି । ଜଷ୍ଟିସପାର୍ଟି ଆମର ଆଖିଖୋଲି ଦେଇଛି ଓ ଶିକ୍ଷା ପାଇଁ ଆମକୁ ଅଧିକାର ଦେଇଛି । ସରକାରୀ ନିର୍ଦ୍ଦେଶରେ ଆମ ଗୋଷ୍ଠୀର ଲୋକମାନେ ସ୍କୁଲ କଲେଜରେ ଅଧ୍ୟୟନ କରିବାକୁ ଆକର୍ଷିତ ହୋଇଛନ୍ତି । ଆମ ଭିତରୁ କେତେକ କର୍ମସଂସ୍ଥାନ ମଧ୍ୟ ପାଇଲେଣି । ଜଷ୍ଟିସ୍ ପାର୍ଟିର ଓ ସଂରକ୍ଷଣ ନିର୍ଦ୍ଦେଶ ନାମାର ଆବିର୍ଭାବ ପୂର୍ବରୁ ଆମର ସ୍ଥିତି କ'ଣ ଥିଲା ? ଜିଲ୍ଲାର ବିଚାରପତି, ତହସିଲଦାର, ମୁନସିଫ, ସବଇନସପେକ୍ଟର ସମସ୍ତେ ବ୍ରାହ୍ମଣ ଥିଲେ । ଜଷ୍ଟିସ୍ ପାର୍ଟି କ୍ଷମତାକୁ ଆସିବା ପୂର୍ବରୁ ଅବ୍ରାହ୍ମଣମାନେ ଅଶିକ୍ଷିତ ଥିଲେ । ୧୫ ବର୍ଷ ଧରି ଜଷ୍ଟିସ ପାର୍ଟିର ଶାସନ ଯୋଗୁଁ ଆମେ ମାନେ ଶିକ୍ଷାର ଆଲୋକ ପାଇଛେ । ସ୍ୱାଧୀନତା ପରେ କଂଗ୍ରେସ ଶାସନ ସମୟରେ ଆମ ଭିତରେ ସାକ୍ଷରତା ହାର ଶତକଡା ୧୦ ରୁ କମ୍ ରହିଥିଲା ।

Digitized by srujanika@gmail.com

ଯଦି ଆମର ଲୋକମାନେ ଶିକ୍ଷା ପାଇ ନାହାଁନ୍ତି ତେବେ ଏହା ତାଙ୍କର ତ୍ରୁଟି ନୁହେଁ। ଶିକ୍ଷା ପାଇଁ ଆମେ ଅନୁପଯୁକ୍ତ ବୋଲି କହିବା କି ? ବରଂ ବାସ୍ତବ କଥା ହେଉଛି ପଢିବା ପାଇଁ ଆମ ପାଇଁ ସୁଯୋଗ ନଥିଲା କିମ୍ବା କୌଣସି ପ୍ରୋତ୍ସାହନ ନଥିଲା। ଅଧିକାଂଶ ଶୂଦ୍ର ଲୋକ ଥିଲେ ଶ୍ରମଜୀବୀ, ପ୍ରତିଦିନ ମୂଲ ଲାଗି ସେମାନେ ଅଳ୍ପଟଙ୍କା ପାଉଥିଲେ। ଯେତେବେଳେ ଜିନିଷ ପତ୍ରର ଦାମ୍ ବଢିଲା ସେମାନେ ଅଧିକ ମଜୁରୀ ପାଇଲେ। ଏହି ସାମାଜିକ ସ୍ଥିତିରେ ଜଣେ ଶଗଡିଆ, ଝାଡୁଦାର, ମୋଚି, ମୂଲିଆ ଓ ଅନ୍ୟମାନଙ୍କର ପିଲା କିପରି ପଢିପାରିଥାନ୍ତେ? ବ୍ରାହ୍ମଣମାନଙ୍କ ଅବସ୍ଥା କଥା ଚିନ୍ତା କରନ୍ତୁ। ଜଣେ ସାଧାରଣ ଘରର ପିଲା ବିଏ ପଢିବାକୁ ମଧ୍ୟ ସମର୍ଥ। ସେ ଅକ୍ଳେଶରେ କୌଣସି ଚାକିରି କିମ୍ବା ବିଚାରପତି ମଧ୍ୟ ହୋଇ ପାରୁଥିଲେ। ସେମାନଙ୍କର ଜାତିଗତ ଶ୍ରେଷ୍ଠତା ସେମାନଙ୍କୁ ସହଜରେ ଉଚ୍ଚସ୍ଥାନ ଦେଇ ପାରୁଥିଲା। ନିଜ ଜାତିର ପରିଚୟ ଦେଇ ସେମାନେ ଯେ କୌଣସି ସାହାଯ୍ୟ ପାଇ ପାରୁଥିଲେ। କେତେକ ଗରିବ ବ୍ରାହ୍ମଣଙ୍କ ପିଲାମାନେ ଅକ୍ଳେଶରେ ପଢିପାରୁଥିଲେ । ଆମମାନଙ୍କ ଭିତରେ ଅତ୍ୟନ୍ତ ଧନୀ ଲୋକର ପିଲା ବା ଜମିଦାର ଘରର ପିଲା କିନ୍ତୁ ପଢିବାର ସୁଯୋଗ ପାଉଥିଲେ । ବହୁ ଚେଷ୍ଟା କରି ଅତ୍ୟନ୍ତ ପ୍ରତିକୂଳ ପରିବେଶରେ ଯିଏ ବି କିଛି ପଢୁଥିଲା ସେଥିରେ ମଧ୍ୟ ତାର କୌଣସି ଭବିଷ୍ୟତ ନଥିଲା । ଆମକୁ ନା ଚାକିରି ମିଳୁଥିଲା ନା ଉଚ୍ଚ ଶିକ୍ଷାରେ ସ୍ଥାନଟିଏ ଦିଆଯାଉଥିଲା। ଯୋଗ୍ୟତା ଓ ଏକନିଷ୍ଠତାକୁ ଆମ ବିରୁଦ୍ଧରେ ପ୍ରୟୋଗ କରାଯାଉଥିଲା। ଆମ ପିଲାମାନଙ୍କ ଭିତରୁ ଯେଉଁମାନେ ଉଚ୍ଚଶିକ୍ଷା ପାଇଁ ଯୋଗ୍ୟ ବିବେଚିତ ହେଉଥିଲେ, ସେମାନଙ୍କୁ ଉଚ୍ଚଶିକ୍ଷା କ୍ଷେତ୍ରରେ ସ୍ଥାନ ଦିଆଯାଉନଥିଲା। ପାଠ ପଢିବାକୁ ଆମକୁ ନିରୁତ୍ସାହିତ କରାଯାଉଥିଲା। ଆମେ କିନ୍ତୁ ପିଲାମାନଙ୍କୁ ପଢାଇବା ଚାହୁଁ, ଏହା କଣ ଆମର ଅପରାଧ?

ମନୋନୟନ ପ୍ରକ୍ରିୟାରେ କେତେଗୁଡିଏ ତ୍ରୁଟି ରହିଥିଲା। ଚଳିତ ବର୍ଷ ୬୮୦୦୦ ପିଲା ମାଟ୍ରିକ୍ ପରୀକ୍ଷା ଦେଇଥିଲେ ଓ ସେଥିରୁ ୩୮୦୦୦ ଛାତ୍ର ଅକୃତକାର୍ଯ୍ୟ ହେଲେ। ଫେଲ୍ ହୋଇଥିବା ପିଲାମାନେ କଣ ବୁଦ୍ଧିହୀନ ଥିଲେ?

Digitized by srujanika@gmail.com

ମାଟ୍ରିକ୍ ପରୀକ୍ଷା ପର୍ଯ୍ୟନ୍ତ ପଢିବାରେ କେତେ ଅର୍ଥ ବ୍ୟୟ ହୋଇଛି । ଏହି ପରିସ୍ଥିତିରେ ଏତେ ପିଲାଙ୍କୁ ଶିକ୍ଷାରୁ ବିଦାୟ ଦେବା କେତେ ଦୂର ଯଥାର୍ଥ ? ମୋର ମନେ ହୁଏ ଯେଉଁ ଧାରାରେ ଶିକ୍ଷକମାନଙ୍କୁ ପ୍ରଶିକ୍ଷିତ କରାଯାଉଛି, ସେଥିରେ କିଛି ତ୍ରୁଟି ରହୁଛି, ଏହା ସହିତ ଆମର ପରୀକ୍ଷା ପଦ୍ଧତି ମଧ୍ୟ ତ୍ରୁଟି ପୂର୍ଣ୍ଣ । ଗୋଟିଏ ପରେ ଗୋଟିଏ ପ୍ରତିବନ୍ଧକ ଅତିକ୍ରମ କଲାପରେ ଯେତେବେଳେ ଆମର ପିଲାମାନେ ମାଟ୍ରିକ୍ ପାସ୍ କରି କଲେଜରେ ନାମଲେଖା ପାଇଁ ଆବେଦନ କରୁଛନ୍ତି, ସେତେବେଳେ ସେମାନଙ୍କୁ ନାମ ଲେଖାର ସୁଯୋଗ ଦିଆଯାଉନାହିଁ । କୁହାଯାଉଛି ସେମାନଙ୍କର ଉଚ୍ଚଶିକ୍ଷା ପାଇଁ ଯୋଗ୍ୟତା ନାହିଁ । ଏହା କେତେଦୂର ନ୍ୟାୟ ପୂର୍ଣ୍ଣ! ଆମକୁ କାହିଁକି ଚାକିରିରେ ନିଯୁକ୍ତି ଦିଆଯାଉ ନାହିଁ ବୋଲି ପ୍ରଶ୍ନ ଉଠିଲେ କୁହାଯାଉଛି ଆମର ଆବଶ୍ୟକ ଯୋଗ୍ୟତା ନାହିଁ । କଲେଜରେ ନାମଲେଖାଇ ଯୋଗ୍ୟତା ଅର୍ଜନ ପାଇଁ ଉଦ୍ୟମ କଲେ ସେହି ସୁଯୋଗରୁ ଆମକୁ ବଞ୍ଚିତ କରାଯାଉଛି । ପଢିବା ପାଇଁ ଯୋଗ୍ୟତା ନଥିବା କଥା ଓ ଚାକିରି ପାଇଁ ଶିକ୍ଷା ନଥିବା କଥା କୁହାଯାଇ ସବୁ କ୍ଷେତ୍ରରେ ଆମକୁ ବଞ୍ଚିତ କରାଯାଉଛି ।

ସ୍ତୁତି ଯୋଗ୍ୟତାର ମୂଲ୍ୟାୟନ ପାଇଁ ନମ୍ବରକୁ କେବଳ ମାନଦଣ୍ଡ ଭାବେ ନିଆଯାଉଛି । ଯେଉଁମାନେ ଅଧିକ ନମ୍ବର ରଖୁଛନ୍ତି ସେମାନେ କେବଳ ବୁଦ୍ଧିମାନ ବୋଲି କୁହାଯାଇ ପାରିବ କି ? ଅଧିକ ନମ୍ବର ରଖିବା କେବଳ ଘୋଷିକି ମନେ ରଖିବା ଉପରେ ନିର୍ଭର କରେ । ଏହା ସହିତ ଅଧିକ ନମ୍ବର କିପରି ପିଲାମାନେ ରଖନ୍ତି ତା ବି ବେଶ୍ ଜଣାଶୁଣା । ପରୀକ୍ଷା ସରିବା ପରେ ପରେ ପରୀକ୍ଷା ଖାତା ଦେଖାଯାଉଥିବା ସ୍ଥାନ ମାନଙ୍କୁ ଲୋକମାନେ ଟଙ୍କା ପଇସା ନେଇ ଯାଆନ୍ତି । ଅଧିକ ନମ୍ବର ରଖିବାରେ କେତେକ ଅସାଧୁ ପନ୍ଥା ଅବଲମ୍ବନ କରିବା ବେଶ୍ ଜଣାଶୁଣା । ଏସବୁ ବିଷୟ ଆମର ମନ୍ତ୍ରୀମାନେ ଜାଣନ୍ତି କି ନାହିଁ? କେତେକ ମନ୍ତ୍ରୀ ମଧ୍ୟ ଏହି ପନ୍ଥାରେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାର ପ୍ରୟାସ କରିଥାଇପାରନ୍ତି । ଯଦିବି ସେମାନେ ଏ ବିଷୟରେ ଅଭିଜ୍ଞ ନୁହଁନ୍ତି, ତେବେ ବି ସେମାନଙ୍କର ପିଲାମାନଙ୍କ ପାଇଁ ସେମାନେ ଅସାଧୁ ପନ୍ଥାର ଅନୁଭୂତି ରଖିଥାଇ ପାରନ୍ତି । ଟଙ୍କା ବଦଳରେ ଅଧିକ ନମ୍ବର ଯେ

Digitized by srujanika@gmail.com

ରଖିହେବ ଏହା ବେଶ୍ ଜଣାଶୁଣା । ବ୍ରାହ୍ମଣ ପିଲାମାନଙ୍କୁ ନାନାଭାବରେ ସାହାଯ୍ୟ କରାଯିବା କଥା ଏକ ଖୋଲାକଥା ବା ଓପନ ସିକ୍ରେଟ୍ କହିଲେ ଅତ୍ୟୁକ୍ତି ହେବନାହିଁ । ଅଧିକାଂଶ ବ୍ରାହ୍ମଣ ଶିକ୍ଷକମାନେ ଏସବୁ କରୁଥିବା ସମସ୍ତେ ଜାଣନ୍ତି । ଆମର ପିଲାମାନେ ପରୀକ୍ଷା ପରେ କେବଳ ବିନାୟକ ମନ୍ଦିରକୁ ଯାଇଥାନ୍ତି । ବ୍ରାହ୍ମଣ ପିଲାମାନେ ମନ୍ଦିରକୁ ନଯାଇ ସେମାନେ ସେମାନଙ୍କ ଜାତିର ଶିକ୍ଷକ, ପରୀକ୍ଷକ ମାନଙ୍କ ପାଖକୁ ଯିବାକୁ ପସନ୍ଦ କରିଥାନ୍ତି । ଏହି ପରିସ୍ଥିତିରେ ନମ୍ବର ଭିତ୍ତିରେ ଯୋଗ୍ୟତାକୁ ମାପିବା କେତେ ଦୂର ଯଥାର୍ଥ ?

ରୁଷ ଦେଶରେ ଏକ ନିର୍ଦ୍ଦିଷ୍ଟ ବୟସ ସୀମା ପର୍ଯ୍ୟନ୍ତ ସମସ୍ତଙ୍କୁ ଶିକ୍ଷା ଦିଆଯାଏ । ଶିକ୍ଷାପରେ ସେମାନଙ୍କର ଏକ ଟେଷ୍ଟ ହୁଏ, ଏହାପରେ ସେମାନଙ୍କୁ ଆବଶ୍ୟକୀୟ ପ୍ରଶିକ୍ଷଣ ଦିଆଯାଇ କର୍ମ ସଂସ୍ଥାନରେ ରଖାଯାଏ । ଜଣେ ନିଜର କାର୍ଯ୍ୟକୁ କିପରି କରୁଛି ତାହାହିଁ ତାର ଯୋଗ୍ୟତାର ମାପକାଠି । ଆମ ବ୍ୟବସ୍ଥାରେ କିନ୍ତୁ ପରୀକ୍ଷାକୁ ଗୁରୁତ୍ୱ ଦେଇ ତାହାକୁ ଜଟିଳ କରାଯାଏ । ଅନ୍ୟଦେଶ ମାନଙ୍କର ଏହି ପଦ୍ଧତିକୁ ଗ୍ରହଣ କରାଯାଏ ନାହିଁ । ଆମ ଦେଶରେ ପରୀକ୍ଷାକୁ ଜଟିଳ କରାଯାଇ ସେଥିରେ ଛାତ୍ରମାନଙ୍କ ଯୋଗ୍ୟତାକୁ ମପାଯାଏ ।

ବନ୍ଧୁଗଣ, ମୋ ମତରେ ପ୍ରତ୍ୟେକ ଶ୍ରେଣୀ ବା ଗୋଷ୍ଠୀ ସେମାନଙ୍କ ଜନସଂଖ୍ୟା ଅନୁପାତରେ ସେମାନଙ୍କୁ ଆନୁପାତିକ ସ୍ଥାନ ଦିଆଯିବା ଆବଶ୍ୟକ । ଯଦି କୌଣସି ଶ୍ରେଣୀ ସେମାନଙ୍କ ସଂଖ୍ୟା ଠାରୁ ଅଧିକ ସଂଖ୍ୟାରେ ନିଯୁକ୍ତ ହେଉଛନ୍ତି, ତେବେ ସରକାର ଏ କ୍ଷେତ୍ରରେ ବିହିତ ପଦକ୍ଷେପ ନେବା ଆବଶ୍ୟକ । ଯେଉଁମାନେ ନିଯୁକ୍ତି ଦେଉଛନ୍ତି କିମ୍ବା ଯେଉଁମାନଙ୍କୁ ନିଯୁକ୍ତି ଦେଉଛନ୍ତି, ସେମାନଙ୍କ ବିରୁଦ୍ଧରେ ସରକାର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଆବଶ୍ୟକ । କାରଣ ଏହାଦ୍ୱାରା ଅନ୍ୟର ଅଧିକାର ଉପରେ ହସ୍ତକ୍ଷେପ ହୋଇଥାଏ । ସେପରି ସ୍ଥଳେ ଆଇନଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାରେ ଅସୁବିଧା ନାହିଁ । ନହେଲେ ଆଗରେ ଥିବା ଉଚ୍ଚ ଜାତିର ଲୋକମାନେ ଅଧିକ ବିକାଶ ହାସଲ କରିବେ ଓ ପଛୁଆ ବର୍ଗର ଲୋକମାନେ ଅଧିକ ପଛୁଆ ହୋଇ ଚାଲିବେ । ସ୍ୱାଧୀନତା ବ୍ରାହ୍ମଣମାନଙ୍କ ପାଇଁ ଅନେକ ସୁଯୋଗ

Digitized by srujanika@gmail.com

ସୃଷ୍ଟି କରିଛି । ସେମାନେ ଦ୍ରୁତଗତିରେ ପ୍ରଗତି ହାସଲ କରୁଛନ୍ତି । ଅତୀତରେ ଭାରତୀୟ ପ୍ରଶାସନିକ ଚାକିରି ପାଇଁ ପରୀକ୍ଷା ଲଣ୍ଡନରେ ଅନୁଷ୍ଠିତ ହେଉଥିଲା । ସରକାର ଯେହେତୁ ଖର୍ଚ୍ଚବହନ କରୁଥିଲେ ବ୍ରାହ୍ମଣମାନେ ପରୀକ୍ଷାରେ ସଫଳତା ହାସଲ କରୁଥିଲେ । ସେମାନେ କୌଶଳପୂର୍ଣ୍ଣ ଭାବରେ ଖ୍ରୀଷ୍ଟିଆନ ଓ ମୁସଲିମ୍ ମାନଙ୍କୁ ଅବ୍ରାହ୍ମଣ ଶ୍ରେଣୀରେ ଅନ୍ତର୍ଭୁକ୍ତ କରିଥିଲେ । ସାଧାରଣ ଜୀବନରେ ସେମାନେ ବ୍ରାହ୍ମଣମାନଙ୍କୁ ମାନିକି ରହୁଥିଲେ । ସେମାନେ ଜାଣିଶୁଣି ଅବ୍ରାହ୍ମଣମାନଙ୍କୁ ବଳୟ ବାହାରେ ରଖୁଥିଲେ । ସ୍ୱାଧୀନତା ପରେ ପ୍ରଶାସନିକ ଚାକିରି ବା ପୋଲିସ୍ ଚାକିରି (ଆଇ ଏ.ଏସ୍. ଓ ଆଇ.ପି. ଏସ୍. ପଦବୀ) କ୍ଷେତ୍ରରେ ବ୍ରାହ୍ମଣମାନେ ଏକ ଚାଟିଆ ହୋଇ ରହିଛନ୍ତି । ସବୁ ବଡ ବଡ ପଦ ପଦବୀରେ ଚାକିରି ବ୍ରାହ୍ମଣମାନଙ୍କ ନିୟନ୍ତ୍ରଣରେ ରହିଛି । ମୁଷ୍ଟିମେୟ ଲୋକ ସବୁ ସୁବିଧା ସୁଯୋଗ ଉପଭୋଗ କରୁଛନ୍ତି । ଏହା କ'ଣ ଗଣତନ୍ତ୍ର? ଆମ ପ୍ରଶାସନିକ ବ୍ୟବସ୍ଥା କେତେ ଦୂର ନ୍ୟାୟ ସମ୍ମତ? ଯେଉଁଠି ସମାଜର ଶତକଡା ୮୭ ଭାଗ ଲୋକ ଚିରନ୍ତନ ଦୁଃଖ ଭିତରେ ରହିଛନ୍ତି, ସେଠାରେ କେଉଁ ଗଣତନ୍ତ୍ର ରହିଛି? ସବୁ ସ୍ତରରେ ଶତକଡା ୩ଭାଗ ଲୋକ ପ୍ରାଧାନ୍ୟ ବିସ୍ତାର କରି ରହିବା କେତେ ଦୂର ଯଥାର୍ଥ? ନ୍ୟାୟ ସଙ୍ଗତ ଓ ଯୁକ୍ତିଯୁକ୍ତ ଅଧିକାର ପାଇଁ ଆମେ ଦାବି କରିବା ଭୁଲ୍ କି? ଆମେ ନ୍ୟାୟ ଦାବି କରୁଛେ । ଆମେ ମାନବିକ ମର୍ଯ୍ୟାଦା ପାଇଁ ସଂଗ୍ରାମ କରୁଛେ । ସରକାରରେ ଆମର କିଛି ଭାଗ ପାଇଁ ଆମେ ସ୍ୱର ଉଠାଉଛେ । ଆମେ ଏସବୁ କଲାବେଳେ ଅନ୍ୟମାନେ ଆମ ପ୍ରତି ଏତେ କ୍ରୋଧ କାହିଁକି ପ୍ରକାଶ କରିବେ?

ଏକ ସଭାରେ ଭାଷଣ ଦେଲାବେଳେ ସଂରକ୍ଷଣ ଜନିତ ସରକାରୀ ନିର୍ଦ୍ଦେଶନାମାଙ୍କୁ ବିଚାରକୁ ନେବେ ବୋଲି କାମରାଜ ଲୋକଙ୍କୁ ପ୍ରତିଶ୍ରୁତି ଦେବା କଥା ମୁଁ ଜାଣିବାକୁ ପାଇଲି । ତାଙ୍କ ସରକାର ହାଇକୋର୍ଟ ନିର୍ଦ୍ଦେଶ ବିରୋଧରେ ସୁପ୍ରିମ୍ କୋର୍ଟରେ ଆବେଦନ କରିବ ବୋଲି ସେ କହୁଛନ୍ତି । ସେ ମୋ ବିରୁଦ୍ଧରେ ଅଭିଯୋଗ କରିଛନ୍ତି ଯେ, ମୁଁ କଠିନ ଦାବି କରୁଛି । ପ୍ରକୃତରେ କାମରାଜ କଣ କହିବାକୁ ଚାହାଁନ୍ତି ମୁଁ ତାହା ଜାଣେନାହିଁ । ଗତ ୩୦ ବର୍ଷ ଧରି ମୁଁ ସାଧାରଣ

Digitized by srujanika@gmail.com

ଜୀବନରେ ରହିଛି ଓ ନିସ୍ୱାର୍ଥପର ଭାବରେ ମୋର କାର୍ଯ୍ୟ କରିଛି । ଶୂଦ୍ର ଓ ଦଳିତ ମାନଙ୍କର ଉତ୍‌ଥାନପାଇଁ ମୁଁ ଯାହା କିଛି କରିଛି । ତାର ପ୍ରତିବଦଳରେ ସାମାନ୍ୟ କିଛି ଆଶା କରିନାହିଁ । ମୋ ନିଜ ପାଇଁ କିଛି ଗୋଟିଏ କାମ କରିଥିବାର କୌଣସି ଦୃଷ୍ଟାନ୍ତ କାମରାଜ ଦେଇ ପାରିବେ କି? ସମାଜର ମୁକ୍ତି ପାଇଁ ମୁଁ କାମ କରି ଚାଲିଛି । ସମାଜରୁ ସକଳ ଭେଦଭାବ ଦୂର କରିବା ହିଁ ମୋର ଲକ୍ଷ୍ୟ । ସମାଜର ସବୁ ମଣିଷ କିପରି ସମ୍ମାନ ଓ ମର୍ଯ୍ୟାଦା ସହ ଜୀବନଧାରଣ କରିବେ ସେ ପାଇଁ ମୁଁ ପ୍ରୟାସ କରି ଆସିଛି, ସମାଜର ସବୁ ଶ୍ରେଣୀର ଲୋକ ଯେପରି ସମାନ ନ୍ୟାୟ, ସୁଯୋଗ ଓ ପରିବେଶ ପାଇବେ ତାହା ହିଁ ମୋର ଉଦ୍ଦେଶ୍ୟ ହୋଇ ରହିଛି । ଲୋକମାନଙ୍କୁ ଆତ୍ମସମ୍ମାନ ଓ ଆତ୍ମ ମର୍ଯ୍ୟାଦା ଦେବାପାଇଁ ମୁଁ ଉତ୍ସର୍ଗୀକୃତ ଭାବେ ଲକ୍ଷ୍ୟ ରଖିଛି ।

ଯଦି ମୁଁ ଏହି ଲକ୍ଷ୍ୟ ଦିଗରେ ଏ ପର୍ଯ୍ୟନ୍ତ କାର୍ଯ୍ୟକରି ନଥାନ୍ତି ତେବେ କାମରାଜ ଆଜି ତାମିଲ୍‌ନାଡୁ କଂଗ୍ରେସର ସଭାପତି ହୋଇଥାନ୍ତେ କି? ୧୨ ଜଣିଆ ମନ୍ତ୍ରୀ ମଣ୍ଡଳରେ ୧୧ ଜଣ ଅବ୍ରାହ୍ମଣ ମନ୍ତ୍ରୀ ରହିବା କେବେ ସମ୍ଭବ ହୋଇଥାନ୍ତାକି? ଆମେ ଯେତେବେଳେ ଆତ୍ମମର୍ଯ୍ୟାଦା ଆନ୍ଦୋଳନ ଆରମ୍ଭ କଲୁ, ସେତେବେଳେ ଏହି ଅବ୍ରାହ୍ମଣ ମାନଙ୍କର ସାମାଜିକ ସ୍ଥିତି କଣ ଥିଲା? ସେମାନେ ତାହା ଚିନ୍ତା କରନ୍ତୁ । ମୁଁ ସଭାପତି, ସ-ାଦକ, ଚେୟାରମ୍ୟାନ ଇତ୍ୟାଦି ବିଭିନ୍ନ ଅନୁଷ୍ଠାନର ପଦ ପଦବୀରେ ଏକଦା ରହିଥିଲି । ତାହା ସହିତ ମୋର ଏକ ବଡ ବ୍ୟବସାୟ ଥିଲା । ମୁଁ କୌଣସି ସମୟରେ ସମାଜରେ ଅଦୃଶ୍ୟ ରହିନଥିଲି । ଆମର ଆନ୍ଦୋଳନ ଯୋଗୁ ଆଜି ସାଧାରଣ ଶ୍ରେଣୀର ଲୋକମାନେ ଉଚ୍ଚ ପଦପଦବୀକୁ ଆସିପାରିଛନ୍ତି । ଏବେ ମୋର କଥାକୁ କୌଣସି ଗୁରୁତ୍ୱ ନଦେବା ପାଇଁ ସେମାନେ ଛାତ୍ରମାନଙ୍କୁ ଉପଦେଶ ଦେଉଛନ୍ତି । ସେମାନେ ମୋତେ ପ୍ରତ୍ୟାଖ୍ୟାନ କରି ଯାଇ ବ୍ରାହ୍ମଣ ମାନଙ୍କର ପାଦ ଧୋଇଦେବାରେ ମୋର କିଛି କ୍ଷତି ହେବନି । ମୁଁ ଏବେ ବୁଢ଼ା ହୋଇଗଲିଣି ଓ ମୋର ଶେଷ ସମୟ ଖୁବ୍ ନିକଟ ହୋଇ ଆସୁଛି ।

Digitized by srujanika@gmail.com

ଆମର ପିଲାମାନେ କାହିଁକି ପଢୁଛନ୍ତି? ସେମାନେ ବିଦ୍ୟାଳୟ ଶିକ୍ଷାପରେ କଲେଜ ଶିକ୍ଷା ପାଇଁ ଯିବେ ନାହିଁକି? ସେମାନେ ଉଚ୍ଚ ଚାକିରି ପାଇବା ପାଇଁ ଆଶା କରିବେ ନାହିଁକି? ବୟସ୍କମାନେ ପିଲାମାନଙ୍କ ପାଇଁ ରାସ୍ତା ଦେଖାଇବେ ନାହିଁକି? ଏହିବର୍ଷ ଡଃ ସୁବ୍ରମନ୍ୟଙ୍କ ପାଖକୁ ମୁଁ ଏକ ପତ୍ରଲେଖିଥିଲି । ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିବା ଜଣେ ଛାତ୍ରଙ୍କ ବିଷୟରେ ମୁଁ ତାଙ୍କୁ ସୁପାରିଶ କରିଥିଲି । ସେ କଲେଜରେ ନାମ ଲେଖାଇ ପାରିଲେ ନାହିଁ । ଅତୀତରେ ମୁଁ ଏହିଭଳି ଅନେକ ଚିଠି ଲେଖିଛି ଫଳରେ ଅନେକ ଛାତ୍ର ପଢିବାର ସୁଯୋଗ ପାଇଛନ୍ତି । ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିବା ଆମର ଛାତ୍ରଛାତ୍ରୀଗଣ ଉଚ୍ଚ ଶିକ୍ଷାର ସୁଯୋଗ ନପାଇବା ଦୁର୍ଭାଗ୍ୟର କଥା ନୁହେଁ କି?

ଆମେ ପାଠ ପଢି ଅନ୍ୟର ଗୋଲାମ ହେବାକୁ ଚାହିଁବା କି? ଶିକ୍ଷା କ୍ଷେତ୍ରରେ କେତେକୋଟି ଟଙ୍କା ଖର୍ଚ୍ଚ ନହେଉଛି, ଏହାର ସୁଫଳ ଆମର ଛାତ୍ରମାନେ ନପାଇବା ଆମ ପାଇଁ କଷ୍ଟ ଦାୟକ ନୁହେଁ କି? ସେଥିପାଇଁ ଏ ସମସ୍ୟାର ଏକ ସମାଧାନ ମୁଁ ଚାହୁଁଛି ।

ଆମର ପରବର୍ତ୍ତୀ କାର୍ଯ୍ୟକ୍ରମ ଆଉ ଏକ ଜଟିଳ କାର୍ଯ୍ୟ । ସେଥିପାଇଁ ଆମକୁ କିଛି ତ୍ୟାଗ ସ୍ୱୀକାର କରିବାକୁ ପଡିବ । ଆମେ କୌଣସି ପ୍ରକାରର ହିଂସାର ଆଚରଣ କରିବା ନାହିଁ । ଆମେ କାହାକୁ ପୀଡା ଦେବା ନାହିଁ କିମ୍ବା କାହା ପ୍ରତି ପ୍ରତିହିଂସା ପରାୟଣ ହେବା ନାହିଁ । ଆମ ଆନ୍ଦୋଳନ କ୍ଷେତ୍ରରେ ଯାହା କିଛି ପ୍ରତିବନ୍ଧକ ଆସିବ ଆମେ ତାହାକୁ ଆମର ସଫଳତା ପାଇଁ ସହିବା । ଆନ୍ଦୋଳନ ଜରିଆରେ ଆମେ ଆମର ଇପ୍‌ସିତ ଲକ୍ଷ୍ୟ ହାସଲ କରିପାରିବା ।

ଦିଲ୍ଲୀରେ ଥିବା ସରକାର ଆମର କଣ ମଙ୍ଗଳ ସାଧନ କରୁଛି? ଆମେ ଆମର ଶାସନ ଭାର ନେଇପାରିବା କି ନାହିଁ? ଆମ ରାଜ୍ୟ ପ୍ରାକୃତିକ ସ-ଦରେ ଭରପୁର ହୋଇ ରହିଛି । ଆମର ୧୫୦୦ ମାଇଲ ସମୁଦ୍ରତଟ ରହିଛି । ଆମର ଜାହାଜ ପୃଥିବୀର ଯେକୌଣସି ଦେଶକୁ ଯାଇ ପାରିବ । ଆମର ଉନ୍ନତ ରେଲସେବା ରହିଛି । ଆମେ କାହିଁକି ଆମର ଅଧିକାରକୁ ଦିଲ୍ଲୀକୁ ସମର୍ପି ଦେବା? ସେମାନଙ୍କ

Digitized by srujanika@gmail.com

ଶୋଷଣର ଆମେ କାହିଁକି ଶରବ୍ୟ ହେବା? ଆମର ମନ୍ତ୍ରୀ ମାନଙ୍କୁ ଦିଲ୍ଲୀରେ କଣ ସମ୍ମାନ ମିଳୁଛି? ଏ.ଏଲ୍. ମୁଦାଲିଅର ଏସ-ର୍କରେ କାଉନସିଲରେ ସ୍ପଷ୍ଟ ବକ୍ତବ୍ୟ ରଖୁଛନ୍ତି।

ଉତ୍ତର ଭାରତ ଦକ୍ଷିଣ ଭାରତକୁ ସର୍ବଦା ହେୟ କରି ଆସିଛି। ଦକ୍ଷିଣକୁ ଶୋଷଣ କରାଯାଉଛି। ଆମକୁ କାହିଁକି ନ୍ୟୁନ ଓ ଦଳିତ କରି ରଖାଯିବ? ଆମ ହାତକୁ କ୍ଷମତା ଆସିଲେ ଆମେ ଅନେକ ସମସ୍ୟାକୁ ସମାଧାନ କରିବା। ଆମର ଯେଉଁ ଖାଦ୍ୟାଭାବ ପରିସ୍ଥିତି ରହୁଛି, ଆମେ ସେଥିପାଇଁ ବିଦେଶରୁ ଖାଦ୍ୟ ଆମଦାନୀ କରିପାରିବା। ଏବେ ଏ ଅଧିକାର ଆମର ନାହିଁ। ସେମାନେ ଯେଉଁ ଖାଦ୍ୟଶସ୍ୟ ଆଣି ଆମକୁ ଦେଉଛନ୍ତି ସେହି କୋଟା ଆମର ଲୋକଙ୍କ ପାଖକୁ ଆସିଲା ବେଳକୁ ତାହା ବ୍ୟବହାର ଉପଯୋଗୀ ହେଉନାହିଁ। ଆମର ଲୋକମାନେ ଏଠାରେ ଅନେକ ଦୁଃଖକଷ୍ଟ ଭୋଗୁଛନ୍ତି। ସେମାନେ ଆମ ଲୋକଙ୍କ ଜୀବନ ସହ ଖେଳ ଖେଳୁଛନ୍ତି। ଏହି ସ୍ଥିତିରୁ ମୁକ୍ତିପାଇଁ ଆମେ ଉଦ୍ୟମ କରିବା ଠିକ୍ ହେବ ନାହିଁ କି?

ଆଜିର ଆନ୍ଦୋଳନ ସଂରକ୍ଷଣ ଜନିତ ସରକାରୀ ନିର୍ଦ୍ଦେଶ ପାଇଁ ନୁହେଁ। ଦ୍ରାବିଡ ଲ୍ୟାଣ୍ଡର ମୁକ୍ତିପାଇଁ ଆମର ଆନ୍ଦୋଳନ ଉଦ୍ଦିଷ୍ଟ । ରାଜାଜୀ ଯେତେବେଳେ ଆମ ଉପରେ ହିନ୍ଦୀକୁ ଲଦି ଦେବାକୁ ଚାହିଁଲେ, ସେତେବେଳେ ସମସ୍ତ ତାମିଲ ଏକତ୍ରିତ ହୋଇ ଏହା ବିରୁଦ୍ଧରେ ଆନ୍ଦୋଳନ କଲେ। ଆଜିର ଆନ୍ଦୋଳନ ଦ୍ୱାରା ଆମେ ସୁସଂଗଠିତ ହୋଇ ଆର୍ଯ୍ୟମାନଙ୍କର ଶୋଷଣ ବିରୁଦ୍ଧରେ ସ୍ୱର ଉଠାଇବା ଆବଶ୍ୟକ। ଆମେ ଆମର ମୁକ୍ତି ପାଇଁ ସଂଗ୍ରାମ କରିବା ଦରକାର। ଏହି ମୁକ୍ତି ଆନ୍ଦୋଳନରେ ଆପଣମାନେ ନିଜର ସ-ୃକ୍ତି ଦେବାକୁ ମୁଁ ଆପଣମାନଙ୍କୁ ନିବେଦନ କରୁଛି।



Digitized by srujanika@gmail.com

## ପରିଚ୍ଛେଦ - ୯

# ବ୍ରାହ୍ମଣମାନେ ସଂରକ୍ଷଣକୁ ଘୃଣା କରନ୍ତି କାହିଁକି ?

(ପେରିୟାର ଇ.ଭି. ରାମସ୍ୱାମୀ ୧୯୨୫ ମସିହାରେ କଂଗ୍ରେସ ପରିତ୍ୟାଗ କଲେ। ସାଧାରଣ କର୍ମ ସଂସ୍ଥାନ କ୍ଷେତ୍ରରେ ଶ୍ରେଣୀଗତ ସଂରକ୍ଷଣ ବ୍ୟବସ୍ଥାକୁ ତାମିଲନାଡୁ କଂଗ୍ରେସ କମିଟି ଗ୍ରହଣ କଲା ନାହିଁ। କାରଣ ବ୍ରାହ୍ମଣମାନେ କଂଗ୍ରେସରେ ଆଧିପତ୍ୟ ବିସ୍ତାର କରି ରହିଥିଲେ। ପେରିୟାର ମୃତ୍ୟୁ ପର୍ଯ୍ୟନ୍ତ ସଂରକ୍ଷଣର ସମର୍ଥକ ଥିଲେ। ସମସ୍ତ ଶ୍ରେଣୀର ଲୋକଙ୍କ ପାଇଁ ସଂରକ୍ଷଣ ବିଷୟରେ ତାଙ୍କର ଯାହା ମତ ଥିଲା, ତାହା ଏଠାରେ ବ୍ୟକ୍ତ କରାଯାଇଛି)

ପ୍ରତ୍ୟେକ ରାଷ୍ଟ୍ର ଓ ସରକାର ସବୁଶ୍ରେଣୀର ଅଧିକାରକୁ ସୁରକ୍ଷା ଦେବା ଉଚିତ୍। ସଂରକ୍ଷଣର ଆଭିମୂଖ୍ୟ ହେଉଛି ସମାଜରେ ଥିବା ନାଗରିକମାନଙ୍କ ଭିତରେ ଥିବା ବୈଷମ୍ୟକୁ ଦୂର କରିବା। ଶ୍ରେଣୀଗତ ସଂରକ୍ଷଣ ଏକ ସମତା ଭିତ୍ତିକ ସମାଜ ଗଠନ ପାଇଁ ପ୍ରୟାସ। ଯଦି ସମାଜରେ କେତେକ ଶ୍ରେଣୀ ବିକଶିତ ଓ ସ୍ୱଚ୍ଛଳ ଯେଉଁମାନେ ଅନ୍ୟଶ୍ରେଣୀର ଲୋକମାନଙ୍କର ପ୍ରଗତିରେ ପ୍ରତିବନ୍ଧକ ସେକ୍ଷେତ୍ରରେ ଶ୍ରେଣୀଗତ ସଂରକ୍ଷଣ ଆବଶ୍ୟକ। ଏହାଦ୍ୱାରା ତଳେ ପଡିଥିବା ଓ ଦାରିଦ୍ର୍ୟ ଭିତରେ ସଡୁଥିବା ଶ୍ରେଣୀର ବିକାଶ ପାଇଁ ଗୋଷ୍ଠୀଗତ ସଂରକ୍ଷଣ ଅବଶ୍ୟମ୍ଭାବୀ ମନେହୁଏ। ଶ୍ରେଣୀଗତ ସଂରକ୍ଷଣ ସମାଜରେ ବୈଷମ୍ୟ ଓ ଭେଦଭାବ ଥିବା ପର୍ଯ୍ୟନ୍ତ ଆବଶ୍ୟକ ହୋଇଥାଏ। ଯେତେବେଳେ ସମାଜର ସବୁବର୍ଗର ଲୋକମାନେ ସମତା ଉପଭୋଗ କରନ୍ତି, ସେତେବେଳେ ସମାଜରେ ଶ୍ରେଣୀଗତ ସଂରକ୍ଷଣ ଅନାବଶ୍ୟକ ହୋଇପଡେ।

ବ୍ରାହ୍ମଣମାନଙ୍କୁ ଛାଡି ସରକାରରେ ଭାରତୀୟ ମାନଙ୍କର ପ୍ରତିନିଧିତ୍ୱର ପ୍ରସଙ୍ଗ ଯେତେବେଳେ ଆସିଲା, ସେତେବେଳେ ସବୁ ଶ୍ରେଣୀର ବ୍ୟକ୍ତିମାନେ ତାଙ୍କ ଗୋଷ୍ଠୀପାଇଁ ସଂରକ୍ଷଣ ଦାବି କଲେ। ବ୍ରାହ୍ମଣମାନଙ୍କୁ ଛାଡି ଅନ୍ୟ ସମସ୍ତ ଶ୍ରେଣୀ

Digitized by srujanika@gmail.com

ନିଜ ଗୋଷ୍ଠୀର ଲୋକମାନଙ୍କର ପ୍ରତିନିଧିତ୍ୱ ପାଇଁ ଆନ୍ଦୋଳନ କରିଆରେ ସରକାରଙ୍କ ପାଖରେ ଦାବିକଲେ।

ଶ୍ରେଣୀଗତ ସଂରକ୍ଷଣ ନିୟମପାଇଁ ବ୍ରାହ୍ମଣମାନେ ଓ ମୁଖ୍ୟତଃ ତାମିଲ୍‌ନାଡୁର ବ୍ରାହ୍ମଣମାନେ ଅନେକ ପ୍ରତିବନ୍ଧକ ଲଗାଇଲେ। ସେମାନେ ନାନା କୂଟକପଟ କରି ବିଭିନ୍ନ ସମୟରେ ସଂରକ୍ଷଣ ପାଇଁ ପ୍ରତିବନ୍ଧକ ସୃଷ୍ଟିକଲେ। ସମସ୍ତ ଦଳିତ ଲୋକମାନଙ୍କ ବିକାଶ ପାଇଁ ସରକାରୀ ପ୍ରସ୍ତାବ୍‌କୁ ସେମାନେ ପ୍ରତିରୋଧକଲେ।

ଦଳିତ ଲୋକମାନଙ୍କର ସାମାଜିକ ବିକାଶ କ୍ଷେତ୍ରରେ ସରକାରୀ ଆଇନକୁ ସେମାନେ ନାନା ଭାବରେ ବିରୋଧ କଲେ। ଦଳିତ ଲୋକମାନଙ୍କର ଉତ୍‌ଥାନ କ୍ଷେତ୍ରରେ ରହିଥିବା ପ୍ରତିବନ୍ଧକ କିମ୍ବା ମନ୍ଦ ବ୍ୟବସ୍ଥା ବିରୋଧ ନେଇ ସେମାନେ ଯଦି କିଛି ପନ୍ଥା ଦେଖାଇଥାନ୍ତେ, ତେବେ ତାହାର କୌଣସି ମୂଲ୍ୟ ରହିଥାନ୍ତା। ଯେଉଁମାନେ ସଂରକ୍ଷଣକୁ ବିରୋଧ କରୁଥିଲେ, ସେମାନେ କାହିଁକି ବିରୋଧ କରୁଛନ୍ତି ତାହାର କୌଣସି ଯୁକ୍ତି ଯୁକ୍ତ କାରଣ ଦେଉନଥିଲେ। ସବୁଲୋକଙ୍କୁ ସମାନ ସ୍ତରକୁ ଆଣିବାକୁ କଣ ତ୍ରୁଟି ରହିଛି? ଏକ ସାମ୍ୟବାଦୀ ସମାଜ ଗଠନ ଲକ୍ଷ୍ୟ କ୍ଷେତ୍ରରେ ତ୍ରୁଟି କେଉଁଠି ରହିଲା? ସବୁଲୋକଙ୍କୁ ସମାନ ସୁବିଧା ସୁଯୋଗ ଦେବା କଣ ଭୁଲ୍ କି? ଯଦି ଏକ ସମତା ଭିତ୍ତିକ ସମାଜ ଗଠନ ତ୍ରୁଟି ପୂର୍ଣ୍ଣ ନୁହେଁ, ତେବେ ସମାଜର ଅନୁନ୍ନତ ଶ୍ରେଣୀକୁ କାହିଁକି ସଂରକ୍ଷଣ ଦିଆଯିବ ନାହିଁ? ବର୍ତ୍ତମାନର ସାମାଜିକ ବ୍ୟବସ୍ଥା ବୈଷମ୍ୟ ଉପରେ ଆଧାରିତ ଥିବାରୁ ଜନଗଣନା ଆଧାରରେ ପ୍ରତ୍ୟେକ ଶ୍ରେଣୀର ପ୍ରତିନିଧିତ୍ୱ ପାଇଁ ସଂରକ୍ଷଣ ବ୍ୟବସ୍ଥା ଆବଶ୍ୟକ। ସମାଜରେ ଯେ ଦୁର୍ବଳ ଶ୍ରେଣୀର ଲୋକମାନେ ଅଛନ୍ତି, ଏହାକୁ ଅସ୍ୱୀକାର କରାଯିବ କି?

ପୁନଶ୍ଚ ସମାଜକୁ ଯେତେବେଳେ ଧର୍ମ, ଜାତି ଓ ଶ୍ରେଣୀ ଆଧାରରେ ଭାଗ କରିବାକୁ ଆମେ ଅନୁମତି ଦେଇଛୁ, ସେତେବେଳେ ଧର୍ମ, ଜାତି ଓ ଶ୍ରେଣୀ ମାନଦଣ୍ଡରେ ଲୋକମାନଙ୍କୁ ସ୍ୱତନ୍ତ୍ର ଅଧିକାର ଦେବାକୁ ଆମେ ପ୍ରତିବନ୍ଧକ ସୃଷ୍ଟି

Digitized by srujanika@gmail.com

କରିପାରିବା ନାହିଁ। କୌଣସି ଶ୍ରେଣୀ ନିଜର ସ୍ୱାର୍ଥ ସୁରକ୍ଷା ଦାବିକରିବା ଭୁଲ୍ ନୁହେଁ, ଏଥିରେ କୌଣସି ଅବୈଧତା ମୁଁ ଦେଖୁନାହିଁ।

ଜାତିପ୍ରଥା ଲୋକମାନଙ୍କୁ ପଛୁଆ କରି ଦେଇଛି। ସାମାଜିକ ସଂହତି ଏହାଦ୍ୱାରା ଧ୍ୱଂସ ହୋଇଛି। ଏହି ବ୍ୟବସ୍ଥା ଅନେକ ମଣିଷଙ୍କୁ ନ୍ୟୂନ ଓ ଅସହାୟ କରିଦେଇଛି। ଏହି ସବୁ ମନ୍ଦ ବ୍ୟବସ୍ଥା ଦୂର ହୋଇ ସାମାଜିକ ସମତା ପ୍ରତିଷ୍ଠା ହେବା ପର୍ଯ୍ୟନ୍ତ ସମାନୁପାତିକ ପ୍ରତିନିଧିତ୍ୱ ବ୍ୟବସ୍ଥା ଅବଶ୍ୟମ୍ଭାବୀ ମନେ ହୁଏ। ଅନେକ ଶ୍ରେଣୀର ଲୋକମାନେ ଶିକ୍ଷାର ଆଲୋକ ଏବେ ପାଉଛନ୍ତି। ସବୁଲୋକ ସଭ୍ୟସ୍ତରକୁ ଆସିବାକୁ ଶିକ୍ଷା ପାଇବା ଆବଶ୍ୟକ। ଆମର ଲୋକମାନେ ଶିକ୍ଷାକ୍ଷେତ୍ରରେ ଆଗକୁ ଯିବା ଦରକାର। ଆମର ଜନଗଣ ସେମାନଙ୍କ ସଂଖ୍ୟାର ଅନୁପାତ ଆଧାରରେ କର୍ମ ସଂସ୍ଥାନ କ୍ଷେତ୍ରରେ ଓ ସାଧାରଣ ଜୀବନ ସ୍ତରରେ ପ୍ରତିନିଧିତ୍ୱ ପାଇବା ଦରକାର।

ଆମ ଦେଶରେ ୧୦୦ ଲୋକଙ୍କ ମଧ୍ୟରେ ଶତକଡା ତିନି ଭାଗ ଲୋକ ହେଉଛନ୍ତି ବ୍ରାହ୍ମଣ। ଶତକଡା ଷୋହଳ ଭାଗ ଲୋକ ଆଦିବାସୀ ଓ ଶତକଡା ବାସ୍ତରି ଭାଗ ଲୋକ ହେଉଛନ୍ତି ଅବ୍ରାହ୍ମଣ। ସମସ୍ତଙ୍କୁ ତାଙ୍କ ଶ୍ରେଣୀର ସଂଖ୍ୟା ଅନୁଯାୟୀ କର୍ମ ସଂସ୍ଥାନ ସ୍ତରରେ ସମାନ ପ୍ରତିନିଧିତ୍ୱ ଦେବା ଯଥାର୍ଥ ନୁହେଁ କି?

**ଯୋଗ୍ୟତା ଓ କର୍ମକୁଶଳତା**

ସବୁ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ଯୋଗ୍ୟତା ଓ କାର୍ଯ୍ୟ ଦକ୍ଷତା ଥିବା ଆପଣ ଲକ୍ଷ୍ୟ କରିପାରିବେ। ସବୁ ଶ୍ରେଣୀର ଲୋକମାନେ ଏବେ କେତେକ ସୁଯୋଗ ପାଇଁ ଦାବି କରୁଛନ୍ତି। ଏହା ସେମାନଙ୍କୁ ଆଇନ ଦ୍ୱାରା ସାବ୍ୟସ୍ତ କରାଯାଇଛି। ପଛୁଆବର୍ଗ ଓ ଅନୁସୂଚିତ ଦଳିତ ଲୋକମାନଙ୍କୁ କେତେକ ସୁଯୋଗ ଦିଆଯାଇ ଥିବାରୁ ଏଥିରେ କୌଣସି ବିପଦ ନାହିଁ। ଏହି ସୁବିଧା ପାଇଁ ଶାସନ ବ୍ୟବସ୍ଥାରେ କୌଣସି ଅସୁବିଧା ହେଉନାହିଁ। ଏହାଦ୍ୱାରା ଲୋକମାନଙ୍କର ସାଧୁତାରେ ନିମ୍ନଗତି ହୋଇଛି ବୋଲି କୁହାଯାଇ ପାରିବ ନାହିଁ। କୌଣସି ଶ୍ରେଣୀକୁ ଭେଦଭାବଦ୍ୱାରା ନ୍ୟୂନ କରିବା ଯଥାର୍ଥ ନୁହେଁ। ବରଂ ସମସ୍ତ ଶ୍ରେଣୀକୁ ସମାନ

Digitized by srujanika@gmail.com

ସୁବିଧା ସୁଯୋଗ ଦିଆଯିବା ଦରକାର । ଜନସଂଖ୍ୟା ଅନୁଯାୟୀ ଶ୍ରେଣୀଗତ ଅନୁପାତ ଆଧାରରେ ସମସ୍ତଙ୍କୁ ସଂରକ୍ଷଣ ଦିଆଗଲେ ସବୁ ଶ୍ରେଣୀର ଲୋକ ତାଙ୍କର ଯଥାର୍ଥ ପ୍ରତିନିଧିତ୍ୱ ପାଇପାରିବେ ।

ଜଣେ ଛାତ୍ର ମାଟ୍ରିକ୍ ପାସ୍ ପରେ କଲେଜ ପଢିବା ପାଇଁ ଯୋଗ୍ୟ ହୋଇଥାଏ । ଏହାହିଁ ଶିକ୍ଷା ବିଭାଗର ଧାରା । ଜଣେ ଛାତ୍ର ମାଟ୍ରିକ୍ ପାସ୍ ପରେ କଲେଜରେ ନାମ ଲେଖା ପାଇଁ ଯେତେବେଳେ ଦରଖାସ୍ତ କରେ, ସେତେବେଳେ ତାକୁ ଆଉ ଏକ ପରୀକ୍ଷା ଦେବାକୁ କୁହାଯାଏ । ଏହି ଟେଷ୍ଟ ଜରିଆରେ ତାର ଯୋଗ୍ୟତାକୁ ନରୂପଣ କରାଯାଏ । ଉଚ୍ଚଶିକ୍ଷା ବିଭାଗ ବିଭିନ୍ନ ଅଧ୍ୟକ୍ଷ ମାନଙ୍କୁ ସବୁଶ୍ରେଣୀର ଛାତ୍ରମାନଙ୍କୁ କଲେଜରେ ନାମ ନଲେଖାଇବା ପାଇଁ ଏକ ନିର୍ଦ୍ଦେଶନାମା ଜାରି କଲେ । ଏଥିରେ କିଛି ଅର୍ଥ ଅଛିକି ? ବ୍ରାହ୍ମଣମାନେ ଏହିପରି ଏକ ନିର୍ଦ୍ଦେଶ କାହିଁକି ପଠାଇଲେ? ଜଣେ ଛାତ୍ର କଲେଜରେ ପଢିବା ପାଇଁ ଯୋଗ୍ୟ ହେବା ପରେ ସରକାର ତାର ଶିକ୍ଷା ପାଇଁ ବ୍ୟବସ୍ଥା କରିବା ଆବଶ୍ୟକ । ମାଟ୍ରିକ ପାସ୍ କରିବା ପରେ କଲେଜରେ ନାମ ଲେଖାଇବା ପାଇଁ ଥିବା ଜଟିଳ ଓ ଅନ୍ୟାୟ ପୂର୍ଣ୍ଣ କଟକଣା ଯୋଗୁଁ ସାଧାରଣ ଘରର ପିଲାମାନେ ବିତସ୍ପୃହ ହୋଇ ଶିକ୍ଷାଠାରୁ ଦୂରେଇ ଯାଉଛନ୍ତି । ବ୍ରାହ୍ମଣମାନେ ଯେଉଁ ବ୍ୟବସ୍ଥା କରିଛନ୍ତି, ତାହାଦ୍ୱାରା ପଛୁଆ ଶ୍ରେଣୀର ପିଲାମାନେ ଶିକ୍ଷାରୁ ବଞ୍ଚିତ ହେଉଛନ୍ତି ।

ପଛୁଆ ବର୍ଗ ଓ ଅନୁସୂଚିତ ଜାତିର ପିଲାମାନଙ୍କ ଭବିଷ୍ୟତ ଅନ୍ଧକାର ହେଉଛି । ବ୍ରାହ୍ମଣମାନଙ୍କ ଦ୍ୱାରା ପ୍ରଚଳିତ ବ୍ୟବସ୍ଥା ଶିକ୍ଷାକ୍ଷେତ୍ରରେ ସେମାନଙ୍କ ପାଇଁ ବିପର୍ଯ୍ୟୟ ସୃଷ୍ଟି କରୁଛି । ସେମାନଙ୍କ ଯୋଗୁଁ ପଛୁଆବର୍ଗ ଓ ଦଳିତ ଶ୍ରେଣୀର ମେଧାବୀ ଛାତ୍ରମାନେ ମଧ୍ୟ ବଞ୍ଚିତ ହେଉଛନ୍ତି । ମନୋନୟନ ପ୍ରକ୍ରିୟା ଓ ପରୀକ୍ଷା ପଦ୍ଧତି ଦ୍ୱାରା ଆସୁଥିବା ମୁଷ୍ଟିମେୟ ଛାତ୍ରମାନେ ମଧ୍ୟ ଉଚ୍ଚ ଶିକ୍ଷାରୁ ବଞ୍ଚିତ ହେଉଛନ୍ତି ।

ମୁଁ ଗତ କିଛି ବର୍ଷ ହେଲା ସବୁ ଶ୍ରେଣୀର ଲୋକମାନଙ୍କର ଯୋଗ୍ୟତା ଓ ଦକ୍ଷତାକୁ ଗଭୀର ଭାବରେ ଅନୁଶୀଳନ କରୁଛି । ଏକ୍ଷେତ୍ରରେ ମୋର ସୁଚିନ୍ତିତ ମତ ମୋର ଭାଷଣ ଓ ଲେଖା ଜରିଆରେ ଆପଣମାନଙ୍କୁ ଜଣାଇଛି । ପଛୁଆ

Digitized by srujanika@gmail.com

ବର୍ଗର ତଥା ଅନୁସୂଚିତ ଜାତିର ଲୋକମାନଙ୍କର ଉନ୍ନତି ବିଧାନ ପାଇଁ କାର୍ଯ୍ୟ କରୁଥିବା ଉତ୍ସର୍ଗୀକୃତ ଲୋକମାନଙ୍କ ମଧ୍ୟରେ ମୁଁ ଅନ୍ୟତମ। ସେଥିପାଇଁ ଯୋଗ୍ୟତା ଓ କାର୍ଯ୍ୟ ଦକ୍ଷତା ସ-ର୍କୀୟ ସିଦ୍ଧାନ୍ତକୁ ମୁଁ ଦୃଢତାର ସହିତ ବିରୋଧ କରୁଛି। ଜଣେ ଛାତ୍ର ଏକ ନିର୍ଦ୍ଦିଷ୍ଟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ତାପରେ କାହିଁକି ଯୋଗ୍ୟତା ଓ ଦକ୍ଷତାର ପ୍ରଶ୍ନ ଉଠାଯାଇଛି? ଏହା କରିବାର କୌଣସି ଅର୍ଥ ଅଛି କି ?

ଯେଉଁମାନଙ୍କର ଯୋଗ୍ୟତା ଓ ଦକ୍ଷତାକୁ ନେଇ ସେମାନଙ୍କୁ ମନ୍ତ୍ରୀ କରାଯାଇଛି, ସେମାନଙ୍କ ଠାରୁ ଆମେ କଣ ସୁବିଧା ପାଇଛେ, ମନ୍ତ୍ରୀମାନଙ୍କ ପାଇଁ ଆମର ସେପରି କିଛି ଗର୍ବ କରିବାର ଅଛିକି ! ଆପଣ ଏହା ଉପରେ ଚିନ୍ତା କରନ୍ତୁ। ସେହିପରି ଯେଉଁମାନେ ଦକ୍ଷ ନୁହଁନ୍ତି କିମ୍ବା ଯେଉଁ ମାନଙ୍କର ସାମର୍ଥ୍ୟ ଊଣା ବୋଲି ମନେ କରାଯାଏ, ସେମାନଙ୍କ ଦ୍ୱାରା ଆମେ କିଛି ହରାଇଛେ ? ସୁତରାଂ ସରକାରୀ ପରିଚାଳନା କ୍ଷେତ୍ରରେ ଦକ୍ଷତା ଓ ଯୋଗ୍ୟତାର କୌଣସି ଗୁରୁତ୍ୱ ପୂର୍ଣ୍ଣ ଭୂମିକା ଅଛିକି?

ଯେ ନିଜ ଗୋଷ୍ଠୀର ଅଧିକାର ଚାହୁଁ ନାହିଁ, ସେ ନିଜ ଗୋଷ୍ଠୀକୁ ଭଲଭାବେ ଜାଣି ନାହିଁ। ତାହା ହୋଇଥିଲେ ଯିଏ ଯେଉଁ ଗୋଷ୍ଠୀରେ ସ-ୃକ୍ତ, ସେ ନିଜ ଗୋଷ୍ଠୀର ସନ୍ଦେହର ପାତ୍ର। ଯଦି ଗୋଟିଏ ନିର୍ଦ୍ଦିଷ୍ଟ ଗୋଷ୍ଠୀ ନିଜ ଗୋଷ୍ଠୀର ଲୋକଙ୍କ ପାଇଁ କେତେକ ଅଧିକାର ଦାବି କରୁଛି, ତେବେ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଲୋକମାନେ ସେହି ଗୋଷ୍ଠୀଟିକୁ ଦେଶଦ୍ରୋହୀ ଓ ଜାତୀୟତା ବିରୋଧୀ ବୋଲି ଚିତ୍ରଣ କରୁଛନ୍ତି। ଏପରି କହୁଥିବା ବ୍ୟକ୍ତିଙ୍କୁ ଜଣେ ନ୍ୟସ୍ତ ସ୍ୱାର୍ଥ ବୋଲି ନିଆଯାଇ ପାରିବ। କାରଣ ବାସ୍ତବରେ ସେ କୌଣସି ଦେଶ ବା ଗୋଷ୍ଠୀ ସହ ସ-ୃକ୍ତ ନୁହଁନ୍ତି। ଆମର ଲୋକମାନେ ନିଜର ନ୍ୟାଯ୍ୟ ଅଧିକାରକୁ ଜାହିର କରିବାରେ ସଫଳ ନୁହଁନ୍ତି। ଆମର ଏହି ଦୁର୍ବଳତା ଯୋଗୁଁ ନ୍ୟସ୍ତ ସ୍ୱାର୍ଥମାନେ ଆମ ଉପରେ ପ୍ରାଧାନ୍ୟ ବିସ୍ତାର କରି ରହିଛନ୍ତି। ଆମେ ଯେତେବେଳେ ଆମର ଅଧିକାର ନେଇ ସଚେତନ ହୋଇପାରିବା, ସେତେବେଳେ ଆମ ଉପରେ ପ୍ରାଧାନ୍ୟ ବିସ୍ତାର କରି ରହିଥିବା ଲୋକ ମାନଙ୍କର ଆଧିପତ୍ୟକୁ ସମାପ୍ତ କରିପାରିବା।

Digitized by srujanika@gmail.com

**କର୍ମ ଶିକାରୀ:-**

କେତେକ ଆମ ପ୍ରତି ଆକ୍ଷେପ କରୁଛନ୍ତି ଯେ ଆମେ ହେଉଛେ କର୍ମ ଶିକାରୀ, ମୁଁ ଏହାକୁ ଅସ୍ୱୀକାର କରୁନାହିଁ। କର୍ମ ସଂସ୍ଥାନ ଲାଭକରିବା କ୍ଷେତ୍ରରେ ମୁଁ କୌଣସି ଲଜ୍ଜା ଅନୁଭବ କରୁନାହିଁ। ଗୋଟିଏ କର୍ମସଂସ୍ଥାନ ଖୋଜିବା କ୍ଷେତ୍ରରେ ଲଜ୍ଜା କରିବାରେ କଣ ଅଛି? ବ୍ରାହ୍ମଣ ଓ ଆର୍ଯ୍ୟମାନେ କଣ କରିଛନ୍ତି? ସେମାନେ କର୍ମ ଖୋଜୁନାହାନ୍ତି କି ? ସେମାନଙ୍କୁ କର୍ମ ଶିକାରୀ କୁହାଯିବ ନାହିଁକି ? ଯଦି ସେମାନେ କର୍ମ.ପାଇବା ପାଇଁ ସେମାନଙ୍କ ଅଧିକାରକୁ ସାବ୍ୟସ୍ତ କରୁଛନ୍ତି, ତେବେ ଆମକୁ କର୍ମ ଶିକାରୀ କହିବା ହାସ୍ୟାସ୍ପଦ ନୁହେଁ କି ? ଆପଣମାନେ ଚିନ୍ତା କରନ୍ତୁ। କର୍ମ ସନ୍ଧାନ କରିବାରେ କେଉଁମାନଙ୍କର ନ୍ୟାଯ୍ୟୋଚିତ ଅଧିକାର ରହିଛି? ମୁଁ ତ କହିବି ଆମ ଲୋକମାନଙ୍କର ଏଥିପାଇଁ କେବଳ ଅଧିକାର ରହିଛି।

ଯଦି କୌଣସି ଗୋଷ୍ଠୀ କର୍ମସନ୍ଧାନ କରିବାରେ ଅବହେଳା ପ୍ରଦର୍ଶନ କରୁଛି, ତେବେ ସେହି ଗୋଷ୍ଠୀ ଯେ ଦାୟିତ୍ୱସଂପନ୍ନ ନୁହଁନ୍ତି ମୋର ଏହା ମନେ ହୁଏ। ସେପରି ଲୋକମାନଙ୍କୁ ଜାତୀୟତା ବିରୋଧୀ ଓ ସ୍ୱଦେଶ ବିରୋଧୀ କହିହେବ। ସେମାନେ ନିଜ ଶ୍ରେଣୀର ବିଶ୍ୱାସଘାତକ।

ଯଦି କୌଣସି ଗୋଷ୍ଠୀ ଭେଦଭାବର ଶିକାର ହୁଏ ଓ ସେମାନଙ୍କୁ ଅଧିକାରରୁ ବଞ୍ଚିତ କରାଯାଏ, ତେବେ ତାହା ସମାଜପାଇଁ ଅତ୍ୟନ୍ତ କ୍ଷତିକାରକ ହୋଇଥାଏ, ଯଦି ଗୋଟିଏ ଗୋଷ୍ଠୀକୁ ସେହି ଗୋଷ୍ଠୀର ଲୋକସଂଖ୍ୟା ଅନୁପାତରେ କର୍ମ ସଂସ୍ଥାନ ଦିଆଯାଏ ନାହିଁ, ତଦ୍ୱାରା ସେହି ଗୋଷ୍ଠୀପ୍ରତି ଅନ୍ୟାୟ କରାଯାଏ। ଏହା ସେମାନଙ୍କର ଅଧୋପତନ ପାଇଁ ପଥ ପରିଷ୍କାର କରିଥାଏ। ଏକ ଗୋଷ୍ଠୀ ଆତ୍ମ ସମ୍ମାନରୁ ବଞ୍ଚିତ ହୋଇ ସବୁଦିନ ପାଇଁ ଭୀରୁ ହୋଇ ରହିବାକୁ ଚାହିଁବ ନାହିଁ। ଯଦି ଗୋଟିଏ ଗୋଷ୍ଠୀ କର୍ମ ସଂସ୍ଥାନ କ୍ଷେତ୍ରରେ ଏହାର ନ୍ୟାଯ୍ୟୋଚିତ ଅଧିକାରକୁ ସାବ୍ୟସ୍ତ କରିପାରିବ ନାହିଁ, ତାହା ଦ୍ୱାରା ଏହା ନ୍ୟୂନ ଓ ଏକ ଦଳିତ ଶ୍ରେଣୀରେ ପରିଣତ ହେବ। (କୁଦି ଆରାସୁ, ୩୦-୧୧-୧୯୩୪)

ଏକ ଜାତିଭିତ୍ତିକ ସମାଜରେ ଯଦି ପ୍ରତ୍ୟେକ ଜାତିକୁ ଶିକ୍ଷା, କର୍ମ ସଂସ୍ଥାନ, ପ୍ରଶାସନରେ ପ୍ରତିନିଧିତ୍ୱ ଇତ୍ୟାଦିରୁ ବଞ୍ଚିତ କରାଯାଏ, ତେବେ ସମାଜରେ ଏନେଇ

Digitized by srujanika@gmail.com

ଅଶାନ୍ତି ସୃଷ୍ଟିହେବ। ଶତ୍ରୁଭାବ, ପ୍ରତଶୋଧ ପରାୟଣତା ଓ ନାନା ପ୍ରକାରର ଠକାମିର ପରିବେଶ ସମାଜରେ ମୁଣ୍ଡ ଟେକିବ। (୮୯ତମ ଜନ୍ମ ବାର୍ଷିକ ପେରିୟାର ସ୍ମାରକ ଗ୍ରନ୍ଥ)

ଭାରତୀୟ ସମାଜରୁ ଜାତିପ୍ରଥା ରୂପକ ମନ୍ଦ ବ୍ୟବସ୍ଥାର ବିଲୋପ ପାଇଁ କେତେକ ଆଇନଗତ ବ୍ୟବସ୍ଥା ଆବଶ୍ୟକ। ବିଶେଷ କରି ଦକ୍ଷିଣ ଭାରତରେ ଏହି ପ୍ରକାର ନିୟମର ଯଥେଷ୍ଟ ଉପାଦେୟତା ରହିଛି, ସରକାରଙ୍କ ବିଧାନ ସଭାରେ ସମାନୁପାତିକ ପ୍ରତିନିଧିତ୍ୱ ପାଇଁ ଆନ୍ଦୋଳନ ଆବଶ୍ୟକ। ସମାଜବାଦ ଜନିତ ବିପ୍ଳବର ଅଂଶ ସ୍ୱରୂପ ଏହି କାର୍ଯ୍ୟ କରାଯିବା ଦରକାର। (କୁଦି ଆରାସୁ, ୧୮.୦୮.୧୯୩୫)

ଦିନକୁ ଦିନ ସାମ୍ପ୍ରଦାୟିକ ବିଭାଜନ ଓ ତିକ୍ତତା ନାନାକାରଣ ଯୋଗୁଁ ସମାଜରେ ବୃଦ୍ଧି ପାଇବାରେ ଲାଗିଛି, ବିଭିନ୍ନ ଗୋଷ୍ଠୀମାନଙ୍କ ମଧ୍ୟରେ ପରସ୍ପର ମଧ୍ୟରେ ବିଶ୍ୱାସ ଓ ସହୃଦୟତା ବୃଦ୍ଧି ପାଉନାହିଁ। ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ଘୃଣା ବଢିବାରେ ଲାଗିଛି। ଗୋଟିଏ ଗୋଷ୍ଠୀ ଅନ୍ୟ ଗୋଷ୍ଠୀ ଉପରେ କର୍ତ୍ତୃତ୍ୱ ଜାହିର କରିବା ପାଇଁ ପ୍ରୟାସ କରୁଛି। ଯେଉଁ ଗୋଷ୍ଠୀଟି ସମାଜରେ ଆଗରୁ ପ୍ରତିଷ୍ଠିତ ଓ ଆଧିପତ୍ୟ ବିସ୍ତାର କରି ରହିଛି, ତାହା ନିଜର ଆଧିପତ୍ୟରୁ ସାମାନ୍ୟ କିଛି ପଛକୁ ଘୁଂଚିବା ପାଇଁ କୌଣସି ରାଜି ନୁହେଁ। ଯେଉଁମାନେ ଆଧିପତ୍ୟ ବିସ୍ତାରକରି ରହିଛନ୍ତି ସେମାନେ ପଛୁଆବର୍ଗ ପ୍ରତି ସେମାନଙ୍କ ଦୃଷ୍ଟିଭଙ୍ଗୀରେ ସାମାନ୍ୟ ପରିବର୍ତ୍ତନ ଆଣିବାକୁ ପ୍ରସ୍ତୁତ ନୁହଁନ୍ତି, କାଳକ୍ରମେ ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ତିକ୍ତତା ବଢିବାରେ ଲାଗିଛି। (କୁଦି ଆରାସୁ ୨୬-୫-୧୯୩୫)

ଯେଉଁ ଗୋଷ୍ଠୀର ଲୋକମାନେ ସବୁବେଳେ ସୁବିଧା ଜନକ ସ୍ଥିତିରେ ଥାଇ ଅନେକ କିଛି ହାସଲ କରିଛନ୍ତି, ସେମାନେ ଅନ୍ୟମାନଙ୍କୁ ଜାତିଆଣ କହିବା କେତେ ଦୂର ବୈଧ ଓ ଯୁକ୍ତି ସଙ୍ଗତ ତାହା ଆପଣମାନେ ବିଚାର କରନ୍ତୁ। ସେମାନଙ୍କର ଶ୍ରେଣୀଗତ ଆଧିପତ୍ୟ ଯୋଗୁ ସେମାନଙ୍କର ଏପରି କହିବାର କିଛି ଅଧିକାର ହିଁ ନାହିଁ। (କୁ ଦି ଆରାସୁ ୧୯-୭-୧୯୩୬)

Digitized by srujanika@gmail.com

ଗୋଟିଏ ପଟେ ଆମେ ଧର୍ମ, ଜାତି ମାନଙ୍କୁ ରକ୍ଷାକରିବା ଓ ଅନ୍ୟପଟେ ସେହି ଆଧାରରେ ପ୍ରତ୍ୟେକ ଶ୍ରେଣୀକୁ ସମାନୁପାତିକ ପ୍ରତିନିଧିତ୍ୱ ଦେବାପାଇଁ ଅସ୍ୱୀକାର କରିବା ଅନ୍ୟାୟ, ଅବୈଧ ଓ ହାସ୍ୟାସ୍ପଦ ମନେ ହୁଏ। ଯେଉଁ ଗୋଷ୍ଠୀମାନେ ଯୁଗ ଯୁଗ ଧରି ଶୋଷିତ ହୋଇ ରହିଛନ୍ତି ସେମାନେ ସେମାନଙ୍କର ନ୍ୟାୟପୂର୍ଣ୍ଣ ଅଧିକାର ଦାବିକରିବାକୁ ଆମେ ଅନ୍ୟାୟ କହିପାରିବା ନାହିଁ। ସେପରି କହିବା ଦ୍ୱାରା ଆମର ପ୍ରତିହିଂସା ମନୋଭାବ ଓ ତ୍ରୁଟିପୂର୍ଣ୍ଣ ବିଚାରର ପରିଚୟ ମିଳିଥାଏ। (କୁଦି ଆରାସୁ ୮-୧୧-୧୯୩୧)

ଯେଉଁ ସରକାର ସମସ୍ତ ଶ୍ରେଣୀଗତ ବୈଷମ୍ୟକୁ ମୂଳୋତ୍ପାଟନ କରିବାକୁ ଚାହେଁ, ସେଥିପାଇଁ ପ୍ରଥମେ ଜାତିଭିତ୍ତିକ ଚିହ୍ନ ଗୁଡିକୁ ଏକ ଅପରାଧ ଭାବେ ବିଚାର କରିବା ଆବଶ୍ୟକ। ଯେଉଁମାନେ ଜାତିଗତ ଚିହ୍ନ କରିଆରେ ନିଜର ପ୍ରାଧାନ୍ୟ ଦେଖାଇବାକୁ ଚାହାନ୍ତି, ସେମାନଙ୍କୁ ଗୋଟିଏ ବର୍ଷ ଜେଲ ଦଣ୍ଡର ବ୍ୟବସ୍ଥା କରିବା ଦରକାର। କୌଣସି ଜାତିଆଣ ଭେଦଭାବ ସୃଷ୍ଟି କରୁଥିବା ବ୍ୟବସ୍ଥାର ପୃଷ୍ଠ ପୋଷକ ମାନଙ୍କୁ ୨ବର୍ଷ ଜେଲ୍ ଦଣ୍ଡ ଦେବା ଦରକାର। ଜାତି ପ୍ରଥାର ବିଲୋପ ଚାହୁଁଥିବା ସରକାର ଏଥିପାଇଁ ପୁଲିସକୁ ଆବଶ୍ୟକ ନିର୍ଦ୍ଦେଶ ଦେବା ଉଚିତ୍। ସରକାର ସାମ୍ପ୍ରଦାୟିକତା ଊର୍ଦ୍ଧ୍ୱରେ ରହିବାକୁ ହେଲେ, ସମାଜରେ ଥିବା ଜାତିଭିତ୍ତିକ ବୈଷମ୍ୟ ଓ ଭେଦଭାବକୁ ଦୂର କରିବା ଦରକାର। ଜାତିସୂଚକ ସକଳ ଚିହ୍ନ ଧାରଣକୁ ବନ୍ଦ କରିବା ସହ ଈଶ୍ୱରଙ୍କ ଜନ୍ମ, ବିବାହ ଇତ୍ୟାଦି ଆଧାରରେ ଘୋଷିତ ହୋଇଥିବା ଛୁଟିଦିନ ମାନଙ୍କୁ ବନ୍ଦ କରିବା ଉଚିତ୍। ସରକାର ଏସବୁକୁ ପଶ୍ରୟ ଦେଉଥିବା ପର୍ଯ୍ୟନ୍ତ ସରକାର ଯେ ସାମ୍ପ୍ରଦାୟିକ ବ୍ରାହ୍ମଣବାଦକୁ ସମର୍ଥନ କରୁଛନ୍ତି, ଏହା ବୁଝିବାକୁ ହେବ।

ରାମାୟଣରେ କୁହାଯାଇଛି ବାଳିକୁ ଯେଉଁମାନେ ବିରୋଧ କରନ୍ତି, ବାଳି ସେ ସମସ୍ତଙ୍କର ଶକ୍ତିର ଅଧିକାରୀ ହୋଇଥାଏ। ସେହିପରି ଜାତିଗତ ପ୍ରତିନିଧିତ୍ୱ ନିୟମକୁ ଯେଉଁମାନେ ବିରୋଧ କରୁଛନ୍ତି, ସେମାନେ ସଂରକ୍ଷଣ ଦାବି କରୁଥିବା ଦାବିକୁ ଶକ୍ତିଶାଳୀ କରୁଛନ୍ତି। ସେମାନେ ଯେତିକି ଏହାକୁ ବିରୋଧ କରିବେ,

Digitized by srujanika@gmail.com

ଜାତିଗତ ପ୍ରତିନିଧିତ୍ୱ ଆବଶ୍ୟକତା ସେତିକି ବୃଦ୍ଧି ପାଇବ । ଏହି ଦାବି ପ୍ରତି ଯେତେ ବିରୋଧ ହେବ, ଦାବି ଜନିତ ଆନ୍ଦୋଳନ ସେତିକି କ୍ରିୟାଶୀଳ ହୋଇ ଚାଲିବ । (କୁଦି ଆରାସୁ- ୧-୯-୧୯୩୫)

ମୁଁ ରାଜନୀତିରେ ବିଭିନ୍ନ ପରିବର୍ତ୍ତନ କରିଛି । ମୋର ସାମାଜିକ ଜୀବନରେ ମୁଁ ବ୍ରାହ୍ମଣବାଦକୁ ସର୍ବଦା ବିରୋଧ କରିଆସିଛି । ବ୍ରାହ୍ମଣବାଦକୁ ବିରୋଧ କ୍ଷେତ୍ରରେ ମୋର ଦୃଷ୍ଟି ଭଙ୍ଗୀରେ ମୁଁ କୌଣସି ପରିବର୍ତ୍ତନ ଆଣିନାହିଁ । ବ୍ରାହ୍ମଣବାଦକୁ ବିରୋଧ କରିବାକୁ ଯାଇ ମୁଁ ଜଣେ ହେତୁବାଦୀ ଓ ନିରୀଶ୍ୱରବାଦୀ ହୋଇଛି । ସାମାଜିକ ସଂସ୍କାର କ୍ଷେତ୍ରରେ ବ୍ରାହ୍ମଣମାନଙ୍କର ଏକଚାଟିଆ ଆଧିପତ୍ୟକୁ ମୁଁ ବିରୋଧ କରିଛି, ସାମାଜିକ କ୍ରାନ୍ତି ଦିଗରେ ଏହାକୁ ପ୍ରଥମ ପଦକ୍ଷେପ ବୋଲି ଗ୍ରହଣ କରିଛି । ସାମାଜିକ ସଂସ୍କାରର ଏହାହିଁ ହେଉଛି ପ୍ରଥମ ପଦକ୍ଷେପ । ସେଥିପାଇଁ କେତେକ ମୋତେ ସାମ୍ପ୍ରଦାୟିକ ବୋଲି ସମାଲୋଚନା କରିଥାନ୍ତି । ସାମାଜିକ ନ୍ୟାୟ ପାଇଁ ମୁଁ ଏହି ପ୍ରକାରର ସାମ୍ପ୍ରଦାୟିକତାର ପ୍ରତିନିଧି ହୋଇପାରେ । ମୋର ଏହି ସାମ୍ପ୍ରଦାୟିକତା ସାମାଜିକ ସମତା ଜନିତ ବିପ୍ଳବ ପାଇଁ ଉଦ୍ଦିଷ୍ଟ । (ବିଦୁ ଥଲାଇ ୫-୩-୧୯୬୯)

**ମୋହିନୀ ଅବତାର:-**

ପ୍ରତ୍ୟେକ କାର୍ଯ୍ୟରେ ବ୍ରାହ୍ମଣମାନେ ଯୋଗ୍ୟତା ଓ ଦକ୍ଷତା ଉପରେ ଗୁରୁତ୍ୱ ଦେଉଛନ୍ତି । ପୁରାଣରେ ମୋହିନୀ ଅବତାର ଚରିତ୍ରଟି ଯେପରି, ସେହିପରି ସବୁ କ୍ଷେତ୍ରରେ ବ୍ରାହ୍ମଣମାନେ ଏହି ପ୍ରସଙ୍ଗ ଉଠାଉଛନ୍ତି । ସେମାନଙ୍କର ଉଦ୍ଦେଶ୍ୟ ହେଉଛି ଅବ୍ରାହ୍ମଣ ମାନଙ୍କର ଯକୌଣସି ବିକାଶ କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରିବା । ଅବ୍ରାହ୍ମଣମାନେ ବିକାଶର ଦ୍ୱାର ପାଖରେ ପହଞ୍ଚିବା ବେଳେ ସେମାନେ ସେହି ଦ୍ୱାରକୁ ବନ୍ଦ କରିଦେବାକୁ ବସିଛନ୍ତି ।

ବ୍ରିଟିଶ ସରକାରଙ୍କ ସମୟରେ ଓ ପ୍ରାକ୍ ସ୍ୱାଧୀନତା କାଳର ଜଷ୍ଟିସ୍ ପାର୍ଟିର ସରକାରବେଳେ ଶିକ୍ଷାପ୍ରାପ୍ତ ଲୋକମାନଙ୍କୁ ସବୁ ସ୍ତରରେ ନିଯୁକ୍ତି ଦିଆଯାଉଥିଲା । ସମ୍ପ୍ରତି କେବଳ ଡିଗ୍ରୀପ୍ରାପ୍ତ ହେବାକୁ ଯୋଗ୍ୟତା ଓ ଦକ୍ଷତା ମାପକାଠି ନୁହେଁ ବୋଲି ବ୍ରାହ୍ମଣମାନେ କହୁଥିଲେ । ଲୋକମାନଙ୍କୁ କର୍ମ ନିଯୁକ୍ତି

Digitized by srujanika@gmail.com

ଦେବା ପୂର୍ବରୁ ସେମାନଙ୍କୁ ପ୍ରଶିକ୍ଷଣ ଦିଆଯାଉଥିଲା । ସେମାନଙ୍କର ଏହି ସାମର୍ଥ୍ୟକୁ ବ୍ରାହ୍ମଣମାନେ ଯୋଗ୍ୟତାର ଆଧାର ଭାବେ ନେଉନାହାନ୍ତି । କେବଳ ସବୁଠାରୁ ଅଧିକ ନମ୍ବର ରଖିଥିବା ବ୍ୟକ୍ତିମାନଙ୍କୁ ସେମାନେ ଯୋଗ୍ୟ ଓ ଦକ୍ଷ ବୋଲି ଗୁରୁତ୍ୱ ଦେଉଛନ୍ତି । ପରୀକ୍ଷାରେ ଯିଏ ସର୍ବୋଚ୍ଚ ନମ୍ବର ରଖିଥିବ, ସେ ହିଁ କେବଳ ଯୋଗ୍ୟ ବୋଲି କର୍ମ ସଂସ୍ଥାନ ପାଇବ । ଜଣେ ଯେତେ ବୁଦ୍ଧିମାନ ଓ ଅନୁଭୂତି ସ-ନ୍ନ ହୋଇଥିଲେ ବି ସେ ଯଦି ସର୍ବୋଚ୍ଚ ନମ୍ବର ରଖି ନାହିଁ ତେବେ ତାଙ୍କୁ ଯୋଗ୍ୟ ଓ ଦକ୍ଷ ବୋଲି ବିଚାର କରାଯିବ ନାହିଁ । ଏ କ୍ଷେତ୍ରରେ ଯୋଗ୍ୟତା ଓ ଦକ୍ଷତାର ମାନଦଣ୍ଡ କିପରି ଭ୍ରମାତ୍ମକ ତାହା ମୁଁ ସୂଚାଇବାକୁ ଚାହେଁ । ମୋର ପ୍ରଶ୍ନ ହେଉଛି ଯେଉଁମାନେ ଯୋଗ୍ୟ ଓ ଦକ୍ଷ ବୋଲି ନିଯୁକ୍ତି ପାଉଛନ୍ତି ସେମାନେ ତାଙ୍କର କର୍ମକ୍ଷେତ୍ରରେ ତାଙ୍କର ଯୋଗ୍ୟତା ଓ ଦକ୍ଷତାର କୌଣସି ପ୍ରମାଣ ଦେଉଛନ୍ତି କି?

ପଛୁଆ ଜାତିର ଲୋକମାନଙ୍କର କର୍ମକ୍ଷେତ୍ରରେ ଅଯୋଗ୍ୟତା ପ୍ରମାଣ ପାଇଁ କୌଣସି ମାନଦଣ୍ଡ ଦେଇ ହେବ କି ? ଯେଉଁମାନେ ପରୀକ୍ଷାରେ ବହୁ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇ କର୍ମସଂସ୍ଥାନ କ୍ଷେତ୍ରରେ ଅଛନ୍ତି, ସେମାନେ କର୍ମକ୍ଷେତ୍ରରେ ସେପରି କୌଣସି ଉଲ୍ଲେଖନୀୟ ସଫଳତାର ପ୍ରମାଣ ଦେଉଛନ୍ତି କି? ଜଣଙ୍କର କର୍ମ କ୍ଷେତ୍ରରେ ନିଷ୍ଠା ହିଁ ତାଙ୍କ ଯୋଗ୍ୟତାର ମାପକାଠି । ସରକାରୀ କର୍ମ କ୍ଷେତ୍ରରେ ଥିବା କେତେକ ବ୍ୟକ୍ତି ଭାବନ୍ତି ଯେ ସେମାନେ ହିଁ ନିଜର ଯୋଗ୍ୟତା ଯୋଗୁଁ ଚାକିରୀ ପାଇଛନ୍ତି ।

**ଅର୍ଥଶୂନ୍ୟ :-**

ଶିକ୍ଷକମାନଙ୍କର କଥା ବିଚାର କରନ୍ତୁ । ଯୋଗ୍ୟତା ଓ ଦକ୍ଷତା ଆଧାରରେ ଅନେକ ଶିକ୍ଷକମାନଙ୍କୁ ନିଯୁକ୍ତି ଦିଆଯାଇଛି । ସେମାନେ କିପରି ପଢାଉଛନ୍ତି ତାହାର ମୂଲ୍ୟାୟନ ପାଇଁ କଣ ମାନଦଣ୍ଡ ଅଛି? କେତେ ପିଲା ପରୀକ୍ଷାରେ କୃତକାର୍ଯ୍ୟ ହେଲେ ଓ କେତେ ନମ୍ବର ରଖି ଉତ୍ତୀର୍ଣ୍ଣ ହେଲେ ତାହାହିଁ ସେମାନଙ୍କର କାର୍ଯ୍ୟର ମାନଦଣ୍ଡ କି ? ଥରେ ଶିକ୍ଷକମାନଙ୍କୁ ନିଯୁକ୍ତି ଦେବା ପରେ ସେମାନେ କିପରି କାର୍ଯ୍ୟ କରୁଛନ୍ତି ତାହାର ମାନ ନିର୍ଦ୍ଧାରଣ କରାଯାଉଛି କି? ଶିକ୍ଷକମାନଙ୍କ

Digitized by srujanika@gmail.com

ପ୍ରସଙ୍ଗରେ ଯେଉଁ ପ୍ରଶ୍ନ ଉଠୁଛି ତାହାବି ଡାକ୍ତର, ଇଂଜିନିୟର, ବିଚାରପତି, ଜିଲ୍ଲାପାଳ ଇତ୍ୟାଦିଙ୍କ କ୍ଷେତ୍ରରେ ଉଠି ପାରିବ । ସେମାନେ ସରକାରୀ କର୍ମସଂସ୍ଥାନ ଭିତରେ ଥିବାବେଳେ ସେମାନଙ୍କର ଦକ୍ଷତାର ମୂଲ୍ୟାୟନ କରାଯାଉଛି କି ?

କେବଳ ପରୀକ୍ଷାରେ ସବୁଠାରୁ ଅଧିକ ନମ୍ବର ରଖିବା ଯଦି ଯୋଗ୍ୟତା ଓ ଦକ୍ଷତାର ଏକକ ମାପକାଠି ହୁଏ ଓ ଆମେ ଏଥିରେ ଏକମତ ହୁଏ ଯେ ଯେଉଁମାନେ ସବୁଠାରୁ ଅଧିକ ନମ୍ବର ରଖିଛନ୍ତି ସେହିମାନେ ହିଁ ସବୁ ଉଚ୍ଚ ପଦପଦବୀରେ ଅବସ୍ଥାପିତ ହେବେ, ତେବେ ଏ କ୍ଷେତ୍ରରେ ମୁଁ ଏକ ପ୍ରଶ୍ନ ପଚାରିବାକୁ ଚାହୁଁଛି । ରାଷ୍ଟ୍ରପତି, ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ ଇତ୍ୟାଦି ସର୍ବୋଚ୍ଚ ପଦପଦବୀରେ ଥିବା ବ୍ୟକ୍ତିମାନଙ୍କ କ୍ଷେତ୍ରରେ ଏହି ପ୍ରସଙ୍ଗ ଉଠିବ କି ନାହିଁ? ଏହି ପଦରେ ଅଧିଷ୍ଠିତ ହେବା ପାଇଁ ପରୀକ୍ଷାରେ ସେମାନେ କେତେ ନମ୍ବର ରଖିଛନ୍ତି ତାହା ବିଚାରକୁ ନିଆଯିବ କି ?

ଯୋଗ୍ୟତା ଓ ଦକ୍ଷତା ନୀତି କ୍ଷେତ୍ରରେ ଆଉ ଏକ ଗୁରୁତର ଦୁର୍ବଳତା ମଧ୍ୟ ରହିଛି । ଯଦି ଗୋଟିଏ ବିଷୟରେ ବା କ୍ଷେତ୍ରରେ ବ୍ୟକ୍ତି ଅଧିକ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଛନ୍ତି, ତାଙ୍କୁ କଣ ସେହି କ୍ଷେତ୍ରରେ ଏକ କର୍ମ ସଂସ୍ଥାନ ଦିଆଯାଉଛି? ଗୋଟିଏ କ୍ଷେତ୍ରରେ ଅଧିକ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଥିବା ବ୍ୟକ୍ତି ତାଙ୍କର କର୍ମକ୍ଷେତ୍ର ପାଇଁ କେତେ ଆବଶ୍ୟକ? ତାଙ୍କର ଅଧ୍ୟୟନ ଓ ତାଙ୍କର କର୍ମକ୍ଷେତ୍ର ଭିତରେ କିଛି ସଂପର୍କ ରହିଛି କି? ଯେଉଁ କ୍ଷେତ୍ରରେ ଅଧିକ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଛନ୍ତି ତାହା ସହ ସେ ଯେଉଁ କର୍ମ କ୍ଷେତ୍ରରେ ପ୍ରବେଶ କରିବାକୁ ଚାହୁଁଛନ୍ତି ତାହା ଭିତରେ କିଛି ସମ୍ବନ୍ଧ ରହିଛି କି?

ପିଲାମାନଙ୍କୁ ଜ୍ଞାନ ଅର୍ଜନ ପାଇଁ ବିଦ୍ୟାଳୟ ଓ କଲେଜରେ ପଠାଯାଏ । ସେମାନଙ୍କର ଯୋଗ୍ୟତା ଓ ଦକ୍ଷତା ବିଷୟକୁ ବିଚାରକୁ ନେଇ ସେମାନଙ୍କୁ କଣ ଶିକ୍ଷାନୁଷ୍ଠାନରେ ଭର୍ତ୍ତି କରାଯାଏ? ବିଭିନ୍ନ ବିଷୟ ବା ବିଭାଗରେ ପଢିବା ପାଇଁ ପିଲାମାନଙ୍କର ପ୍ରଥମେ ଯୋଗ୍ୟତା ଓ ଦକ୍ଷତାକୁ ବିଚାରକୁ ନେବା ଯଥାର୍ଥ ମନେ ହୁଏ ନାହିଁ । ଏହା ମୋ ମତରେ ଅର୍ଥଶୂନ୍ୟ, ଅନାବଶ୍ୟକ ଓ ବିବାଦୀୟ ମନେ ହୁଏ । (୧୨.୯.୬୫, ଜନ୍ମଦିନ ସ୍ମରଣିକା)

Digitized by srujanika@gmail.com

**ବ୍ରାହ୍ମଣ ଆଧିପତ୍ୟ:-**

ଯେଉଁ ଜାତିର ଲୋକମାନଙ୍କର ସରକାରୀ କର୍ମସଂସ୍ଥାନ କ୍ଷେତ୍ରରେ ଖୁବ୍ କମ ପ୍ରତିନିଧିତ୍ୱ ରହିଛି ସେମାନଙ୍କୁ ସଂଖ୍ୟାଲଘୁ ଶ୍ରେଣୀ ଭାବେ ବିଚାର କରିବା ଆବଶ୍ୟକ। ସେହି ଶ୍ରେଣୀର ଲୋକମାନଙ୍କର ସରକାରୀ କର୍ମସଂସ୍ଥାନ କ୍ଷେତ୍ରରେ ବୃଦ୍ଧି ପାଇଁ ସରକାର କିଛି ପ୍ରୋତ୍ସାହନ ଦେବା ଆବଶ୍ୟକ। ଏହି ସଂଖ୍ୟାଲଘୁ ଶ୍ରେଣୀକୁ ଏଥିପାଇଁ କିଛି ନିରାପତ୍ତା ଦେବା ଦରକାର।

ଦେଶର ପରିସ୍ଥିତି କି ପ୍ରକାର? ବିଭିନ୍ନ ଜାତିର ଏହା ଏକ ଘଞ୍ଚ ଜଙ୍ଗଲ ପରି ମନେହୁଏ। ବ୍ୟବସ୍ଥାପକ ସଭା ହେଉ କିମ୍ବା ସବୁ ସରକାରୀ କର୍ମକ୍ଷେତ୍ରରେ ହେଉ ସବୁ ଜାଗାରେ ଉଚ୍ଚ ଜାତିର ଲୋକମାନେ ଆଧିପତ୍ୟ ବିସ୍ତାର କରି ରହିଛନ୍ତି। ରାଜ୍ୟ ବିଧାନସଭା ଓ ସାଂସଦରେ ମଧ୍ୟ ଆମେ ଏହି ଚିତ୍ର ପାଉ। ରାଜ୍ୟ ସରକାର ଓ କେନ୍ଦ୍ର ସରକାରୀ କାର୍ଯ୍ୟାଳୟରେ ସବୁ ଉଚ୍ଚ ପଦପଦବୀରେ ଥିବା ଚାକିରିରେ ମଧ୍ୟ ଉଚ୍ଚ ଜାତିର ଲୋକମାନେ ରହିଛନ୍ତି।

ରାଜ୍ୟ ସ୍ତରରେ ହେଉ ବା କେନ୍ଦ୍ର ସ୍ତରରେ ହେଉ ବ୍ରାହ୍ମଣମାନେ ହିଁ ଏକଚାଟିଆ ଭାବେ ସବୁ ସ୍ଥାନରେ ରହିଛନ୍ତି। ତେବେ ଅନ୍ୟ ଜାତିର ଲୋକମାନେ ଏ କ୍ଷେତ୍ରରେ ଯେତେବେଳ ପର୍ଯ୍ୟନ୍ତ ଆଗ୍ରହୀ ନ ଥିଲେ, ସେତେବେଳ ଯାଏଁ ସେମାନେ ସେ ସବୁରେ ରହିବାରେ କିଛି ଚିନ୍ତା କରିବାର ନଥିଲା। କିମ୍ବା ଅନ୍ୟ ଜାତିର ଲୋକମାନେ ଯେ ପର୍ଯ୍ୟନ୍ତ ଉଚ୍ଚ ଶିକ୍ଷା ପାଉ ନଥିଲେ ସେତେବେଳେ ବ୍ରାହ୍ମଣମାନେ ସବୁ ପଦ ପଦବୀକୁ ଅଧିକାର କରି ରଖିଥିଲେ। ବ୍ରାହ୍ମଣମାନଙ୍କୁ ସେତେବେଳେ କେହି ଏଥିପାଇଁ ସମାଲୋଚନା କରୁ ନଥିଲେ। ତେବେ ପରିସ୍ଥିତି ଏବେ ବଦଳି ଯାଇଛି।

ପଛୁଆ ବର୍ଗ ଓ ଅନୁସୂଚିତ ଜାତିର ଲୋକମାନେ ବ୍ରାହ୍ମଣମାନଙ୍କ ପରି ଏବେ ଉଚ୍ଚ ଶିକ୍ଷା ସ୍ତରରେ ଯୋଗ୍ୟ ହେଲେଣି। ସୁତରାଂ ବିଭିନ୍ନ କ୍ଷେତ୍ରରେ ସେମାନେ ନିଜର ଭାଗ ଦାବି କଲେଣି। ସେମାନେ ଜନସଂଖ୍ୟାର ଯେଉଁ ଅନୁପାତ, ସେହି ଭାବରେ ସରକାରୀ କର୍ମସଂସ୍ଥାନ ପାଇବା ସେମାନଙ୍କର ଅଧିକାର ବୋଲି ପ୍ରଶ୍ନ

Digitized by srujanika@gmail.com

ଉଠାଇଲେଣି । ଏହି ପରିବର୍ତ୍ତିତ ପରିସ୍ଥିତିରେ ବ୍ରାହ୍ମଣମାନେ ନିଜର ଆଧିପତ୍ୟ ଛାଡିବା ଯଥାର୍ଥ ନୁହେଁ କି? ପଛୁଆ ବର୍ଗର ଓ ଅନୁସୂଚିତ ଜାତିର ଲୋକମାନେ ଯେଉଁ ଯୁକ୍ତିଯୁକ୍ତ ଦାବି ଉପସ୍ଥାପନ କରୁଛନ୍ତି ତାହାକୁ ଗ୍ରହଣ କରିବା ବ୍ରାହ୍ମଣମାନଙ୍କର କାର୍ଯ୍ୟ ହେବା ଠିକ୍ ନୁହେଁ କି? କିନ୍ତୁ ବ୍ରାହ୍ମଣମାନେ ଏ କ୍ଷେତ୍ରରେ କାହିଁକି ଏତେ ପ୍ରତିକ୍ରିୟାଶୀଳ ହେଉଛନ୍ତି ଓ ଏହା ବିରୁଦ୍ଧରେ ଏତେ ସ୍ୱର ଉଠାଉଛନ୍ତି ? ବ୍ରାହ୍ମଣମାନଙ୍କର ଏହି କାର୍ଯ୍ୟ ଯଥାର୍ଥ ହେଉଛି କି?

**କାହାପାଇଁ ସ୍ୱାଧୀନତା ?**

ବ୍ରିଟିଶ ସାମ୍ରାଜ୍ୟବାଦୀ ମାନଙ୍କୁ ଆମ ଦେଶରୁ ହଟାଇବା ପାଇଁ ଆମେ କାହିଁକି ଏତେ ବଡ଼ ସଂଗ୍ରାମ କଲେ? ବ୍ରିଟିଶ୍‌ର ମାନଙ୍କ ଜାଗାରେ କ'ଣ କେବଳ ବ୍ରାହ୍ମଣମାନଙ୍କୁ ସବୁ ପଦପଦବୀରେ ଅବସ୍ଥାପିତ କରିବା ଏହାର ଲକ୍ଷ୍ୟ ଥିଲା? ସବୁ ଶ୍ରେଣୀର ଲୋକମାନଙ୍କୁ ଯଦି ସରକାରୀ ବ୍ୟବସ୍ଥାରେ ସ-ୃକ୍ତ କରା ନ ଯାଏ, ତେବେ ସ୍ୱାଧୀନତା ଓ ପ୍ରତିନିଧି ମୂଳକ ଶାସନର କିଛି ମହତ୍ତ୍ୱ ରହିବ ନାହିଁ ।

କେବଳ ବ୍ରାହ୍ମଣମାନେ ସବୁ ସରକାରୀ କର୍ମ ସଂସ୍ଥାନକୁ କରାଗତ କରିବା ଅନ୍ୟାୟ ମନେହୁଏ । ସରକାରଙ୍କର ସମସ୍ତ ସୁବିଧା ସୁଯୋଗ ଗୋଟିଏ ନିର୍ଦ୍ଦିଷ୍ଟ ଶ୍ରେଣୀର ଲୋକମାନେ ସବୁବେଳେ କାହିଁକି ଉପଭୋଗ କରିବେ? ସ-୍ରତି ଅଧିକାଂଶ ଗୋଷ୍ଠୀ ସବୁଥିରୁ ବଞ୍ଚିତ ହୋଇ ରହିଛନ୍ତି । ସେହିପରି ଅନ୍ୟ ଧର୍ମର ଲୋକମାନେ ମଧ୍ୟ ଉପେକ୍ଷିତ ହେଉଛନ୍ତି । ଭାରତ ବହୁ ଧର୍ମ ଓ ବହୁ ଜାତିର ଦେଶ ନୁହେଁ କି? ବ୍ରାହ୍ମଣମାନେ ସଂରକ୍ଷଣ ବ୍ୟବସ୍ଥାକୁ ବିରୋଧ କରିବା ଅମାନବିକ ଓ ଅନ୍ୟାୟ । ମୁଁ ଏଠାରେ ଗୋଟିଏ ଉଦାହରଣ ଦେବାକୁ ଚାହୁଁଛି । ମନେ କରନ୍ତୁ ଜଣେ ବାସିନ୍ଦାଙ୍କ ଘରେ କେତେକ ଚୋର ପ୍ରବେଶ କରି ତାଙ୍କର ସମସ୍ତ ମୂଲ୍ୟବାନ ଜିନିଷକୁ ନେଇ ଚାଲିଗଲେ । ଘରମାଲିକ ପୁଲିସ୍ ପାଖରେ ଅଭିଯୋଗ ଦେଲେ । ପୁଲିସ୍ ଚୋରମାନଙ୍କୁ ଓ ଚୋରୀ ହୋଇଥିବା ସ-ତ୍ତିର ଠାବ ବି କଲେ । ସେମାନଙ୍କ ପାଖରୁ ଏହା ଜବଦ କରାଯାଇଥିବା ଯୋଗୁଁ ଚୋରମାନେ ବିରୋଧ କରିବା ଓ ଧମକ ଦେବା ଉଚିତ୍ କି । ଆମ ସମାଜରେ ବ୍ରାହ୍ମଣମାନଙ୍କର ଭୂମିକା ଏହି ପ୍ରକାର ନୁହେଁ କି?

Digitized by srujanika@gmail.com

ଗୋଟିଏ ପ୍ରବାଦ ଅଛି ଯେ ଜଣେ ଭିକାରି ଭିକ ମାଗିବାକୁ ଆସି ପରିବାରର କ୍ୱାଇଁ ପାଲଟିଗଲେ। ସମସ୍ତ ସରକାରୀ ବିଭାଗ ଗୁଡିକ କାହିଁକି ବ୍ରାହ୍ମଣମାନଙ୍କ ହାତକୁ ସମର୍ପି ଦିଆଯାଇଛି? ସବୁ ବିଭାଗର ଉଚ୍ଚ ପଦଗୁଡିକ କେବଳ ବ୍ରାହ୍ମଣମାନଙ୍କ ହାତରେ ରହିବା ଯଥାର୍ଥ କି? ସେମାନେ ସରକାରରୁ ଯେଉଁ ଉଚ୍ଚ ବେତନ ପାଉଛନ୍ତି, ତାହା କରଦାତାର ଟଙ୍କା ନୁହେଁ କି? ସରକାରଙ୍କ ଆୟକୁ ପଛୁଆଜାତିର ଲୋକମାନେ ଓ ଅନୁସୂଚିତ ଜାତିର ଲୋକମାନେ କର ଦେଇ ମୁଖ୍ୟ ଭାଗ ଭରଣ କରୁନାହାନ୍ତି କି? ସମାଜର ଏହି ପଛୁଆ ଓ ଦଳିତବର୍ଗର ଲୋକମାନେ ସରକାରଙ୍କ ଆୟର ମୁଖ୍ୟ ଭାଗ ଭରଣ କରୁଥିବା ବେଳେ ସେମାନେ କାହିଁକି ସମସ୍ତ ସୁବିଧା ସୁଯୋଗରୁ ବଞ୍ଚିତ ହେବେ !

ସରକାରୀ ଚାକିରି କ୍ଷେତ୍ରରେ ଆମେ କାହିଁକି ଆମର ଭାଗ ଦାବି କରୁଛେ ! ଯଦି ସରକାରୀ ଚାକିରିଆମାନେ ନିଜର ଦରମା ରୋଜଗାର ଭିତରେ ସନ୍ତୁଷ୍ଟ ରୁହନ୍ତେ ସେ କ୍ଷେତ୍ରରେ ପଛୁଆ ଓ ଦଳିତ ଜାତିର ଲୋକମାନେ ନିଜର ବୃତ୍ତି ଭିତରେ ମଧ୍ୟ ସୀମିତ ରୁହନ୍ତେ। ସେମାନେ ସରକାରୀ ଚାକିରି ପାଇଁ କୌଣସି ଆଗ୍ରହ ପ୍ରକାଶ କରନ୍ତେ ନାହିଁ। କିନ୍ତୁ ସରକାରୀ କର୍ମକ୍ଷେତ୍ରରେ ରହିଥିବା ବ୍ୟକ୍ତିମାନେ ଆର୍ଥିକ ନିରାପତ୍ତା ସହ ନିର୍ଦ୍ଦିଷ୍ଟ କ୍ଷମତା ଉପଭୋଗ କରନ୍ତି। ଏପରିକି ଛୋଟ ଚାକିରିଟିଏ ମଧ୍ୟ କିଛି କ୍ଷମତା ସହ ସଂଶ୍ଳିଷ୍ଟ। ଯେଉଁମାନଙ୍କ ହାତରେ କ୍ଷମତା ରହିଛି ସେମାନେ ନିଜ ଜାତିର ଲୋକଙ୍କର ସ୍ୱାର୍ଥ ପ୍ରତି ସର୍ବଦା ଆଗ୍ରହୀ ହେଉନାହାନ୍ତି କି? ଏହା ଏକ ସାଧାରଣ ମାନବିକ ଦୁର୍ବଳତା।

ସରକାରୀ କର୍ମଚାରୀମାନେ ମଣିଷ ଭାବେ ଏହି ଦୁର୍ବଳତାରୁ ମୁକ୍ତ ନୁହନ୍ତି। ସେମାନେ ନିଜ ଶ୍ରେଣୀର ଉପକାରକୁ ଦେଖିବା ଅସ୍ୱାଭାବିକ ନୁହେଁ। ଯଦି ସରକାରୀ କର୍ମସଂସ୍ଥାନ କ୍ଷେତ୍ରରେ ସବୁ ଶ୍ରେଣୀ ଓ ଜାତିର ଲୋକମାନେ ରହିବେ ତେବେ ସମସ୍ତଙ୍କର ବିକାଶ ସମଭାବରେ ହୋଇପାରିବ। ତାହାଦ୍ୱାରା ସମାଜର ମଙ୍ଗଳ ହେବା ସହ ସାମାଜିକ ସ୍ତରରୁ ବୈଷମ୍ୟ ଦୂର ହେବ।

Digitized by srujanika@gmail.com

ରାଷ୍ଟ୍ରର ବିକାଶକୁ କେଉଁ ମାନଦଣ୍ଡରେ ନିରୂପଣ କରାଯିବ? ଲୋକମାନେ ପ୍ରକୃତରେ ସଭ୍ୟ ବୋଲି କିପରି କୁହାଯିବ? ଜ୍ଞାନ, ଶୃଙ୍ଖଳା, ସାଧୁତା ଇତ୍ୟାଦି ମୂଲ୍ୟବୋଧ ଗୁଡ଼ିକ ସମାଜରେ କିପରି ବିକଶିତ ହେବ? ଏହା ହେବାକୁ ହେଲେ ସମାଜରେ ସମତାର ଭାବନା ରହିବା ଆବଶ୍ୟକ। ସବୁଲୋକ ସମାନ ସୁବିଧା ସୁଯୋଗ ପାଇବା, ଆଇନ ଦୃଷ୍ଟିରେ ସମସ୍ତେ ସମାନ ବୋଲି ଭାବନା ଆସିବା ଓ ଲୋକମାନଙ୍କ ଦୃଷ୍ଟିଭଙ୍ଗୀରେ ଅନ୍ୟକୁ ସମାନ ଭାବରେ ଦେଖିବା ସଭ୍ୟ ଜୀବନ ଦୃଷ୍ଟିର ପରିଚାୟକ। ଏହି ଭଳି ଏକ ରାଷ୍ଟ୍ର ନିର୍ମାଣ ଆମର ଲକ୍ଷ୍ୟ ହେବା ଉଚିତ୍। ଏହି ରାଷ୍ଟ୍ରୀୟ ଲକ୍ଷ୍ୟ ପାଇଁ ଆମର ସାମାଜିକ ବ୍ୟବସ୍ଥାରେ ପରିବର୍ତ୍ତନ ହେବା ଜରୁରୀ ନୁହେଁ କି ? ପରିତାପର ବିଷୟ ଆମ ଦେଶର ସାମାଜିକ ସ୍ତରରେ ବହୁ ଉଚ୍ଚ, ନୀଚ ଭେଦଭାବ ରହିଛି। ବ୍ରାହ୍ମଣ, ଶୂଦ୍ର, ଅତିଶୂଦ୍ର ପରସ୍ପରଠାରୁ ଉଚ୍ଚ, ନୀଚ ଭେଦରେ ପୃଥକ୍ ହୋଇ ରହିଛନ୍ତି। ଏହି ବୈଷମ୍ୟକୁ ଦୂରକରିବା ଆମର ଆଭିମୁଖ୍ୟ ହେବା ଉଚିତ ନୁହେଁ କି?

ଧର୍ମ ଦୃଷ୍ଟିରୁ ଦେଖିଲେ ଆପଣମାନେ ତିନୋଟି ପୃଥକ୍ ଧର୍ମର ଲୋକମାନଙ୍କୁ ଦେଖିବେ। କୌଣସି ପରିସ୍ଥିତିରେ ଏହି ଧର୍ମର ଲୋକମାନେ ପରସ୍ପର ସହିତ ସମ୍ମିଳିତ ହେବା ଦେଖାଯାଏ ନାହିଁ। ସେମାନେ ଯେ ଗୋଟିଏ ଦେଶର ନାଗରିକ ଓ ସେମାନେ ପରସ୍ପର ସହ ମିଳିମିଶି କାର୍ଯ୍ୟ କରିବା ଆବଶ୍ୟକ, ଏହା କିପରି ସମ୍ଭବ !

ଯେତେବେଳେ ସାମାଜିକ ସ୍ଥିତି ଏହି ସ୍ତରରେ ରହିଛି ସେତେବେଳେ ରାଜନୀତି, ସାଧାରଣ ଜୀବନ, ସରକାରୀ ଚାକିରି, ଶିକ୍ଷା ସବୁ ସ୍ତରରେ ସବୁ ଶ୍ରେଣୀର ଲୋକମାନଙ୍କର ସଂଯୁକ୍ତି ଆବଶ୍ୟକ। ତାହାହେଲେ ସେମାନଙ୍କ ଭିତରୁ ଭେଦଭାବ କମିବ ଓ ସେମାନେ ପରସ୍ପର ସହ ମିଳିତ ହୋଇପାରିବେ, ନହେଲେ ପରସ୍ପର ଭିତରେ ବିଦ୍ୱେଷ ଓ ପ୍ରତିହିଂସା ମନୋଭାବ ଆସିବ। ଗୋଟିଏ ଗୋଷ୍ଠୀ ଅନ୍ୟକୁ ଶୋଷଣ କରିବ ଓ ଅନ୍ୟକୁ ଠକିବ।

ସମସ୍ତ କର୍ମସଂସ୍ଥାନ କ୍ଷେତ୍ରରେ ପ୍ରତ୍ୟେକ ଗୋଷ୍ଠୀର ସଂଖ୍ୟା ଅନୁଯାୟୀ ସେମାନଙ୍କର ଆବଶ୍ୟକୀୟ ପ୍ରତିନିଧିତ୍ୱ ରହିବ। ଯୋଗ୍ୟତା ଓ ଦକ୍ଷତା ସବୁ ଜାତିର

Digitized by srujanika@gmail.com

ଓ ଧର୍ମର ଲୋକମାନଙ୍କ ପାଖରେ ରହିଛି । ଜାତି, ଧର୍ମ ନାମରେ ପରସ୍ପରଠାରୁ ପୃଥକ୍ ହୋଇ ରହିଥିବା ଜନଗଣ କର୍ମ ସଂସ୍ଥାନ କ୍ଷେତ୍ରରେ ଏକତ୍ର ମିଳିମିଶି କାର୍ଯ୍ୟ କରିପାରିବେ । ଫଳରେ ସେମାନଙ୍କ ଭିତରେ ରହିଥିବା ପାର୍ଥକ୍ୟ ଘୁଞ୍ଚିପାରିବ । ମୁଁ ଯେତେବେଳେ ପଛୁଆ ଜାତିର ଲୋକ ବା ଦଳିତ ଜାତିର ଲୋକମାନଙ୍କୁ ସରକାରୀ କର୍ମ ସଂସ୍ଥାନ କ୍ଷେତ୍ରରେ ଚାକିରି ଦେବାକୁ କହୁଛି, ଏଥିରୁ ଏହା ବୁଝିବା ଠିକ୍ ନୁହେଁ ଯେ ରାସ୍ତାରେ ବୁଲୁଥିବା ରାମା, ଦାମା, ଶାମାକୁ କର୍ମକ୍ଷେତ୍ରରେ ନିଯୁକ୍ତି ଦିଆଯିବ । ପ୍ରତ୍ୟେକ ଚାକିରି ପାଇଁ ନିର୍ଦ୍ଦିଷ୍ଟ ଯୋଗ୍ୟତାକୁ ସ୍ଥିର କରାଯାଇଛି । ସେହି ଯୋଗ୍ୟତା ଥିବା ପଛୁଆ ଜାତିର ଲୋକଙ୍କୁ କର୍ମ ସଂସ୍ଥାନ କ୍ଷେତ୍ରରେ ଅବସ୍ଥାପିତ କରାଯାଇ ପାରିବ । ପ୍ରତ୍ୟେକ କର୍ମସଂସ୍ଥାନ ପାଇଁ ସର୍ବନିମ୍ନ ଯୋଗ୍ୟତା ସ୍ଥିର କଲାପରେ ପୁନଶ୍ଚ ଯୋଗ୍ୟତା ଓ ଦକ୍ଷତା ପ୍ରସଙ୍ଗ ଉଠାଇ ସେମାନଙ୍କୁ ବଞ୍ଚିତ କରିବା ଯଥାର୍ଥ ମନେହୁଏ ନାହିଁ ।

କୌଣସି କର୍ମ ସଂସ୍ଥାନ ପାଇଁ ଯୋଗ୍ୟତା ଦକ୍ଷତା ଭିତ୍ତିରେ ଯେଉଁମାନଙ୍କୁ ନିଯୁକ୍ତି ଦିଆଯାଇଛି ସେମାନେ ଯେ ସେମାନଙ୍କର କାର୍ଯ୍ୟକୁ ସାଧୁତା ଓ କୁଶଳତାର ସହ ସମାପନ କରୁଛନ୍ତି ଏହା ପ୍ରମାଣ କରାଯାଇ ପାରିବ ନାହିଁ । ସେହିପରି ଯେଉଁମାନେ ସଂରକ୍ଷଣ ଯୋଗୁଁ ଚାକିରି ପାଇଛନ୍ତି, ସେମାନେ ଯେ ସେମାନଙ୍କର କର୍ମକ୍ଷେତ୍ରରେ ଅସାଧୁ ଓ ଅଯୋଗ୍ୟ ଏହା ପ୍ରମାଣ କରିହେବ କି? ଏ କ୍ଷେତ୍ରରେ ସେପରି କିଛି ତଥ୍ୟଗତ ପ୍ରମାଣ ରହିଛି କି ?

ବରଂ ପୂର୍ବରୁ ସମସ୍ତ ସରକାରୀ ଚାକିରିରେ ଉଚ୍ଚ ଜାତିର ଲୋକମାନେ ରହୁଥିଲେ । ସମସ୍ତ ଚାକିରି ସେମାନଙ୍କର ଏକଚାଟିଆ ନିୟନ୍ତ୍ରଣ ଭିତରେ ରହିଥିଲା । ଉଚ୍ଚ ପଦପଦବୀରେ ଥିବା ଉଚ୍ଚ ଜାତିର ଲୋକମାନେ କାହିଁକି ଏତେ ଦୁର୍ନୀତି ଓ ଅସାଧୁତା ଭିତରେ ତେବେ ରହିଛନ୍ତି ! ବିଶେଷ କରି ସଂଖ୍ୟା ଲଘୁ ବ୍ରାହ୍ମଣମାନେ ସବୁ କ୍ଷେତ୍ରରେ ଉଚ୍ଚ ପଦବୀରେ ରହିଥିଲେ ବି ସେମାନେ ଅସାଧୁ ହୋଇ କାହିଁକି କାମ କରୁଛନ୍ତି ?

Digitized by srujanika@gmail.com

ସେମାନଙ୍କର ଦୁର୍ନୀତି ମୂଳକ କାର୍ଯ୍ୟ ଓ ଅମାନବିକ ବ୍ୟବହାର ଜାତିଗତ ମାନସିକତାରୁ ଆସିଥାଏ। ହାଇକୋର୍ଟର ବିଚାରପତି ବା ଉଚ୍ଚ ପଦବୀରେ ଥିବା କେତେକ ବ୍ୟକ୍ତି ଏବଂ କେତେକ ଅପରାଧୀ ଏକା ଜାତିର ଲୋକ। ସେ କ୍ଷେତ୍ରରେ ଅସାଧୁ ଲୋକମାନଙ୍କ ପ୍ରତି ସେମାନେ କୋହଳ ମନୋଭାବ ନେବା ଅତ୍ୟନ୍ତ ସ୍ୱାଭାବିକ ହେଉଛି। ଏପରିକି କେତେକ ଦୁର୍ନୀତି ଗତ କାର୍ଯ୍ୟ ଏହି କାରଣ ଯୋଗୁଁ ପଦାକୁ ଆସିପାରୁନାହିଁ।

ଯଦି ସରକାରୀ କର୍ମସଂସ୍ଥାନ କ୍ଷେତ୍ରରେ ପ୍ରତ୍ୟେକ ଶ୍ରେଣୀର ଉପଯୁକ୍ତ ପ୍ରତିନିଧିତ୍ୱ ରହିବ, ତେବେ ଯେକୌଣସି ଦୁର୍ନୀତି ମୂଳକ କାର୍ଯ୍ୟ ସାଧାରଣରେ ଜଣା ପଡିଯିବ। ଶାସନର ଗୁଣାତ୍ମକ ମାନ ବୃଦ୍ଧି କରିବାକୁ ହେଲେ ସଂରକ୍ଷଣ ନିହାତି ଆବଶ୍ୟକ। ସରକାରୀ ସ୍ତରରେ ହେଉଥିବା ସକଳ ଦୁର୍ନୀତିକୁ ପ୍ରତିହତ କରିବାକୁ ହେଲେ ସଂରକ୍ଷଣ ଅବଶ୍ୟମ୍ଭାବୀ ମନେହୁଏ।

ସାମାଜିକ ନ୍ୟାୟ ହାସଲ କରିବାକୁ ହେଲେ ସମାଜର ପ୍ରତ୍ୟେକ ଶ୍ରେଣୀର ଲୋକମାନଙ୍କର ସରକାରରେ ଯଥାର୍ଥ ପ୍ରତିନିଧିତ୍ୱ ରହିବା ଆବଶ୍ୟକ। ଏକ ବୈଷମ୍ୟପୂର୍ଣ୍ଣ ସମାଜରେ ଯୋଗ୍ୟତା ଓ ଦକ୍ଷତା ଆଳରେ ସମାଜର ଅଗଣିତ ଲୋକଙ୍କୁ ବଞ୍ଚିତ କରି ରଖିବା ଅନ୍ୟାୟ ଓ ଏକ ଚକ୍ରାନ୍ତ କହିଲେ ଅତ୍ୟୁକ୍ତି ହେବନାହିଁ। ସମାଜର ପ୍ରଗତି ଓ ସୁଖ ଶାନ୍ତି ପାଇଁ ପଛୁଆ ବର୍ଗ ତଥା ଦଳିତ ଜାତିର ଲୋକମାନଙ୍କୁ ସରକାରୀ ସ୍ତରରେ କର୍ମସଂସ୍ଥାନ ଦେବା ଆବଶ୍ୟକ। ସେମାନଙ୍କୁ ବଞ୍ଚିତ କରି ରଖିବା, ସେମାନଙ୍କ ପ୍ରତି ଅତି ବଡ଼ ଅନ୍ୟାୟ କହିଲେ ଅତ୍ୟୁକ୍ତି ହେବନାହିଁ।



Digitized by srujanika@gmail.com

# ପରିଚ୍ଛେଦ - ୧୦
# ଶାନ୍ତି, ପ୍ରଗତି ଓ ସମୃଦ୍ଧି ଦିଗରେ ଅଗ୍ରଗତି

**ଖାଦ୍ୟ ଅଭ୍ୟାସ**

ଲୋକମାନେ ବିଚାରଶୀଳତାର ଅଧିକାରୀ ହୋଇ ମଧ୍ୟ ସଂପ୍ରତି ବହୁ ସମସ୍ୟାର ସମ୍ମୁଖୀନ ହେଉଛନ୍ତି । ସେମାନେ ବହୁ ଆଶଙ୍କା ଓ ଉଦ୍‌ବେଗ ମଧ୍ୟରେ ରହିଛନ୍ତି । ନାନା ଜଟିଳ ସମସ୍ୟା ମଧ୍ୟରୁ ଖାଦ୍ୟାଭାବ ଜନିତ ସମସ୍ୟାଟି ବେଶି କ୍ଳେଶଦାୟକ ମନେହୁଏ । ତେବେ ଖାଦ୍ୟାଭାବ ଜନିତ ସମସ୍ୟା ନେଇ ଏତେ ବିବ୍ରତ ହେବା ବୋକାମି ପରି ଲାଗେ । ଖାଦ୍ୟାଭାବ ଜନିତ ସମସ୍ୟା କ୍ଷେତ୍ରରେ ଆମେ ନିଜେ ହିଁ ଦାୟୀ । ମୁଁ ଏପରି କାହିଁକି କହୁଛି ?

ଆମର ଲୋକମାନେ କେବଳ ଖାଦ୍ୟ ପାଇଁ ଭାତ ଉପରେ ନିର୍ଭର କରିଥାନ୍ତି । ତେବେ ଆମର କ୍ଷୁଧା ନିବାରଣ ପାଇଁ ଭାତ ଏକମାତ୍ର ଖାଦ୍ୟ ଭାବିବା ଠିକ୍ ନୁହେଁ । ଏହାକୁ ଆମେ ପରିହାର କରିପାରିବା । ହଜାରେ, ଦୁଇ ହଜାର ବର୍ଷ ଧରି ଆମେ ଚାଷ ଜମିରେ କେବଳ ଧାନ ଉତ୍ପାଦନ କରି ଆସୁଛେ ।

ମଣିଷମାନେ ଆଦିମ ଅବସ୍ଥାରେ ଅନ୍ୟ ପ୍ରାଣୀମାନଙ୍କର ମାଂସ ଖାଇ ଜୀବନ ଧାରଣ କରୁଥିଲେ । ପରବର୍ତ୍ତୀ ସମୟରେ ଲୋକମାନେ ମାଂସାହାରକୁ ପରିତ୍ୟାଗ କଲାପରେ ଲୋକମାନେ ଆମିଷ ଖାଦ୍ୟ ପରିହାର କରି ଶାକାହାରୀ ହେବା ଜଣାଯାଏ ।

ଲୋକମାନେ ଚା, କଫି ପାନ କରିବା ପରେ ଚିନି ଓ କ୍ଷୀରର ଅଭାବ ଅନୁଭୂତ ହେଲା । ଫଳରେ ଆଖୁ ଚାଷର ଆବଶ୍ୟକତା ଆସିଲା, କାରଣ ଏହାଦ୍ୱାରା ଚିନି ଉତ୍ପାଦନ ସମ୍ଭବ ହେବ । ଯେଉଁ ଜମିମାନଙ୍କରେ ଆଗେ ଲୋକମାନେ ଧାନ ଚାଷ କରୁଥିଲେ ଏବେ ସେହି ଉର୍ବର ଜମିରେ ଆଖୁ ଚାଷ କରୁଛନ୍ତି । ସେହିପରି ଆମର ଚା, କଫି ପାଇଁ କ୍ଷୀର ଆବଶ୍ୟକ ପଡୁଥିବାରୁ ଶିଶୁମାନେ କ୍ଷୀର ଖାଇବାର ସୁଯୋଗରୁ ବଞ୍ଚିତ ହୋଇ ସେମାନେ ଦୁର୍ବଳ ଓ ଅପୁଷ୍ଟିରେ ଆକ୍ରାନ୍ତ ହେଉଛନ୍ତି ।

Digitized by srujanika@gmail.com

ଦହି, ଛେନା, ଘିଅ ମଧ୍ୟ ଆମର ଲୋକମାନେ ଆବଶ୍ୟକତାନୁଯାୟୀ ପାଇପାରୁ ନାହାନ୍ତି । ସେହିପରି ଉତ୍ପାଦିତ ଚିନିର ମୁଖ୍ୟ ଭାଗ ମିଠା କରିବାରେ ଓ ପାନୀୟ ପ୍ରସ୍ତୁତ କରିବାରେ ଖର୍ଚ୍ଚ ହେଉଛି । ଚିନିର ଆବଶ୍ୟକତା ଯୋଗୁଁ ଧାନ ଚାଷ ହେଉଥିବା ଜମିରେ ଲୋକମାନେ ଆଖୁ ଚାଷ କରୁଛନ୍ତି । ଆମର ଆଖୁ ଚାଷ ବଢିବା ସହ ଧାନର ଉତ୍ପାଦନ କମିବାରେ ଲାଗିଛି । କ୍ଷୀରର ଅଭାବ ସେହିପରି ମଧ୍ୟ ହେଉଛି । ଆମର ଅଭାବ ମେଣ୍ଟାଇବା ପାଇଁ ବିଦେଶରୁ ଟିଣର ଗୁଣ୍ଡ କ୍ଷୀର ଆମକୁ ଆମଦାନୀ କରିବାକୁ ହେଉଛି । ଆମକୁ କେବଳ କିଛି ପରିବା ଭିତରେ ଆମର ଖାଦ୍ୟକୁ ସୀମିତ ରଖିବାକୁ ପଡୁଛି ଯେଉଁଥିରୁ ଆମେ ଆବଶ୍ୟକୀୟ ପୁଷ୍ଟିସାର ଖାଦ୍ୟ ପାଇ ନଥାଏ । ଆମର କୃଷି ଆମ ପାଇଁ ଲାଭଦାୟକ ହୋଇପାରୁ ନାହିଁ । କେତେକ ଅଦରକାରୀ ଜିନିଷ ଚାଷ କରାଯାଉଥିବା ଯୋଗୁଁ ଆମର ଧାନ ଉତ୍ପାଦନରେ ଅଭାବ ଦେଖାଦେଉଛି । ଖାଦ୍ୟରେ ଆମକୁ ଦୁଇଗୁଣା ଖର୍ଚ୍ଚ କରିବାକୁ ହେଉଛି ଓ ପରିଣାମତଃ ଜୀବନଧାରଣ କ୍ଷେତ୍ରରେ ଆମର ବ୍ୟୟ ବୃଦ୍ଧି ପାଉଛି ।

**ପରିବର୍ତ୍ତନ ଆବଶ୍ୟକ:-**

ଏଥିରେ ପରିବର୍ତ୍ତନ ଆଣିବା ଏତେ ସହଜବୋଧ ହେଉନାହିଁ । ଈଶ୍ୱର, ଧର୍ମ, ବେଦ ଇତ୍ୟାଦି ପ୍ରତି ଆମର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆଣିବା ଯେପରି କଷ୍ଟକର, ଏ କ୍ଷେତ୍ରରେ ମଧ୍ୟ ପରିବର୍ତ୍ତନ ସେହିପରି ଆୟାସସାଧ୍ୟ ।

ବ୍ରାହ୍ମଣମାନେ ଓ ଶୈବବାଦୀମାନେ ଆମିଷ ଖାଦ୍ୟ ଖାଆନ୍ତି ନାହିଁ । ଏହାଦ୍ୱାରା ସେମାନେ ନିଜର ଶ୍ରେଷ୍ଠତ୍ୱର ଭାବନା ଆଣିଥାନ୍ତି । ଯେଉଁମାନେ ଆମିଷ ଖାଦ୍ୟ ଖାଉଛନ୍ତି ସେମାନଙ୍କ ପ୍ରତି ସେମାନଙ୍କର ଦୃଷ୍ଟିଭଙ୍ଗୀ ମଧ୍ୟ ଭଲ ନୁହେଁ । ଆମିଷ ଖାଉଥିବା ଲୋକମାନଙ୍କୁ ସେମାନେ ନ୍ୟୂନ ଦୃଷ୍ଟିରେ ଦେଖିବା ସହ ସେମାନଙ୍କୁ ନିକୃଷ୍ଟ ମନେ କରିଥାନ୍ତି ।

ବ୍ରାହ୍ମଣମାନେ ଅତୀତରେ ଆମିଷ ଭକ୍ଷଣ କରୁଥିବାର ବହୁ ଦୃଷ୍ଟାନ୍ତ ବେଦ, ଶାସ୍ତ୍ର ଓ ଅନେକ ଧର୍ମଗ୍ରନ୍ଥରେ ରହିଛି । ସେମାନଙ୍କ ନିଜସ୍ୱ ଗ୍ରନ୍ଥରେ ଛେଳି, ଗାଈ, ଘୁଷୁରୀ, ଗଧ ଓ ଘୋଡାର ମାଂସ ଖାଉଥିବା ଉଲ୍ଲେଖ କରିଛନ୍ତି । ସେମାନେ ସେ କଥାକୁ ଭୁଲିଯାଇ ଆମିଷ ଭକ୍ଷଣ କରୁଥିବା ଲୋକମାନଙ୍କୁ ନ୍ୟୂନ ଭାବୁଛନ୍ତି ।

Digitized by srujanika@gmail.com

ଏହି ପରିପ୍ରେକ୍ଷୀରେ ତଳ ଶ୍ରେଣୀରେ ରହିଥିବା ଲୋକମାନଙ୍କର ସ୍ୱାର୍ଥ ପାଇଁ ଆମର ଖାଦ୍ୟ ଅଭ୍ୟାସରେ ପରିବର୍ତ୍ତନ ଆଣିବା ଆବଶ୍ୟକ।

ସେହିପରି କଫି ପିଇବା ଅଭ୍ୟାସକୁ ପରିହାର କରିବାକୁ ହେବ। ଆମେ କେତେ ପନିପରିବା ଉତ୍ପାଦନ କରିବା ସେଥିପାଇଁ ଏକ ଲାଇସେନ୍ସ ବ୍ୟବସ୍ଥାର ପ୍ରଚଳନ ହେବା ଆବଶ୍ୟକ। ନିରାମିଶାଷୀ ବ୍ରାହ୍ମଣ ଓ ଶୈବବାଦୀମାନଙ୍କର ଆବଶ୍ୟକତାକୁ ଦେଖି ଆମର ପରିବା ଉତ୍ପାଦନକୁ ସୁନିୟନ୍ତ୍ରିତ କରିବା ଦରକାର।

**ଅଧିକ ଗୋମାଂସ :**

ଯେଉଁମାନେ ଛେଳି ମାଂସ ଓ କୁକୁଡାମାଂସ ଖାଉଛନ୍ତି, ସେମାନେ ଗୋମାଂସ ମଧ୍ୟ ଖାଇପାରିବେ। ଏହାର ମୂଲ୍ୟକୁ ଏପରି କରାଯିବା ଆବଶ୍ୟକ ଯାହାକୁ ସାଧାରଣ ଲୋକମାନେ କ୍ରୟ କରିପାରିବେ। ପାଶ୍ଚାତ୍ୟ ଦେଶମାନଙ୍କରେ ଯେପରି ବହୁ ଗୋପାଳନ ଫାର୍ମମାନ ରହିଛି ଆମ ଦେଶରେ ସେହିପରି ଗୋପାଳନ ଫାର୍ମ ପ୍ରତିଷ୍ଠା କରାଯାଇ ପାରିବ। ଗାଇମାନଙ୍କୁ କେବଳ କ୍ଷୀର ଦେବା ଉଦ୍ଦେଶ୍ୟରେ ପାଳନ କରାଯିବା ଦରକାର, ବିଦେଶରେ ଗୋବଂଶକୁ ଚାଷ କାର୍ଯ୍ୟରେ ବିନିଯୋଗ କରାଯାଏ ନାହିଁ। ଚାଷକାର୍ଯ୍ୟ ମେସିନ ସାହାଯ୍ୟରେ କରାଯାଏ। ଆମ ଦେଶରେ ସେହିପରି ଚାଷକାର୍ଯ୍ୟରେ ମେସିନ ବ୍ୟବହାର କରାଯିବା ଆବଶ୍ୟକ ଫଳରେ ପଶୁ ସଂପଦକୁ ଅନ୍ୟ ଦରକାରୀ କ୍ଷେତ୍ରରେ ବିନିଯୋଗ କରାଯାଇ ପାରିବ।

ସମାଜର ଅଗଣିତ ଶ୍ରମଜୀବୀ ମଣିଷଙ୍କର ସ୍ୱାର୍ଥକୁ ଉପେକ୍ଷା କରି ସମାଜର ପରଜୀବୀ ଶ୍ରେଣୀ· ଆମର ଖାଦ୍ୟ ଅଭ୍ୟାସକୁ ସ୍ଥିର କରିଛନ୍ତି। ଆମର ଖାଦ୍ୟାଭ୍ୟାସ ଏପରି ହୋଇଛି ଯାହା ଆମର ସମସ୍ୟାକୁ ବୃଦ୍ଧି କରିଚାଲିଛି। ଆମର ଭୋଜନରେ ଆମେ ନାନା ବ୍ୟଂଜନର ଖାଦ୍ୟ ଖାଉଛୁ। ଭାତ ସହିତ ତରକାରୀ, ଭଜା, ଦହି, ଡାଲି, ଶମ୍ବର ପରି ନାନା ବ୍ୟଂଜନ ଆମେ ଆବଶ୍ୟକ କରୁଛୁ।

ସକାଳ ଜଳଖିଆରେ ଆମେ ଇଡିଲି, ଦୋଷା, ଉପମା ସହ ଚା ବା କଫି ପିଉଛୁ। ରାତ୍ର ଭୋଜନରେ ଆମେ ଯାହା ଚାହୁଁଛୁ ତାହା ଖାଉଛୁ। ଯେଉଁ ପରିବାର ମାନଙ୍କର ଆୟ କମ୍ ସେମାନେ ଏହି ଖାଦ୍ୟ ଖାଉଛନ୍ତି। ଉତ୍କଟ ଦାରିଦ୍ର୍ୟ ଯୋଗୁଁ କେତେକ ପରିବାର ସକାଳେ ପ୍ରାତଃ ଭୋଜନ ବା ରାତ୍ରରେ ରାତ୍ରଭୋଜନ କରନ୍ତି ନାହିଁ।

Digitized by srujanika@gmail.com

ଉତ୍ତର ଭାରତୀୟ ଲୋକମାନେ ସେମାନଙ୍କର ଖାଦ୍ୟ ଅଭ୍ୟାସକୁ ସରଳ କରିଛନ୍ତି । ସେମାନେ ରୁଟି ବା ପୁରି ସହ ଗୋଟିଏ ତରକାରୀ ଖାଆନ୍ତି । ଯେଉଁମାନେ ସ୍ୱଚ୍ଛଳ, ସେମାନେ ଏହା ସହିତ କିଛି ମିଠା ଖାଇଥାନ୍ତି । ପୃଥିବୀର ଜନସଂଖ୍ୟା ୩୫୦ କୋଟି ବୋଲି ଜନଗଣନା ହିସାବରୁ ଜଣାଯାଏ, ଯେଉଁଥିରୁ ମାତ୍ର ୧·୫ କୋଟି ଲୋକ ନିରାମିଷାଶୀ ।

**ସମାଧାନ :**

ଯେତିକି ସ୍ଥାନରେ ବର୍ତ୍ତମାନ ଚାଷ କରାଯାଉଛି ତାହାକୁ କମାଇ ସୁନିୟନ୍ତ୍ରିତ କରାଯିବା ଆବଶ୍ୟକ । ଚାଷରେ ଯେଉଁ କଠିନ ଶ୍ରମ ଆବଶ୍ୟକ ପଡୁଛି ତାହାକୁ ମଧ୍ୟ କମାଇବା ଦରକାର । ଚାଷ ଜମିର ଯେଉଁ ଅଂଶ ବଳକା ରହୁଛି ଆମେ ସେଠାରେ ଛେଳି, ବଳଦ, କୁକୁଡା, ବତକ, ଘୁଷୁରି ଓ ମାଛ ଚାଷ କରିପାରିବା । ଯଦି ବିଭିନ୍ନ ପ୍ରାଣୀଜ ଖାଦ୍ୟର ଉତ୍ପାଦନ ବୃଦ୍ଧି କରିବାକୁ ଯୋଜନାବଦ୍ଧ ପ୍ରୟାସ ହୁଏ ତେବେ ମୋର ଧାରଣା ଖାଦ୍ୟାଭାବ ସମସ୍ୟା ଦୂର ହୋଇପାରିବ । କୌଣସି ଲୋକ ଭୋକିଲା ରହିବେ ନାହିଁ ।

ଆଧୁନିକ ସଭ୍ୟତାରେ ମଣିଷ କଫି ପାନୀୟର ଦାସ ହୋଇଯାଇଛି । ଏହା ଆମର ଖର୍ଚ୍ଚର ପରିମାଣକୁ ବୃଦ୍ଧି କରିଦେଇଛି । ସେହିପରି ଭାତକୁ ଆମର ମୁଖ୍ୟ ଖାଦ୍ୟ ବୋଲି ନେଇ ସେଥିରେ ଆସକ୍ତ ହୋଇଯିବା ଦ୍ୱାରା ଆମର ଖର୍ଚ୍ଚ ମଧ୍ୟ ବଢିଯାଉଛି । ଭାତ ଉପରେ ଆମର ନିର୍ଭରଶୀଳତା ଯୋଗୁଁ ଅନ୍ୟ କେତେକ ଉପକାରୀ ଶଷ୍ୟକୁ ଆମେ ଅବହେଳା କରିଆସିଛେ । କେତେକ ଅପପୁଷ୍ଟିଜନିତ ଖାଦ୍ୟ ପ୍ରତି ଆମର ଅତ୍ୟନ୍ତ ଆଗ୍ରହ ଯୋଗୁଁ ଆମେ ଅଧିକ ସମୟ କାର୍ଯ୍ୟ କରିପାରୁ ନାହୁଁ । ଶ୍ରମଜୀବୀ ଶ୍ରେଣୀର ଲୋକମାନେ ମଧ୍ୟ ଖାଦ୍ୟର ପ୍ରଭାବରେ ଯଥାର୍ଥ ଶ୍ରମ ଦେଇପାରୁ ନାହାନ୍ତି ।

ସୁତରାଂ ଆମର ଖାଦ୍ୟ ଅଭ୍ୟାସରେ ପରିବର୍ତ୍ତନ ଆଣିବାକୁ ମୁଁ ଗୁରୁତ୍ୱ ପ୍ରଦାନ କରୁଛି । ଭାତ ଉପରେ ପୂର୍ଣ୍ଣ ନିର୍ଭର ନକରି ଶକ୍ତି ଓ ପୁଷ୍ଟିସାଧନ ପାଇଁ ବିକଳ୍ପ ବିଭିନ୍ନ ଖାଦ୍ୟ ଉପରେ ଆମକୁ ଗୁରୁତ୍ୱ ଦେବାକୁ ହେବ । ଶରୀରର ଆବଶ୍ୟକୀୟ ଶକ୍ତି ଓ ପୁଷ୍ଟି ପାଇଁ ଆମକୁ ବିଭିନ୍ନ ପ୍ରକାର ଖାଦ୍ୟ ଉତ୍ପାଦନ କରିବାକୁ

Digitized by srujanika@gmail.com

ହେବ । ଅତୀତରେ କଳକାରଖାନା ଚଳାଇବାକୁ ଆମକୁ ବାଷ୍ପ ଶକ୍ତି ଉପରେ ନିର୍ଭର କରିବାକୁ ହେଉଥିଲା । କୋଇଲା ଜାଳି ସେହି ଉତ୍ତାପରେ ପାଣିକୁ ଗରମ କରି ସେଥିରୁ ବାଷ୍ପ ବାହାର କରି ଆମକୁ ଯନ୍ତ୍ରମାନଙ୍କୁ ଚଳାଇବାକୁ ପଡୁଥିଲା । ପରେ ସେଥିପାଇଁ ଆମେ ତେଲ ବ୍ୟବହାର କଲେ । ପରେ ଅଶୋଧିତ ତେଲ ଓ ପେଟ୍ରୋଲ ବିନିଯୋଗକରି ଯନ୍ତ୍ରମାନଙ୍କୁ ଚଳାଇଲେ । ଏବେ ବିଦ୍ୟୁତଶକ୍ତି ବ୍ୟବହାର କରି ଆମେ ଯନ୍ତ୍ର ଓ କଳକାରଖାନା ଚଳାଉଛେ । ସମୟର ପରିବର୍ତ୍ତନ ସହ ନୂଆ ନୂଆ କୌଶଳ ପ୍ରୟୋଗ କରି ଆମେ ନୂଆ ନୂଆ ପ୍ରଣାଳୀ ଉଦ୍ଭାବନ କରିପାରିଛେ । ସେହିପରି ଆମ ଶରୀରର ବିଭିନ୍ନ ଅଙ୍ଗକୁ ସୁସଂହତ ରଖି ନୂଆ ନୂଆ ପୁଷ୍ଟିକର ଓ ଶକ୍ତିଦାୟକ ଖାଦ୍ୟ ବାହାର କରିବାକୁ ଆମେ ପ୍ରୟାସ କରିବା ଆବଶ୍ୟକ । କେତେ ଅଳ୍ପ ଖାଦ୍ୟରୁ ଅଧିକ ଶକ୍ତି ମିଳିପାରିବ ଓ ଆମେ କ୍ରିୟାଶୀଳ ଭାବେ କାର୍ଯ୍ୟକ୍ଷମ ରହିପାରିବା ସେଥି ପାଇଁ ଉଦ୍ୟମ ଦରକାର । ଶରୀରର ଆବଶ୍ୟକୀୟ ପୁଷ୍ଟି ଓ ବୃଦ୍ଧି ପାଇଁ ଗୁଡାଏ ଖାଦ୍ୟ ଖାଇବାର ଅଭ୍ୟାସରେ ପରିବର୍ତ୍ତନ ଆବଶ୍ୟକ । ବ୍ରେଡ, ଚପାତି ଇତ୍ୟାଦି ଖାଦ୍ୟ ସହ ଶସ୍ତାରେ ଉପଲବ୍ଧ ପ୍ରାଣୀଜ ଖାଦ୍ୟ ପାଇଁ ଆମେ ଯତ୍ନଶୀଳ ହେଲେ ଖାଦ୍ୟ ସମସ୍ୟାର ସମାଧାନ ହେବା ସହ କେହି ଭୋକିଲା ରହିବେ ନାହିଁ । ମୁଁ ଯାହା କହୁଛି ଏଥିରେ କେତେକ ବ୍ୟକ୍ତି ବିରୋଧ ପ୍ରକାଶ କରିବେ । ତେବେ ଅନ୍ୟ ଦେଶମାନଙ୍କର ଲୋକମାନଙ୍କ ଖାଦ୍ୟ ଅଭ୍ୟାସ ଉପରେ ନଜର ଦେବାକୁ ମୁଁ କହିବି । ମୋର ଅନୁରୋଧ ଅନ୍ୟ ଦେଶମାନଙ୍କରେ ଖାଦ୍ୟ ସମସ୍ୟା କିପରି ସମାଧାନ ହୋଇପାରିଛି ତାହା ଦେଖନ୍ତୁ ଓ ସେଥିରୁ କିଛି ଶିକ୍ଷା କରନ୍ତୁ ।

**ପୋଷାକ ଅଭ୍ୟାସ :**

ସମାଜରେ ଥିବା ନାନା ବୈଷମ୍ୟକୁ ଦୂର କରି ଜନଗଣଙ୍କ ମଧ୍ୟରେ ସମତା ଓ ସଂହତି ସ୍ଥାପନ କରିବାକୁ ହେଲେ ଆମକୁ ପୋଷାକ ବ୍ୟବହାର ଉପରେ ବି ଗୁରୁତ୍ୱ ଦେବାକୁ ହେବ । ପୋଷାକ ଜନିତ କାରଣରୁ ସମାଜରେ ନାନା ଶ୍ରେଣୀ ବିଭାଜନ ରହିଆସିଛି । ତୁର୍କୀର ବିଶିଷ୍ଟ ଜନନାୟକ କମଲ ପାଶା ନିଜ ଦେଶରେ କିପରି ବିପ୍ଳବାତ୍ମକ ପରିବର୍ତ୍ତନ ଆଣିଥିଲେ ତାହା ଦେଖନ୍ତୁ । ସେ ସାମାଜିକ ବୈଷମ୍ୟ

Digitized by srujanika@gmail.com

ଦୂର ପାଇଁ ସମସ୍ତେ ଏକାପ୍ରକାର ପୋଷାକ ପିନ୍ଧିବାକୁ ନିର୍ଦ୍ଦେଶନାମା ଜାରି କରିଥିଲେ। ଏହା ଗୋଟିଏ ଛୋଟ ପଦକ୍ଷେପ ଥିଲା, ତେବେ ଏହାଦ୍ୱାରା ସମାଜରେ ଏକ ବଡ ପରିବର୍ତ୍ତନ ଆସିପାରିଲା। ତୁର୍କୀ ପୃଥିବୀରେ ଏକ ଶକ୍ତିଶାଳୀ ରାଷ୍ଟ୍ର ହୋଇପାରିଲା।

ପୋଷାକ, ବ୍ୟବହାର, ବାହ୍ୟାଡମ୍ବର କ୍ଷେତ୍ରରେ ବିଦେଶୀ ଲୋକମାନେ ଅନେକ ଶୃଂଖଳିତ। ସେମାନଙ୍କର ଏହି ପରିବର୍ତ୍ତନକୁ ଆମେ ଅନୁଭବ କରୁନାହୁଁ। ଆମର ଲୋକମାନେ ଅଯଥାରେ ନିଜର ବାହାବା ଦେଖାଇଥାନ୍ତି। ଆମ୍‌ର ପରଂପରା ଓ ଚରିତ୍ର ନେଇ ସେମାନେ ଅହମିକା ପ୍ରକାଶ କରିଥାନ୍ତି। ସେମାନେ କୌଣସି ପରିବର୍ତ୍ତନକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି। ଏକ ରୁଦ୍ଧ ଦୃଷ୍ଟିଭଙ୍ଗୀ ସେମାନେ ପୋଷଣ କରନ୍ତି।

ଆମ ଦେଶରେ କୌଣସି ପରିବର୍ତ୍ତନ ସହଜରେ ଅଣାଯାଇ ପାରେନାହିଁ। ଗୋଟିଏ ପରିବର୍ତ୍ତନ ଯେତେ ଦରକାରୀ ଓ ପ୍ରଗତିଶୀଳ ହେଲେ ବି ପରିବର୍ତ୍ତନ ଆଣିବା ସହଜ ହୁଏ ନାହିଁ। ଆମର ଦୃଷ୍ଟିଭଙ୍ଗୀ ଏପରି ରକ୍ଷଣଶୀଳ ହୋଇରହିଛି ଓ ଆମର ପରଂପରା ପ୍ରତି ଏତେ ଅହେତୁକ ପ୍ରୀତି ରହିଛି ଯେ ଆମେ ଯେକୌଣସି ପରିବର୍ତ୍ତନକୁ ବିରୋଧ କରିଥାଉ। ଯେକୌଣସି ପ୍ରଗତିଶୀଳ ଭାବନା ଓ ପରିବର୍ତ୍ତନକୁ ଆମର ଲୋକମାନେ ବିରୋଧ କରିବା ଏକ ସାଧାରଣ ଘଟଣା। କୁସଂସ୍କାରରେ ବିଶ୍ୱାସ ଯୋଗୁଁ ଆମର ଲୋକମାନେ ଅତ୍ୟଧିକ ପ୍ରତିକ୍ରିୟାଶୀଳ ହୋଇ ରହିଛନ୍ତି। ସମସ୍ତ ପ୍ରଗତିଶୀଳ ଓ ନୂତନ ପରିବର୍ତ୍ତନ ବିରୁଦ୍ଧରେ ସେମାନେ ସର୍ବଦା ପ୍ରଚାର କରିଥାନ୍ତି। ଏସବୁ କାରଣ ଯୋଗୁଁ ଆମ ଦେଶ ଏତେ ପଛୁଆ ହୋଇ ରହିଛି। ଏହି ମାନସିକତା ଯୋଗୁଁ ଆମେ ତଳେ ପଡି ରହିଛେ। ଶହ ଶହ ବର୍ଷର ରୁଦ୍ଧ ମାନସିକତା ଯୋଗୁଁ ଆମେ ପରଂପରାର ଦାସ ହୋଇ ରହିଛେ। ଆମର ଲୋକଙ୍କର ଏହି ଦୃଷ୍ଟିଭଙ୍ଗୀରେ କିପରି ପରିବର୍ତ୍ତନ ଆଣିହେବ ମୁଁ ସେଥିପାଇଁ କିଛି ପ୍ରୟାସ କରିଆସୁଛି। ଖାଦ୍ୟ, ପୋଷାକ ଠାରୁ ଆରମ୍ଭ କରି ବିଭିନ୍ନ କ୍ଷେତ୍ରରେ କିପରି ପରିବର୍ତ୍ତନ ଆଣିହେବ ମୁଁ ଏଥିପାଇଁ ମୋ ସ୍ତରରେ ଉଦ୍ୟମ କରିଆସୁଛି।

Digitized by srujanika@gmail.com

## ପୁରୁଷ ନାରୀ ସମସ୍ତଙ୍କ ପାଇଁ ସମାନ ପୋଷାକ:

ପୁରୁଷ ଓ ନାରୀ ନିର୍ବିଶେଷରେ ସମସ୍ତେ ଏକା ପ୍ରକାର ପୋଷାକ ପରିଧାନ କରିବା ଦରକାର। ପୁଅ, ଝିଅ ସମସ୍ତେ ପୋଷାକ କ୍ଷେତ୍ରରେ କୌଣସି ପାର୍ଥକ୍ୟ ରଖିବା ଠିକ୍ ନୁହେଁ। ଆମର ମହିଳା ମାନେ ଦୀର୍ଘ କେଶ ରଖିବା ଏକ ଅଭ୍ୟାସ। ଛ'ଫୁଟ ଲମ୍ବର କେଶ ରଖିବାର କଣ ଅର୍ଥ ଥାଇପାରେ! ଏହା ଅନେକାଶଂରେ ଏକ ବୋଝ ଓ ପ୍ରାୟତଃ ଅସୁବିଧାଜନକ। ମହିଳାମାନେ ପୁରୁଷମାନଙ୍କ ପରି କେଶ ରଖିବାରେ କଣ ଅସୁବିଧା ରହିଛି !

ପୋଷାକରେ, ବ୍ୟବହାରରେ ଓ ଚେହେରାରେ ପୁରୁଷ ଓ ମହିଳା ଏକ ସାଧାରଣ ମାନ ରକ୍ଷା କରିବା ଦରକାର। ଏହାଦ୍ୱାରା ଆମର ନାରୀସମାଜକୁ ଦାସତ୍ୱରୁ ମୁକ୍ତ କରାଯାଇ ପାରିବ। ଆମର ମହିଳାମାନେ ନାନା ଭାବେ ଭୂଷିତ ହୋଇ ବାହାରକୁ ଯିବା ସେମାନଙ୍କର ସାମାଜିକ ସ୍ତରରେ ନ୍ୟୂନତା ଭାବରେ ପରିଚାୟକ। ମହିଳାମାନଙ୍କର ସାମାଜିକ ସ୍ତରରେ ନ୍ୟୂନତା କଷ୍ଟଦାୟକ। ନିଜର କୃତ୍ରିମ ସୌନ୍ଦର୍ଯ୍ୟ ଓ ଆଭିଜାତ୍ୟ ଦେଖାଇବା ପାଇଁ ଏଥିରେ ଅନେକ ଅର୍ଥବ୍ୟୟ କରିବା ଅର୍ଥଶୂନ୍ୟ। ପୁରୁଷମାନଙ୍କ ସହିତ ସବୁ ସ୍ତରରେ ନାରୀମାନେ ସମାନ ହେବାକୁ ଉଦ୍ୟମ କରିବା ମୋର ଇଚ୍ଛା। ଶାଢୀ, ଗହଣା ଓ ନାନା କୃତ୍ରିମ ଓ ବିଳାସପୂର୍ଣ୍ଣ ଜିନିଷର ବ୍ୟବହାର ମହିଳାମାନଙ୍କ ବିକାଶ କ୍ଷେତ୍ରରେ ପ୍ରତିବନ୍ଧକ। ମହିଳାମାନେ ସାମାଜିକ ବିକାଶ କ୍ଷେତ୍ରରେ ଥିବା ପ୍ରତିବନ୍ଧକ ବିଷୟରେ ସଚେତନ ହେବା ଆବଶ୍ୟକ।

ଶୋଭନୀୟତା, ଶାଳୀନତା ଓ ପରିଚ୍ଛନ୍ନତା ଦରକାର। ମୁଁ ଏହାର ବିରୋଧୀ ବୋଲି ମୋତେ ଦୟାକରି ଭୁଲ ବୁଝନ୍ତୁ ନାହିଁ। କିନ୍ତୁ ଏସବୁ ରକ୍ଷା କରିବାରେ ଏତେ ପ୍ରଚୁର ଅର୍ଥ ବ୍ୟୟ କରିବା ଆବଶ୍ୟକ କି ! କୃତ୍ରିମ ସୌନ୍ଦର୍ଯ୍ୟ ଓ ଚେହେରା ପ୍ରଦର୍ଶନ ଅନାବଶ୍ୟକ। ଏ କ୍ଷେତ୍ରରେ ଅଯଥା ଅର୍ଥ ବ୍ୟୟ ନ କରି ଏକ ସରଳ ଜୀବନ ସ୍ୱାଗତଯୋଗ୍ୟ। ଏକ ସରଳ ଜୀବନ ଯାପନ ଭିତରେ ଜଣେ ଭଦ୍ର, ମାର୍ଜିତ ଓ ସଂସ୍କୃତିସଂପନ୍ନ ହୋଇପାରିବ।

Digitized by srujanika@gmail.com

**ସାଧାରଣ ରୋଷାଇଶାଳ:-**

ହୋଟେଲ ଅର୍ଥ ଏକ ସାଧାରଣ ଭୋଜନାଳୟ। ଆମ ସମାଜରେ ପ୍ରତ୍ୟେକ ପରିବାରର ଏକ ରୋଷେଇ ଘର ଥାଏ ଯେଉଁଠି ପରିବାରର ଖାଦ୍ୟ ପ୍ରସ୍ତୁତ ହୁଏ। ଯଦି ଲୋକମାନେ ସୁଖରେ ରହିବାକୁ ଚାହାନ୍ତି ତେବେ ସେମାନେ ଅଯଥା ସମସ୍ୟା ଓ ଆଶଙ୍କାକୁ ପରିହାର କରିବା ଦରକାର। ଆମେ ବିଦେଶରେ କ'ଣ ଦେଖୁ? ସାଧାରଣ ହୋଟେଲ ସହ ସଂଲଗ୍ନ ଗୃହମାନଙ୍କରେ ଅନେକ ଲୋକ ସୁଖରେ ବାସ କରନ୍ତି। ସେମାନେ ନିଜର ମନ ମୁତାବକ ଖାଦ୍ୟ ସେଠାରେ ବରାଦ ଦିଅନ୍ତି ଓ ଭୋଜନାଳୟ ମାନେ (ରେଷ୍ଟୁରାଣ୍ଟ) ସେସବୁ ପ୍ରସ୍ତୁତ କରି ଯୋଗାନ୍ତି। ସେ ଦେଶମାନଙ୍କରେ ରେଷ୍ଟୁରାଣ୍ଟମାନେ ଲୋକମାନଙ୍କର ଚାହିଦାକୁ ଯତ୍ନର ସହ ପୂରଣ କରନ୍ତି।

ସ୍ୱାମୀ, ସ୍ତ୍ରୀ ନିଜ ନିଜର କର୍ମ କ୍ଷେତ୍ରକୁ ଯାନ୍ତି। କର୍ମକ୍ଷେତ୍ରରୁ ସେମାନେ ରେଷ୍ଟୁରାଣ୍ଟକୁ ଆସି ଖାଦ୍ୟ ଖାଆନ୍ତି। ଘରକୁ ଫେରି ବିଶ୍ରାମ କରନ୍ତି। ଏହାଦ୍ୱାରା ସେମାନେ ଅନେକ ସମସ୍ୟାରୁ ମୁକ୍ତ ରହନ୍ତି। ସେମାନଙ୍କୁ ବଜାର ଯାଇ ଖାଦ୍ୟସାମଗ୍ରୀ କିଣିବାର ଝିନ୍‌ଝୋଟ ନ ଥାଏ କିମ୍ବା ସେସବୁ ଘରେ ସଜାଡି ରଖିବା ପାଇଁ ଆବଶ୍ୟକ ପଡେ ନାହିଁ।

ଆମେ ଏଠାରେ କଣ ଦେଖୁ ?

ଦୁଇ ଜଣ ବ୍ୟକ୍ତି ଏକାଠି ଘର କରି ରହିବାକୁ ସେମାନେ ଏକ ବଡ଼ ଘର ଆବଶ୍ୟକ କରନ୍ତି। ବହୁ ଘରକରଣା ଜିନିଷରେ ଅନେକ ଅର୍ଥ ବ୍ୟୟ କରିବାକୁ ହୁଏ। ଯଦି ଆମର ଏଠାରେ ବିଦେଶ ଭଳି ରେଷ୍ଟୁରାଣ୍ଟମାନ ଓ ଏହା ସହ ସଂଲଗ୍ନ କୋଠରୀମାନେ ବହୁ ସଂଖ୍ୟାରେ ନିର୍ମିତ ହୁଅନ୍ତା ତାହା ଆମ ମାନଙ୍କ ପାଇଁ ଏକ ଆଶୀର୍ବାଦ ହୁଅନ୍ତା। ଏସବୁକୁ ସବୁ ପ୍ରକାର ସାହାଯ୍ୟ ପାଇଁ ସରକାର ପ୍ରୋତ୍ସାହନ ଦିଅନ୍ତେ। ଏହାର ମାଲିକମାନେ କୌଣସି ଲାଭ ଉଦ୍ଦେଶ୍ୟରେ ଏହା ନିର୍ମାଣ ନକରି ସମାଜର ହିତ ପାଇଁ ଏସବୁ କରନ୍ତେ। ସେମାନେ ଏହାକୁ ବ୍ୟାବସାୟିକ କେନ୍ଦ୍ର ବା ଲାଭଦାୟକ ଅନୁଷ୍ଠାନ ବୋଲି ଚିନ୍ତା ପୋଷଣ କରନ୍ତେ ନାହିଁ। ବରଂ ସାଧାରଣ

Digitized by srujanika@gmail.com

ଲୋକଙ୍କର ଉପକାର ପାଇଁ ଏସବୁ ନିର୍ମାଣ କରନ୍ତେ । ସମାନ ସେବା ହିଁ ସେମାନଙ୍କର ଲକ୍ଷ୍ୟ ରୁହନ୍ତା ।

ମୁଁ ରୁଷ ଯାଇଥିବା ଅବସରରେ ଏକ ସାଧାରଣ ଭୋଜନାଳୟ ଦେଖିବାକୁ ଯାଇଥିଲି । ସେଠାରେ ଛବିଶ ହଜାର ଲୋକଙ୍କୁ ଖାଦ୍ୟ ଯୋଗାଣ ହେଉଥିଲା । ସେଠାରେ କେତେକ ଡାକ୍ତର ରହି ଖାଦ୍ୟର ପ୍ରସ୍ତୁତି ଓ ଖାଦ୍ୟର ମାନକୁ ମଧ୍ୟ ଦେଖୁଥିଲେ । ସେଠାରେ ବିଭିନ୍ନ ଲୋକଙ୍କର ଆବଶ୍ୟକତାକୁ ନେଇ ବହୁ ପ୍ରକାରର ଖାଦ୍ୟ ପ୍ରସୁତ ହେଉଥିଲା । ଏହି ପ୍ରକାରର କାର୍ଯ୍ୟ ଆମର ବି ଏଠାରେ ହୋଇପାରନ୍ତା ।

ସୁତରାଂ ପ୍ରତ୍ୟେକ ବ୍ୟକ୍ତି ପାଇଁ ଏକ ସ୍ୱତନ୍ତ୍ର ଗୃହ ଓ ରୋଷାଇଶାଳର ଆବଶ୍ୟକତା ରହନ୍ତା ନାହିଁ । ଆମେ ଯଦି ଏପରି ବିଭିନ୍ନ ଭୋଜନାଳୟମାନ ସ୍ଥାପନ କରନ୍ତେ ଆମେ ଅନେକ ସମୟ ଓ ଶକ୍ତି ବଞ୍ଚାଇ ପାରନ୍ତେ । ସରକାର ଏହି ପ୍ରସଙ୍ଗରେ ଚିନ୍ତା କରିବା ସହ ଏ ପ୍ରକାରର ରେଷ୍ଟୁରାଣ୍ଟ ନିର୍ମାଣ ପାଇଁ ପ୍ରୟାସ କରିବା ଆବଶ୍ୟକ । ସାଧାରଣ ରୋଷେଇଶାଳ ମାଧ୍ୟମରେ ଏ ଲୋକମାନଙ୍କୁ ଅନେକ ଉଦ୍‌ବେଗ ଓ ବିରକ୍ତିରୁ ମୁକ୍ତି ଦିଆଯାଇ ପାରନ୍ତା । ମୋ ବିଷୟରେ ଲୋକମାନେ ଯାହା ଚିନ୍ତା କରନ୍ତୁ ନା କାହିଁକି ମୁଁ ମୋର ଅନୁଭୂତିରୁ ମୋର ମନ୍ତବ୍ୟକୁ ଦୃଢତାର ସହ ବ୍ୟକ୍ତ କରିବାକୁ ଚାହୁଁଛି ।

ଆମ ଦେଶରେ ଯଦି ପାରସ୍ପରିକ ସହଯୋଗର ମନୋଭାବ ଦୃଢ ହୋଇ ପାରନ୍ତା ଓ ଏହା ସଠିକ୍ ଭାବେ କାର୍ଯ୍ୟକାରୀ ହୁଅନ୍ତା, ତେବେ କୌଣସି ବ୍ୟକ୍ତି ଅଯଥା ସମସ୍ୟା ଓ ଉଦ୍‌ବେଗ ଭିତରେ ରହନ୍ତା ନାହିଁ । ଏହାଦ୍ୱାରା ଅନେକ ସମସ୍ୟା ଓ ଅସୁବିଧା ଦୂର ହୋଇପାରନ୍ତା । ସମାଜରେ ଶାନ୍ତି ଓ ଶୃଙ୍ଖଳା ପ୍ରତିଷ୍ଠିତ ହୋଇ ପାରନ୍ତା । ପ୍ରତ୍ୟେକ ବ୍ୟକ୍ତି ଖୁସି ମନରେ ଶାନ୍ତିର ସହ ଜୀବନ ବଞ୍ଚିପାରନ୍ତା ।

**ସ୍ୱାର୍ଥପରତାଃ-**

ଆମ ଦେଶରେ ଯେତେବେଳେ କୌଣସି ନୂତନ ସଂଗଠନ ପ୍ରତିଷ୍ଠା ହୁଏ ସେତେବେଳେ ଲୋକମାନେ ନିଜର ବ୍ୟକ୍ତିଗତ ସୁବିଧା ପାଇଁ ସେଥିରେ ସଂପୃକ୍ତ ହୁଅନ୍ତି । ଏହା ଆମର ଏକ ଦୁର୍ବଳତା । ଆମେ ସର୍ବସାଧାରଣଙ୍କର ସୁବିଧା କିମ୍ବା ବୃହତ୍ତର ସମାଜର ମଙ୍ଗଳକଥା ଚିନ୍ତା କରେନାହିଁ । ଆମର ଲୋକମାନେ ବୃହତ୍ତର

Digitized by srujanika@gmail.com

ସମାଜ ପାଇଁ ଥିବା ଦାୟିତ୍ୱ ଓ କର୍ତ୍ତବ୍ୟ ବିଷୟକୁ ଏଡାଇଯାନ୍ତି । ମନେକର ଜଣେ ବ୍ୟକ୍ତିଙ୍କର ଏକ ଘୋଡାଗାଡି ଅଛି, ସେ ସେଥିରେ ସବୁବେଳେ ଯିବା ଆସିବା କରନ୍ତି ନାହିଁ । ସେ ଏହାକୁ ମାତ୍ର ଦୁଇ/ତିନି ଘଣ୍ଟା ପାଇଁ ବ୍ୟବହାର କରନ୍ତି ଓ ଅନ୍ୟ ସମୟରେ ଗାଡିଟି ବିନା କାର୍ଯ୍ୟରେ ରହିଥାଏ । ଗାଡି ଭଳି ଆମର ଲୋକମାନେ ବୃଥାରେ ଅନେକ ସମୟ ଓ ଅର୍ଥ ବ୍ୟୟ କରନ୍ତି । ସେଥିପାଇଁ ଆମର ସମାଜ ବହୁ ପଛରେ ପଡିରହିଛି । ଜାତୀୟ ଉତ୍ପାଦନ ଅବଶ୍ୟ ବଡିବାରେ ଲାଗିଛି ଓ ବହୁ କ୍ଷେତ୍ରରେ ନୂଆ ନୂଆ କୌଶଳର ବିନିଯୋଗ ହେଉଛି ତଥାପି ସମାଜ ସ୍ଥାଣୁ ହୋଇ ରହୁଛି । ସ୍ୱାର୍ଥପରତା ଓ ନିଜର ସୁଖର ମନୋଭାବ ଯୋଗୁଁ ସମାଜରେ ଆବଶ୍ୟକୀୟ ପ୍ରଗତି ହେଉନାହିଁ । ସୁତରାଂ ପ୍ରଥମେ ଆମେ ଆମର ସ୍ୱାର୍ଥପର ମନୋଭାବରୁ ମୁକ୍ତ ହେବା ଦରକାର । ଅନ୍ୟମାନଙ୍କ ସହ ସୁଖ ଶାନ୍ତିରେ ରହିବାର ମନୋଭାବ ବ୍ୟକ୍ତିର ଜୀବନକୁ ଉନ୍ନତି କରିଥାଏ । ଅନ୍ୟର ସୁଖ ସୁବିଧା ପ୍ରତି ସଚେତନତା ଦ୍ୱାରା ଜୀବନର ମାନ ବଢିଥାଏ । ଏଥିପାଇଁ ସହଯୋଗିତା ଓ ସହଭାଗିତାର ମନୋଭାବ ଆବଶ୍ୟକ ।

**ସହଯୋଗ:-**

ଦିନେ ନା ଦିନେ ବ୍ୟକ୍ତିମାନଙ୍କ ଭିତରେ ସହଯୋଗର ମନୋଭାବ ବୃଦ୍ଧି ପାଇବ ଯାହାଦ୍ୱାରା ସମାଜର ବିକାଶ ତ୍ୱରାନ୍ୱିତ ହୋଇପାରିବ । ଏଥିପାଇଁ କମ୍ୟୁନିଷ୍ଟବାଦକୁ ପୋଷଣ କରିବାର ଆବଶ୍ୟକତା ନାହିଁ । କମ୍ୟୁନିଷ୍ଟବାଦର ନାମ ନ ନେଇ ସହଯୋଗ ମାଧ୍ୟମରେ ସମାଜର ପ୍ରଗତିକୁ ଅଗ୍ରଗତି କରାଯାଇ ପାରିବ ।

ବ୍ୟାଂକ ମାନଙ୍କରେ କୋଟି କୋଟି ଟଙ୍କା ଗଚ୍ଛିତ ହୋଇ ରହିବା ଆମେ ଜାଣୁ । କୋଟି କୋଟି ଟଙ୍କା ଅବ୍ୟବହୃତ ହୋଇ ବ୍ୟାଙ୍କରେ ରହେ । ତେବେ ଜଣେ ଚାଷୀ ତାର ଚାଷ ପାଇଁ ଆବଶ୍ୟକ କରୁଥିବା କିଛି ଅର୍ଥ ଟଙ୍କା କରଜ ଦେଉଥିବା ଧନୀ ବା ମହାଜନଠାରୁ ବହୁ ଅଧିକ ସୁଧ ଦେଇ ଟଙ୍କା ଧାର ଆଣେ । ଜଣେ ଗରିବ ଚାଷୀ ୧୦ ଟଙ୍କା ସୁଧର ହାରରେ ଟଙ୍କା କରଜ ଆଣି ଚାଷରେ ବ୍ୟୟ କରେ । ରୁଷରେ କୌଣସି ବ୍ୟକ୍ତି ଟଙ୍କା କରଜ ଦେଇ ତାହାର ସୁଧରେ ବଞ୍ଚିବାର

Digitized by srujanika@gmail.com

ଅଧିକାର ପାଇ ନଥାଏ । ଯଦି ବି କୌଣସି ସମୟରେ କେହି ଅନ୍ୟଠାରୁ ଟଙ୍କା ଧାର ଆଣେ, ଏହାକୁ ବି ସମାଜ ଭଲଦୃଷ୍ଟିରେ ନିଏ ନାହିଁ । ଅସୁବିଧାରେ ଥିବା କୌଣସି ବ୍ୟକ୍ତିକୁ ସାହାଯ୍ୟ କରିବାରେ ଅସୁବିଧା କେଉଁଠି ବୋଲି ପ୍ରଶ୍ନ କଲେ ସେମାନେ ଉତ୍ତର ଦିଅନ୍ତି- ଜଣେ ବ୍ୟକ୍ତି କାହିଁକି ବିପଦ ଓ ଅସୁବିଧାରେ ପଡିବ!

ସମାଜରୁ ସମସ୍ତ ଉଦ୍‌ବେଗ ଓ ପ୍ରତିବନ୍ଧକ ଦୂର କରିବାକୁ ହେଲେ ସମବାୟ ଆନ୍ଦୋଳନର ଭୂମିକା ବହୁ ଗୁରୁତ୍ୱପୂର୍ଣ୍ଣ । ସହଯୋଗିତା ଓ ସମଭାଗିତା ଏ କ୍ଷେତ୍ରରେ ସବୁଠାରୁ ଉତ୍ତମ ବ୍ୟବସ୍ଥା ଅଟେ । ଆମର ଲୋକମାନେ ଏହି ବ୍ୟବସ୍ଥା ସହ ଅଭ୍ୟସ୍ତ ହେବା ଆବଶ୍ୟକ । ସ୍ୱାର୍ଥପରତାର ମନୋଭାବକୁ ପରିହାର କରି ସମସ୍ତଙ୍କର ମଙ୍ଗଳ ବିଧାନ ପାଇଁ ମାନସିକତା ପୋଷଣ କରିବା ଦରକାର ।

ତେବେ ସରକାର ନା ଲୋକମାନେ ଏହି ସମବାୟ ଭାବନା ସୃଷ୍ଟି କରିବେ? ଅନେକ ଲୋକ ଏହି ବିଷୟରେ ସନ୍ଦେହ ପୋଷଣ କରନ୍ତି । ଏହି ପ୍ରଶ୍ନଟି ଠିକ୍ ଏକ ପ୍ରଶ୍ନ ପରି, ଭାଗ୍ୟ ନା ପ୍ରଜ୍ଞାର ଗୁରୁତ୍ୱ ବେଶି? ଯେଉଁ କଥାରେ ଯିଏ ଅଧିକ ଗୁରୁତ୍ୱ ଦେବ ତା ପାଇଁ ହୁଏତ ତାହା ଅଧିକ ଗୁରୁତ୍ୱପୂର୍ଣ୍ଣ ମନେହେବ । ତେବେ ମୋର ବକ୍ତବ୍ୟ ହେଉଛି ଲୋକମାନେ ହିଁ ସରକାର ଓ ସରକାର ହିଁ ଜନଗଣ । ଆପଣମାନେ ଏହା ଉପରେ ଭାବନ୍ତୁ । ଯେତେବେଳେ ସରକାର ପ୍ରତିବନ୍ଧକର ସମ୍ମୁଖୀନ ହୁଏ ସେତେବେଳେ ଆମେ ନୀରବରେ ବସି ରହିବା କି? ଆମେମାନେ ସର୍ବଦା ସାଧାରଣ ସ୍ୱାର୍ଥକୁ ଦେଖିବା ଦରକାର । ଲୋକଙ୍କ ବ୍ୟତୀତ ଯେ ସରକାର ନାହିଁ ଏହା ଭାବନ୍ତୁ । ଯଦି ଆମେ ଶରୀରର କୌଣସି ଅଙ୍ଗ କ୍ଷତ ହୁଏ, ତେବେ ଆମେ ସେହି ଅଙ୍ଗ ପ୍ରତି ଅନାସକ୍ତ ରହିପାରିବା କି? ସାଧାରଣ ଲୋକଙ୍କ ପ୍ରତି ଆମର ଦୃଷ୍ଟିଭଙ୍ଗୀ ସେହି ପ୍ରକାର ହେବା ଆବଶ୍ୟକ । ଯେତେବେଳେ ବର୍ଷା ବିନ୍ଦୁ ଶାମୁକା ଭିତରେ ପଡେ ସେତେବେଳେ ମୁକ୍ତା ମିଳିଥାଏ । ସେହିପରି ଆମେ ଆମର ସ୍ୱାର୍ଥକୁ ନିୟନ୍ତ୍ରଣ କଲେ ଆମେ ପରିବର୍ତ୍ତନ ପାଇଁ ପ୍ରସ୍ତୁତ ହୋଇପାରିବା । ଆମେ ପରିବର୍ତ୍ତନ ପାଇଁ ହାତ ବଢାଇଲେ ପରିବର୍ତ୍ତନ ନିଶ୍ଚୟ ହେବ । ଆମେ ଏହା ଲୋକଙ୍କ ମାନସିକତାରେ ପ୍ରବେଶ କରାଇବା ଆବଶ୍ୟକ । ସହଯୋଗର ମନୋଭାବ ନିଜ

Digitized by srujanika@gmail.com

ଭିତରେ ପ୍ରଥମେ ଦୃଢ କରିବାକୁ ହେବ । ସହଯୋଗର ମନୋଭାବକୁ ଜୀବନଧାରାରେ ମିଶାଇବାକୁ ହେବ ।

**ସଂପତ୍ତି ଅଧିକାରଃ-**

ବ୍ୟକ୍ତିଙ୍କ ନାମରେ ଓ ଅଧିକାରରେ ରହିଥିବା ସଂପତ୍ତି ଯୋଗୁଁ ସମାଜରେ ଅଧିକ ସମସ୍ୟା ସୃଷ୍ଟି ହେଉଛି । ଅନେକ ଝଗଡା ଓ କଳହର ଏହା ହେଉଛି ମୁଖ୍ୟ କାରଣ । ଏପରିକି ସଂପତ୍ତି ଅଧିକାରକୁ ନେଇ ସମାଜରେ ନରହତ୍ୟା ବି ହେଉଛି । ଜଣେ ଲୋକର ଯଦି ଆବଶ୍ୟକୀୟ ଖାଦ୍ୟ ଥାଏ ତେବେ ସେ ଅସନ୍ତୋଷ ବ୍ୟକ୍ତ କରିବ ନାହିଁ । କିନ୍ତୁ ଯଦି ଜଣଙ୍କର ଅପର୍ଯ୍ୟାପ୍ତ ଥିବ ଓ ଅନ୍ୟ ଜଣେ କିଛି ପାଉ ନଥିବ ତେବେ ସେହି ସ୍ଥିତିରେ ସମାଜରେ ଦ୍ୱନ୍ଦ୍ୱ ସୃଷ୍ଟି ହେବ ।

ଜଣେ ଧନୀ ଲୋକ ସମସ୍ତ ଉଦବେଗରୁ ମୁକ୍ତ କି? ନୁହେଁ । ନିଜର କର ଫାଙ୍କିବା ପାଇଁ, ନିଜର ସଂପତ୍ତିକୁ ଗୁପ୍ତରେ ରଖିବା ପାଇଁ ଓ ସରକାରଙ୍କୁ ସମସ୍ତ ତଥ୍ୟ ନ ଜଣାଇବାକୁ ସେ ସର୍ବଦା ଉତ୍କଣ୍ଠା ଭିତରେ ରହିଥାଏ । ସେ ବହୁ ସମୟରେ ଅସାଧୁ ପନ୍ଥାର ଆଶ୍ରୟ ନେଇଥାଏ । ଏହା ଛଡା ଯଦି ଜଣେ ବ୍ୟକ୍ତି ଲକ୍ଷେ ଟଙ୍କାର ଅଧିକାରୀ ଓ ସେ ଦେଖେ ଯେ ଅନ୍ୟ ଜଣେ ଦୁଇ ବା ତିନି ଲକ୍ଷ ଟଙ୍କାର ଅଧିକାରୀ ତେବେ ସେ କ୍ଷେତ୍ରରେ ତାର ଉତ୍କଣ୍ଠା ବଢିଥାଏ । ତାପରି ସେ କିପରି ଅଧିକ ସଂପତ୍ତିର ମାଲିକ ହୋଇ ପାରିବ ସେ ପାଇଁ ସେ ଚିନ୍ତିତ ରହେ ଓ ବିଭିନ୍ନ ଉପାୟ ଚିନ୍ତା କରେ । ନିଜ ବନ୍ଧୁବାନ୍ଧବ ମାନଙ୍କୁ କିପରି ଅଧିକ ବୃଦ୍ଧି କରିପାରିବ ଓ ଅଧିକ ରୋଜଗାର କରି ନିଜ ପିଲାମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟକୁ ସୁରକ୍ଷିତ ରଖିପାରିବ, ସେ ପାଇଁ ସେ ଚିନ୍ତିତ ରହେ । ନିଜର ସ୍ଥିତି ଭିତରେ ସେ କିପରି ନିଜ ପିଲାଙ୍କୁ ଭଲ ଶିକ୍ଷା ଦେବ, ପିଲାମାନେ କିପରି ଉଚ୍ଚ କର୍ମସଂସ୍ଥାନ ପାଇବେ ବା ଏପରିକି ପଦୋନ୍ନତି ପାଇବେ ସେ ପାଇଁ ସେ ଚିନ୍ତା କରେ । ନିଜର ବନ୍ଧୁବାନ୍ଧବ ମାନବୃଦ୍ଧି ସହ ସମାଜରେ ସେ କିପରି ଅଧିକ ସମ୍ମାନର ଅଧିକାରୀ ହେବ ତାହା ଭାବେ । ସେ ଯେତେ ଅଧିକରୁ ଅଧିକ ସଂପତ୍ତିର ଅଧିକାରୀ ହୁଏ ତାର ଉତ୍କଣ୍ଠା ସେତିକି ବଢି ବଢି ଚାଲେ ।

Digitized by srujanika@gmail.com

ଗରିବ ଓ ଶ୍ରମଜୀବୀ ଲୋକମାନେ ସେମାନଙ୍କ ମାଲିକଙ୍କ ପ୍ରତି ଈର୍ଷା ପୋଷଣ କରନ୍ତି । ଏହିପରି ସମାଜରେ ଯେତେ ବୈଷମ୍ୟ ରହେ ସମାଜରେ ସେତେ ଈର୍ଷା ମନୋଭାବ ବଢିଚାଲେ । ଏହି ସବୁ ଉଦ୍‌ବେଗ ଓ ଅନାବଶ୍ୟକ ପ୍ରତିଯୋଗିତାକୁ ଲୋପ କରିବାକୁ ହେଲେ ସମାଜକୁ ସମାଜବାଦୀ ଢାଞ୍ଚାରେ ପରିବର୍ତ୍ତନ କରିବାକୁ ହେବ । ଆମକୁ ଏପରି ଏକ ସମାଜ ବ୍ୟବସ୍ଥାର ରୂପାୟନ କରିବାକୁ ହେବ ଯେଉଁଠି ସବୁ ମଣିଷ ପରସ୍ପରର ସୁଖ ଦୁଃଖରେ ସମଭାଗୀ ହୋଇପାରିବେ । ଏକ ସମାଜବାଦୀ ସମାଜର ପରିକଳ୍ପନା କ୍ଷେତ୍ରରେ ସଂପତ୍ତି ହାସଲ କରିବାର ଅଧିକାର ଏକ ବଡ ପ୍ରତିବନ୍ଧକ ଅଟେ । ସବୁ କିଛି ସରକାର ବା ରାଷ୍ଟ୍ରର ସଂପତ୍ତି । ବ୍ୟକ୍ତିଗତ ସଂପତ୍ତି ମାଲିକାନାର ଭାବନା ସମାଜବାଦୀ ବିଚାରର ପରିପନ୍ଥୀ । ସବୁ ସ୍ତରରେ ଜାତୀୟ କରଣ ଭାବନାକୁ ଦୃଢ କରିବାକୁ ହେବ । ତାହେଲେ ଯାଇ ଲୋକମାନେ ସମାନ ହୋଇ ଜୀବନଧାରଣ କରିପାରିବେ ।

ସାମାଜିକ ଓ ଆର୍ଥିକ ଭେଦଭାବ ଜନିତ କାରଣରୁ ସମାଜରେ ନାନା ଉଦ୍‌ବେଗର ପରିସ୍ଥିତି ଆସିଥାଏ । ଲୋକମାନଙ୍କର ସାମାଜିକ ସ୍ଥିତିରେ ବୈଷମ୍ୟ ଯୋଗୁଁ ଅଶାନ୍ତିର ସୂତ୍ରପାତ ହେଉଥାଏ । ସୁତରାଂ ସମାଜରେ ସବୁ ଲୋକଙ୍କର ପରିସ୍ଥିତିରେ ବୈଷମ୍ୟକୁ ଦୂର କଲେ ସମାଜରେ ଶାନ୍ତି ଶୃଙ୍ଖଳା ରହିପାରିବ ।

"ମୋକ୍ଷ" ଓ "ମୁକ୍ତି" ର ତାତ୍ପର୍ଯ୍ୟ ହେଉଛି ସମାଜରୁ ସକଳ ଉଦ୍‌ବେଗର ଅବସାନ କରି ଏକ ସୁଖକର ପରିବେଶର ବିକାଶ । ସାମ୍ୟବାଦଦ୍ୱାରା ସବୁ ଉଦ୍‌ବେଗକୁ ଦୂର କରାଯାଇ ପାରିବ । ଏହାଦ୍ୱାରା ସମାଜର ସକଳ ଅସୁବିଧା ମଧ୍ୟ ବିଲୋପ ହୋଇ ପାରିବ ।

ଜୀବନରେ ଥିବା ଉଦ୍‌ବେଗ ଦୁଇ ପ୍ରକାରର । ଜଣେ ଯଦି ଅନୁଭବ କରେ ଯେ ସେ ଯାହା ପ୍ରାପ୍ୟ ହେଉଛି ତାହା ତାର ଆବଶ୍ୟକତା ଠାରୁ ବହୁତ କମ ତେବେ ତାର ନାନା ଉତ୍କଣ୍ଠା ରହିବ । ଜଣେ ଯେତିକି ଖାଦ୍ୟ ଶସ୍ୟ ଦରକାର କରେ ତା ତୁଳନାରେ ଯଦି ତାର ଅଧା ପାଏ ତେବେ ଏହା ତାକୁ ନାନା ଉତ୍କଣ୍ଠା ଦେଇଥାଏ । ଅନ୍ୟ ଏକ ପ୍ରକାରର ଉଦ୍‌ବେଗ ହେଉଛି ଯଦି ଜଣେ ଯେତିକି ଆବଶ୍ୟକ କରେ ତାଠାରୁ ଅଧିକ ପାଏ । ଜଣେ ଗୋଟିଏ କୋଠରୀରେ ବାସ

Digitized by srujanika@gmail.com

କରେ, ସେ ଦୁଇଟି କୋଠରୀ ଚାହୁଁଛି । ଜଣଙ୍କର ଇଚ୍ଛା ଓ ଲୋଭ ଯେତେ ଅଧିକରୁ ଅଧିକ ହୁଏ ଏହା ତାହାର ଉଦବେଗକୁ ସେତିକି ବଡାଇଥାଏ ।

ଏକ ସାମ୍ୟବାଦୀ ସମାଜରେ ବ୍ୟକ୍ତିମାନଙ୍କ ଭିତରେ ଏତେ ଉଦବେଗ ଓ ଉତ୍କଣ୍ଠା ରହିବ ନାହିଁ ।

ଯେତିକି ଶସ୍ୟ ଉତ୍ପାଦିତ ହେଉଛି ତାହା ଲୋକଙ୍କର ଆବଶ୍ୟକତାନୁଯାୟୀ ଯଦି ସମଭାବରେ ବଣ୍ଟନ କରାଯାଏ ତେବେ ସେ କ୍ଷେତ୍ରରେ କିଛି ଉଦବେଗ ରହିବ ନାହିଁ । କେହି ଏହାଦ୍ୱାରା ଅନୁଭବ କରିବ ନାହିଁ ଯେ ସେ କମ ପାଉଛି । ଯଦି ସବୁ ଲୋକ ସମାନ ଭାବରେ ସବୁ ପାଉଛନ୍ତି ତେବେ କାହାର କିଛି ଉତ୍କଣ୍ଠା ରହିବ ନାହିଁ । ଏହି ପରି ଏକ ସାମାଜିକ ବ୍ୟବସ୍ଥାରେ ପ୍ରତିଯୋଗିତା, ଈର୍ଷା ଓ ମନ୍ଦ ଚିନ୍ତାର ଅବକାଶ ଆସିବ ନାହିଁ । ଲୋକମାନେ ଉଦବେଗରୁ ମୁକ୍ତ ହେବାଦ୍ୱାରା ସୁଖ ଶାନ୍ତିରେ ରହିପାରିବେ ।

ଯଦି ବ୍ୟକ୍ତିବିଶେଷ କୌଣସି ସଂପତ୍ତିର ଅଧିକାରୀ ହେବେ ନାହିଁ, ଯଦି ବ୍ୟକ୍ତିଗତ ସଂପତ୍ତି ମାଲିକାନା ଭାବନା ଦୂର ହେବ, ତେବେ ସମାଜରେ ଈଶ୍ୱର, ଧର୍ମ ଓ ଧର୍ମ ଶାସ୍ତ୍ରର ଆବଶ୍ୟକତା ରହିବ ନାହିଁ । ବରଂ ସମାଜରେ ଉନ୍ନତ ଚିନ୍ତା ଓ ପ୍ରଜ୍ଞାର ଭାବନା ଆସିବ । ସେହି ସ୍ଥିତିରେ ଜଣେ ଉଚ୍ଚ ବୋଲି ସମ୍ମାନିତ ହେବା ଓ ଜଣେ ନୀଚ ବୋଲି ଅସମ୍ମାନିତ ହେବ ନାହିଁ । କୌଣସି ଶ୍ରମକୁ ନ୍ୟୂନ ଦୃଷ୍ଟିରେ ଦେଖାଯିବ ନାହିଁ । ସମସ୍ତେ ସମାନ ଭାବେ ରହିବେ ଓ ସମାନଭାବେ ଜୀବନ ଧାରଣ କରିବେ । ସମାଜରେ ସମସ୍ତେ ସମାନ ସୁବିଧା ସୁଯୋଗ ପାଇବେ ଓ ସେମାନେ ଭିନ୍ନ ଭିନ୍ନ କାର୍ଯ୍ୟ କଲେ ମଧ୍ୟ ସେମାନଙ୍କ ଭିତରେ ବୈଷମ୍ୟ ରହିବ ନାହିଁ । ଉଚ୍ଚ ପଦବୀରେ ରହିଥିବା ବ୍ୟକ୍ତି ଉଚ୍ଚ ଦାୟିତ୍ୱର ଅଧିକାରୀ ହୋଇ ରହିବେ ।

ସାମ୍ୟବାଦ ସାଧାରଣ ଅଧିକାରଠାରୁ ପୃଥକ୍ । ସାମ୍ୟବାଦର ତାତ୍ପର୍ଯ୍ୟ ହେଉଛି ସମାନ ଭାଗ । ସାଧାରଣ ଅଧିକାର ହେଉଛି ସାଧାରଣ ଉପଭୋଗ । ଏହି ଦେଶରେ ବ୍ରାହ୍ମଣମାନେ ନୀଚ ଜାତି ସୃଷ୍ଟି କରିଛନ୍ତି । ଏହି ନୀଚ ଜାତିର ଲୋକମାନଙ୍କର ସାଧାରଣ ଅଧିକାର ନାହିଁ । ଏହା ସମସ୍ତେ ଜାଣନ୍ତି । ଏହି ହେତୁ ସେମାନଙ୍କର

Digitized by srujanika@gmail.com

ସଂପତ୍ତି କ୍ଷୟ ହୋଇ ଚାଲିଛି । ସେମାନେ ଜାତିଗତ ମାନସିକତାରୁ ମୁକ୍ତ ହୋଇ ପାରୁନାହାନ୍ତି । ସେମାନେ ଅନୁଭୂତିରୁ ସେପରି କିଛି ଶିକ୍ଷା କରିପାରି ନାହାନ୍ତି ।

ଅବ୍ରାହ୍ମଣ ମାନଙ୍କ ମଧ୍ୟରେ ଅନେକ ଲକ୍ଷପତି ଓ କୋଟିପତି ମାନଙ୍କୁ ଆପଣ ଦେଖିବେ । ତେବେ ଜଣେ ଭିକ୍ଷୁ ବ୍ରାହ୍ମଣ ଯେଉଁ ଅଧିକାର ଉପଭୋଗ କରେ ତାହା ସେମାନେ ଉପଭୋଗ କରନ୍ତି ନାହିଁ । ଜଣେ ବ୍ରାହ୍ମଣ ଗରିବ ହେଲେ ବି ସାମାଜିକ ଜୀବନରେ ସମ୍ମାନର ଅଧିକାରୀ ହୋଇଥାଏ । ତାହାର କୌଣସି ଦୁର୍ବଳତା ନାହିଁ । ସେ ତାର ପୁଅକୁ ଆଇ.ଏ.ଏସ୍, ଜିଲ୍ଲାପାଳ, ଜିଲ୍ଲା ବିଚାରପତି, ହାଇକୋର୍ଟ ବିଚାରପତି ବା ଜଣେ ଶଙ୍କରାଚାର୍ଯ୍ୟ କରିପାରିବ । ଏହା କିପରି ସମ୍ଭବ? ଏହା ସମତାର ଅଧିକାର ଯୋଗୁଁ ନୁହେଁ । ବରଂ ଜଣେ ବ୍ରାହ୍ମଣ ସାମାଜିକ ସ୍ତରରେ ଯେଉଁ ସମ୍ମାନର ଅଧିକାରୀ ସେ ଯୋଗୁଁ ଏହା ସମ୍ଭବ । ଅନ୍ୟ ମାନଙ୍କ ଭଳି ତାର ବିକାଶ ପାଇଁ ଅର୍ଥ ଆବଶ୍ୟକ ନାହିଁ । ସେ ଯେଉଁ ବିଶେଷ ସମ୍ମାନର ଅଧିକାରୀ ହୋଇ ଆସିଛି ସେ ପାଇଁ ସେ ବିନା ପରିଶ୍ରମରେ ଉପରକୁ ଯାଇପାରୁଛି । ଏହି ପରିସ୍ଥିତିରେ ଯଦି ଆମେ ବିଶେଷ ଅଧିକାରର ଭାବନାକୁ ପରିହାର କରିବା, ତେବେ ସାମ୍ୟବାଦର ଅଭ୍ୟୁଥାନ ହୋଇ ଏହା ଦୃଢ ଭିତ୍ତି ନେଇ ପାରିବ । ଯେଉଁ ଦେଶରେ ସବୁ ଲୋକ ସାଧାରଣ ଓ ସମାନ ଅଧିକାର ଉପଭୋଗ କରନ୍ତି ନାହିଁ, ସେଠାରେ ସାମ୍ୟବାଦର କୌଣସି ଅର୍ଥ ରହିବ ନାହିଁ । ଯେଉଁଠି ଲୋକମାନେ ସାଧାରଣ ଅଧିକାର ଉପଭୋଗ କରନ୍ତି ନାହିଁ, ସେଠାରେ ସାମ୍ୟବାଦ ଆଣିବାର ଅର୍ଥ ହେବ ଯେଉଁମାନେ ଅଧିକ ସୁଯୋଗ ପାଇ ଆସିଛନ୍ତି ସେମାନେ ଏଥିରୁ ଅଧିକ ସୁଫଳ ପାଇପାରିବେ । ସାମ୍ୟବାଦ ଆଦର୍ଶରୁ ଆମେ ଏହା ଶିକ୍ଷା କରିବା ଆବଶ୍ୟକ ଯେ ସମାଜରେ ସବୁ ଲୋକ ସମାନ ଅଧିକାର ପାଇବେ ଓ ମର୍ଯ୍ୟାଦାର ସହ ବଞ୍ଚିବେ । କେହି କାହାକୁ ଶୋଷଣ କରିବେ ନାହିଁ ବା ସମାଜରେ ଭେଦ ଭାବ ରହିବ ନାହିଁ ।

**ଉତ୍ତରାଧିକାରୀ :**

ପୁରୁଷ-ନାରୀ ସଂପର୍କରୁ ସେମାନେ ଯେ ପ୍ରାକୃତିକ ସୁଖ ଅନୁଭବ କରନ୍ତି ଏହା ଠିକ୍ ନୁହେଁ । ବରଂ ପୁରୁଷନାରୀକୁ ନିଜର ପତ୍ନୀ ଭାବେ ନେଇ ସେଥିରୁ ସୁଖ

Digitized by srujanika@gmail.com

ଅନୁଭବ କରେ ଓ ଏହା ସାମାଜିକ ଆବଶ୍ୟକତାରୁ ଆସିଥାଏ । ସେ ନିଜ ପାଇଁ ଓ ନିଜର ପତ୍ନୀ ପାଇଁ ଏକ ବିଧିସଂଗତ ଉତ୍ତରାଧିକାରୀ ଚାହେଁ । ମଣିଷ ସଂପତ୍ତିର ମାଲିକାନା ଅଧିକାର ଯୋଗୁଁ ସେ ପରିଶ୍ରମଦ୍ୱାରା ସଂପତ୍ତି ଅର୍ଜନ କରେ । ତାପରେ ତା ସଂପତ୍ତିକୁ କିଏ ଭୋଗ କରିବ ସେ ନେଇ ଚିନ୍ତିତ ହୁଏ । ସେ ଚାହେଁ ତାର ମୃତ୍ୟୁ ପରେ ତାର ସନ୍ତାନମାନେ ଉତ୍ତରାଧିକାରୀ ହୋଇ ତାର ସଂପତ୍ତି ଭୋଗ କରିବେ । ଏହା ଏକ ସାମାଜିକ ପ୍ରକ୍ରିୟା, ପ୍ରାକୃତିକ ପ୍ରକ୍ରିୟା ନୁହେଁ ।

**ରକ୍ଷଣଶୀଳତା :**

ଏହା ଛଡା ସନ୍ତାନ ଓ ବିଶେଷତଃ ପୁତ୍ର ସନ୍ତାନ ଲାଭ କରିବାର ଅନ୍ୟ ଉଦ୍ଦେଶ୍ୟ ମଧ୍ୟ ରହିଛି । ସଂପତ୍ତିର ଉତ୍ତରାଧିକାରୀ ହେବାକୁ ସନ୍ତାନ ତ ଆବଶ୍ୟକ । ବ୍ରାହ୍ମଣମାନେ ଗରିବ ଲୋକମାନେ ସଂପତ୍ତିର ଅଧିକାରୀ ହେବା ଭାବନାର ବିରୋଧୀ । ତେବେ ଈଶ୍ୱର, ଧର୍ମ, ସ୍ୱର୍ଗ, ନରକ ଇତ୍ୟାଦି ଭାବନା ଆଧାରରେ ସେମାନେ ଏକ୍ଷେତ୍ରରେ କେତେକ ବିଧାନ କରିଛନ୍ତି । ଏହି ବ୍ୟବସ୍ଥା ଦ୍ୱାରା ସେମାନଙ୍କର ସ୍ୱାର୍ଥ ସୁରକ୍ଷିତ ହୋଇ ପାରିବା ସହ ସେମାନେ ଏହି ବ୍ୟବସ୍ଥାରେ ଅଧିକ ଅର୍ଥର ଅଧିକାରୀ ହୋଇପାରିବେ । ସେମାନେ ସମାଜରେ ଏହି ଭାବନା ସୃଷ୍ଟି କରିଛନ୍ତି ଯେ ଯାହାର ସନ୍ତାନ ନାହିଁ ମୃତ୍ୟୁ ପରେ ସେ ସ୍ୱର୍ଗକୁ ଯାଇପାରିବ ନାହିଁ । ସେମାନେ ଏହି ବିଶ୍ୱାସ ଦେଇଛନ୍ତି ଯେ କେବଳ ପୁତ୍ର ସନ୍ତାନ ମୃତ ପିତାମାତାଙ୍କର ଶୁଦ୍ଧିକ୍ରିୟା କରିବ ଓ ପୂର୍ବପୁରୁଷଙ୍କୁ ପିଣ୍ଡଦାନ କରିପାରିବ । ଶୁଦ୍ଧିକ୍ରିୟା ବା ପିଣ୍ଡଦାନରେ ବ୍ରାହ୍ମଣକୁ ଦାନ ଦେବାକୁ ହେବ । ଏହି ବ୍ୟବସ୍ଥାରେ ବ୍ରାହ୍ମଣକୁ ଚାଉଳ, ଡାଲି, କଦଳୀ ପତ୍ର, ଘିଅ, ବସ୍ତ୍ର ଓ ଦକ୍ଷିଣା ଦେଇ ସନ୍ତୁଷ୍ଟ କଲେ ପୂର୍ବ ପୁରୁଷ ମୁକ୍ତି ପାଇବେ ।

ସଂପତ୍ତି ଉପଭୋଗ କରିବା ପାଇଁ ସନ୍ତାନ ଜନ୍ମ ଏକ କର୍ତ୍ତବ୍ୟ ବୋଲି ମନେ କରାଯାଇଛି । ପୁତ୍ର ସନ୍ତାନ ଲାଭ କରିବାର ମାନସିକତା ରକ୍ଷଣଶୀଳ ଦୃଷ୍ଟିର ପରିଚାୟକ ।

Digitized by srujanika@gmail.com

ଯଦି ସବୁ ସଂପତ୍ତିର ଅଧିକାର ସରକାର ହେବେ ତେବେ ଅଧିକାଂଶ ଦଂପତି ସନ୍ତାନ ଲାଭ କରିବା ନ କରିବା ନେଇ ବିବ୍ରତ ହେବେ ନାହିଁ। ସନ୍ତାନ ଲାଭ କରିବାର ଇଚ୍ଛା ଲୋକଙ୍କୁ ଏତେ ଉଦବିଗ୍ନ କରିବ ନାହିଁ।

ଯଦି ସଂପତ୍ତି ଅଧିକାରରୁ ଲୋକମାନେ ମୁକ୍ତ ହୁଅନ୍ତି ତେବେ ସେମାନଙ୍କ ପରେ କିଏ ସଂପତ୍ତି ଉପଭୋଗ କରିବ ଏହି ପ୍ରଶ୍ନ ଉଠିବ ନାହିଁ। ସଂପତ୍ତିର ଉତ୍ତରାଧିକାରୀ ହେବା ବା ସଂପତ୍ତିର ଅଧିକାରୀ ହେବା ଅବାନ୍ତର ହେବ। ମାଟି ତଳେ ଥିବା ବିଭିନ୍ନ ଧାତୁ ବା ଖଣିଜ ପଦାର୍ଥର ଅଧିକାରୀ ଯେପରି ସରକାର, ସେହିପରି ସଂପତ୍ତିର ଅଧିକାର ସରକାର ଉପରେ ନ୍ୟସ୍ତ ରହିବ। ସେ କ୍ଷେତ୍ରରେ ପିଲାମାନଙ୍କୁ ଶିକ୍ଷା ଦେବା, ନିରାପତ୍ତା ଯୋଗାଇବା ଓ କର୍ମସଂସ୍ଥାନର ସୁବିଧା କରିବା ବାପା-ମା'ଙ୍କର ଦାୟିତ୍ୱ ନହୋଇ ସରକାରର ଦାୟିତ୍ୱ ହେବ। ବାପା, ମା ପିଲାଙ୍କ ପାଇଁ ଉଦ୍‌ବିଗ୍ନ ହେବାର ଅବକାଶ ରହିବ ନାହିଁ।

**ପରିବାର :-**

ଜଣେ ପୁରୁଷ ଓ ଜଣେ ମହିଳା ପରସ୍ପରକୁ ଭଲ ପାଆନ୍ତି ଓ ଜୀବନରେ ସ୍ୱାମୀ ସ୍ତ୍ରୀ ହୋଇ ରହିବାକୁ ଇଚ୍ଛା ପ୍ରକାଶ କରନ୍ତି। ସ୍ୱାମୀ ସ୍ତ୍ରୀ ଜୀବନ ସାଥୀ ହୋଇ ରୁହନ୍ତି।

ଏକ ବ୍ୟବସାୟରେ ଭାଗୀଦାର ମାନେ ଯଦି ବ୍ୟବସାୟ ଆରମ୍ଭ ପୂର୍ବରୁ ସବୁଥିରେ ସହମତି ପ୍ରକାଶ କରିପାରନ୍ତି ନାହିଁ ତେବେ ବ୍ୟବସାୟ କ୍ଷେତ୍ରରେ ସେମାନେ ସମସ୍ୟା ଓ ନୈରାଶ୍ୟର ସମ୍ମୁଖୀନ ହେବେ। ସବୁ ପ୍ରକାର ବ୍ୟବସାୟରେ ଭାଗୀଦାର ମାନଙ୍କ ମଧ୍ୟରେ ସହମତି ଆବଶ୍ୟକ।

ଏକ ବ୍ୟବସାୟରେ ଅର୍ଥ ବିନିଯୋଗ କରିବା କ୍ଷେତ୍ରରେ ଅଂଶୀଦାରମାନେ ଚିନ୍ତାକରି ତାଙ୍କର ଯୋଜନା ପ୍ରସ୍ତୁତ କରନ୍ତି ଓ ସେହି ଅନୁଯାୟୀ ସେମାନଙ୍କର ବ୍ୟବସାୟ ଆରମ୍ଭ କରନ୍ତି। ସେମାନଙ୍କର ସହମତି ନେଇ ସେମାନେ ଏକ ଚୁକ୍ତି ପରସ୍ପର ମଧ୍ୟରେ କରନ୍ତି। ଏକାଠି କାର୍ଯ୍ୟ କରିବା କ୍ଷେତ୍ରରେ ସହଯୋଗୀ ମାନଙ୍କର ସହମତି ଆବଶ୍ୟକ।

Digitized by srujanika@gmail.com

ବିବାହ ମଧ୍ୟ ଏକ ଚୁକ୍ତି । ଜଣେ ପୁରୁଷ ଜଣେ ନାରୀଙ୍କୁ ଓ ଜଣେ ନାରୀ ଜଣେ ପୁରୁଷଙ୍କୁ ନେଇ ଜୀବନ ଯାତ୍ରାରେ ସହଭାଗୀ ହୋଇ ବଞ୍ଚିବାକୁ ବିବାହ କରିଥାନ୍ତି । ପରସ୍ପର ପ୍ରତି ସ୍ନେହ ଓ ପ୍ରେମଦ୍ୱାରା ଜୀବନ ଯାତ୍ରା ସଫଳ ହୋଇଥାଏ ।

ଏକାଠି ପରସ୍ପର ସହ ସହଭାଗୀ ହୋଇ ବାଟ ଚାଲିବା ପାଇଁ ଜୀବନରେ କେତେକ କଥା ଦରକାର ହୋଇଥାଏ । ସେମାନଙ୍କର ମାନସିକ ସାମର୍ଥ୍ୟ, ପରସ୍ପର ପ୍ରତି ମମତା, ଭବିଷ୍ୟତ ନେଇ ଦୃଷ୍ଟି ଓ ଅନୁଭୂତିରୁ ଶିକ୍ଷା ଏକ ସଫଳ ବୈବାହିକ ଜୀବନ ପାଇଁ ଆବଶ୍ୟକ ମନେ ହୁଏ । ବିବାହ ବନ୍ଧନରେ ଆବଦ୍ଧ ହୋଇଥିବା ଏକ ଦଂପତି ଯଦି ସବୁଥିରେ ପରସ୍ପର ପ୍ରତି ଏକ ମୁକାବିଲା ମନୋଭାବ ପୋଷଣ କରନ୍ତି ତେବେ ସେହି ସଂପର୍କ ମଧୁର ହୋଇପାରେ ନାହିଁ ବା ତିଷ୍ଠି ରହିପାରେ ନାହିଁ ।

ଜଣେ ପୁରୁଷ ଓ ଜଣେ ମହିଳା ସ୍ୱାମୀ, ସ୍ତ୍ରୀ ହୋଇ ରହିବାକୁ ଯଦି ନିଷ୍ପତ୍ତି କରନ୍ତି ତେବେ ଏଥିରେ ଅସୁବିଧା ନାହିଁ । ସେମାନଙ୍କର ନିଷ୍ପତ୍ତିରେ ପରିବର୍ତ୍ତନ ହେବା ଠିକ୍ ନୁହେଁ । ତେବେ ଯଦି ଏହି ସଂପର୍କ କୌଣସି କାରଣରୁ ବାଧାପ୍ରାପ୍ତ ହୁଏ, ଯଥା ଯଦି ଜଣେ ଅନ୍ୟ ବ୍ୟକ୍ତି ସହ ପ୍ରେମ ସଂପର୍କ ପ୍ରତିଷ୍ଠା କରେ ତେବେ ବିବାହ ସମ୍ବନ୍ଧ ନଷ୍ଟ ହୋଇଥାଏ । ଏକ ବିବାହ ଦଂପତିଙ୍କ ମଧ୍ୟରୁ କେହି ଅନ୍ୟ ସହ ସମ୍ବନ୍ଧ ରଖିବାକୁ ବେଶ୍ୟାବୃତ୍ତି କୁହାଯାଇ ପାରିବ । ସେପରି ସ୍ଥଳେ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ପ୍ରକୃତ ପ୍ରେମ ରହିପାରିବ ନାହିଁ । ସ୍ୱାମୀ-ସ୍ତ୍ରୀ ପରସ୍ପର ସହ ସବୁଦିନ ଏକାଠି ରହିବାକୁ ବାଧ୍ୟତାମୂଳକ କରାଯାଇଛି । ସମାଜର ଏହା ହିଁ ପ୍ରଚଳିତ ଧାରା । ତେବେ ସ୍ୱାମୀ ସ୍ତ୍ରୀଙ୍କ ଭିତରେ କୌଣସି ସୁସଂପର୍କ ନରହିଲେ ଜଣେ ଅନ୍ୟ ସହ ଅତ୍ୟନ୍ତ ଅସମ୍ମାନଜନକ ସ୍ଥିତିରେ ରହିବାର ଅର୍ଥ ନଥାଏ । ସେମାନେ ବିବାହ କରିଛନ୍ତି ବୋଲି ପରସ୍ପର ସହ ଯେତେ ଅମେଳ ଓ ଅଶାନ୍ତି ହେଲେ ବି ସେମାନେ ସର୍ବଦା ଏକାଠି ରହିବାକୁ ବାଧ୍ୟ ଏହା ଯେଉଁମାନେ ଚିନ୍ତା କରନ୍ତି ସେମାନେ ମଣିଷର ସ୍ୱଭାବକୁ ଠିକ୍ ଭାବେ ବୁଝି ନଥିବା ମନେହୁଏ । ସେମାନେ ଅନୁଭୂତି ସଂପନ୍ନ ନୁହନ୍ତି । ସେମାନେ ମଣିଷର ପ୍ରାକୃତିକ ପ୍ରବୃତ୍ତି ନେଇ ମଧ୍ୟ ଅଜ୍ଞ ମନେହୁଅନ୍ତି । କିମ୍ବା ଏପରି ମଧ୍ୟ ହୋଇପାରେ ଯେ ସେମାନେ ସବୁ ଜାଣି ମଧ୍ୟ ଏକ ଗୁପ୍ତ ଉଦ୍ଦେଶ୍ୟ ରଖି ଏହା କରିଛନ୍ତି ।

Digitized by srujanika@gmail.com

କୌଣସି ଦଂପତିଙ୍କର ଲକ୍ଷ୍ୟ, ଅଭ୍ୟାସ, ବ୍ୟବହାର ଓ ସାମାଜିକ ସ୍ଥିତି ସେମାନେ ଯେତେବେଳେ ଏକାଠି ଜୀବନ ଆରମ୍ଭ କରନ୍ତି ତାହା ହୁଏତ ସମାନ ଥାଇପାରେ । କିନ୍ତୁ ଏହା ସବୁଦିନ ପାଇଁ ସମାନ ରହେନାହିଁ । ଏଥିରେ ଯେକୌଣସି ସମୟରେ ପରିବର୍ତ୍ତନ ହୋଇପାରେ । ସେମାନଙ୍କ ଭିତରେ କୌଣସି ଘଟଣାକୁ ନେଇ ମତଭେଦ ହୁଏ ଓ ସେମାନଙ୍କର ମାନସିକତାରେ ପ୍ରଭେଦ ଦେଖାଦିଏ । ସେମାନେ ପରିସ୍ଥିତିରେ ଏକାଠି ରହିବାକୁ ବାଧ୍ୟ ହୁଅନ୍ତି । ଯେହେତୁ ଜୀବନରେ ଅନ୍ୟ କିଛି ଲକ୍ଷ୍ୟ ନଥାଏ ସେମାନେ ଏକାଠି ଅସୁଖୀ ହୋଇ ରହନ୍ତି । ନାନା ଅଶାନ୍ତି ଓ ଦୁଃଖଭରା ହୃଦୟରେ ଏକାଠି ବଞ୍ଚିବାର ଛଳନା କରନ୍ତି ।

ମଣିଷର ବ୍ୟବହାର, ପ୍ରାକୃତିକ ପ୍ରବୃତ୍ତି ଇତ୍ୟାଦି ବିଷୟରେ ମୋର ଅନୁଭୂତିରୁ ମୁଁ କେତେକ ଅପ୍ରିୟ କଥା କହିପାରେ । ଜଣେ ପୁରୁଷ ବା ମହିଳା ନିଜର ଇଚ୍ଛା ଓ ଆନନ୍ଦରେ ନିଜର ଜୀବନ ସାଥିଙ୍କୁ ବାଛିଥାଏ । ଜଣେ ନିଜ ରୁଚିର ଏକ ହୋଟେଲକୁ ଗଲା ଭଳି ଜଣେ ନିଜ ଖୁସିର ଜଣେ ସାଥିଙ୍କୁ ଜୀବନସାଥି କରିଥାଏ । ଏହା ବ୍ୟକ୍ତିର ଏକାନ୍ତ ନିଜସ୍ୱ ବ୍ୟାପାର । ଜଣେ ବ୍ୟକ୍ତିଗତ ଭାବେ କାହା ସହ ସଂପର୍କ ଯୋଡିଲେ ଜୀବନରେ ଅନେକ ସୁଖର ଅଧିକାରୀ ହୋଇପାରିବ ଏହା ତାହାର ବ୍ୟକ୍ତିଗତ ବିଷୟ ।

ରୁଷରେ ଯେଉଁଠି ଲୋକମାନଙ୍କର ସଂପତ୍ତି ଅଧିକାର ନାହିଁ ସେଠାରେ କୌଣସି ପୁରୁଷ ବା ମହିଳା ନିଜକୁ ସ୍ୱାମୀ ବା ସ୍ତ୍ରୀ ରୂପରେ ପରିଚିତ କରାନ୍ତି ନାହିଁ । ସେମାନେ ପ୍ରେମୀ ଭାବରେ ବନ୍ଧୁଭଳି ଏକାଠି ବାସ କରନ୍ତି । ପୁଅ ଝିଅ ପ୍ରେମ କରିବାରେ ସ୍ୱାଧୀନ, ସେଠାରେ ବିବାହଜନିତ ବନ୍ଧନ ନାହିଁ । ସେମାନେ ନିଜର ଜୀବନସାଥି ବାଛିବା କ୍ଷେତ୍ରରେ ଓ ଏକତ୍ର ରହିବାରେ ପୂର୍ଣ୍ଣ ସ୍ୱାଧୀନତା ଉପଭୋଗ କରନ୍ତି । ଆମ ଦେଶରେ ଯେହେତୁ ଆମର ସଂପତ୍ତିର ଅଧିକାର ରହିଛି ଓ ଆମେ ଉତ୍ତରାଧିକାରୀ ସୂତ୍ରରେ ବାପା, ମାଙ୍କ ସଂପତ୍ତି ପାଇଥାଉ, ତେଣୁ ଆମେ ଏକ ପାରିବାରିକ ଶୃଙ୍ଖଳା ଭିତରେ କେତେକ ନୀତି ନିୟମ ମାନି ବଞ୍ଚିବାକୁ ବାଧ୍ୟ ହେଉ । ତେବେ ଯେଉଁ ଦେଶରେ ସଂପତ୍ତି କମାଇବାର ଅଧିକାର ନାହିଁ, ସେଠାରେ

Digitized by srujanika@gmail.com

ପାରିବାରିକ ଜୀବନରେ ନାନା ଶୃଙ୍ଖଳାର ବନ୍ଧନ ମାନି ଚଳିବାର କୌଣସି ଆବଶ୍ୟକତା ନାହିଁ।

ସେମାନେ ସୁଖର ଜୀବନ ପାଇଁ ଜଣେ ଜୀବନସାଥି ଆବଶ୍ୟକ କରନ୍ତି। ନିଜର ଅବସର ସମୟ ଆନନ୍ଦରେ ଅତିବାହିତ କରିବା ପାଇଁ ଜଣେ ବନ୍ଧୁ ଖୋଜନ୍ତି। ନିଜର ପ୍ରାକୃତିକ ପ୍ରବୃତ୍ତିକୁ ଚରିତାର୍ଥ କରିବାକୁ ସେମାନେ ନିଜର ସାଥି ସହ ବନ୍ଧୁ ହୋଇ ରହନ୍ତି।

ସେମାନେ କର୍ମ କ୍ଷେତ୍ରକୁ ଗଲାବେଳେ ପରସ୍ପରକୁ ଚୁମା ଦେଇ ଯାନ୍ତି। ଯଦି ସେମାନେ ପରସ୍ପରକୁ ଭଲ ପାଆନ୍ତି ନାହିଁ ତେବେ ସେମାନେ ନିଜର ମନୋଭାବ ଲେଖି ଏହାକୁ ଖାଇବା ଟେବୁଲ ଉପରେ ରଖି ଦିଅନ୍ତି। ସେଥିରେ ଲେଖନ୍ତି "ଆଜି ପର୍ଯ୍ୟନ୍ତ ସୁଖର ସହ ଏକାଠି ରହୁଥିଲେ। ଏହାପରେ ମୁଁ ଏଠାରେ ରହିବାକୁ ଚାହୁଁ ନାହିଁ। ଆମେ ପରସ୍ପରଠାରୁ ଏବେ ଦୂରେଇ ଯିବା।" କୌଣସି ଝଗଡା ବା ସମସ୍ୟା ସୃଷ୍ଟି ନକରି ସେମାନେ ପରସ୍ପରଠାରୁ ଦୂରେଇ ଯାନ୍ତି। ସେଠାରେ କୌଣସି ପୁରୁଷ ଅନ୍ୟ ଜଣଙ୍କ ପତ୍ନୀଙ୍କୁ ନେଇ ପଳାଇବା ଘଟଣା ସେ ଦେଶରେ ଘଟେନାହିଁ। ପ୍ରେମ ବ୍ୟାପାରରେ କୌଣସି ବଳ ପ୍ରୟୋଗ ହୁଏ ନାହିଁ।

ପୁରୁଷ ନାରୀ ଭିତରେ ଏହି ପ୍ରକାରର ସମ୍ବନ୍ଧ ବ୍ୟକ୍ତିଗତ ଅଧିକାର ଯୋଗୁଁ ସମ୍ଭବ ହୋଇଛି। ପ୍ରତ୍ୟେକ ସ୍ୱାଧୀନତା ଉପଭୋଗ କରନ୍ତି ଓ ଅତ୍ୟନ୍ତ ସୁଖରେ ବଞ୍ଚିବାକୁ ଚାହାନ୍ତି। ମାନବ ସମାଜର ବିକାଶ କ୍ଷେତ୍ରରେ ଏହି ପ୍ରକାର ପରିବେଶ ଓ ମାନସିକତା ଉପଯୁକ୍ତ ନୁହେଁ କି?

ଏହିପରି ଏକ ରାଷ୍ଟ୍ରରେ ବେଶ୍ୟାବୃତ୍ତି ଅଚିନ୍ତନୀୟ। କାହାକୁ ଖାଦ୍ୟ, ଅର୍ଥ ବା ଅନ୍ୟ କିଛି ଉପଭୋଗ୍ୟ ସାମଗ୍ରୀ ଦେଇ ଏକ ଅବୈଧ ସଂପର୍କ ରଖିବା ସମ୍ଭବପର ନୁହେଁ। ଯେତେବେଳେ ସମାଜରେ ପ୍ରତ୍ୟେକ ବ୍ୟକ୍ତି ଆତ୍ମମର୍ଯ୍ୟାଦାର ସହ ବଞ୍ଚିବାକୁ ଚାହେଁ ସେତେବେଳେ ଜଣେ ଅନ୍ୟର ଅଧିକାରକୁ ଲଂଘନ କରିବା ସମ୍ଭବ ନୁହେଁ। କେହି କାହାର ଦୟା ଉପରେ ବଞ୍ଚିବାକୁ ଚାହେଁ ନାହିଁ। ପରସ୍ପରର ସହମତି ଓ ପ୍ରେମ ବ୍ୟତୀତ ଜଣେ ଅନ୍ୟ ଜଣଙ୍କୁ ଉପଭୋଗ କରିପାରିବ ନାହିଁ। ଶିକ୍ଷା କ୍ଷେତ୍ରରେ

Digitized by srujanika@gmail.com

ଉଭୟ ସଚେତନ ଓ ଶିକ୍ଷିତ । ସେଥିପାଇଁ ସ୍ୱାମୀ-ସ୍ତ୍ରୀ ମଧ୍ୟରେ ପୂର୍ଣ୍ଣ ସହମତି ଓ ଆନ୍ତରିକତା ରହିପାରେ । ସେମାନେ ଖୁସି ପାଇଁ ବା ପରିବର୍ତ୍ତନ ପାଇଁ ପରସ୍ପରଠାରୁ ଅଲଗା ହୁଅନ୍ତି ନାହିଁ । ସେମାନେ ନିଜର ସ୍ୱାସ୍ଥ୍ୟ କିପରି ଭଲ ରଖି ପାରିବେ ସେ ନେଇ ବେଶ୍ ସଚେତନ । ଜଣେ ଅସମ୍ମତ ଥିବା ସାଥି ଉପରେ ନିଜର କାମନାକୁ ଲଦି ଦେବା ତାଙ୍କର ଆତ୍ମସମ୍ମାନର ପରିପନ୍ଥୀ ବୋଲି ଅନୁଭବ କରନ୍ତି । ଯଦି ନିଜର ସାଥି କୌଣସିଥିରେ ଅସମ୍ମତି ବା ଅନାଗ୍ରହ ପ୍ରକାଶ କରନ୍ତି ସେ କ୍ଷେତ୍ରରେ ପ୍ରତ୍ୟେକ ନିଜର ଓ ଅନ୍ୟର ଆତ୍ମମର୍ଯ୍ୟାଦା ନେଇ ସଚେତନ ହୁଅନ୍ତି । ପୁରୁଷ ନାରୀ ସମସ୍ତଙ୍କ ପାଖରେ ଆତ୍ମମର୍ଯ୍ୟାଦାର ଭାବନା ଦୃଢ । ସେହି ସମାଜରେ ନାରୀମାନଙ୍କର ଦାସତ୍ୱର ପ୍ରଶ୍ନ ନାହିଁ ବା ପୁରୁଷର ପ୍ରାଧାନ୍ୟ ନାହିଁ । କୌଣସି ବିଷୟରେ କେହି ବଳପ୍ରୟୋଗ କରିପାରିବ ନାହିଁ ବା ଅନ୍ୟର ଇଚ୍ଛା ବିରୁଦ୍ଧରେ ଜଣଙ୍କୁ ବାଧ୍ୟ କରିପାରିବ ନାହିଁ । ଜଣଙ୍କର ସ୍ୱାସ୍ଥ୍ୟ ପ୍ରତି କୌଣସି ବିପଦ ସୃଷ୍ଟି ନକରି ସେମାନେ ଜୀବନର ସୁଖକୁ ଏକତ୍ର ଉପଭୋଗ କରନ୍ତି ।

**ବିବାହ :**

ମଣିଷମାନେ ଯେତେବେଳେ ଆଦିମ ସ୍ତରରେ ଥିଲେ, ପ୍ରାୟ ପାଞ୍ଚ ହଜାର ବର୍ଷ ତଳେ, ସେତେବେଳଠାରୁ ବିବାହ ବ୍ୟବସ୍ଥା ସମାଜରେ ପ୍ରଚଳିତ ହେଲାଣି । ଏହି ବ୍ୟବସ୍ଥା ଏପରି କାହିଁକି ଚାଲିବ? ବିବାହ ଦ୍ୱାରା ଜଣେ ନାରୀଙ୍କୁ ପୁରୁଷ ପାଖରେ ଦାସ କରାଯାଇଥାଏ । ଦେବ ଦେବୀଙ୍କ ପାଖରେ ଯେପରି ପଶୁମାନଙ୍କୁ ବଳି ପକାଯାଉଛି, ମହିଳାମାନଙ୍କୁ ସେହିପରି ପୁରୁଷମାନଙ୍କ ପାଖରେ ନ୍ୟୂନ କରାଯାଉଛି ।

ମହିଳାମାନେ ଯେଉଁମାନେ ଲୋକସଂଖ୍ୟାର ଅଧା, ସେମାନଙ୍କୁ କାହିଁକି ଏପରି ମନ୍ଦ ବ୍ୟବହାର ଦେଖାଯିବ ? ବିବାହ ସାମାଜିକ ହିତ ଉଦ୍ଦେଶ୍ୟରେ ନ ହୋଇ ସ୍ୱାର୍ଥ ଉଦ୍ଦେଶ୍ୟରେ କରାଯିବା ଯଥାର୍ଥ କି? ପ୍ରଚଳିତ ବିବାହଦ୍ୱାରା ସ୍ତ୍ରୀ ସ୍ୱାମୀକୁ ସେବା ଦିଏ ଓ ସ୍ୱାମୀ ସ୍ତ୍ରୀକୁ ସୁରକ୍ଷା ଦିଏ । ଯେତେବେଳେ ସନ୍ତାନ ଜନ୍ମ ହୁଅନ୍ତି ଉଭୟ ସେମାନଙ୍କର ଯତ୍ନ ନିଅନ୍ତି । ଏହାଦ୍ୱାରା ସମାଜର ବିଶେଷ ଉପକାର ହୁଏ ନାହିଁ ।

Digitized by srujanika@gmail.com

ଯେତେବେଳେ ଆମର ପଡୋଶୀ ଘରଟି ନିଆଁରେ ପୋଡି ଯାଇଛି ଆମେ ସେଥିରେ ବ୍ୟସ୍ତ ବିବ୍ରତ ହେଉନାହିଁ। ପଡ଼ୋଶୀ ଘରଟିରେ ନିଆଁ ଲାଗିଥିବା ସମୟରେ ନିଜ ଘରକୁ ରକ୍ଷା କରିବାକୁ ଆମେ ଯାହା ବ୍ୟସ୍ତ ହେଉ ଓ ପଡ଼ୋଶୀ ପାଇଁ ଆମେ କେବଳ ବାଲ୍‌ଟିଏ ପାଣି ଦେଇଥାଉ।

ପୃଥିବୀରେ ବିଜ୍ଞାନର ଯେଉଁ ବିକାଶ ସାଧିତ ହୋଇଛି ଆମର ଲୋକମାନେ ତାହାର ତାତ୍ପର୍ଯ୍ୟ ବୁଝିବା ଆବଶ୍ୟକ। ଏହା ଛଡା ସାମାଜିକ ସଚେତନତା ନଥାଇ କେବଳ ସ୍ୱାମୀ-ସ୍ତ୍ରୀ ହୋଇ ଗୋଟିଏ ସ୍ୱତନ୍ତ୍ର ଘର ଭିତରେ ନିଜକୁ ଆବଦ୍ଧ କରିବାର ଅର୍ଥ କିଛି ଅଛି କି! ଆମର କ'ଣ ସାମାଜିକ ଦାୟିତ୍ୱବୋଧ ରହୁଛି ?

ଏକ ସୁଖକର ଓ ପ୍ରଗତିଶୀଳ ସମାଜ ପାଇଁ ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ପ୍ରଚଳିତ ବିବାହ ବ୍ୟବସ୍ଥାକୁ ପରିହାର କରିବା ଆବଶ୍ୟକ। ଏହା ଯଦି ବି ଏବେ ସମ୍ଭବ ନହୁଏ, ତେବେ ଭବିଷ୍ୟତରେ ଏହା ନିଶ୍ଚୟ ସମ୍ଭବ ହେବ। ବିଭିନ୍ନ ସମାଜରେ ଏହି ବ୍ୟବସ୍ଥାର ପ୍ରୟୋଗ ଆରମ୍ଭ ହେଲାଣି। ସୁତରାଂ ବିବାହ ବ୍ୟବସ୍ଥାରେ ପରିବର୍ତ୍ତନ ଅବଶ୍ୟମ୍ଭାବୀ ମନେହୁଏ। ବିବାହଦ୍ୱାରା ମହିଳାମାନଙ୍କୁ ଯେପରି ଦାସତ୍ୱ ଭିତରକୁ ଠେଲି ଦିଆଯାଉଛି ତାହା ବନ୍ଦ ହେବା ଆବଶ୍ୟକ, କାରଣ ସେମାନେ ଲୋକ ସଂଖ୍ୟାର ଅଧା।

ପିତାମାତା କନ୍ୟାମାନଙ୍କୁ ୨୨ ବର୍ଷ ପର୍ଯ୍ୟନ୍ତ ଶିକ୍ଷା ଦେବା ଆବଶ୍ୟକ। ଶିକ୍ଷାପରେ ସେମାନଙ୍କୁ କର୍ମସଂସ୍ଥାନ ମିଳିବା ଦରକାର। ଏହାପରେ ବିବାହ ଓ ଜଣେ ଯୋଗ୍ୟ ଜୀବନସାଥିର ଭାବନା ଆସିପାରିବ। ଏକ୍ଷେତ୍ରରେ ଝିଅ ହିଁ ତାହାର ଜୀବନସାଥିକୁ ବାଛିବ। ବାପା ମା ଝିଅର ନିଷ୍ପତ୍ତିରେ କୌଣସି ହସ୍ତକ୍ଷେପ କରିବେ ନାହିଁ।

**ସନ୍ତାନସନ୍ତତି:-**

ଗର୍ଭଧାରଣ ମହିଳାମାନଙ୍କ ସ୍ୱାଧୀନତା ଦିଗରେ ଏକ ବଡ ପ୍ରତିବନ୍ଧକ। କେବଳ ମହିଳାମାନେ ନୁହଁନ୍ତି ଅଧିକ ସନ୍ତାନ ଜନ୍ମ କରିବା ଦ୍ୱାରା ପୁରୁଷମାନେ ମଧ୍ୟ ସେମାନଙ୍କର ସ୍ୱାଧୀନତାକୁ ସଙ୍କୁଚିତ କରିଥାଆନ୍ତି। ପିଲାମାନଙ୍କର ଭରଣ

Digitized by srujanika@gmail.com

ପୋଷଣ ପାଇଁ ବା ଆବଶ୍ୟକତା ପୂରଣ ପାଇଁ ପିତାମାତାଙ୍କୁ ଅନେକ ସମୟରେ ଅସାଧୁ ପନ୍ଥା ଅବଲମ୍ବନ କରିବାକୁ ପଡିଥାଏ। ବହୁ ସନ୍ତାନ ବିଶିଷ୍ଟ ପରିବାର ପାରିବାରିକ ଅଶାନ୍ତି ଓ ବିଶୃଙ୍ଖଳାର କାରଣ ହୋଇଥାଏ।

ପୃଥିବୀରେ ବହୁ ଲୋକ ନିଜର ଆବଶ୍ୟକତା ପୂରଣ କରିବା ପାଇଁ କଠିନ ପରିଶ୍ରମ କରନ୍ତି ଓ ନିଜର ସ୍ୱାଧୀନତାକୁ ବଳି ଦିଅନ୍ତି। ବହୁ ସନ୍ତାନ ଜନ୍ମ କରିଥିବା ପିତା-ମାତା କିପରି ସ୍ୱାଧୀନତା ଉପଭୋଗ କରିପାରିବେ!

ବହୁ ସନ୍ତାନ ଜନ୍ମ କରିଥିବା ମହିଳାମାନେ ରୋଗିଣା ଓ ଦୁର୍ବଳ ହୋଇ ପଡିଥାନ୍ତି। ଖୁବ୍ ଶୀଘ୍ର ସେମାନଙ୍କୁ ବାର୍ଦ୍ଧକ୍ୟ ଆସି ଯାଇଥାଏ। ମୋ ମତରେ ଅଧିକ ସନ୍ତାନ ଜନ୍ମ ନକରିବା ପାଇଁ ଲୋକମାନଙ୍କୁ ସଚେତନ କରାଯିବା ଦରକାର। ସଂକ୍ରାମକ ରୋଗର ବିଲୋପ ପାଇଁ ଯେତେ ପ୍ରଚାର ଆବଶ୍ୟକ ତା' ଅପେକ୍ଷା ଅଧିକ ସନ୍ତାନ ନକରିବା ପାଇଁ ପ୍ରଚାର ଅଧିକ ଗୁରୁତ୍ୱ ପୂର୍ଣ୍ଣ।

ଯେତେବେଳେ ଏକ ଦଂପତିଙ୍କର ଆର୍ଥିକ ସମ୍ବଳ ସେତେ ସ୍ୱଚ୍ଛଳ ନୁହେଁ, ସେତେବେଳେ ବହୁ ସନ୍ତାନ ଜନ୍ମ କରିବା ଯେ ସେମାନଙ୍କ ପାଇଁ ବଡ ପ୍ରତିବନ୍ଧକ ଏହା ସେମାନେ ଜାଣିବା ଦରକାର। କାରଣ ପିଲାମାନଙ୍କର ଆବଶ୍ୟକତା ସେମାନେ ପୂରଣ କରିପାରିବେ ନାହିଁ। ଅଧିକ ସନ୍ତାନ ଜନ୍ମ ନ କଲେ ପୃଥିବୀର ଜନସଂଖ୍ୟା ବୃଦ୍ଧି ପାଇବ ନାହିଁ ଏହି ଯୁକ୍ତି ଅଜ୍ଞତା ଉପରେ ଆଧାରିତ। ଏକ ଦଂପତି ଯୌନ ସଂପର୍କ କ୍ଷେତ୍ରରେ ନିୟନ୍ତ୍ରଣ ନରଖିଲେ ସେମାନେ ନିଜର ସ୍ୱାସ୍ଥ୍ୟ ଖରାପ କରିବା ସହ ପିଲାଙ୍କର ସ୍ୱାସ୍ଥ୍ୟକୁ ମଧ୍ୟ ସୁସ୍ଥ ରଖିପାରିବେ ନାହିଁ। ମଣିଷ ଯେତେ ବିଚାରଶୀଳ ହେଲେ ମଧ୍ୟ ତାର ଯୌନ ଜୀବନ କ୍ଷେତ୍ରରେ ସେ ପଶୁଠାରୁ ମଧ୍ୟ ବେଳକେ ଖରାପ ହୋଇଥାଏ। ଅନ୍ଧ ବିଶ୍ୱାସର ବଶବର୍ତ୍ତୀ ହୋଇ ସେ ସନ୍ତାନମାନଙ୍କୁ ନିଜର ସଂପତ୍ତି ବୋଲି ଭାବେ ଓ ଏହାଦ୍ୱାରା ସେ ସ୍ୱର୍ଗପ୍ରାପ୍ତ ହେବ ବୋଲି ଧାରଣା ଆଣିଥାଏ। ଏହି ସବୁ ଭାବନା ତାକୁ ନାନା ଉଦ୍‌ବେଗ ଭିତରେ ପକାଇଥାଏ ଓ ସେ ସମାଜ ପାଇଁ ନାନା ସମସ୍ୟାର କାରଣ ହୁଏ।

ଆମର ମହିଳାମାନେ ଭୟାତୁର ଭାବେ ଦାସ ଭଳି ବ୍ୟବହାର କରନ୍ତି। ସନ୍ତାନ ଜନ୍ମ କରିବା ଓ ସେମାନଙ୍କର ପାଳନ କରିବା ସେମାନଙ୍କର ମୁଖ୍ୟ ଦାୟିତ୍ୱ

Digitized by srujanika@gmail.com

ବୋଲି ମହିଳାମାନେ ଭାବିଥାନ୍ତି । ଆମର ଅଧିକାଂଶ ମହିଳା ଅତି ଦୟନୀୟ ଭାବେ ଜୀବନ ଧାରଣ କରନ୍ତି । ସମାଜରେ ବେକାରୀ ସମସ୍ୟା ମଧ୍ୟ ଉତ୍କଟ ହୋଇ ଚାଲିଛି । ସମାଜର ସମସ୍ୟା ଏହିପରି ନାନା କ୍ଷେତ୍ରରେ ବୃଦ୍ଧି ପାଉଥିବା ବେଳେ ପରିବାର ନିୟୋଜନ ବ୍ୟବସ୍ଥା ଏବେ ଅତ୍ୟନ୍ତ ଆବଶ୍ୟକ । ପରିବାର ନିୟନ୍ତ୍ରଣ ଦ୍ୱାରା ଲୋକମାନେ ଶାନ୍ତିରେ ବଞ୍ଚିପାରିବେ ।

ସନ୍ତାନ ଲାଭ କରିବାର ମନୋଭାବ ଯୋଗୁଁ ଜଣେ ବିପତ୍ନୀକ ବ୍ୟକ୍ତି ତା ମନ ମୁତାବକ ଅନ୍ୟ ଜଣେ ମହିଳାଙ୍କୁ ବିବାହ କରିବାକୁ ଅତ୍ୟନ୍ତ ଇଚ୍ଛା ପ୍ରକାଶ କରିଥାଏ । ସନ୍ତାନ ଥିବା ଜଣେ ବିଧବା ମହିଳା କିନ୍ତୁ ଆଗ୍ରହ ସତ୍ତ୍ୱେ ବି ବିବାହ କରିପାରେ ନାହିଁ । ମହିଳାମାନେ ସନ୍ତାନ ଯୋଗୁଁ ସେମାନଙ୍କର ସମ୍ମାନ, ସ୍ୱାଧୀନତା ଓ ମର୍ଯ୍ୟାଦା ହରାଇଥାନ୍ତି ।

ଭବିଷ୍ୟତରେ ପିଲାମାନଙ୍କର ଜନ୍ମହାର ବହୁତ କମ ହେବ । ମୃତ୍ୟୁହାର ମଧ୍ୟ କମିଯିବ । ଜଣେ ବ୍ୟକ୍ତି ଶହେ ବର୍ଷ ବଞ୍ଚି ପାରିବ । ଏକ ଦଂପତି ମାତ୍ର ଦୁଇଟି ସନ୍ତାନ ଭିତରେ ସୀମିତ ରହିବା ଦରକାର । ଦୁଇଟି ସନ୍ତାନରୁ ଅଧିକ ସନ୍ତାନ କ୍ଷେତ୍ରରେ କଟକଣା ରହିବା ଆବଶ୍ୟକ । ଯୌନ ସଂପର୍କ ସନ୍ତାନ ଜନ୍ମ ପାଇଁ ଉଦ୍ଦିଷ୍ଟ ହେବା ଠିକ୍ ନୁହେଁ । ଆଗାମୀ ପୃଥିବୀରେ ସବୁ ଶିଶୁ ସୁସ୍ଥ ଓ ଆରୋଗ୍ୟ ରହିପାରିବେ । ସେମାନେ ଅଧିକ ବୁଦ୍ଧିମାନ, ସବଳ ଓ ମୁକ୍ତ ହୋଇପାରିବେ । ଆଧୁନିକ ବିଜ୍ଞାନର ଅଗ୍ରଗତି ଏସ୍ତରକୁ ଯିବ ଯେପରି ଗୋପାଳନ କ୍ଷେତ୍ରେ ହେଉଛି ତାହା ମଣିଷ ପାଖରେ ମଧ୍ୟ ହେବ । ସୁସ୍ଥ, ନୀରୋଗ ଓ ବୁଦ୍ଧିମାନ ବ୍ୟକ୍ତିର ବୀର୍ଯ୍ୟ ନେଇ କୃତ୍ରିମ ଭାବେ ପ୍ରଜନନ କରାଯାଇ ପାରିବ । ମହିଳାମାନେ ସନ୍ତାନ ଜନ୍ମ କ୍ଷେତ୍ରରେ ଯେତେ ସମସ୍ୟାର ସମ୍ମୁଖୀନ ହେଉଛନ୍ତି ସେଥିରୁ ସେମାନେ ଅକ୍ଳେଶରେ ମୁକ୍ତ ହୋଇପାରିବେ । ଶିଶୁମାନଙ୍କର ସୁସ୍ଥ ଓ ମୁକ୍ତ ବିକାଶ ପାଇଁ ସାମାଜିକ ବ୍ୟବସ୍ଥା ହେବ । ବାପା-ମା ପିଲାଙ୍କ ପାଇଁ ସଂପତ୍ତି ଠୁଳ କରି ସଂଚୟ କରିବାର ଆବଶ୍ୟକତା ଅନୁଭବ କରିବେ ନାହିଁ । ମଣିଷ ଏବେ ସନ୍ତାନ ପାଇଁ କେତେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି । ଆମେ ଆମ ଚତୁଃପାର୍ଶ୍ୱରେ କ'ଣ ଦେଖୁଛେ? ଆମେ ଏହାର ଊର୍ଦ୍ଧ୍ୱକୁ ଯାଇ ଆମର ବିଚାରକୁ ଅଧିକ ଶାଣିତ କରିବା ଠିକ୍ ହେବ

Digitized by srujanika@gmail.com

ନାହିଁ କି? ଆମର ଅନେକ ଉତ୍କଣ୍ଠା ଉଦ୍‌ବିଗ୍ନକୁ ଆମେ ଏହାଦ୍ୱାରା ପରିହାର କରିପାରିବା ।

ପିଲାମାନଙ୍କୁ ନେଇ ଆମର ଯେତେ ସବୁ ଭ୍ରାନ୍ତ ଆବେଗ ରହିଛି ତାହା ଦୂର ହେବା ଆବଶ୍ୟକ । ପ୍ରାଚୀନ ଯୁଗର ଭାବନାରୁ ମୁକ୍ତି ଆବଶ୍ୟକ ।

**ମୋର ବକ୍ତବ୍ୟ:-**

ଯେଉଁ ପ୍ରସଙ୍ଗଟି ମୋତେ ଗଭୀର ଭାବେ ପ୍ରଭାବିତ କରିଛି ତାହା ହେଲା ଜାତି ପ୍ରଥା । ମୋ ମତରେ ଜାତି ବ୍ୟବସ୍ଥା ସମାଜରୁ ଲୋପ ହେବା ଦରକାର । କାରଣ ଏହି ବ୍ୟବସ୍ଥା ସମାଜରେ ସାନ ବଡ, ଉଚ୍ଚ ନୀଚ ନାନା ଭେଦଭାବ ସୃଷ୍ଟି କରିଛି । ପୂଜାସ୍ଥଳକୁ ସର୍ବ ସାଧାରଣ ଗୃହରେ ପରିଣତ କରାଯିବା ଆବଶ୍ୟକ, ସେଠାରୁ ସମସ୍ତ ମୂର୍ତ୍ତି ଅନ୍ତର୍ହିତ ହେବା ଦରକାର । ଯେତେ ସବୁ ମଠ, ମଠାଧୀଶ ରହିଛନ୍ତି ସେସବୁର ବିଲୋପ ଆବଶ୍ୟକ । ମଠ ଓ ମଠାଧୀଶ ମାନଙ୍କର ସଂପତ୍ତି ସରକାରଙ୍କ ଅଧୀନକୁ ଆସିବା ଉଚିତ । ମନ୍ଦିର ମାନଙ୍କର ପର୍ବପର୍ବାଣୀ ପରିବର୍ତ୍ତେ ସେଠାରେ ପ୍ରଦର୍ଶନୀ, ମେଳା ଅନୁଷ୍ଠିତ ହେବା ଦରକାର ।

ସମସ୍ତେ ଏକ ପ୍ରକାରର ପୋଷାକ ପରିଧାନ କରିବା ଉଚିତ । ସହରର କଳକାରଖାନା ମାନଙ୍କୁ ବାଦ ଦେଲେ ସବୁ ଲୋକଙ୍କୁ କିପରି ବାସୋପଯୋଗୀ ଗୃହ ଭିତରେ ରଖାଯିବ ତାହାର ବ୍ୟବସ୍ଥା ଗୃହନିର୍ମାଣ ଯୋଜନା ଜରିଆରେ କରାଯାଇ ପାରିବ । ଅଳ୍ପ ଜାଗାରେ ଇଂଜିନିୟରିଂ ଜ୍ଞାନ କୌଶଳ ଦ୍ୱାରା ଗୃହନିର୍ମାଣ କରାଯାଇ ଖୋଲା ସ୍ଥାନ ରଖାଯାଇ ପାରିବ । ବ୍ୟକ୍ତିମାନଙ୍କୁ ଯେଉଁ ନାମରେ ଡାକିଲେ ଅସମ୍ମାନ ବା ଅମର୍ଯ୍ୟାଦା ହେବ ତାହାକୁ ପରିହାର କରିବାକୁ ହେବ ।

ସବୁ ବ୍ୟକ୍ତି ସେମାନଙ୍କର ଜୀବନ ସାଥି ବାଛିବାରେ ସେମାନଙ୍କ ବ୍ୟକ୍ତିଗତ ଅଧିକାର ଉପଭୋଗ କରିବେ ।

ଦଶବର୍ଷ ହେବା ପର୍ଯ୍ୟନ୍ତ ସବୁ ଶିଶୁମାନଙ୍କୁ ପ୍ରାଥମିକ ଶିକ୍ଷା ଦିଆଯିବ । ମାଟ୍ରିକ ପାସ୍ କରିବା ପରେ ସମସ୍ତଙ୍କୁ କର୍ମସଂସ୍ଥାନ ମିଳିପାରିବ । କର୍ମଚାରୀମାନଙ୍କ ମଧ୍ୟରେ ଦରମା କ୍ଷେତ୍ରରେ ଯେତେ ପାତର ଅନ୍ତର ରହିଛି ତାହା ଦୂର ହେବା

Digitized by srujanika@gmail.com

ଆବଶ୍ୟକ । ଅନେକ ଅନାବଶ୍ୟକ ପଦାର୍ଥର ବ୍ୟବହାରକୁ ପରିହାର କରାଯିବା ଉଚିତ । ବ୍ୟବସାୟରେ ଲାଭର ପରିମାଣ କମ ହେବା ଆବଶ୍ୟକ ।

କୌଣସି ବ୍ୟକ୍ତି ଏକ ନିର୍ଦ୍ଦିଷ୍ଟ ସୀମା ବାହାରେ ଅଳଙ୍କାର ପିନ୍ଧିବା ବା ରଖିବାର ଅନୁମତି ପାଇବ ନାହିଁ ।

କୌଣସି ଲୋକ ପ୍ରାଇଭେଟ ଭାବେ ଟଙ୍କା ଧାର ନେଇ ବ୍ୟବସାୟ କରିବାକୁ ବାରଣ କରାଯିବ ।

ଆଞ୍ଚଳିକ ସଂସ୍ଥା, ସମବାୟ ସଂଗଠନ ବା ସରକାରଙ୍କ ନିୟନ୍ତ୍ରଣ ଭିତରେ ସାଧାରଣ ବଣ୍ଟନ ବ୍ୟବସ୍ଥା, ପୋଷାକ ପରିଚ୍ଛେଦ ଇତ୍ୟାଦି ରହିବା ଉଚିତ । ଉତ୍ପାଦିତ ସାମଗ୍ରୀ ସରକାର ନେଇ ତାହାର ବଣ୍ଟନ ବ୍ୟବସ୍ଥାକୁ ନିୟନ୍ତ୍ରିତ କରିବେ ।

ଶିକ୍ଷକତା କ୍ଷେତ୍ରରେ ୭୫ ଶତକଡା ସ୍ଥାନ ମହିଳାଙ୍କ ପାଇଁ ସଂରକ୍ଷିତ ରଖାଯିବ । ସରକାର ଯେତେ ଅଧିକ ସମ୍ଭବ ଗୃହ ନିର୍ମାଣ କରିବେ ଓ ନିଜର ନିୟନ୍ତ୍ରଣ ଭିତରେ ରଖିବେ । ଏଥିପାଇଁ ସରକାର ଏକ ସ୍ୱତନ୍ତ୍ର ବିଭାଗ ସୃଷ୍ଟି କରି ସେଥିପାଇଁ ବଜେଟରେ ଯଥାସମ୍ଭବ ଅର୍ଥର ବ୍ୟବସ୍ଥା କରିବେ । ରାଜମିସ୍ତ୍ରୀ ଓ କାଠକାମ ପାଇଁ ଲୋକମାନଙ୍କୁ ସ୍ୱତନ୍ତ୍ର ତାଲିମ ଦିଆଯିବ ।

ଜଙ୍ଗଲରୁ ଯେତିକି ଆବଶ୍ୟକ ସେତିକି ଗଛ କଟାଯିବ ଓ ବୃକ୍ଷରୋପଣକୁ ଗୁରୁତ୍ୱ ଦିଆଯିବ ।

କାଠ କାମ କ୍ଷେତ୍ରରେ ଯଦି ଉନ୍ନତ ଯନ୍ତ୍ରପାତି ବ୍ୟବହାର କରାଯିବ ତେବେ ୫୦୦ କାଠ ମିସ୍ତ୍ରୀ ଦିନକୁ ୧୦୦୦ ଝରକା ଓ କବାଟ ନିର୍ମାଣ କରିପାରିବେ । ମେସିନ ସାହାଯ୍ୟରେ ଅକ୍ଳେଶରେ କାଠମାନଙ୍କୁ ସାଇଜ କରାଯାଇ ବ୍ୟବହାର କରାଯାଇପାରିବ । ଏହାଦ୍ୱାରା ବହୁ କଠିନ ଶାରୀରିକ ପରିଶ୍ରମକୁ ବାଦ୍ ଦେଇ ହେବ । କାଠ ମିସ୍ତ୍ରୀମାନେ ମେସିନ ସାହାଯ୍ୟରେ ନିଜର କାର୍ଯ୍ୟକୁ ଅକ୍ଳେଶରେ କରିବେ । ସେମାନେ କେବଳ ଅଂଶମାନଙ୍କୁ ଯୋଡି କରି ଫ୍ରେମ ଗୁଡିକୁ ସ୍ଥାନରେ ଲଗାଇ ପାରିବେ ।

Digitized by srujanika@gmail.com

ସେହିପରି ଗୃହନିର୍ମାଣ କ୍ଷେତ୍ରରେ ବିଭିନ୍ନ ମେସିନର ସାହାଯ୍ୟ ନେଇ ଅଳ୍ପ ସମୟରେ ଅନେକ ଗୃହ ନିର୍ମାଣ କରାଯାଇ ପାରିବ। ଦଶବର୍ଷ ଭିତରେ ବାସଗୃହ ସମସ୍ୟାକୁ ଅକ୍ଳେଶରେ ଦୂର କରାଯାଇପାରିବ।

ସେହିପରି ସରକାର ପାଣି ଉଠାଇବା ପାଇଁ ପ-, ମଟର, ଇଂଜିନ ତେଲ ନିର୍ମାଣ କରି ଚାଷ କାର୍ଯ୍ୟରେ ଓ ଅନ୍ୟାନ୍ୟ କାର୍ଯ୍ୟରେ ବିନିଯୋଗ କରିବେ। ଯଦି ପ୍ରତ୍ୟେକ କାର୍ଯ୍ୟ ପାଇଁ ଆମେ ଏକ ସ୍ୱତନ୍ତ୍ର ବିଭାଗ ଖୋଲି ସବୁ ବିଷୟକୁ ସୁନିୟନ୍ତ୍ରିତ କରିବା, ତେବେ ଆମର ଖାଦ୍ୟ, ବାସଗୃହ ଓ ପୋଷକ କ୍ଷେତ୍ରରେ ସମସ୍ୟା ରହିବ ନାହିଁ।

ଏହି ସବୁ ଯୋଜନାବଦ୍ଧ କାର୍ଯ୍ୟଦ୍ୱାରା ସମାଜରେ ଥିବା ସକଳ ବୈଷମ୍ୟକୁ ଆମେ ଦୂର କରିପାରିବା। କୌଣସି ଅଭାବ ନେଇ ଆମର ଉତ୍କଣ୍ଠା ରହିବ ନାହିଁ।

ସମାଜର ଅନେକ ମନ୍ଦ ବ୍ୟବସ୍ଥାର ଆମେ ସମାଧାନ କରିପାରିବା। ଈର୍ଷା, ଅସ୍ପୃଶ୍ୟ ଓ ଘୃଣା ପରି ଭାବନାକୁ ସମାଜରେ ପ୍ରତିହତ କରିବା ସମ୍ଭବ ହେବ।

ସୁଖ, ଆନନ୍ଦ, ଏକତା, ବନ୍ଧୁତ୍ୱ କାଳକ୍ରମେ ସମାଜରେ ବ୍ୟାପକ ହେବ। ଚୋରି, ଡକାୟତି, ଦୁର୍ନୀତି, ଠକାମି, ପ୍ରତିଶୋଧମୂଳକ ମନୋଭାବ ସମାଜରୁ ଧୀରେ ଧୀରେ ଦୂର ହୋଇଯିବ।

ଆପଣ ଏହି ପ୍ରକାର ଏକ ସମାଜକୁ ଯେଉଁ ନାମ ଦିଅନ୍ତୁ ନା କାହିଁକି ତାହା ହିଁ ମୋର କାମ୍ୟ।

କୌଣସି ବିଚାରଶୀଳ ବ୍ୟକ୍ତି ବର୍ତ୍ତମାନର ସ୍ଥିତିକୁ କେବେହେଲେ ସ୍ୱୀକୃତି ଦେବ ନାହିଁ। ଏହି ଆବଶ୍ୟକୀୟ ପରିବର୍ତ୍ତନ ପାଇଁ ଯଦି ଆମେ ପ୍ରୟାସ ନ କରୁ ଏହା ଦୁର୍ଭାଗ୍ୟ ଜନକ ହେବ।



Digitized by srujanika@gmail.com

## ପରିଚ୍ଛେଦ - ୧୧
# ଗ୍ରାମ୍ୟ ବିକାଶ

(ଏରୋଡଠାରେ ଗ୍ରାମ ସେବକ ତାଲିମ କେନ୍ଦ୍ରର ବାର୍ଷିକ ଉତ୍ସବ ଅବସରରେ ୩୧.୧୦.୧୯୪୪ ଦିନ ପ୍ରଦତ୍ତ ଭାଷଣ। ଏହି ସଭାରେ ଭି.କେ. ରମଣ ମେନନ. ଏମ.ଏ. ବାରିଷ୍ଟର, ଜିଲ୍ଲା ଶିକ୍ଷାଧିକାରୀ ସଭାପତିତ୍ୱ କରିଥିଲେ)

ମାନନୀୟ ସଭାପତି ମହୋଦୟ ଓ ସାଥିଗଣ !

ଯେଉଁ ମାନେ ଗ୍ରାମମାନଙ୍କରେ ପ୍ରଶାସକ ହେବାପାଇଁ ତାଲିମ ନେଉଛନ୍ତି ସେମାନେ ଏହି ସଭାରେ ଉପସ୍ଥିତ ରହିଛନ୍ତି। ସଭାର ସଭାପତି ଶିକ୍ଷା ବିଭାଗର ଜଣେ ପ୍ରଶାସକ। ତାଙ୍କ ପାଖରେ ଉପ-ଜିଲ୍ଲାପାଳ ମଧ୍ୟ ବସିଛନ୍ତି ଯେ କି ଗ୍ରାମ୍ୟ ବିକାଶର ଜଣେ ପ୍ରଶାସକ। ସେମାନଙ୍କ ହାତରେ ଅନେକ କ୍ଷମତା ଓ ଦାୟିତ୍ୱ ରହିଛି। ମୁଁ ତ ରାଜନୈତିକ ଲୋକଙ୍କର ବିରୋଧୀ। ଆମ ସମାଜର ଜନଗଣଙ୍କ ଦ୍ୱାରା ଅନାଦୃତ ଓ ଘୃଣିତ କେତେକ ତଥାକଥିତ ପ୍ରଗତିଶୀଳ ଲୋକ ରହିଛନ୍ତି ଯେଉଁମାନେ ମୋତେ ଗ୍ରହଣ କରିପାରନ୍ତି ନାହିଁ। ସେହିପରି ସମାଜର ସବୁ ସ୍ତରରେ ପ୍ରାଧାନ୍ୟ ବିସ୍ତାର କରି ରହିଥିବା କେତେକ ଉଚ୍ଚ ଜାତିର ବ୍ୟକ୍ତି ମଧ୍ୟ ମୋତେ ବିରୋଧ କରିଥାନ୍ତି। ପ୍ରାଚୀନ ବ୍ୟବସ୍ଥା, ଶାସ୍ତ୍ର ଇତ୍ୟାଦିକୁ ମୁଁ ବିରୋଧ କରିଥାଏ ବୋଲି ମୋତେ ଚିତ୍ରଣ କରାଯାଇଥାଏ। ମୁଁ ଯଦି ବି ନିଜକୁ ଜଣେ ସମାଜ ସଂସ୍କାରକ କହିଥାଏ, ମୋର ସଂସ୍କାର ଭାବନା ଓ ମୋର କାର୍ଯ୍ୟପନ୍ଥା ଭିତରେ ପାର୍ଥକ୍ୟ ରହିଛି। ଧର୍ମ ଓ ପ୍ରାଚୀନ ପରଂପରା ଉପରେ ଆଧାରିତ କୌଣସି ବିଷୟ ଉପରେ ମୁଁ ଗୁରୁତ୍ୱ ଦିଏ ନାହିଁ। ମୋର କର୍ମପନ୍ଥା ଓ ପ୍ରତିକାରକ୍ଷମ ପଦ୍ଧତିର ତାତ୍ପର୍ଯ୍ୟ ହେଉଛି ପ୍ରାଚୀନ ବ୍ୟବସ୍ଥାର ବିଲୋପ କରି ଏକ ନୂତନ ସାମାଜିକ ବ୍ୟବସ୍ଥା ରୂପାୟନ କରିବା। ମୋର ସଂସ୍କାରବାଦୀ ଆଭିମୁଖ୍ୟର ଲକ୍ଷ୍ୟ ହେଉଛି ଏକ ନୂତନ

Digitized by srujanika@gmail.com

ସମାଜ ନିର୍ମାଣ । ମୋର ଏହି ଆଭିମୁଖ୍ୟ ଯୋଗୁଁ ମୋତେ କେତେକ ଏକ ଭୟଙ୍କର ଓ ଧ୍ୱଂସକାରୀ ବ୍ୟକ୍ତି ବୋଲି ଚିତ୍ରଣ କରିଥାନ୍ତି ।

ଏହି ପୃଷ୍ଠଭୂମିରେ ମୁଁ ଯଦି ଗ୍ରାମୀଣ ସଂସ୍କାର ଓ ରଚନାତ୍ମକ କାର୍ଯ୍ୟସୂଚୀ ଉପରେ ଆପଣମାନଙ୍କୁ ଭାଷଣ ଦିଏ, ଆପଣମାନେ ମୋର ଭାବନାକୁ କେତେ ଦୂର ଗ୍ରହଣ କରିବେ ମୁଁ ତାହା ଜାଣେ ନାହିଁ । ଏକ ନାଟକ ଦେଖିଲାବେଳେ ଯେପରି ନାନା ହାସ୍ୟ ଉଦ୍ଦୀପକ କାହାଣୀର ଉପସ୍ଥାପନା କରାଯାଏ ତାହା ଯେତେ ଅବାସ୍ତବ ହେଲେ ବି ଆମେ ସେସବୁ ଦେଖି ଉପଭୋଗ କରିଥାଉ । ସେହିପରି ମୁଁ ଯାହା କହିବାକୁ ଯାଉଛି ତାହା ମନଯୋଗ ଦେଇ ଶୁଣିବାକୁ ଆପଣମାନଙ୍କୁ ନିବେଦନ କରୁଛି । ଭାଷଣ ପରେ ଆପଣମାନେ ଯେତେବେଳେ ଗୃହକୁ ଫେରିଯିବେ ମୁଁ ଯାହା କହିଲି ତାକୁ ଦୟାକରି ମୁକ୍ତ ମନରେ ବିଚାର କରିବେ । ଆପଣମାନେ ମୁକ୍ତ ମନରେ ଗୋଟିଏ ବିଷୟକୁ ବିଚାର କଲେ ତାହାର ଭଲ ମନ୍ଦ ଜାଣିପାରିବେ । ଏକ ଉତ୍କ୍ଷିପ୍ତ ମନରେ କୌଣସି ବିଷୟରେ ନିଷ୍ପତ୍ତି ନିଆଯାଇପାରେ ନାହିଁ ।

ତରବରିଆ ଭାବେ କିଛି ନିଷ୍ପତ୍ତି ନେବା ଏକ ବିଜ୍ଞ ସିଦ୍ଧାନ୍ତ ନୁହେଁ । ସୁତରାଂ ମୋର ଅନୁରୋଧ ମୋର ମତାମତ ଉପରେ ଆପଣମାନେ ଗମ୍ଭୀର ଭାବେ ଚିନ୍ତା କରିବେ ଓ ନିଷ୍ପତ୍ତି ନେବେ ।

ବନ୍ଧୁଗଣ, ଗ୍ରାମ୍ୟ ସଂସ୍କାର ପ୍ରକୃତରେ କଣ ତାହା ମୁଁ ପ୍ରଥମରୁ କହିବା ଆବଶ୍ୟକ । ପ୍ରଥମରୁ କହି ରଖେ ଯେ "ପଲ୍ଲୀ" ବା ମଫସଲ ବିଲୋପ ହେବା ଆବଶ୍ୟକ । ଏପରିକି ଗାଆଁ ଶବ୍ଦ ବି ଭାଷାକୋଷରୁ ବାଦ୍ ଦିଆଯିବା ଦରକାର । ରାଜନୈତିକ ବ୍ୟବସ୍ଥାରେ ଗାଆଁର ଭାବନା ଲୋପ ହେବା ଉଚିତ୍ ।

ସଂପ୍ରତି ଗାଆଁର ଅର୍ଥ ଓ ପରିବେଶ ସହର ଓ ନଗରଠାରୁ ସଂପୂର୍ଣ୍ଣ ପୃଥକ୍ । ଗାଆଁ ମାନଙ୍କର ବିକାଶ ନେଇ ଆପଣମାନେ ଯାହା ପ୍ରୟାସ କଲେ ବି ଆପଣ ଲକ୍ଷ୍ୟରେ ପହଞ୍ଚି ପାରିବେ ନାହିଁ କିମ୍ବା ପୂର୍ଣ୍ଣ ସଫଳତା ହାସଲ କରିପାରିବେ ନାହିଁ । ପାରିହା ଓ ଚେକିଲି ଜାତିର ବିକାଶ ପାଇଁ ହୋଇଥିବା ଉଦ୍ୟମ ଯେପରି

Digitized by srujanika@gmail.com

ହରିଜନ ନାମରେ ଏକ ନୂତନ ଆଦି ଦ୍ରାବିଡ ଶ୍ରେଣୀ ସୃଷ୍ଟି କରିଛି, ସେହିପରି ଗ୍ରାମ୍ୟ ବିକାଶ କ୍ଷେତ୍ରରେ ହୁଏତ କିଛିଟା ପରିବର୍ତ୍ତନର ସୂତ୍ରପାତ ହୋଇପାରେ, ତେବେ ଏହା ଏକ ଯଥାର୍ଥ ବିକାଶର ଲକ୍ଷ୍ୟ ହାସଲ କରିପାରିବ ନାହିଁ। ସହର ଓ ନଗର ମାନଙ୍କରେ ଲୋକମାନେ ଯେଉଁ ଅଧିକାର ଓ ସ୍ୱାଧୀନତା ଲାଭ କରିଛନ୍ତି ତାହା ଗ୍ରାମ୍ୟ ସ୍ତରରେ ସମ୍ଭବ ହେବନାହିଁ। ତାହାର କାରଣ ସହର ଓ ନଗରର ସ୍ଥାପନା ଓ ଆବଶ୍ୟକତା ଗ୍ରାମର ପରିବେଶ ଠାରୁ ସଂପୂର୍ଣ୍ଣ ଭିନ୍ନ।

ମୁଁ ଏହାକୁ ଅଧିକ ବ୍ୟାଖ୍ୟା କରିବାକୁ ଚାହୁଁଛି। ବର୍ଣ୍ଣାଶ୍ରମ ଧର୍ମ ଅନୁଯାୟୀ ସମାଜ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଓ ଅଛବ ବା ପଞ୍ଚମ ଶ୍ରେଣୀରେ ବିଭାଜିତ ହୋଇ ଆସିଛି। ସାମାଜିକ ଶ୍ରେଣୀ ବିଭାଜନ ପ୍ରକ୍ରିୟାରେ ପଞ୍ଚମ ବା ଅସ୍ପୃଶ୍ୟମାନେ ଯେପରି ସବୁଠାରୁ ତଳେ ରହିଛନ୍ତି, ସେହିପରି ନଗର, ସହର ତୁଳନାରେ ଗାଆଁମାନେ ସବୁଠାରେ ନିମ୍ନରେ ରହିଛନ୍ତି।

ବର୍ଣ୍ଣାଶ୍ରମ ନୀତି ଟି କ'ଣ? ଏଥିରେ କେତେକ ଶ୍ରେଣୀର ଲୋକମାନଙ୍କୁ ଉଚ୍ଚ ଓ ଶ୍ରେଷ୍ଠ ବୋଲି ନିଆଯାଇଛି। ସେହିପରି କେତେକ ଶ୍ରେଣୀର ଲୋକଙ୍କୁ ନୀଚ ଓ ନିକୃଷ୍ଟ ବୋଲି ଗ୍ରହଣ କରାଯାଇଛି। ଗୋଟିଏ ନିର୍ଦ୍ଦିଷ୍ଟ ବର୍ଗର ଲୋକମାନେ ବିନା ପରିଶ୍ରମରେ ସୁଖକର ଜୀବନ ବଞ୍ଚିବାକୁ ଯୋଜନା କରାଯାଇଛି। କୌଣସି କାର୍ଯ୍ୟ ନକରି ଜୀବନରେ ସମସ୍ତ ସୁଖ ଓ ଆନନ୍ଦ ଉପଭୋଗ କରିବାକୁ ସେମାନଙ୍କୁ ସୁଯୋଗ ଦିଆଯାଇଛି, ଅନ୍ୟ ପକ୍ଷରେ ଅନ୍ୟ ଗୋଟିଏ ଗୋଷ୍ଠୀର ଲୋକ ସବୁଦିନ ପାଇଁ କଠିନ ପରିଶ୍ରମ କରି ବଞ୍ଚିବାକୁ ହୋଇଛି। କଠିନ ପରିଶ୍ରମ କରୁଥିବା ଲୋକମାନଙ୍କର ଉପାର୍ଜନକୁ ଅନ୍ୟମାନେ ଶୋଷଣ କରି ଆସିଛନ୍ତି। ଏହା ହିଁ ହେଉଛି ବର୍ଣ୍ଣାଶ୍ରମ ଧର୍ମର ମୌଳିକ ତତ୍ତ୍ୱ। ବୈଷମ୍ୟ ଓ ଶୋଷଣ ଏହାର ସିଦ୍ଧାନ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ।

ଏହି ମନ୍ଦ ଓ ଘୃଣ୍ୟ ବ୍ୟବସ୍ଥାରେ ସାମାଜିକ ସ୍ତରରେ ଉପର ତିନି ବର୍ଗର ଲୋକମାନେ ତଳ ଦୁଇ ଶ୍ରେଣୀ ଶୂଦ୍ର ଓ ଅତିଶୂଦ୍ରମାନଙ୍କୁ ଶୋଷଣ କରିଆସିଛନ୍ତି। ଲୋକମାନଙ୍କୁ ବିଶ୍ୱାସ ଦିଆଯାଇଛି ଯେ ତଳ ଦୁଇ ବର୍ଗର ଲୋକମାନେ ଉପର

Digitized by srujanika@gmail.com

ଶ୍ରେଣୀର ଲୋକମାନଙ୍କୁ ସୁଖରେ ରଖିବା ପାଇଁ ଈଶ୍ୱରଙ୍କ ଦ୍ୱାରା ସୃଷ୍ଟି ହୋଇଛନ୍ତି। ଏପରି ମଧ୍ୟ କୁହାଯାଇଛି ଯେ ତଳ ବର୍ଗର ଶୂଦ୍ର ଓ ଅତିଶୂଦ୍ରମାନେ ଉପର ଶ୍ରେଣୀର ଲୋକମାନଙ୍କର ସେବା କରିବା ଦ୍ୱାରା ମୋକ୍ଷ ଲାଭ କରିପାରିବେ, ଏହା ଛଡା ସେମାନଙ୍କର ସ୍ୱର୍ଗପ୍ରାପ୍ତି କେବେ ସମ୍ଭବ ନୁହେଁ।

ଏପରି ନୀତି ହୋଇଛି ଯେ ଯଦି ଚତୁର୍ଥ ଓ ପଞ୍ଚମ ବର୍ଗର ଲୋକମାନେ ହାତରେ କିଛି ଟଙ୍କା ରଖିବେ, ତେବେ ତାକୁ ଉପର ଶ୍ରେଣୀର ଲୋକମାନେ ବଳ ପ୍ରୟୋଗ କରି ନେଇଯାଇ ପାରିବେ। କେବଳ ପ୍ରଥମ ବର୍ଗର ଲୋକମାନେ ଅଧ୍ୟୟନ ଓ ଲେଖା-ପଢାର ଅବକାଶ ପାଇବେ। ଶୂଦ୍ର ଓ ଅତିଶୂଦ୍ର ଲୋକମାନେ ଅଧ୍ୟୟନ ଓ ପଢିବାର ଅଧିକାର ପାଇବେ ନାହିଁ।

ସହର ଓ ଗାଆଁରେ ବର୍ଣ୍ଣ ବ୍ୟବସ୍ଥାର ଏହା ହିଁ ହେଉଛି ମୌଳିକ ନୀତି। ଏହା କେତେ ଦୂର ଯଥାର୍ଥ ଆପଣମାନେ ଚିନ୍ତା କରନ୍ତୁ।

**ଗାଆଁ କ'ଣ :**

ଗୋଟିଏ ଗାଆଁ କ'ଣ ବର୍ତ୍ତମାନ ଦେଖାଯାଉ। ଗୋଟିଏ ଗାଆଁରେ ବିଦ୍ୟାଳୟ, ଡାକ୍ତରଖାନା, ପାର୍କ, ବିଚାରାଳୟ, ପୋଲିସ ଷ୍ଟେସନ ନଥାଏ। ସେହିପରି ଗାଆଁର ପରିବେଶରେ ଭଲ ରାସ୍ତା, ଆଲୋକ (ଇଲେକ୍ଟ୍ରିକ) ସୁବିଧା, ବିଶୁଦ୍ଧ ପାନୀୟ ଜଳ ନଥାଏ। ସଭ୍ୟତାର କୌଣସି ଲକ୍ଷଣ ସେଠାରେ ନଥାଏ। ଗାଆଁରେ ଲୋକମାନେ ପଶୁ ଭଳି ଜୀବନ ବଞ୍ଚନ୍ତି। ସେଠାରେ ଏକ ସୁଖକର ଜୀବନ ବଞ୍ଚିବା ପାଇଁ ଅର୍ଥ ଉପାର୍ଜନର ପରିବେଶ ବା ସୁଯୋଗ ନଥାଏ।

ସହର ଓ ଟାଉନମାନ କିନ୍ତୁ ଗାଆଁ ଉପରେ ନିର୍ଭର କରନ୍ତି ବୋଲି କୁହାଯାଏ। ସହର ଓ ଟାଉନର ଲୋକମାନେ ଗାଆଁର ଲୋକଙ୍କର ପରିଶ୍ରମର ଫଳ ଭୋଗ କରିଥାନ୍ତି। ଗାଆଁରେ ଯାହା ଉତ୍ପାଦିତ ହୁଏ ତାହା ସହରର ଲୋକମାନେ ପାଇଥାନ୍ତି। ପରିଣାମତଃ ସହର ଓ ଟାଉନର ଲୋକମାନେ ଅନେକ ସୁଯୋଗ ପାଇ ଧନୀ ହୁଅନ୍ତି। ଗାଆଁର ଲୋକମାନେ ଟିକସ ସଂଗ୍ରହରେ ସରକାରକୁ

Digitized by srujanika@gmail.com

ସାହାଯ୍ୟ କରନ୍ତି । ଏପରିକି ଦେଉଳ ମନ୍ଦିରରେ ଥିବା ଦିଅଁ ଦେବତା ଗାଆଁର ସ୍ଥିତି ଯୋଗୁଁ ଗଢି ଉଠିଥାଏ ଓ ସେମାନେ ବି ଗାଆଁ ଯୋଗୁଁ ସୁବିଧା ପାଇଥାନ୍ତି ।

ଉର୍ବର ଜମି ଓ ଜଳସେଚିତ ଜମିର ମାଲିକ ହୋଇ ଆର୍ଥିକ ସ୍ୱଚ୍ଛଳତା ଭିତରେ ଥିବା ଲୋକମାନଙ୍କୁ ଦେଖନ୍ତୁ । ଏହା ସହ ଗାଆଁର ଲୋକମାନେ କେଉଁ ସ୍ଥିତିରେ ରହିଛନ୍ତି ତାହା ଲକ୍ଷ୍ୟ କରନ୍ତୁ । ଟଙ୍କା କରଜ ଦେଉଥିବା ଲୋକମାନଙ୍କୁ ଦେଖନ୍ତୁ । ଯେଉଁ ଜାଗାରେ ପତିତ ଜମି ରହିଛି ବା ଅନାବାଦି ଜମି ପଡିଛି ସେଠାରେ ରହିଥିବା ଲୋକମାନଙ୍କର ଘରଦ୍ୱାର ଦେଖନ୍ତୁ । ସେହି ଜମିରେ ଚାଷକରି ଫସଲ ଉତ୍ପାଦନ କରୁଥିବା ଗାଆଁର ଲୋକମାନଙ୍କର ଜୀବନ ସହ ଟଙ୍କା କରଜ ଦେଉଥିବା ଓ ଗାଆଁର ଲୋକମାନଙ୍କ ଠାରୁ ଜିନିଷ ପତ୍ର ଆଣି ସହରରେ ବିକ୍ରି କରୁଥିବା ଲୋକମାନଙ୍କର ଆର୍ଥିକ ସ୍ଥିତିକୁ ତୁଳନା କରନ୍ତୁ । ଗାଆଁରେ ରହି ଉତ୍ପାଦନ କରୁଥିବା ଲୋକମାନେ ପଛୁଆ ଓ ଦୟନୀୟ ସ୍ଥିତିରେ ଥିବା ବେଳେ ସହରରେ ବ୍ୟବସାୟ କରୁଥିବା ଲୋକମାନେ ଆର୍ଥିକ ସ୍ୱଚ୍ଛଳତା ଭିତରେ ରହିଛନ୍ତି । ଏହି ବୈଷମ୍ୟ କାହିଁକି ରହିଛି ?

ଗାଆଁର ଲୋକଟି ପାଠ ପଢି ନାହିଁ ଓ ସେ କେବଳ ପରିଶ୍ରମ କରି ଉତ୍ପାଦନ କରୁଛି । ଫସଲ ଉତ୍ପାଦନ ପରେ ସେ ସେସବୁକୁ ବସ୍ତାରେ ପୁରାଇ ସହରକୁ ପଠାଇ ଦେଉଛି । ସେ ତାର କୁଡିଆଟିରେ ଶୁଷ୍କ ତୃଣ ଓ ସାମାନ୍ୟ ଅଦରକାରୀ ଶସ୍ୟ ନେଇ ରହୁଛି । ସେ ପେଜ ଓ ଯାଉ ଖାଇ ଓ ତାର ପିଲାକୁ ଖୁଆଇ ଏହା ହିଁ ତା ପ୍ରତି ଈଶ୍ୱରଙ୍କ ଦାନ ଭାବି ସେଥିରେ ସନ୍ତୁଷ୍ଟ ରହୁଛି । ତାର ପିଲାମାନେ ସାମାନ୍ୟ ଖାଦ୍ୟରେ ଭୋକ ମେଣ୍ଟାଉଛନ୍ତି ।

ଯଦି ଗାଆଁର ଲୋକମାନେ ପାଠ ଶାଠ ପଢି ସଚେତନ ହୋଇପାରନ୍ତେ ତେବେ ସେମାନେ ସାମାଜିକ ପରିସ୍ଥିତିର ବାସ୍ତବତାକୁ ଅନୁଭବ କରନ୍ତେ । ସେମାନେ କୁହନ୍ତେ -

ଆମେ କଠିନ ଶ୍ରମ କରି ଉତ୍ପାଦନ କରୁଛୁ । କିନ୍ତୁ ଆମେ ପେଜ ଓ ଯାଉ ଖାଇ ବଞ୍ଚୁଛୁ । ଯେଉଁମାନେ କୌଣସି ଶ୍ରମ କରୁନାହାନ୍ତି ସେମାନେ ମନ ମୁତାବକ

Digitized by srujanika@gmail.com

ଭଲ ଖାଇ ରହିଛନ୍ତି । ଆମେ କାହିଁକି ଏତେ କଷ୍ଟରେ ରହିବୁ? ଯେତେବେଳେ ଗ୍ରାମର ଲୋକମାନେ ଶିକ୍ଷାର ଆଲୋକ ପାଇବେ ସେମାନେ ନିଜର ଦୟନୀୟ ସ୍ଥିତି ବିଷୟରେ ସଚେତନ ହୋଇପାରିବେ । ସେଥିପାଇଁ ସେମାନଙ୍କୁ ଶିକ୍ଷାରୁ ବଞ୍ଚିତ କରି ରଖାଯାଇଛି । ଗାଆଁର ଲୋକମାନଙ୍କୁ ଆମର ସାମାଜିକ ବ୍ୟବସ୍ଥାର ପଞ୍ଚମ ବର୍ଗର ଲୋକ ଭଳି ନ୍ୟୂନ କରାଯାଇ ନାହିଁ କି ?

ଏହି ପରିସ୍ଥିତିରେ ବିକାଶ ଯୋଜନାରେ ଗ୍ରାମର ସଂସ୍କାର ଏକ ଠକାମି ନୁହେଁ କି ? ଏବେ ବି ଯେଉଁମାନେ ନିଜକୁ ଉଚ୍ଚ ଓ ଶ୍ରେଷ୍ଠ ବୋଲି ଭାବୁଛନ୍ତି ସେମାନେ ଗାଆଁର ସଂସ୍କାର ବିଷୟ କଥା କହୁଛନ୍ତି । ସେମାନେ ସମାଜ ସଂସ୍କାରକ ମାନଙ୍କୁ ଗାଆଁକୁ ଯିବାକୁ ଉପଦେଶ ଦେଉଛନ୍ତି ।

ଗ୍ରାହକ ଯୋଗାଡର ଉଦ୍ଦେଶ୍ୟ ରଖି ରବିବାର ମାନଙ୍କରେ ଓକିଲମାନେ ଓ ବ୍ୟବସାୟୀମାନେ ଗାଆଁକୁ ଯାଇଥାନ୍ତି । ସେମାନେ ବେଳେବେଳେ ଝାଡୁଧରି ଗ୍ରାମ ସଫେଇ କରିଥାନ୍ତି ଓ ଏହି ସମୟରେ ଭଜନ ଗାଇଥାନ୍ତି । ଅଳିଆ, ଆବର୍ଜନା ଗାଣ୍ଡୁଆରେ ପୁରାଇ ସେମାନେ ଧର୍ମ ପ୍ରଚାର କରନ୍ତି । ଗାଆଁର ନିରକ୍ଷର ଲୋକମାନଙ୍କୁ ରାମ ଓ ହନୁମାନଙ୍କ ମହାନତା ବିଷୟ କହିଥାନ୍ତି । ଏହା ସହ ରାଜା ରାବଣର ଚରିତ୍ର ସଂହାର କରିଥାନ୍ତି ।

ଗାଆଁର ବିକାଶ ଏହାଦ୍ୱାରା ସମ୍ଭବ ବୋଲି ଆପଣମାନେ ଭାବୁଛନ୍ତି କି? ଏହି ପଛାରେ ଗାଆଁ ମାନଙ୍କର ଉନ୍ନତି ହେବ କି? ଗ୍ରାମର ବିକାଶ କ୍ଷେତ୍ରରେ ଏହି ସବୁ କାର୍ଯ୍ୟ ଯଥାର୍ଥ ମନେ ହେଉଛି କି? ଆପଣମାନେ ଭାବନ୍ତୁ ।

## କେଉଁଥି ପାଇଁ ଗାଆଁ ?

ଗ୍ରାମର ପରିଚାଳନା କାହିଁକି ଆବଶ୍ୟକ ? ଗାଆଁରେ ଲୋକମାନେ କ'ଣ କରନ୍ତି ? ସେମାନେ ସେଠାରେ ଗାଇ, ଛେଳି, ମଇଁଷି, ଘୁଷୁରୀ ମାନଙ୍କର ଯତ୍ନ କରନ୍ତି । ସେମାନେ କ୍ଷୀର, ଦହି, ଲହୁଣୀ ଇତ୍ୟାଦି କରି ସହରୀ ଲୋକମାନଙ୍କର ବ୍ୟବହାର ପାଇଁ ଯୋଗାନ୍ତି ।

Digitized by srujanika@gmail.com

ଜଣେ ଗାଆଁର ଲୋକ ରାତି ୨ରୁ ଉଠି ତାହାର ଗୃହପାଳିତ ପଶୁର ଯତ୍ନ ନେଇ ସେମାନଙ୍କୁ ଖାଇବାକୁ ଦେଇଥାଏ। ସେ ଗୁହାଳ ସଫାକରି ଭୋର ୪ଟାରେ କ୍ଷୀର ଦୁହେଁ। ସେ ତୋରାଣି ପି ସକାଳ ୫ରେ ୩, ୪, ୫ ମାଇଲ ଯାଇ ସକାଳ ୬ରେ ସହରରେ ଘର ଘର କ୍ଷୀର ଦିଏ। ବଡି ଭୋରୁ ଦୂଆର ଦୂଆର ବୁଲି ସେ କ୍ଷୀର, ଦହି ବିକିଥାଏ। ତାର ପିଲାମାନେ କ୍ଷୀର, ଘିଅ ଖାଇବାକୁ ପାଆନ୍ତି ନାହିଁ ବା ସେ ସବୁର ମୂଲ୍ୟ ବୁଝନ୍ତି ନାହିଁ। ଗାଆଁର ଲୋକଟି କ୍ଷୀର ଦହି ବିକ୍ରିକରି କିଛି ଟଙ୍କା ପାଇଥାଏ। ତେବେ ସେ ଯେଉଁ ଟଙ୍କା ପାଏ ସେଥିରୁ ମ୍ୟୁନିସପାଲିଟି ଲୋକଙ୍କୁ ପୁଲିସକୁ ବି ଲାଞ୍ଚ ଦେବାକୁ ପଡେ। ବେଳେ ବେଳେ କୋର୍ଟ, କଚେରୀ, ଓକିଲମାନଙ୍କୁ ବି କେସ ଇତ୍ୟାଦିରେ ପଡି ତାର ଉପାର୍ଜନର ଅର୍ଥ ଦେବାକୁ ହୋଇଥାଏ।

**ଖାଦ୍ୟ ଶସ୍ୟ:**

ଗାଆଁର ଚାଷୀମାନେ ଏକା ପ୍ରକାର ସ୍ଥିତିରେ ରହନ୍ତି। ସେମାନେ ବି ଦୟନୀୟ ସ୍ଥିତିରେ ଜୀବନ ବଞ୍ଚନ୍ତି। ଗାଆଁର ଚାଷୀଟି ଜମିରେ କଠିନ ପରିଶ୍ରମ କରେ ଓ ଯାହା ଉତ୍ପାଦନ କରେ ତାକୁ ନେଇ ସହରରେ ମୁନାଫାଖୋର ଡିଲରକୁ ବିକିଥାଏ। ସହରର ବ୍ୟବସାୟୀ ମୂଲ ଚାଲ କରି ଅଳ୍ପ ଦରରେ ତାର ଶସ୍ୟକୁ କିଣିଥାଏ। ସହରର ବ୍ୟବସାୟୀ ତାର ପ୍ରାପ୍ୟରୁ ମଧ୍ୟସ୍ଥି ଭାଗ, ମନ୍ଦିରକୁ ଦାନ, କୁଲିମାନଙ୍କର ମୂଲ, ଓଜନ ଇତ୍ୟାଦି ବାବଦକୁ ଟଙ୍କା କାଟି ରଖି ଅଳ୍ପ କିଛି ଅର୍ଥ ଦେଇଥାଏ। ଗାଆଁର ଚାଷୀଟି ସାମାନ୍ୟ କେତୋଟି ଟଙ୍କା ଓ ନୋଟ ଦେଖି ଏହା ତା ପରିଶ୍ରମର ଈଶ୍ୱର ଦତ୍ତ ଫଳ ବୋଲି ଭାବି ଫେରିଥାଏ। ସେହି ଟଙ୍କାରେ ସହରରେ ସେ ସିନେମା ଦେଖି, କଫି ପିଇ କିଛି ମଉଜ କରି ଗାଆଁକୁ ଫେରେ।ସହରର ବ୍ୟବସାୟୀ ଶସ୍ୟକୁ ମହଜୁଦ କରି ରଖେ ଓ ଦର ବୃଦ୍ଧି ହେଲେ ତାକୁ ବିକ୍ରି କରିଥାଏ। ବ୍ୟବସାୟୀ ମାନେ ମହଜୁଦ କରି ଓ କଳାବଜାର କରି ବେଶ୍ ଟଙ୍କା ରୋଜଗାର କରନ୍ତି। ସେମାନେ ଧନୀ ହୋଇ ବଡ ବଡ କୋଠାଘରେ ରହନ୍ତି। କିନ୍ତୁ ଗାଆଁର ଚାଷୀଟି? ସେ ଶଗଡରେ ବୋହି, ଗାଈ ଚରାଇ ଓ ଘର କାମରେ ଏବଂ ଚାଷ ବାସରେ ସବୁ ସମୟ ଦେଇ ଗରିବ ହୋଇ ବଞ୍ଚେ।

Digitized by srujanika@gmail.com

ସରକାରଙ୍କ ଦୃଷ୍ଟିରେ ଗ୍ରାମର ଲୋକମାନେ ମଧ୍ୟ ଦୁଷ୍ଟ । ମୋ ଭାବନାରେ ସମାଜରେ ଅସ୍ପୃଶ୍ୟମାନଙ୍କ ପରି ଗାଆଁର ଲୋକମାନେ ମଧ୍ୟ ଅବହେଳିତ । ଗାଆଁର ଲୋକମାନେ ଅନ୍ୟମାନଙ୍କୁ ସୁଖରେ ରଖିବାକୁ ରହିଛନ୍ତି । ସେମାନଙ୍କର ସ୍ଥିତି ଏପରି ଦୟନୀୟ ଥିବା ବେଳେ ଆପଣମାନେ ସେମାନଙ୍କ ପରିସ୍ଥିତି କିପରି ବଦଳିବ ବୋଲି ଭାବୁଛନ୍ତି । ସମାଜରେ ଶୂଦ୍ର ଓ ଅସ୍ପୃଶ୍ୟମାନେ ଯେଉଁ ସ୍ଥିତିରେ ରହିଛନ୍ତି ଗାଆଁର ଲୋକମାନେ ମଧ୍ୟ ସେହି ଅବସ୍ଥାରେ ରହିଛନ୍ତି ।

ତେବେ ସମାଧାନର ବାଟ କେଉଁଠି? ଆମେ ଏପରି ଏକ ସମାଜର ପରିକଳ୍ପନା କରୁଛେ ଯେଉଁଠି ବ୍ରାହ୍ମଣ ଓ ଅସ୍ପୃଶ୍ୟ ମଧ୍ୟରେ କୌଣସି ଭେଦଭାବ ରହିବ ନାହିଁ । ସେହିପରି ସହର, ନଗର, ଗାଆଁ ଓ କୁଡିଆର ଲୋକମାନଙ୍କ ମଧ୍ୟରେ ତାରତମ୍ୟ ମଧ୍ୟ ଲୋପ ପାଇବ । କେହି କାହାକୁ ଶୋଷଣ କରିବେ ନାହିଁ ବା କେହି ନ୍ୟୂନ ହୋଇ ରହିବେ ନାହିଁ । ବର୍ଣ୍ଣାଶ୍ରମ ବ୍ୟବସ୍ଥାର ଉଚ୍ଚ ନୀଚ ଭେଦଭାବ ଲୋପ ପାଇବା ପରି ସହରୀ ମଫସଲୀ ଭେଦଭାବ ମଧ୍ୟ ସମାଜରୁ ଲୋପ ପାଇବା ଦରକାର ।

ସମାଜର ପ୍ରାୟ ୯୦ ଭାଗ ଲୋକ ଦଳିତ ଓ ଅସ୍ପୃଶ୍ୟ ଶ୍ରେଣୀର ଅନ୍ତର୍ଭୁକ୍ତ ହେବାବେଳେ ମାତ୍ର ୧୦ ଭାଗ ଲୋକ ଉଚ୍ଚ ଶ୍ରେଣୀର ଅନ୍ତର୍ଭୁକ୍ତ ଅଟନ୍ତି । ସେହିପରି ୧୦୦ ଟି ସ୍ଥାନ ଭିତରୁ ୯୦ ଟି ହେଉଛି ଗାଆଁ । ରାଷ୍ଟ୍ରପତିଙ୍କ ବକ୍ତବ୍ୟ ଅନୁଯାୟୀ ଭାରତରେ ସାତ ଲକ୍ଷ ଗ୍ରାମ ରହିଛି । ତେବେ ସହର ଓ ନଗର ମାନଙ୍କର ସଂଖ୍ୟା ମିଶି ୭୫୦୦ ହେବ କି ନାହିଁ ସନ୍ଦେହ ।

ଅଧିକନ୍ତୁ ଜଣେ ଶଗଡିଆ, ପିଅନ କିମ୍ବା ଜଣେ ଭିକ୍ଷୁ ପୁରୋହିତ ବା ପୂଜକ ନିଜର ପିଲାମାନଙ୍କୁ ପାଠ ପଢାଇବାର ଅବକାଶ ପାଉଛନ୍ତି । କେତେକ ମାଟ୍ରିକ ବା ବି.ଏ.ପାସ କରି ପାରିଛନ୍ତି । ଏପରିକି କେହି କେହି ଡାକ୍ତର ଇଂଜିନିୟର ବା ପ୍ରଶାସନିକ ଅଧିକାରୀ ମଧ୍ୟ ହୋଇପାରିଛନ୍ତି । କିନ୍ତୁ ଗାଆଁର ଲୋକମାନଙ୍କ ପାଖରେ ଏହା ସମ୍ଭବ ହେଉନାହିଁ । ଯେଉଁ ଜମିଦାର ମାନେ ୧୦୦ ରୁ ୨୦୦ ଏକର ପର୍ଯ୍ୟନ୍ତ ଜମିର ମାଲିକ ହୋଇଛନ୍ତି ସେମାନେ ସେମାନଙ୍କ ରୋଜଗାରର

Digitized by srujanika@gmail.com

କେତେକ ଅଂଶ ବଦଳରେ ପିଲାମାନଙ୍କୁ ପାଠ ପଢାଇ ପାରୁଛନ୍ତି । କିନ୍ତୁ ଜଣେ ଗରିବ ଚାଷୀର ପୁଅ ପିଲାଟି ବୟସରୁ ଗାଇ ଚରାଉଛି । ସହରମାନଙ୍କରେ ସବୁ ପିଲା ଏପରିକି ସଫେଇ କରୁଥିବା ଝାଡୁଦାରର ପିଲାଙ୍କୁ ପାଠ ପଢାଇବାକୁ ସରକାର ପ୍ରୋତ୍ସାହନ ଦେଉଛନ୍ତି । ସରକାର ସହରରେ ଶିକ୍ଷାନୁଷ୍ଠାନ କରିଛନ୍ତି ଯେଉଁଠି ସବୁ ପିଲା ମାଗଣାରେ ପଢି ପାରିବେ । କିନ୍ତୁ ଗାଆଁର ଲୋକମାନଙ୍କ ପାଖରେ ପିଲାମାନଙ୍କୁ ପାଠ ପଢାଇବାକୁ ହେଲେ ସେମାନଙ୍କୁ ସହରକୁ ପଠାଇବାକୁ ହେବ । ଯେଉଁ ପିଲାମାନେ ଗାଆଁରୁ ପଢିବାକୁ ସହର ଆସୁଛନ୍ତି ଉପଯୁକ୍ତ ତତ୍ତ୍ୱାବଧାନ ଅଭାବରେ କେତେକ ବିପଥଗାମୀ ହେଉଛନ୍ତି । ଏପରିକି କେତେକ ଧୂମପାନ ବା ମଦ୍ୟପାନ କରୁଛନ୍ତି ।

ଏପରିକି ଛୋଟ ଛୋଟ କଥା ଯଥା କଣ୍ଟ୍ରୋଲ ସାମଗ୍ରୀ ଯୋଗାଣ ବିଷୟ ଦେଖନ୍ତୁ । କେତେକ ମନ୍ଦିର ଓ ଦେଉଳକୁ ନାଟୁକୋଟାଇ ଲୋକମାନେ ଭୋଗ ପାଇଁ ଆବଶ୍ୟକୀୟ ଶସ୍ୟ ଯୋଗାଇ ଥାନ୍ତି । ଫଳରେ ସହରମାନଙ୍କରେ କଣ୍ଟ୍ରୋଲ ସାମଗ୍ରୀ ସରକାର ଯୋଗାଇ ଦେଉଛନ୍ତି । କିନ୍ତୁ ଗାଆଁମାନଙ୍କରେ କୌଣସି କଣ୍ଟ୍ରୋଲ ସାମଗ୍ରୀ ମିଳେ ନାହିଁ । ଗାଆଁର ଲୋକଟିଏ ସହରକୁ ଯାଇ ଅଳ୍ପ ଟଙ୍କାର ଖାଦ୍ୟ ଶସ୍ୟ କିଣିଥାଏ । ଗାଆଁରେ ଫସଲ ଆମଦାନୀ ହୁଏ, କିନ୍ତୁ ସେ ସବୁ ସହରକୁ ଯାଇ ସେଠାରେ ମିଳେ । ଗାଆଁରେ ଲୋକମାନେ ଅଭାବ ଅସୁବିଧାରେ ପଡି ବେଳେବେଳେ ଅସାମାଜିକ କାର୍ଯ୍ୟରେ ବ୍ରତୀ ହୁଅନ୍ତି । ଗାଆଁର ଲୋକମାନେ ସେମାନଙ୍କର ଆବଶ୍ୟକୀୟ ପଦାର୍ଥ ପାଇବାକୁ ସହରକୁ ଯାଉଛନ୍ତି ।

ସହରର ଲୋକମାନଙ୍କ ମଧ୍ୟରୁ ଶତକଡା ୯୦ ଭାଗ ଲୋକ ଗାଆଁ ଲୋକଙ୍କ ପରି କଠିନ ପରିଶ୍ରମ କରନ୍ତି ନାହିଁ ତଥାପି ସେମାନେ ସୁଖରେ ରହନ୍ତି । ଗାଆଁରେ ରହୁଥିବା ଲୋକଙ୍କର ଜୀବନଶୈଳୀ ଫରକ । ସେମାନଙ୍କ ମଧ୍ୟରୁ ଶତକଡା ୯୦ ଭାଗ ଲୋକ କଠିନ ପରିଶ୍ରମ କରନ୍ତି । ଗାଆଁରେ କିଛି ବିବାଦ ବା ଶାନ୍ତିଭଙ୍ଗ ହେଲେ ନ୍ୟାୟ ନିଷ୍ପତ୍ତି ପାଇଁ ଗାଆଁର ଲୋକଙ୍କୁ ବାରମ୍ବାର ଟାଉନ, ସହରକୁ ଆସିବାକୁ ପଡିଥାଏ । ଗାଆଁରେ ଏହିପରି ପରିବେଶ ଯୋଗୁଁ ଗାଆଁର

Digitized by srujanika@gmail.com

କେତେକ ଦୁଷ୍ଟ ଓ ଧନୀ ଲୋକଙ୍କର ଶୋଷଣ ଓ ଆଦେଶକୁ ଅନ୍ୟମାନେ ମୁଣ୍ଡପାତି ସହି ନେବାକୁ ବାଧ୍ୟ ହୋଇଥାଆନ୍ତି ।

ଗାଆଁରେ ଚାକିରି କରୁଥିବା କର୍ମଚାରୀମାନଙ୍କ ବିଷୟରେ ବି ମୁଁ ଦୁଇ ପଦ କରିବାକୁ ଚାହୁଁଛି । ସେମାନେ ମାସକୁ ୧୫ ଟଙ୍କା ଦରମା ପାଆନ୍ତି । ତେବେ ସେମାନେ ପରିବାର ଚଳାଇବାକୁ, ନିଜର ସାମାଜିକ ସ୍ଥିତିରେ ବଞ୍ଚିବାକୁ, ନିଜର ଆବଶ୍ୟକତାକୁ ପୂରଣ କରିବାକୁ ମାସକୁ ପ୍ରାୟ ଶହେ ଟଙ୍କା ଆବଶ୍ୟକ କରନ୍ତି । ଏପରି ସ୍ଥିତିରେ ଗାଆଁରେ ନିଯୁକ୍ତ କର୍ମଚାରୀ ମାନଙ୍କ ପାଖରୁ କିପରି ନ୍ୟାୟ ଆଶା କରାଯିବ? ସେମାନେ ଗାଆଁରେ ନିଯୁକ୍ତ ହୋଇଥିଲେ ବି ସେମାନେ ସହରର ନୌକର । ଗାଆଁର ଲୋକମାନେ ସେମାନଙ୍କୁ ବଡ ଦୃଷ୍ଟିରେ ଦେଖନ୍ତି । ଗାଆଁର ଲୋକମାନେ ଚାଷ କରିବା ବା ଗାଈ ପାଳିବା କାର୍ଯ୍ୟକୁ ମୁଖ୍ୟତଃ ବୃତ୍ତି ଭାବରେ ନେଇଥାନ୍ତି ।

**କୃଷି :**

ଆଜକୁ ଦୁଇ ଶହ ବର୍ଷ ତଳେ ଆମର କୃଷି ଯେଉଁ ସ୍ତରରେ ଥିଲା ଆଜିବି ତାହା ସେହି ସ୍ତରରେ ରହିଛି । ତେବେ ଏହା ଭିତରେ କେତେକ ନୂଆ ଜମିରେ ପାଣି ମଡାଇବା ପାଇଁ କେନାଲ ଓ କିଛି ଜଳର ବ୍ୟବସ୍ଥା ହୋଇଛି । ଏହା ଛଡା ସେପରି କିଛି ଗୁଣାତ୍ମକ ଉନ୍ନତି ଚାଷରେ ହୋଇନାହିଁ । କୃଷି ବିଭାଗ କେତେକ କର୍ମଚାରୀଙ୍କୁ ଏ ଭିତରେ ନିଯୁକ୍ତି ଦେଇଛି । ତେବେ ଏହାଦ୍ୱାରା ଚାଷର ଅ ଅକ୍ଷର ଜାଣି ନଥିବା ବ୍ରାହ୍ମଣମାନେ କିଛି ଉପକୃତ ହୋଇଛନ୍ତି ।

ଶସ୍ୟ ଉତ୍ପାଦନ ପ୍ରଣାଳୀରେ ସେପରି କିଛି ଉନ୍ନତି ହୋଇ ନାହିଁ । ସେହିପରି ଚାଷକାର୍ଯ୍ୟରେ କିଛି ବିକାଶ ସାଧନ ହୋଇ ନାହିଁ । ଚାଷୀମାନେ ସେମାନଙ୍କର ପରିଶ୍ରମ ତୁଳନାରେ ସେପରି କିଛି ଲାଭ ପାଇନାହାନ୍ତି । ଚାଷୀମାନଙ୍କୁ ଚାଷ ବିଷୟରେ କୌଣସି ନୂତନ ଜ୍ଞାନ ଦିଆଯିବା ସମ୍ଭବ ହୋଇନାହିଁ । ସରକାର ଏ ବିଷୟ ପ୍ରତି କିଛି ଧ୍ୟାନ ଦେଇଛନ୍ତି କି ? ଗାଆଁର ଚାଷୀମାନଙ୍କୁ ପାଠୁଆ ମନେ କରି ସରକାର ସେମାନଙ୍କୁ କେତେକ ଲିଫ୍‌ଲେଟ ବା ସୂଚନା ପତ୍ର ବାଣ୍ଟୁଛନ୍ତି ।

Digitized by srujanika@gmail.com

ଆମର ଚାଷୀମାନଙ୍କ ମଧ୍ୟରୁ ଅନେକ ଯେ ନିରକ୍ଷର ସରକାର ଏହା ଅନୁଭବ କରି ନାହାନ୍ତି । ସେମାନେ ସହରଠାରୁ ବହୁ ଦୂରରେ ଗାଆଁମାନଙ୍କରେ ଅତ୍ୟନ୍ତ ଅସଭ୍ୟ ସ୍ତରରେ ରହିଛନ୍ତି । ଆଧୁନିକ ବିକାଶ ସଂପର୍କରେ ସେମାନେ ପୂର୍ଣ୍ଣ ଅଜ୍ଞ । ସେମାନେ ଅନ୍ଧକାର ଭିତରେ ରହିଥିବା ମନେହୁଏ ।

**ପନ୍ଥା କେଉଁଠି ?**

ଯଦି ଗ୍ରାମର ଲୋକମାନଙ୍କର ଅବସ୍ଥାରେ ଆମେ ପରିବର୍ତ୍ତନ କରିବା ସହ ଗାଆଁମାନଙ୍କର ବିକାଶ କରିବାକୁ ଚାହୁଁ ତେବେ ଆମକୁ ଅନେକ ଯୋଜନା କରିବାକୁ ହେବ । ଗ୍ରାମମାନଙ୍କର ସଂସ୍କାର କରିବାକୁ ହେଲେ ଅନେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିବାକୁ ହେବ ।

ଏବେ ଚାଷରେ ବହୁତ ଶାରୀରିକ ଶ୍ରମ ଦେବାକୁ ପଡୁଛି । ଏହାକୁ ପରିବର୍ତ୍ତନ କରିବାକୁ ହେଲେ ଏହାକୁ ଏକ ଶିଳ୍ପର ମାନ୍ୟତା ଦେଇ ଯନ୍ତ୍ରପାତି ବ୍ୟବହାର କରିବାକୁ ହେବ । ମାଟି ହାଣି ଜମିକୁ ପ୍ରସ୍ତୁତ କରିବାରେ, ବିହନ ବୁଣିବାରେ ଓ ଉତ୍ପାଦନ କରିବା କ୍ଷେତ୍ରରେ ବିଭିନ୍ନ ଯନ୍ତ୍ରଚାଳିତ ଉପକରଣମାନ ବ୍ୟବହାର କରାଯିବା ଆବଶ୍ୟକ । ସେହିପରି କୂପ ଖନନ ଓ ଜମିରେ ପାଣି ମଡାଇବା କାର୍ଯ୍ୟରେ ଯନ୍ତ୍ର ବ୍ୟବହାର କରାଯିବା ଦରକାର ।

ଯନ୍ତ୍ର ସାହାଯ୍ୟରେ ଏସବୁ କରିବା ପାଇଁ ଚାଷ ଜମିର ପୁନର୍ବିନ୍ୟାସ ଆବଶ୍ୟକ । ଚାଷ ଜମିକୁ ଏପରି ସୁବ୍ୟବସ୍ଥିତ କରାଯିବା ଆବଶ୍ୟକ ଯାହାକୁ ଯନ୍ତ୍ର ସାହାଯ୍ୟରେ ଅକ୍ଳେଶରେ ଚାଷ କରାଯାଇ ପାରିବ, ଯାହା ଅତ୍ୟଧିକ ଶାରୀରିକ ଶ୍ରମ ଆବଶ୍ୟକ କରିବ ନାହିଁ । ବୈଜ୍ଞାନିକ ପ୍ରଣାଳୀ ଓ ଯନ୍ତ୍ରପାତି ବ୍ୟବହାର କରାଯାଇ ଚାଷକୁ ସୁଗମ କରାଯାଇ ପାରିବ ।

ଚାଷ ଜମିକୁ ଏକାଠି ଚାଷ କରାଯିବ ଓ ଚାଷ କାର୍ଯ୍ୟକୁ ଚାଷୀମାନଙ୍କୁ ନେଇ ସମବାୟ ଜରିଆରେ ସମାହିତ କରାଯିବ । ପ୍ରତ୍ୟେକ ଅଞ୍ଚଳର ଚାଷ ଚାଷୀମାନଙ୍କ ସମବାୟ ଓ ସହଯୋଗ ଦ୍ୱାରା ନିୟନ୍ତ୍ରିତ କରାଯିବ । ଚାଷରୁ ଉତ୍ପାଦିତ ସାମଗ୍ରୀ ଚାଷୀମାନଙ୍କ ମଧ୍ୟରେ ସୁଷମ ବଣ୍ଟନ କରାଯିବ । ଗ୍ରାମମାନଙ୍କୁ ସଂଯୋଗ

Digitized by srujanika@gmail.com

କରାଯାଇ ସହର ଭଳି ସେଠାରେ ସ୍କୁଲ, ହସ୍ପିଟାଲ, ପାର୍କ, ସିନେମା ଇତ୍ୟାଦି ମନୋରଂଜନର ବ୍ୟବସ୍ଥା ରହିବ। ଏହା ସହିତ ପାଠାଗାର, ପଠନ କକ୍ଷ, ରେଡିଓ ସେଣ୍ଟରର ବ୍ୟବସ୍ଥା କରାଯିବ। ସେହିପରି ଉତ୍ତମ ଯୋଗାଯୋଗ ପାଇଁ ରୋଡ, ବସଷ୍ଟାଣ୍ଡ, ଥାନା ଇତ୍ୟାଦି ମଧ୍ୟ ସ୍ଥାପନ କରାଯିବ। ସମସ୍ତ ପଦାର୍ଥ ଲୋକମାନଙ୍କୁ ସୁବିଧାରେ ଯୋଗାଇବା ପାଇଁ ମାର୍କେଟ କଂପ୍ଲେକ୍ସ ମଧ୍ୟ ରହିବ। ଏତଦ୍ ବ୍ୟତୀତ ଗ୍ରାମମାନଙ୍କ ମଧ୍ୟରେ ସଂଯୋଗ ରକ୍ଷା କରାଯାଇ ଭ୍ରାମ୍ୟମାଣ ପ୍ରଦର୍ଶନୀ ଜରିଆରେ ଲୋକମାନଙ୍କୁ ସବୁ ଜିନିଷ ଯୋଗାଯାଇ ପାରିବ।

ଏଠି ସେଠି କେତେକ ଜାଗାରେ ଅଭିଯୋଗ କୋର୍ଟ ମାନ ରହିବ। କେଉଁ ସ୍ଥାନରେ କିଛି ବିଶୃଙ୍ଖଳା ବା ବିବାଦ ହେଲେ ତାହାକୁ ସମାଧାନ କରିବାକୁ ଉପଯୁକ୍ତ ଲୋକଙ୍କୁ ରଖାଯିବ। ଶାନ୍ତି ପୂର୍ଣ୍ଣ ସହାବସ୍ଥାନ ପାଇଁ ମୁଖ୍ୟ ମୁଖ୍ୟ ସ୍ଥାନମାନଙ୍କର ଉପଯୁକ୍ତ ବ୍ୟକ୍ତିମାନଙ୍କ ଦ୍ୱାରା ଜନଗଣଙ୍କୁ ପ୍ରଶିକ୍ଷିତ କରାଯିବ।

ସଂପ୍ରତି ମାଡ୍ରାସ ସହରର ଲୋକସଂଖ୍ୟା ୧୦ ଲକ୍ଷ, କୋଏମ୍ବାଟୁରର ଜନସଂଖ୍ୟା ୧ ଲକ୍ଷ, ଏରୋଡର ୫୦ ହଜାର। ପ୍ରତ୍ୟେକ ସହରକୁ କେନ୍ଦ୍ରକରି ଗାଆଁମାନଙ୍କୁ ତା ସହ ସଂଯୋଜିତ କରାଯିବ ଓ ୩ ହଜାରରୁ ୫ ହଜାର ଲୋକଙ୍କୁ ନେଇ ଏକ ଏକ ଅଞ୍ଚଳ ବିଭିନ୍ନ ନାମରେ ପ୍ରତିଷ୍ଠା କରାଯିବ। ଗାଆଁର ଲୋକମାନେ ଯେପରି କୌଣସିଥିରେ ଶୋଷିତ ହେବେ ନାହିଁ ତାହାକୁ ଧ୍ୟାନ ଦିଆଯିବ ଓ ସମସ୍ତ ଦଲାଲି ପ୍ରଥାକୁ ବନ୍ଦ କରାଯିବ। ସହର ମାନଙ୍କର ସେବାପାଇଁ ଯେ ଗାଆଁମାନେ ରହିଛନ୍ତି ଏହି ଧାରଣାକୁ ସଂପୂର୍ଣ୍ଣ ଦୂର କରାଯିବ।

ସେହିପରି ସହରକୁ କର୍ମସଂସ୍ଥାନ ଖୋଜିବାରେ ଗାଆଁର ଲୋକମାନେ ଯେପରି ଚାଲି ଯାଉଛନ୍ତି ତାହାକୁ ବନ୍ଦ କରିବାକୁ ହେଲେ ଗ୍ରାମର ଲୋକମାନଙ୍କ ମଧ୍ୟରେ ବିଭିନ୍ନ କ୍ଷୁଦ୍ର ଶିଳ୍ପର ପ୍ରସାର କରାଯିବ। ଅନେକ କ୍ଷୁଦ୍ର ଶିଳ୍ପ ଛୋଟ ଛୋଟ ଯନ୍ତ୍ରଦ୍ୱାରା ପରିଚାଳିତ ହୋଇଥାଏ। ଗ୍ରାମରେ ସବୁ ଲୋକ କିପରି କର୍ମସଂସ୍ଥାନ ପାଇବେ ସେଥିପାଇଁ ଗଭୀର ଧ୍ୟାନ ଦିଆଯିବ। ଗାଆଁର ଲୋକମାନଙ୍କୁ ଯେପରି

Digitized by srujanika@gmail.com

ନ୍ୟୂନ ଭାଷାରେ ଚିତ୍ରଣ କରାଯାଉଛି ତାହାକୁ ବିଲୋପ କରାଯିବ । ଅତ୍ୟଧିକ ଶ୍ରମ କରୁଥିବା ଲୋକମାନଙ୍କୁ ଯେପରି ହତାଦାର କରାଯାଉଛି ତାହାକୁ ଦୂର କରିବାକୁ ହେବ । ସମସ୍ତେ ଯେପରି ମର୍ଯ୍ୟାଦାର ସହ ବଞ୍ଚିବେ ତାହାକୁ ଲକ୍ଷ୍ୟ ଦିଆଯିବ ।

ମୁଁ ପୃଥିବୀର ବିଭିନ୍ନ ଦେଶକୁ ଯାଇ ଅନେକ ଗ୍ରାମାଞ୍ଚଳ ବୁଲିଛି । ମୁଁ ଗ୍ରାମର ସ୍ଥିତି ଯାହା ହେବା ଉଚିତ ବୋଲି ଭାବିଛି ସେହି ପରିବେଶ ସେଠାରେ ଦେଖିଛି ।

ଆପଣ ବିଦେଶରେ ପିଚୁ ରାସ୍ତା, ବିଜୁଳି ଆଲୁଅ, କଳପାଣି , ସ୍କୁଲ, ଖେଳ ପଡିଆ ଡାକ୍ତରଖାନା ନ ଥାଇ କୌଣସି ଗ୍ରାମ ପାଇବେ ନାହିଁ । ସେହିପରି ଲୋକମାନଙ୍କ ମଧ୍ୟରେ ଏତେ ବୈଷମ୍ୟ ମଧ୍ୟ ପାଇବେ ନାହିଁ । ରୁଷରେ ଥିବା ବେଳେ ମୁଁ ସେଠାରେ କେତେକ ଗ୍ରାମ ଦେଖିଥିଲି । ଏହି ବର୍ଷ ଗୁଡିକ ଭିତରେ ସେହି ଗ୍ରାମମାନେ ସହରରେ ରୂପାନ୍ତରିତ ହୋଇଥିବେ ବୋଲି ଭାବୁଛି । ଆମ ଦେଶରେ ଗାଆଁମାନେ ଯେଉଁ ସ୍ଥିତିରେ ରହିଛନ୍ତି ଏଭଳି ଅବସ୍ଥା ୟୁରୋପର କୌଣସି ସ୍ଥାନରେ ଦେଖିବାକୁ ପାଇବେ ନାହିଁ ।

ଆମ ଦେଶରେ ବ୍ରାହ୍ମଣମାନଙ୍କର ସେବା ପାଇଁ ଶୂଦ୍ର ଓ ଅତିଶୂଦ୍ରମାନଙ୍କୁ ସୃଷ୍ଟି କରାଯାଇଛି ବୋଲି ଯେପରି ଧାରଣା ସବୁ ରହିଛି ବା ଗାଆଁମାନେ ସହର ପାଇଁ ରହିଛି ବୋଲି କୁହାଯାଉଛି ପଶ୍ଚିମ ଦେଶମାନଙ୍କରେ ଏସବୁର କୌଣସି ଅର୍ଥ ହିଁ ନାହିଁ । ସବୁ ସ୍ତରରେ ବ୍ୟକ୍ତି ମର୍ଯ୍ୟାଦାର ଭାବନା ରହିଛି ଓ ସହର ଓ ଗାଆଁ ଭିତରେ ପ୍ରଭେଦ ଲୋପପାଇଛି ।

ଚାଷ କାର୍ଯ୍ୟ କିପରି କରାଯିବ ଆପଣମାନେ ଏହି ପ୍ରଶ୍ନ ପଚାରି ପାରନ୍ତି । ସେହିପରି ଆପଣମାନେ କହିବେ ଯେ ଯଦି ସମସ୍ତେ ପାଠ ପଡିବାର ଅବକାଶ ପାଇବେ ତେବେ ସଫାଇ କାର୍ଯ୍ୟ କିପରି କରାଯିବ ? ମୋ ମତରେ ଲୋକସଂଖ୍ୟାର ଏକ ଅନୁପାତ ଏଥିରେ ରହିବେ ଓ ସବୁ ଲୋକ ମଧ୍ୟ ଏହା କରିବେ । ଶ୍ରମର ମର୍ଯ୍ୟାଦା ରହିଲେ କୌଣସି କାର୍ଯ୍ୟକୁ ଛୋଟ ବଡ ଦୃଷ୍ଟିରେ କେହି ଦେଖିବେ ନାହିଁ ।

Digitized by srujanika@gmail.com

କେତେକ କାର୍ଯ୍ୟ ଛୋଟ ଓ ନ୍ୟୂନ ଏହି ଭାବନା ଆମର ମନରୁ ଦୂର ହେବା ଆବଶ୍ୟକ। ଯେଉଁ ବୃତ୍ତି କ୍ଷେତ୍ରରେ କଠିନ ପରିଶ୍ରମ ଆବଶ୍ୟକ ପଡୁଛି ସେ କ୍ଷେତ୍ରରେ ବିଭିନ୍ନ ଯନ୍ତ୍ରର ବ୍ୟବହାର କରାଯାଇ ତାହାକୁ ସୁଗମ କରାଯାଇ ପାରିବ। ଏହିପରି ବିଭିନ୍ନ ପଦକ୍ଷେପ ନେଇ ରାଷ୍ଟ୍ରର ନିର୍ମାଣ କରାଗଲେ ଦେଶ ପ୍ରଗତିଶୀଳ ହୋଇପାରିବ।

ଯଦି କୌଣସି ବ୍ୟକ୍ତି ଏକ ଜାହାଜ ନିର୍ମାଣ କରି କୋଟିପତି ହୁଅନ୍ତି, ଏହାକୁ ରାଷ୍ଟ୍ରର ବିକାଶ କୁହାଯାଇ ପାରିବ ନାହିଁ। କୌଣସି ବ୍ୟକ୍ତି ଏକ ଲୁହା କାରଖାନା ସ୍ଥାପନ କରି ଯଦି ବହୁ ପୁଂଜିର ମାଲିକ ହୁଅନ୍ତି ତାହାଦ୍ୱାରା ସମଗ୍ର ଦେଶର ବିକାଶ ହେବା ସମ୍ଭବ ନୁହେଁ।

ଯେଉଁ କାର୍ଯ୍ୟ ବା ବୃତ୍ତିକୁ ହୀନ ଦୃଷ୍ଟିରେ ଦେଖାଯାଉଛି ତାହାକୁ ଯଦି ବିଲୋପ କରିବା ସମ୍ଭବ ନୁହେଁ, ଯେଉଁ କର୍ମ କ୍ଷେତ୍ରରେ ଭୟଙ୍କର ଶାରୀରିକ ଶ୍ରମ ଦେବାକୁ ପଡୁଛି ତାହାକୁ ଯଦି ଲାଘବ କରିବା ସମ୍ଭବ ନୁହେଁ, ଯଦି ଗାଆଁର ଲୋକମାନଙ୍କର ଆର୍ଥିକ ସ୍ଥିତିରେ ପରିବର୍ତ୍ତନ ଅଣାଯାଇ ପାରିବ ନାହିଁ, ସେହିପରି ଯଦି ସହରତଳି ଅଞ୍ଚଳରେ ବା ମଫସଲରେ ରହୁଥିବା ଲୋକମାନଙ୍କର ଜୀବନ ଧାରଣ ମାନରେ କିଛି ଉନ୍ନତି କରାଯିବା ସମ୍ଭବ ନୁହେଁ, ତେବେ ଗ୍ରାମର ସଂସ୍କାରର କୌଣସି ଅର୍ଥ ରହିବ ନାହିଁ। ମୋର କିନ୍ତୁ ବିଶ୍ୱାସ ଆମେ ଉଦ୍ୟମ କଲେ ଓ ନୂଆ ନୂଆ ଯନ୍ତ୍ରପାତି ଓ ବିଜ୍ଞାନର ସାହାଯ୍ୟ ନେଲେ ଆମେ ସମାଜରେ ପରିବର୍ତ୍ତନ ସୃଷ୍ଟି କରିପାରିବା।

ତାହାହେଲେ ଏପରି ଏକ ପରିସ୍ଥିତି ଆସିବ ଯାହାଦ୍ୱାରା କେଉଁଠି ମଫସଲ ରହିବ ନାହିଁ।

ଏହି ପରିବର୍ତ୍ତନକୁ କମ୍ୟୁନିଜିମ ବା ସମାଜବାଦ କହିବା ଉଦ୍ଭଟ ଓ ମୂର୍ଖାମି ମନେହୁଏ। ଜଣେ ମୋର ପ୍ରସ୍ତାବ ଗୁଡିକ ବିଷୟରେ ଯଦି ଚିନ୍ତା ପ୍ରକଟ କରିବେ ତେବେ ମୋର ମତ ପଶ୍ଚାତରେ ଥିବା ସତ୍ୟ ଓ ନ୍ୟାୟର ଭାବନାକୁ ଦେଖିବେ।

Digitized by srujanika@gmail.com

ଜଣେ ଗ୍ରାମର ଲୋକଙ୍କର ଉପାର୍ଜନରେ ସାମାନ୍ୟ ବୃଦ୍ଧି କରିବା ବଡ଼ କଥା ନୁହେଁ । ଆମେ ଏତିକିରେ ଯଦି ସନ୍ତୁଷ୍ଟ ହେବା ଏହା ଏକ ପ୍ରତାରଣାର ଭାବନା ହେବ । ଶ୍ରମିକ ଓ ପୁଂଜିପତିମାନଙ୍କ ମଧ୍ୟରେ ପାର୍ଥକ୍ୟ ଏବେ ବଢ଼ି ବଢ଼ି ଚାଲିଛି । ମୁଦ୍ରାସ୍ଫୀତି ଯେତିକି ବଢ଼ୁଛି ସମାଜରେ ଶ୍ରମିକ ଓ ପୁଂଜିପତିମାନଙ୍କ ମଧ୍ୟରେ ପ୍ରଭେଦ ସେତିକି ବୃଦ୍ଧିପାଇ ଚାଲିଛି ।

ସେହିପରି ଗ୍ରାମର ଲୋକ ଓ ସହର ବାସିନ୍ଦାମାନଙ୍କ ମଧ୍ୟରେ ଆର୍ଥିକ ବୈଷମ୍ୟ ବୃଦ୍ଧି ପାଇବାରେ ଲାଗିଛି । ଏହି ସମସ୍ୟାର ସମାଧାନ ପାଇଁ ଆମେ ପନ୍ଥା ବାହାର କରିବା ଦରକାର ।

ଯେଉଁ ବୈଷମ୍ୟ ସମାଜରେ ବଢ଼ି ବଢ଼ି ଚାଲିଛି ତାହା ସାମାଜିକ ବ୍ୟବସ୍ଥାକୁ ଅଧିକ ଖରାପ କରିଚାଲିଛି । ସମାଜରେ ଅତି ତଳେ ପଡ଼ିଥିବା ଲୋକମାନେ ଯେପରି ଶୋଷିତ ହୋଇ ଆସିଛନ୍ତି ତାହାଦ୍ୱାରା ଲୋକସଂଖ୍ୟାର ଏକ ମୁଖ୍ୟ ଅଂଶ ଆଜି ନ୍ୟୂନ, ଅସମ୍ମାନିତ ଓ ପଦଦଳିତ ହୋଇ ରହିଛନ୍ତି ।

ସମାଜରୁ ଏହି ସବୁ ମନ୍ଦ ବ୍ୟବସ୍ଥା, ସାନ-ବଡ଼ ଭେଦଭାବ, ବିଷମତା ଓ ଅସମ୍ମାନଜନକ ସ୍ଥିତି ଲୋପ ପାଇବା ଦରକାର । ଏହା ସମ୍ଭବ ହେଲେ ଲୋକମାନେ ସୁଖରେ ଓ ଆନନ୍ଦରେ ଜୀବନ ନିର୍ବାହ କରିପାରିବେ ।



Digitized by srujanika@gmail.com

## ପରିଚ୍ଛେଦ - ୧୨
# ପରିବାର ନିୟନ୍ତ୍ରଣ

ଗୋଟିଏ ଦେଶର ଜନଗଣ ସୁସ୍ଥ, ସ୍ୱାସ୍ଥ୍ୟବାନ, କର୍ମଦକ୍ଷ, ସାହସୀ, ବୁଦ୍ଧିମାନ ଓ ଆତ୍ମମର୍ଯ୍ୟାଦାର ଅଧିକାରୀ ହେବାକୁ ପ୍ରୟାସ କରିବା ଆବଶ୍ୟକ। ଯେକୌଣସି ବାପା, ମା ନିଜର ପିଲାମାନଙ୍କର ଉପଯୁକ୍ତ ଯତ୍ନ ସହ ସେମାନଙ୍କୁ ସୁଷମ ଖାଦ୍ୟ ଓ ଆବଶ୍ୟକ ଶିକ୍ଷା ଦେବାକୁ ସମର୍ଥ ହେବା ଦରକାର। ସେମାନେ ଏହାଦ୍ୱାରା ମାନସିକ ଉଦବେଗରୁ ମୁକ୍ତ ରହିବା ସହ ମାନସିକ ଶାନ୍ତି ଲାଭ କରିପାରିବେ। ପିଲମାନଙ୍କୁ ଉପଯୁକ୍ତ ଭାବରେ ବିକଶିତ କରିବାକୁ ହେଲେ ପିତା-ମାତା ନିଜର ସାମର୍ଥ୍ୟ ଓ ସମ୍ବଳ ବିଷୟରେ ସଚେତନ ରହିବା ଉଚିତ। ସେମାନେ ନିଜର ପରିସ୍ଥିତିକୁ ହୃଦୟଙ୍ଗମ କରି ନିଜର ପିଲା ସଂଖ୍ୟାକୁ ସୀମିତ କରିବାକୁ ସଚେତନ ରହିପାରିବେ।

ଯଦି ବାପା-ମା ଏ ବିଷୟରେ ସଚେତନ ହେବେ ନାହିଁ କିମ୍ବା ନିଜର ପିରବାରକୁ ନିୟନ୍ତ୍ରଣ କରିବେ ନାହିଁ, ତେବେ ସେମାନେ ପରିବାରର ଭାର ବୋହିବେ ଓ ନାନା ଦୁଃଖ କଷ୍ଟର ସମ୍ମୁଖୀନ ହେବେ। ସେହି ପରିବାରର ପିଲାମାନେ ଉତ୍ତମ ସ୍ୱାସ୍ଥ୍ୟ ରକ୍ଷା କରିପାରିବେ ନାହିଁ ଓ ଅନେକ ସୁବିଧା ସୁଯୋଗରୁ ବଞ୍ଚିତ ହୋଇ ମାନସିକ ଚାପ ଭିତରେ ରହିବେ। ଏହାରି ପରିବେଶରେ ବଢିଥିବା ଲୋକମାନେ ଦେଶକୁ ଦୁର୍ବଳ ଓ ଗରିବ କରିବେ। ସେମାନଙ୍କ ଯୋଗୁଁ ସମାଜର ଅନ୍ୟମାନେ ମଧ୍ୟ ଅସୁବିଧା ଭୋଗ କରିବେ।

ଆମେ ଯେତେବେଳେ ଆମ ଦେଶର ପରିସ୍ଥିତି ବିଷୟରେ ଚିନ୍ତା କରେ ଆମେ ଦେଖେ ଯେ ଆମ ଦେଶର ଜନସଂଖ୍ୟା ଦିନକୁ ଦିନ ବଢି ଚାଲିଛି। ଅଧିକାଂଶ ଲୋକ କର୍ମସଂସ୍ଥାନ ପାଇପାରୁ ନାହାନ୍ତି। ଜୀବନ ଧାରଣ ପାଇଁ ଆବଶ୍ୟକ ସୁବିଧା ଓ ସାଧନ ସେମାନେ ଠିକ୍ ପାଇପାରୁ ନାହାନ୍ତି।

Digitized by srujanika@gmail.com

ତଥାପି ସେମାନେ ଅଧିକ ସନ୍ତାନ ଜନ୍ମ କରି ପରିବାର ବୃଦ୍ଧି କରି ଚାଲିଛନ୍ତି । ସେମାନେ ନିଜର ପିଲାମାନଙ୍କୁ ଉପଯୁକ୍ତ ଖାଦ୍ୟ, ପୋଷାକ ଓ ଶିକ୍ଷା ଦେଇପାରୁ ନାହାନ୍ତି । ଅନେକ ବାପା-ମା ବହୁ ଦାରିଦ୍ର୍ୟ ଓ ଦୁଃଖ ଭିତରେ ସମୟ କଟାଉଛନ୍ତି । ଅଧିକାଂଶ ପରିବାରର ଅବସ୍ଥା କିପରି ଦୟନୀୟ ତାହା ଆମେ ଦେଖୁଛେ ।

ବାପା-ମା ଅଧିକ ସନ୍ତାନ ଜନ୍ମ ଦେଉଥିବାରୁ ସେମାନଙ୍କର ଅନେକ ସ୍ୱାଚ୍ଛନ୍ଦ୍ୟ ସଙ୍କୁଚିତ ହୋଇଯାଉଛି । ସେହିପରି ଯଦି ଗୋଟିଏ ଦେଶର ଜନସଂଖ୍ୟା ଅନିୟନ୍ତ୍ରିତ ଭାବେ ବୃଦ୍ଧି ପାଏ, ତେବେ ସେହି ଦେଶରେ ଦୁର୍ଭିକ୍ଷ, ଦାରିଦ୍ର୍ୟ ଓ ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁର ଅଭାବ ଦେଖାଦେବ । ଲୋକମାନେ ବିଭିନ୍ନ ରୋଗରେ ଆକ୍ରାନ୍ତ ହେବେ ଓ ସମାଜରେ ଅସୁସ୍ଥତା ଓ ଦୁଃଖ ବଢି ଚାଲିବ । ଏହାଦ୍ୱାରା ରାଷ୍ଟ୍ରରେ ବିକାଶ ବାଧାପ୍ରାପ୍ତ ହେବ ଓ ଲୋକମାନେ ଆତ୍ମମର୍ଯ୍ୟାଦାରୁ ବଞ୍ଚିତ ହେବେ ।

ଅନେକ ତଥାକଥିତ ସଂସ୍କାରକ ଓ ଅର୍ଥନୀତିଜ୍ଞ ଅନେକ ବିକାଶ ମୂଳକ ଯୋଜନାର ପରିକଳ୍ପନା କରିଥିଲେ ମଧ୍ୟ ସେ ସବୁ ବିଫଳ ହେବାରେ ଲାଗିଛି । ଏତେ ଯୋଜନା ଓ ପରିକଳ୍ପନା ସତ୍ତ୍ୱେ ଫଳ ନୈରାଶ୍ୟଜନକ ହେବା ଦେଖାଯାଏ । ଏହି ବିଫଳତାର କାରଣ କଣ ହୋଇପାରେ? ପରିବାର ନିୟୋଜନ ପ୍ରତି ସ୍ପର୍ଶକାତର ହୀନତା ଜନିତ କାରଣଟିକୁ ସେମାନେ ବୁଝି ପାରନ୍ତି ନାହିଁ । ପିତାମାତା ଯଦି ସନ୍ତାନ ଜନ୍ମ କରିବା କ୍ଷେତ୍ରରେ ନିୟନ୍ତ୍ରଣ ନ ରଖିବେ, ତେବେ ବିକାଶର ସୁଫଳ ମିଳିପାରିବ ନାହିଁ । ଯେଉଁ ରାଷ୍ଟ୍ରରେ ପରିବାର ନିୟୋଜନ ନେଇ ଏହି ସଚେତନତା ନାହିଁ ସେହି ରାଷ୍ଟ୍ର ଅନ୍ୟ ରାଷ୍ଟ୍ରଦ୍ୱାରା ଘୃଣାର ପାତ୍ର ହେବ ।

ଗରିବ ରାଷ୍ଟ୍ରର ଲୋକମାନେ ଧନୀ ରାଷ୍ଟ୍ରର ଲୋକମାନଙ୍କୁ ଈର୍ଷା କରିଥାନ୍ତି । ସଂପ୍ରତି କେତେକ ବିଶେଷଜ୍ଞ ରାଷ୍ଟ୍ରର ଦାରିଦ୍ର୍ୟକୁ ଅଧ୍ୟୟନ କରିବା ଭିତରେ ଜନସଂଖ୍ୟା ବୃଦ୍ଧି ଦିଗଟିକୁ ଠିକ୍ ଭାବେ ଅନୁଭବ କରିଛନ୍ତି । ସେମାନଙ୍କ ମତରେ ପରିବାରରେ ପିଲା ଜନ୍ମ କରିବାରେ କେତେକ କଟକଣା ରହିବା ଦରକାର । ଜନସଂଖ୍ୟା ବୃଦ୍ଧିକୁ ନିୟନ୍ତ୍ରଣ କରିବା ପାଇଁ କେତେକ ବ୍ୟବସ୍ଥା ରହିବା ଉଚିତ । ବର୍ତ୍ତମାନ ଏହି ଭାବନାକୁ ସମାଜର ସଚେତନ ବ୍ୟକ୍ତି, ସମାଜ କର୍ମୀ,

Digitized by srujanika@gmail.com

ଡାକ୍ତର, ଅର୍ଥନୀତିଜ୍ଞମାନେ ସମର୍ଥନ କରୁଛନ୍ତି । ସେମାନେ ସମସ୍ୟାଟି ଉପରେ ଗଭୀର ଅନୁଶୀଳନ କରିବା ସହ କେତେକ ପ୍ରଗତିଶୀଳ ପଦକ୍ଷେପ ଗ୍ରହଣ କରିବାକୁ ପରାମର୍ଶ ଦେଇଛନ୍ତି ।

ସମାଜର ବିଜ୍ଞ ବ୍ୟକ୍ତିମାନେ ପରିବାର ନିୟନ୍ତ୍ରଣ ନେଇ ସଚେତନତା ପ୍ରକାଶ କରୁଛନ୍ତି । ପାଶ୍ଚାତ୍ୟ ଦେଶମାନଙ୍କରେ ଶିକ୍ଷିତ ଲୋକମାନେ ବିଭିନ୍ନ ପନ୍ଥା ଅବଲମ୍ବନ କରି ସନ୍ତାନ ଜନ୍ମକୁ ନିୟନ୍ତ୍ରଣ କରୁଛନ୍ତି । ସନ୍ତାନ ଜନ୍ମରେ ନିୟନ୍ତ୍ରଣ ରଖିବା ପାଇଁ କେତେକ ବୈଜ୍ଞାନିକ ପଦ୍ଧତି ବିଷୟରେ ବିଜ୍ଞାପନ ଦ୍ୱାରା ସେ ଦେଶମାନଙ୍କରେ ଲୋକମାନଙ୍କୁ ସଚେତନ କରାଯାଉଛି । ଆମ ଦେଶରେ ଏହା ଏପର୍ଯ୍ୟନ୍ତ ସମ୍ଭବ ହୋଇ ନାହିଁ । ବିଶେଷ କରି ଗରିବ ଲୋକମାନେ ପରିବାର ନିୟନ୍ତ୍ରଣର ଉପଯୋଗିତା ବିଷୟରେ ବୁଝିନାହାନ୍ତି ଓ ଏହା କରୁ ନାହାନ୍ତି । ପ୍ରକୃତରେ ଦେଖିଲେ ଏହି ଗରିବ ଲୋକମାନଙ୍କ ମଧ୍ୟରେ ଜନ୍ମ ନିୟନ୍ତ୍ରଣ ନେଇ ଶିକ୍ଷା ଓ ସଚେତନତା ପ୍ରଥମେ ଆବଶ୍ୟକ । ଆମର ଲୋକମାନେ ଜନ୍ମ ନିୟନ୍ତ୍ରଣ ବିଷୟରେ ଆଲୋଚନା କରିବାକୁ ଅଶୋଭନୀୟ ମନେ କରୁଛନ୍ତି । ଏପରି କେତେକ ଲୋକ ଅଛନ୍ତି ଯେଉଁମାନେ ଧର୍ମ ଓ ଈଶ୍ୱରଙ୍କ ଉପରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରି ଭାବନ୍ତି ଯେ ସନ୍ତାନ ଜନ୍ମ ଏକ ଈଶ୍ୱର ଦତ୍ତ ଘଟଣା । ସୁତରାଂ କୃତ୍ରିମ ଭାବେ ଜନ୍ମ ନିୟନ୍ତ୍ରଣ କରିବା ଏକ ଅଧର୍ମୀୟ ଓ ଈଶ୍ୱର ବିରୋଧୀ କାର୍ଯ୍ୟ । ଏପରିକି ଏହା କରିବାକୁ ସେମାନେ ପାପ ମନେ କରନ୍ତି । ସେହି ଲୋକମାନେ ସମାଜର ଅଜ୍ଞ ଲୋକମାନଙ୍କୁ ଅକ୍ଳେଶରେ ପ୍ରଭାବିତ କରିଥାନ୍ତି । ପରିବାର ନିୟୋଜନକୁ ବିରୋଧ କରିବା ଆମ ଦେଶରେ ନୂଆ ନୁହେଁ । ପାଶ୍ଚାତ୍ୟ ଦେଶମାନଙ୍କରେ ଏକଦା ଏହାକୁ ବିରୋଧ କରାଯାଉଥିଲା । ତେବେ ସେହି ଦେଶମାନଙ୍କରେ ଡାକ୍ତର ଓ ଶିକ୍ଷିତ ଲୋକମାନେ ଏହି ବିରୋଧକୁ ସମ୍ମୁଖୀନ ହୋଇ ଲୋକଙ୍କ ମାନସିକତାରେ ପରିବର୍ତ୍ତନ ଆଣି ପାରିଲେ । ଫଳରେ ପାଶ୍ଚାତ୍ୟ ଦେଶମାନଙ୍କରେ ଏହା ଏବେ ଅତି ସାଧାରଣ ଘଟଣା ହୋଇଯାଇଛି । ସେ ଦେଶମାନଙ୍କରେ ଏଥିପାଇଁ ବହୁ କ୍ଲିନିକ ଖୋଲାଯାଇଛି । ସେହି କ୍ଲିନିକ ଜରିଆରେ ଲୋକମାନଙ୍କୁ ସ୍ୱାସ୍ଥ୍ୟ ପରାମର୍ଶ ଦିଆଯାଇ ପରିବାର ନିୟନ୍ତ୍ରଣକୁ ପ୍ରସାର କରାଯାଇଛି । କେଉଁ ପଦ୍ଧତି ଦ୍ୱାରା ସନ୍ତାନ ଜନ୍ମକୁ ନିୟନ୍ତ୍ରଣ କରାଯାଇ ପାରିବ ସେ ବିଷୟରେ ଲୋକମାନେ ଅକ୍ଳେଶରେ ପରାମର୍ଶ ପାଇ ପାରୁଛନ୍ତି ।

Digitized by srujanika@gmail.com

ସମାଜର ପ୍ରବୀଣ ବ୍ୟକ୍ତିମାନେ ଯେହେତୁ ପରିବାର ନିୟୋଜନକୁ ସେଠାରେ ଗୁରୁତ୍ୱ ଦେଉଛନ୍ତି, ତେଣୁ ଜନ୍ମ ନିୟନ୍ତ୍ରଣକୁ କେହି ଖରାପ ବା ପାପ ବୋଲି ମନେ କରୁନାହାନ୍ତି । ଆମର ଲୋକମାନଙ୍କୁ ପରିବାର ନିୟୋଜନ ବିଷୟରେ ଶିକ୍ଷିତ ଓ ସଚେତନ କରାଇବାର ଆବଶ୍ୟକତା ରହିଛି । ଏହା ଶରୀର ପ୍ରତି ଆଦୌ କ୍ଷତିକାରକ ନୁହେଁ । ସେହିପରି ଏହାଦ୍ୱାରା କେହି କଷ୍ଟ ପାଇବେ ନାହିଁ କିମ୍ବା ଏହା କାହାକୁ ଅସୁଖୀ କରିବ ନାହିଁ ।

ଜନ୍ମ ନିୟନ୍ତ୍ରଣ ପଦ୍ଧତିକୁ ସମାଜ ଓ ରାଷ୍ଟ୍ରର ହିତ ପାଇଁ ବୈଜ୍ଞାନିକମାନେ ଉଦ୍ଭାବନ କରିଛନ୍ତି । ଏହାର ମଧ୍ୟ ଅନ୍ୟାନ୍ୟ ସୁଫଳ ରହିଛି ।

ଯେଉଁ ମହିଳାମାନଙ୍କର ଉତ୍ତମ ସ୍ୱାସ୍ଥ୍ୟ ନାହିଁ ବା ଶାରୀରିକ ଦୁର୍ବଳତା ରହିଛି ସେମାନେ ବିବାହ ପରେ ଗର୍ଭଧାରଣ କରିବା କ୍ଷେତ୍ରରେ ଅସୁବିଧା ରହିଛି । ଯେଉଁ ମହିଳାମାନେ ଯକ୍ଷ୍ମା ବା ରକ୍ତଚାପ ପରି ରୋଗରେ ଆକ୍ରାନ୍ତ କିମ୍ବା ଯେଉଁମାନଙ୍କର ଗର୍ଭାଶୟରେ ସମସ୍ୟା ରହିଛି ସେମାନେ ଗର୍ଭବତୀ ହେଲେ ସନ୍ତାନ ପ୍ରସବ ପାଇଁ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ସନ୍ତାନ ପ୍ରସବ ପରେ ସେମାନେ ବହୁତ ଦୁର୍ବଳ ହୋଇପଡନ୍ତି । ଜନ୍ମିତ ଶିଶୁର ବିକାଶ ପାଇଁ ମା-କ୍ଷୀର ଅତ୍ୟନ୍ତ ଆବଶ୍ୟକ । ତେବେ ମା-କ୍ଷୀର ଖାଇ ଶିଶୁଟିର ବୃଦ୍ଧି ହେବା ପୂର୍ବରୁ ପୁନଶ୍ଚ ଯଦି ମା ଗର୍ଭବତୀ ହୁଅନ୍ତି ପ୍ରଥମ ସନ୍ତାନ ବି ମା-କ୍ଷୀର ଅଭାବରେ ଦୁର୍ବଳ ହୋଇଥାଏ । ଜଣେ ମହିଳା ଦ୍ୱିତୀୟ ବାର ଗର୍ଭବତୀ ହେବା ପୂର୍ବରୁ ତାଙ୍କର ଶାରୀରିକ ସାମର୍ଥ୍ୟ ଓ ସୁସ୍ଥତା ରହିବା ଦରକାର । ଯଦି ସେ ନିଜର ସ୍ୱାସ୍ଥ୍ୟ ଓ ନିଜର ପ୍ରଥମ ସନ୍ତାନଟିର ସ୍ୱାସ୍ଥ୍ୟ ବିଷୟରେ ସଚେତନ ହୁଅନ୍ତି ନାହିଁ ତେବେ ଦ୍ୱିତୀୟ ସନ୍ତାନ ଧାରଣ କରିବାଦ୍ୱାରା ସେ ନାନା ଭାବରେ ଦୁର୍ବଳ ହୋଇଥାନ୍ତି ।

ସେହିପରି ଜଣେ ମହିଳା ୨୨ ବର୍ଷ ଓ ପୁରୁଷ ୨୫ ବର୍ଷ ପୂର୍ବରୁ ଯଦି ବିବାହ କରି ସନ୍ତାନ ଜନ୍ମ କରନ୍ତି, ତେବେ ସନ୍ତାନଟି ଦୁର୍ବଳ ହୋଇଥାଏ । ଯଦି ପରିବାରଟି ଗରିବ, ତେବେ ଜନ୍ମିତ ଶିଶୁଟି ପରିବାର ପାଇଁ ବୋଝ ସଦୃଶ ହୋଇଥାଏ ଓ ପରିବାରର ଦାରିଦ୍ର୍ୟ ଓ ଅସୁବିଧା ଏହାଦ୍ୱାରା ବଢିଥାଏ । ଏକ ନବଦଂପତି ବିବାହ ପରେ ପରେ ଯଦି ସ୍ତ୍ରୀ ଲୋକଟି ଗର୍ଭବତୀ ହୁଏ ତେବେ ସେହି ଦଂପତି ଜୀବନରେ କେତେକ ଆନନ୍ଦ ହରାଇଥାନ୍ତି ।

Digitized by srujanika@gmail.com

ସୁସ୍ଥ ଜୀବନ ଧାରଣ ପାଇଁ ଗର୍ଭଧାରଣ ବେଳେ ବେଳେ ମହିଳାମାନଙ୍କ ପାଇଁ ଦୁର୍ଭାଗ୍ୟଜନକ ହୋଇଥାଏ । ମହିଳାମାନଙ୍କର ଗର୍ଭଧାରଣ ପାଇଁ ପ୍ରକୃତରେ ପୁରୁଷମାନେ ହିଁ ଦାୟୀ । ତେବେ ପ୍ରକୃତିରେ ମହିଳା ଗର୍ଭଧାରଣ କରୁଥିବାରୁ ଅଧିକ ଦାୟିତ୍ୱ ବହନ କରିଥାଏ । ଗର୍ଭବତୀ ହେବାଠାରୁ ସନ୍ତାନ ଜନ୍ମ କରିବା ପର୍ଯ୍ୟନ୍ତ ଓ ତାପରେ ମଧ୍ୟ ଜଣେ ଅନେକ ଦାୟିତ୍ୱ ଓ ଭାର ବହନ କରିବାକୁ ହୋଇଥାଏ । ଜଣେ ମହିଳା ପ୍ରସବ ଯନ୍ତ୍ରଣା ସହ ପ୍ରସବକାଳୀନ ବିପଦର ସମ୍ମୁଖୀନ ହୋଇଥାଏ । ସନ୍ତାନ ଜନ୍ମ ପରେ ମହିଳା ନିଜର ରକ୍ତକୁ କ୍ଷୀର ଭାବରେ ସନ୍ତାନକୁ ଦେଇ ବଞ୍ଚାଇଥାଏ ।

ଶିଶୁକୁ ନିରୋଗ ରଖିବା ଓ ସ୍ତନ୍ୟପାନ କରାଇବା ମା'ର ଦାୟିତ୍ୱ । ସେଥିପାଇଁ ମା ଶିଶୁକୁ କୋଳରେ ଧରେ, ତାକୁ ସୁରକ୍ଷା ଦେବାକୁ ପ୍ରଯତ୍ନ କରେ ଓ ସ୍ନେହ ଆଦର ଭିତରେ ବଡ କରାଏ । ସେଥିପାଇଁ କେତେକ ମହିଳା ଅଧିକ ସନ୍ତାନ ଜନ୍ମ କରିବା ଦ୍ୱାରା ଜୀବନ ପ୍ରତି ବିତସ୍ପୃହ ହୋଇ ପଡନ୍ତି ।

ସାଧାରଣତଃ ଜଣେ ମହିଳା ସନ୍ତାନଟିଏ ଜନ୍ମ ଦେବା ପରେ ନିଜର ସ୍ୱାମୀ ଓ ପରିବାର ପାଖରେ ଦାସୀ ପାଲଟିଯାଏ । ନବଜାତ ଶିଶୁଟିର ଯତ୍ନ ପାଇଁ ସେ ହିଁ ଦାୟୀ ରହେ ଓ ଏଥିପାଇଁ ତାହାର ଇଚ୍ଛା ଓ ସୁଖକୁ ବଳି ଦେଇଥାଏ । ଜଣେ ପୁରୁଷ ବହୁ ପତ୍ନୀ ବିବାହ କରିପାରେ । ଜଣେ ନାରୀ ଗର୍ଭଧାରଣ କରୁଥିବାରୁ ତାହା କରିପାରେ ନାହିଁ । ଜଣେ ନାରୀକୁ ନିଜର ସ୍ୱାଧୀନତା, ଆତ୍ମମର୍ଯ୍ୟାଦା ଓ ବୁଦ୍ଧିକୁ ବଳି ଦେବାକୁ ପଡିଥାଏ । ବେଳେ ବେଳେ ନାରୀମାନଙ୍କୁ ସନ୍ତାନ ପ୍ରସବକାରୀ ଯନ୍ତ୍ରଭାବେ ସମାଜରେ ଗ୍ରହଣ କରାଯାଏ ।

ସୁତରାଂ ଜନ୍ମ ନିୟନ୍ତ୍ରଣ ବିଷୟରେ ସମସ୍ତ ମହିଳା ମାନଙ୍କୁ ସଚେତନ କରାଇବା ଆବଶ୍ୟକ ବୋଲି ମୁଁ ମନେକରେ ।

(ଏହା ୧୯୩୧ ମସିହାରେ ପେରିୟାର ଲେଖିଥିଲେ)

* * * * * *

[ପେରିୟାରଙ୍କ ଲେଖାର କେତେ ଦଶନ୍ଧି ପରେ ପରିବାର ନିୟୋଜନର ଗୁରୁତ୍ୱକୁ ଅନୁଭବ କରାଗଲା । ୧୯୩୧ ମସିହାରୁ ଯଦି ପରିବାର ନିୟୋଜନ

Digitized by srujanika@gmail.com

ଉପରେ ପ୍ରାଧାନ୍ୟ ଦିଆଯାଇଥାନ୍ତା, ତେବେ ଜନସଂଖ୍ୟା ବୃଦ୍ଧିକୁ ରୋକିବା ଏତେ ଜଟିଳ ସମସ୍ୟା ହୋଇନଥାନ୍ତା । ତାହାଦ୍ୱାରା ସମାଜର ପ୍ରଗତି ଓ ବିକାଶ ତ୍ୱରାନ୍ୱିତ ହୋଇ ପାରିଥାନ୍ତା ।

୧୮.୮.୧୯୭୨ ଦିନ ପରିବାର ନିୟୋଜନର ନିର୍ଦ୍ଦେଶକ ଡ.ଭେନୁଗୋପାଲ ଅନ୍ୟ କେତେକ ପଦସ୍ଥ ଅଫିସରଙ୍କ ସହ ଭେଲୋରଠାରେ ପେରିୟାରଙ୍କୁ ସାକ୍ଷାତ କରି ପରିବାର ନିୟୋଜନ ବିଷୟରେ ଆଲୋଚନା କରିଥିଲେ । ସେହି ଆଲୋଚନାର କେତେକ ବିଷୟ ଏଠାରେ ଉଲ୍ଲେଖ କରାଗଲା ।

**ଡାକ୍ତରଃ-** ଆମେ ସରକାରଙ୍କ ପରିବାର ନିୟୋଜନ ବିଭାଗ ତରଫରୁ ଆସିଛୁ । ଆପଣ ଲୋକମାନଙ୍କୁ ହେତୁବାଦୀ ବିଚାର ବିଷୟରେ ଅବଗତ କରାଉଛନ୍ତି । ଆପଣଙ୍କ ବିଚାରଦ୍ୱାରା ତାମିଲନାଡୁର ଜନ ସାଧାରଣ ବହୁ ଭାବରେ ଉପକୃତ ହେଉଛନ୍ତି । ଆପଣ ଜାଣନ୍ତି ପରିବାର ନିୟୋଜନ ବିଷୟରେ ଏବେ ଗମ୍ଭୀରତାର ସହ ପ୍ରସାର କରାଯାଉଛି । ଆପଣ ଏହାକୁ ସମର୍ଥନ କରିବା ସହ ଆମକୁ ଉତ୍ସାହିତ କରିବା ଆମେ ଆଶାକରୁଛୁ ।

ପେରିୟର- ମୁଁ ଏହି କାର୍ଯ୍ୟକ୍ରମ ୧୯୨୯ ରେ ଆରମ୍ଭ କଲି । ସେତେବେଳେ କେତେକ ଲୋକ ଏହାକୁ ମଧ୍ୟ ସମର୍ଥନ କରୁଥିଲେ । ଏବେ ଲୋକମାନେ ପରିବାରକୁ ଛୋଟ କରିବାକୁ ଭାବୁଛନ୍ତି । ତେବେ ଆମକୁ ବାସ୍ତବବାଦୀ ହେବାକୁ ହେଲେ କେବଳ ପ୍ରଚାର ଭିତରେ ଆମେ ସୀମିତ ରହିବା ଯଥେଷ୍ଟ ନୁହେଁ । ସରକାର କେତେକ ଯୋଜନାକୁ ବାଧ୍ୟତାମୂଳକ କରିବା ଆବଶ୍ୟକ । ଝିଅ ମାନଙ୍କର ବିବାହ ବୟସକୁ ୨୨ ବର୍ଷକୁ ବୃଦ୍ଧି କରିବା ଦରକାର । ଏବେ ତ ଝିଅମାନେ ୨୨ ବର୍ଷ ବେଳକୁ ତିନି ଚାରୋଟି ସନ୍ତାନର ମା ହେବା ଦେଖାଯାଉଛି ।

ସେହିପରି ବିଭିନ୍ନ କର୍ମସଂସ୍ଥାନ କ୍ଷେତ୍ରରେ ମହିଳାମାନଙ୍କୁ ଆବଶ୍ୟକୀୟ ଅନୁପାତରେ ନିଯୁକ୍ତି ମିଳିବା ଆବଶ୍ୟକ । ମହିଳାମାନଙ୍କୁ ସବୁ କ୍ଷେତ୍ରରେ କର୍ମସଂସ୍ଥାନ ମିଳିବା ଦରକାର । ସେମାନେ ସାଧାରଣ କର୍ମସଂସ୍ଥାନରେ ନିଯୁକ୍ତ ହେଲେ ସମାଜରେ ଗୋଟିଏ ବଡ ପରିବର୍ତ୍ତନ ଆସିପାରିବ । ଏବେ ସେମାନେ କେବଳ ବିବାହ କରି ପାରିବାରିକ ଜୀବନର ସୁଖ ଭିତରେ ଛନ୍ଦି ହୋଇ ରହୁଛନ୍ତି ।

Digitized by srujanika@gmail.com

କେବଳ ସ୍ୱାମୀ ମାନଙ୍କ ସହ ସଂପର୍କ ଭିତରେ ସନ୍ତାନ ଜନ୍ମ କରିବା ସେମାନଙ୍କର ମୁଖ୍ୟ ଲକ୍ଷ୍ୟ ହୋଇରହିଛି । ବହୁ ସନ୍ତାନ ଜନ୍ମ କରିଥିବା ନାରୀ-ପୁରୁଷ ସରକାରୀ କର୍ମ ସଂସ୍ଥାନ କରିପାରିବେ ନାହିଁ ବୋଲି ସରକାର ଘୋଷଣା କରିବା ଆବଶ୍ୟକ । ମୁଁ ଏହି କଥା ବାରମ୍ବାର କହି ଆସୁଛି । ଯେଉଁମାନେ ସରକାରୀ ଚାକିରି କ୍ଷେତ୍ରରେ ରହିଛନ୍ତି ସେମାନେ ଯଦି ଦୁଇଟି ସନ୍ତାନ ଜନ୍ମ ପରେ ଜନ୍ମ ନିୟନ୍ତ୍ରଣ ନ କରନ୍ତି ତେବେ ସେମାନଙ୍କୁ କୌଣସି ପଦୋନ୍ନତି ଦିଆଯିବ ନାହିଁ । ଏଥିରେ କିଛି ଅସୁବିଧା ନାହିଁ । ଆମେମାନେ ବିଚାର ବୁଦ୍ଧି ସଂପନ୍ନ ବ୍ୟକ୍ତି । ଆପଣମାନେ ମୋର ଏହି ମତ ପାଇଁ ମୋତେ କ୍ଷମା କରନ୍ତୁ । ଯଦି ଆପଣଙ୍କର ମାସିକ ଦରମା ୨୫୦ ଟଙ୍କା ଓ ଆପଣ ପାଞ୍ଚ ଛଅଟି ସନ୍ତାନର ପିତା, ତେବେ ଆପଣ କିପରି ନିଷ୍ଠାପର ଭାବରେ ସରକାରୀ ଯୋଜନାକୁ କାର୍ଯ୍ୟକାରୀ କରିବେ? ଅନେକ ସନ୍ତାନ ଥିବା ପରିବାରରେ ଜଣେ ପିଲାଙ୍କ ପାଇଁ ବ୍ୟସ୍ତ ରହିବେ କି ନାହିଁ? ସେମାନେ ଅସୁସ୍ଥ ହେଲେ ଆପଣ ସେମାନଙ୍କର ଚିକିତ୍ସା କରିବେ ନା ସେମାନେ ମରିଯିବା ଚାହିଁବେ? ସେହିପରି ସେମାନଙ୍କୁ ପାଠ ପଢାଇବେ କି ନାହିଁ? ସଚେତନ ବାପା ମା ଭାବେ ଆପଣ ପିଲାଙ୍କର ଏଥିପାଇଁ ନାନା ପ୍ରତିକୂଳ ପରିବେଶର ସମ୍ମୁଖୀନ ହୋଇଥାନ୍ତି । ସମାଜର ଦୁଃସ୍ଥିତି ବିଚାରଶୂନ୍ୟ ବାପା, ମା'ଙ୍କ କାର୍ଯ୍ୟରୁ ଯେ ହେଉଛି ଏହା ନିଃସନ୍ଦେହ ।

ସମସ୍ତେ ତ ମାସକୁ ୮୦୦ କି ୧୦୦୦ ଟଙ୍କାର ମୋଟା ଦରମା ପାଉ ନାହାନ୍ତି । ହାରାହାରି ଦେଖିଲେ ଲୋକମାନେ ମାସକୁ ୧୫୦ ଟଙ୍କାରୁ ୨୦୦-୨୫୦ ଟଙ୍କା ଭିତରେ ଦରମା ପାଉଛନ୍ତି । ଯଦି ଜଣେ କର୍ମଚାରୀଙ୍କର ୪, ୫, କିମ୍ବା ୬ ଟି ପିଲାହେବେ ସେ ନିଶ୍ଚୟ ଦୁର୍ନୀତିର ଆଶ୍ରୟ ନେଇ ଅଧିକ ଅର୍ଥ ଉପାର୍ଜନ କରିବାକୁ ଚାହିଁବେ । ସୁତରାଂ ସରକାର ଲୋକମାନଙ୍କୁ କ୍ଷୁଦ୍ର ପରିବାରରେ ସୀମିତ ରହିବାକୁ ପରିବେଶ ସୃଷ୍ଟି କରିବା ଆବଶ୍ୟକ । ଯଦି ପରିବାର ନିଯୋଜନକୁ ଗମ୍ଭୀରତାର ସହ ବିଚାର କରାଯାଇ ଛୋଟ ପରିବାର ପାଇଁ ବିଭିନ୍ନ ପଦକ୍ଷେପ ନିଆଯାଏ, ତେବେ ଏକ ସୁସ୍ଥ ସମାଜର ପରିବେଶ ଆସିପାରିବ ।

ବହୁ ସନ୍ତାନ ଜନ୍ମ କରିଥିବା ଲୋକମାନେ ସବୁ କଥାକୁ ଭାଗ୍ୟ, ଈଶ୍ୱରୀୟ ଦାନ ବୋଲି ଭାବନ୍ତି । ତେବେ ଯେଉଁମାନେ ବିବାହ କରିନାହାନ୍ତି ସେମାନେ ଏହି

Digitized by srujanika@gmail.com

ଚିନ୍ତାରୁ ମୁକ୍ତ ହୋଇପାରିବେ । ସରକାର କେତେକ ପଦକ୍ଷେପ ନେଲେ ଲୋକମାନେ ସଚେତନ ହୋଇ ପାରିବେ । ପ୍ରଥମରେ କେତେକ ସରକାରୀ କର୍ମସଂସ୍ଥାନ ମହିଳାମାନଙ୍କ ପାଇଁ ସଂରକ୍ଷିତ ରହିବା ଆବଶ୍ୟତ । ବିଶେଷ କରି ମାଧ୍ୟମିକ ଶିକ୍ଷା ପର୍ଯ୍ୟନ୍ତ ଶିକ୍ଷାନୁଷ୍ଠାନ ମାନଙ୍କରେ ଶିକ୍ଷକ ପଦ ଗୁଡିକ ମହିଳାମାନଙ୍କ ପାଇଁ ସଂରକ୍ଷଣ କରାଯାଇ ପାରିବ । ସରକାର ଏହାକୁ ନିୟମ କରି କାର୍ଯ୍ୟକାରୀ କଲେ ପରିବାର ନିୟନ୍ତ୍ରଣର ପ୍ରସାର ହୋଇ ପାରିବ । ଛୋଟ ପରିବାର ବିଷୟରେ ମହିଳାମାନଙ୍କୁ ସଚେତନ କରାଯାଇ ପାରିଲେ "ପରିବାର" ଭାବନାରେ ସଂସ୍କାର ଆସିପାରିବ । ଜଣେ ମହିଳା ଯେ ତାଙ୍କ ସ୍ୱାମୀଙ୍କର ଦାସୀ ଓ ସ୍ୱାମୀଙ୍କ ପ୍ରତି ସବୁ କଥାରେ ଅନୁରକ୍ତ ରହିବା ତାଙ୍କର କର୍ତ୍ତବ୍ୟ ଏହି ଧାରଣାର ପରିବର୍ତ୍ତନ ଆବଶ୍ୟକ । ସ୍ୱାମୀ ସ୍ତ୍ରୀ ପରସ୍ପରର ବନ୍ଧୁ ଭାବେ ଆନ୍ତରିକତାର ସହ ଜୀବନ ନିର୍ବାହ କରିପାରିବେ । ନାରୀମାନଙ୍କର ଦାସତ୍ୱ ଭାବନାର ବିଲୋପ ଆବଶ୍ୟକ ।

ପୁନଶ୍ଚ ସଂପତ୍ତିର ଉତ୍ତରାଧିକାରୀ ହେବାକୁ ଲୋକମାନେ ସନ୍ତାନ ଚାହିଁଥାନ୍ତି । ସଂପତ୍ତିର ଅଧିକାର ଲୋକମାନଙ୍କୁ ଦିଆଯାଇଛି । ସଂପତ୍ତିର କେହି ଉତ୍ତରାଧିକାରୀ ରହିବେ । ସଂପତ୍ତି କିପରି ପିଲାମାନେ ସୁରକ୍ଷିତ କରି ରଖିବେ ସେଥିପାଇଁ କେତେକ ଲୋକ ବହୁ ଚିନ୍ତା ପ୍ରକଟ କରିଥାନ୍ତି । ସେମାନଙ୍କର ସନ୍ତାନ ନ ଥିଲେ ନିଜ ସଂପତ୍ତିକୁ ଉପଭୋଗ କରିବାକୁ ସେମାନେ ପୋଷ୍ୟ ପୁତ୍ର ଗ୍ରହଣ କରିଥାନ୍ତି । ସୁତରାଂ ସଂପତ୍ତିର ମାଲିକାନାକୁ କିପରି ନିୟନ୍ତ୍ରଣ କରାଯିବ ଏଥିପାଇଁ ଗଭୀର ଭାବେ ଚିନ୍ତା କରାଯିବା ଆବଶ୍ୟକ । ରାଷ୍ଟ୍ର ବିଷୟରେ କୌଣସି ଜ୍ଞାନ ଲୋକମାନଙ୍କୁ ଦିଆଯାଉ ନାହିଁ । ଫଳରେ ଲୋକମାନେ ପବିତ୍ର ପୂଜାସ୍ଥଳ, ନଦୀ, ପୋଖରୀ, ସେମାନଙ୍କ ଜାତି ଓ ଜାତିଗତ କର୍ତ୍ତବ୍ୟ ବିଷୟରେ ବେଶି ଚିନ୍ତା କରୁଛନ୍ତି । ଏହାକୁ ପରିବର୍ତ୍ତନ କରିବାକୁ ହେବ । ସମାଜର ପରିସ୍ଥିତି, ରାଷ୍ଟ୍ରର ଅବସ୍ଥା ଓ ସର୍ବସାଧାରଣ ସେବା ଇତ୍ୟାଦି ବିଷୟରେ ଲୋକମାନେ ବିଶେଷ ସଚେତନ ହୋଇପାରୁ ନାହାନ୍ତି । ସର୍ବସାଧାରଣ ମଙ୍ଗଳ ବିଷୟରେ ଆମର ସାମାଜିକ ଚେତନାର ସ୍ତରକୁ ବୃଦ୍ଧି କରିବାକୁ ହେବ ।

ପ୍ରଥମ ପଦକ୍ଷେପ ସ୍ୱରୂପ ଝିଅମାନଙ୍କର ବିବାହ ବୟସକୁ ୨୨ ବର୍ଷକୁ ବୃଦ୍ଧି କରିବା ଦରକାର । ତାହେଲେ ସମାଜ ବିଷୟରେ କେତେକ ଦରକାରୀ ଜ୍ଞାନ

Digitized by srujanika@gmail.com

ସେମାନେ ଲାଭ କରିପାରିବେ। ବୃହତ୍ତର ସମାଜର ଘଟଣା ପ୍ରବାହ ବିଷୟରେ ମହିଳାମାନେ ତ ଅଜ୍ଞ ହୋଇ ରହିଛନ୍ତି। ସେମାନେ କେବଳ ନିଜର ପରିବାରଟି ଭିତରେ ଆବଦ୍ଧ। କେତେକ ଝିଅ ପାଠ ପଢିଲେଣି, ହେଲେ ସେମାନେ ଚାକିରି କ୍ଷେତ୍ରକୁ ଆସିନାହାନ୍ତି। ସେମାନେ ଏବେ କର୍ମସଂସ୍ଥାନ ପ୍ରତି ଇଚ୍ଛା ପ୍ରକାଶ କଲେଣି। ସୁତରାଂ ସେମାନଙ୍କର ଶିକ୍ଷା ସମାପ୍ତ ପରେ ସେମାନଙ୍କୁ କର୍ମସଂସ୍ଥାନ ଯୋଗାଇଦେବା ଆବଶ୍ୟକ। ରୋଜଗାରକ୍ଷମ ହେଲେ ସେମାନେ ବିବାହ ପାଇଁ ଏତେ ବି ତରତର ହେବେ ନାହିଁ। ବିବାହ ଜଣେ ମହିଳାଙ୍କ ପାଇଁ ବହୁ ସମୟରେ ପ୍ରୀତିପଦ ହୋଇପାରୁ ନାହିଁ। ପୁରୁଷ ପ୍ରାଧାନ୍ୟ ସମାଜରେ ଜଣେ ସ୍ତ୍ରୀ ସ୍ୱାମୀର ସମସ୍ତ ନିଷ୍ଠୁରତାକୁ ନିରୁପାୟ ହୋଇ ସହିଥାଏ କାରଣ ତା ପାଇଁ ଅନ୍ୟ ପନ୍ଥା ନାହିଁ। ତେବେ ସେ ଉପାର୍ଜନକ୍ଷମ ହୋଇ ସ୍ୱାବଲମ୍ବୀ ହୋଇପାରିଲେ, ତାର ବୈବାହିକ ଜୀବନରେ ସେ ଅତ୍ୟାଚାରିତ ହେବ ନାହିଁ। ସେ ଯଦି କିଛି ବୃତ୍ତି ଶିକ୍ଷା କରି ସ୍ୱାବଲମ୍ବୀ ହେବାର ସାମର୍ଥ୍ୟ ହାସଲ କରିଥାଏ ତେବେ ସେ ସମ୍ମାନ ଓ ଆତ୍ମମର୍ଯ୍ୟାଦାର ସହ ତାର ବୈବାହିକ ଜୀବନ ଅତିବାହିତ କରିପାରିବ।

ଡାକ୍ତର- ପରିବାର ନିୟନ୍ତ୍ରଣ ପାଇଁ ଅସ୍ତ୍ରୋପଚାର ବିଷୟରେ ଆପଣଙ୍କର ମତ ଆମେ ଜାଣିପାରୁ କି ?

ପେରିୟାର - ପରିବାର ନିୟନ୍ତ୍ରଣ ପାଇଁ ଅସ୍ତ୍ରୋପଚାରର କୌଣସି ଅସୁବିଧା ନାହିଁ। ଅନ୍ୟ ପଦ୍ଧତି ନେଇ ଲୋକମାନେ ସଚେତନ ନ ହେବା ପର୍ଯ୍ୟନ୍ତ ଏହାକୁ ପ୍ରୟୋଗ କରାଯାଇ ପାରେ। ଯଦି ଡାକ୍ତରୀ ଜ୍ଞାନ କୌଶଳ ପ୍ରୟୋଗ କ୍ଷେତ୍ରରେ କୌଣସି ଅସୁବିଧା ନାହିଁ, ତେବେ ଏହି ପଦ୍ଧତି ଦ୍ୱାରା ପରିବାର ନିୟନ୍ତ୍ରଣ କରିବା କାର୍ଯ୍ୟକୁ ବ୍ୟାପକ କରାଯାଇପାରେ।

ଡାକ୍ତର - ଅନେକ ଲୋକ କୁଲିକରି ବା ଦିନ ମଜୁରିଆ ଭାବେ ଜୀବନ ନିର୍ବାହ କରୁଛନ୍ତି। ଆପଣ ସେମାନଙ୍କୁ କଣ ପରାମର୍ଶ ଦେବେ ? ସେମାନେ ତ ପିରବାର ନିୟୋଜନକୁ ଗ୍ରହଣ କରିପାରୁ ନାହାନ୍ତି। ଆପଣ ସେମାନଙ୍କୁ ଏଥିପାଇଁ ନ କହିଲେ ସେମାନେ ଏହା କରିବେ ନାହିଁ।

Digitized by srujanika@gmail.com

ପେରିୟାର - ସେମାନଙ୍କୁ ବୁଝାଯାଇପାରେ ବା ବାଧ୍ୟ କରାଯାଇପାରେ । ମୁଁ ୧୯୨୯ ରୁ ପରିବାର ନିୟନ୍ତ୍ରଣ ବିଷୟରେ କହି ଆସୁଛି । ପରିବାର ନିୟୋଜନ ଅସ୍ତ୍ରୋପଚାରକୁ ନିଷ୍ଠାର ସହ ବାଧ୍ୟତାମୂଳକ କରାଯାଇପାରେ ।

ଆମର ପୁଅ ଝିଅମାନଙ୍କୁ ବିଦ୍ୟାଳୟ ସ୍ତରରୁ କ୍ଷୁଦ୍ର ପରିବାର ବିଷୟରେ ଶିକ୍ଷା ଦିଆଯାଇପାରେ । ଏହାକୁ ଲୋକମାନଙ୍କ ଭିତରେ ପ୍ରସାର କରିବାକୁ ଶିକ୍ଷକମାନଙ୍କ ମାଧ୍ୟମରେ ପ୍ରୟାସ କରାଯାଇପାରେ । ଯଦି ଜନସଂଖ୍ୟା ଦ୍ରୁତ ଗତିରେ ଏପରି ବୃଦ୍ଧିପାଏ ତେବେ କୌଣସି ସରକାର ବି ଲୋକମାନଙ୍କୁ ସମସ୍ତ ଆବଶ୍ୟକତା ଯୋଗାଇପାରିବ ନାହିଁ । ଯଦି ଏକ ଦେଶ ଲୋକସଂଖ୍ୟା ବୃଦ୍ଧି ଜନିତ ଚାପରେ ଭାରାକ୍ରାନ୍ତ ହୁଏ ତେବେ ସେଠାରେ ଅନେକ ପରିବାର ଦୟନୀୟ ସ୍ଥିତି ଭିତରେ ରହିବେ ଓ କେତେକ ବାପା-ମା ସେମାନଙ୍କ ପିଲାମାନଙ୍କର ଆବଶ୍ୟକତାକୁ ପୂରଣ କରିପାରିବେ ନାହିଁ । ପରିବାର ନିୟନ୍ତ୍ରଣ ବିଷୟରେ କେତେକ ଲୋକ ସଚେତନ ନୁହନ୍ତି । ଏହା ଏକ ସରକାରୀ ବାଧ୍ୟ ବାଧକତା ବୋଲି କେତେକ ଭାବୁଛନ୍ତି । ଏପରିକି ପରିବାର ନିୟୋଜନ ପାଇଁ ଅସ୍ତ୍ରୋପଚାର କରିଥିବା ଲୋକମାନେ ପ୍ରଲୋଭନ ଯୋଗୁଁ ଏହା କରିଥିବା କେତେକ ପ୍ରଚାର କରିଥାନ୍ତି । ଏସବୁ ଅପପ୍ରଚାରକୁ ବନ୍ଦ କରାଯିବା ଆବଶ୍ୟକ । ପରିବାର ନିୟନ୍ତ୍ରଣର ଗୁରୁତ୍ୱକୁ ମହିଳାମାନେ ପ୍ରଚାର କଲେ ଏହା ଅଧିକ ସଫଳ ହୋଇପାରିବ ।

ବିଜ୍ଞ ଡାକ୍ତରମାନଙ୍କ ପାଖରେ ପରିବାର ନିୟନ୍ତ୍ରଣ ନେଇ ପେରିୟାର ଯେଉଁ ଭାବନା ସେ ସମୟରେ ବ୍ୟକ୍ତ କରିଥିଲେ ତାହା ବେଶ୍ ପ୍ରଗତିଶୀଳ ଅଟେ । ଜଣେ ସମାଜ ସଂସ୍କାରକ ଭାବେ ବ୍ରିଟିଶ ଶାସନ କାଳରେ ସେ ସମାଜର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଉପରେ ଯେଉଁ ମତ ଦେଇଛନ୍ତି ତାହା ବେଶ୍ ଭାବଗର୍ଭକ । ମଣିଷ ସମାଜ ପ୍ରତି ତାଙ୍କର ସମ୍ବେଦନଶୀଳ ମନୋଭାବ ଓ ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ ତାଙ୍କ ବକ୍ତବ୍ୟରୁ ସୁସ୍ପଷ୍ଟ ।

* * * * * *

Digitized by srujanika@gmail.com

ପରିବାର ନିୟନ୍ତ୍ରଣ ବିଷୟରେ ମୁଁ ଯେଉଁ ମତ ବ୍ୟକ୍ତ କରୁଛି ସେଥିରେ କେତେକ ବ୍ୟକ୍ତି ଆଘାତ ପାଉଛନ୍ତି । ତେବେ ପରିବାର ନିୟନ୍ତ୍ରଣ ଜନିତ ଚର୍ଚ୍ଚା ଏବେ ବିଭିନ୍ନ ଜାଗାରେ କରାଯାଉଛି । ଏହା ନେଇ ଧୀରେ ଧୀରେ ଜନ-ସଚେତନତା ପ୍ରକାଶ ପାଉଛି । ଉଚ୍ଚ ପଦ ପଦବୀରେ ଥିବା ଲୋକମାନେ ଏହା ସପକ୍ଷରେ ମଧ୍ୟ କହୁଛନ୍ତି । ଏପରିକି ବିଧାନ ସଭାର ନିର୍ବାଚିତ ପ୍ରତିନିଧିମାନେ ପରିବାର ନିୟୋଜନ ପ୍ରଚାରକୁ ଗୁରୁତ୍ୱ ଦେବାକୁ ମତ ବ୍ୟକ୍ତ କରୁଛନ୍ତି ।

ପରିବାର ନିୟୋଜନର ଗୁରୁତ୍ୱର କାରଣ ନେଇ ଆମେ ଦେଉଥିବା ମତ ଓ ଅନ୍ୟମାନଙ୍କ ମତ ଭିତରେ ପାର୍ଥକ୍ୟ ରହିଛି । ଜନସଂଖ୍ୟା ବୃଦ୍ଧିକୁ ନିୟନ୍ତ୍ରଣ କରିବା ପାଇଁ ଆମେ ଏଥିରେ ଗୁରୁତ୍ୱ ଦେଉଛେ । ଅନ୍ୟମାନେ ମହିଳାମାନଙ୍କର ସ୍ୱାସ୍ଥ୍ୟ ସୁରକ୍ଷା ପାଇଁ ଏହା ଉପରେ ପ୍ରାଧାନ୍ୟ ଦେଉଛନ୍ତି । ଅନ୍ୟ କେତେକ ଦେଶର ଆର୍ଥିକ ବିକାଶ ପାଇଁ ଏହା ସପକ୍ଷରେ କହୁଛନ୍ତି । ଅନ୍ୟ କେତେକ ସଂପତ୍ତିର ଅଧିକାରକୁ ଦୃଷ୍ଟିରେ ରଖି ଏହାକୁ ସମର୍ଥନ କରୁଛନ୍ତି । ପାଶ୍ଚାତ୍ୟ ଦେଶର କେତେକ ବୁଦ୍ଧିଜୀବୀ ମଧ୍ୟ ନାନା କାରଣରୁ ପରିବାର ନିୟୋଜନକୁ ସମର୍ଥନ କରୁଛନ୍ତି । ଆମ ମତର ସେମାନଙ୍କ ମତ ସହିତ ବିଶେଷ ବିରୋଧ ନଥିଲେ ମଧ୍ୟ ଆମେ ଏହା ସପକ୍ଷରେ ଏକ ଉଦ୍ଦେଶ୍ୟ ନେଇ କହୁଛେ । ଆମେ ଏକ ଗୁରୁତ୍ୱପୂର୍ଣ୍ଣ କାରଣ ଯୋଗୁଁ ଏହା ସପକ୍ଷରେ କହୁଛେ । ମହିଳାମାନଙ୍କର ସ୍ୱାଧୀନତା ଓ ସମାନତାକୁ ସମର୍ଥନ କରି ଆମେ ପରିବାର ନିୟୋଜନ ସପକ୍ଷରେ କହୁଛେ । ମହିଳାମାନେ ଅଧିକ ସନ୍ତାନ ଜନ୍ମ କରିବା ଦ୍ୱାରା ସେମାନେ ଯେପରି ଅସୁବିଧାର ସମ୍ମୁଖୀନ ହେଉଛନ୍ତି ପୁରୁଷମାନେ ମଧ୍ୟ ପରିବାରର ବୋଝ ନେବାରେ ତାଙ୍କର ସ୍ୱାଧୀନତା ହରାଉଛନ୍ତି । ସେମାନେ ଯେତେବେଳେ ଅସୁବିଧାର ସମ୍ମୁଖୀନ ହେଉଛନ୍ତି ସେମାନେ ଯେଉଁ ପ୍ରତିକ୍ରିୟା ପ୍ରକାଶ କରୁଛନ୍ତି ଆପଣମାନେ ତାହା ପ୍ରାୟ ଶୁଣିଥିବେ ।

ଲୋକମାନେ ସାଧାରଣତଃ କହନ୍ତି- ମୁଁ ଯଦି ଏକା ରହିଥାନ୍ତି ମୁଁ ସୁଖରେ ରହିଥାନ୍ତି । ମୋର ଚାରି, ପାଞ୍ଚୋଟି ପିଲା ଫଳରେ ସେମାନଙ୍କର ଦାୟିତ୍ୱ ମୋତେ ନେବାକୁ ପଡୁଛି । ଅନ୍ୟମାନେ ଯେଉଁପରି ମୋତେ କହିଛନ୍ତି ମୁଁ ସେହିପରି ଅନ୍ୟନୋପାୟ ହୋଇ ଜୀବନ ନିର୍ବାହ କରୁଛି ।" ମହିଳାମାନେ କହନ୍ତି ମୁଁ ଯଦି

Digitized by srujanika@gmail.com

ଏକାକି ବଞ୍ଚେ ମୁଁ ମନ ଇଚ୍ଛା ଯେଉଁଆଡେ ହେଲେ ଯାଇ ପାରିବି କିମ୍ବା ନଇ ପୋଖରୀରେ ମରିପାରିବି । ମୁଁ ମୁହୂର୍ତ୍ତକ ପାଇଁ ଏହି ଜୀବନ ସହ୍ୟ କରିପାରିବି ନାହିଁ । ଗୁଡିଏ ପିଲା ହେଲା ପରେ ମୁଁ କୁଆଡେ ଯିବି ନା କଣ କରିପାରିବି ?

ଅନେକ ଗୁଡିଏ ପିଲା ଜନ୍ମ କରିବା ଦ୍ୱାରା ନାରୀ ପୁରୁଷ ସମସ୍ତଙ୍କର ସୁଖ ଓ ସ୍ୱାଧୀନତା ବିପନ୍ନ ହୋଇଥାଏ । ଆଜିକାଲି ଲୋକମାନେ ସେମାନଙ୍କର ବୁଦ୍ଧି ବା ଶ୍ରମ ବିନିଯୋଗ କରି ସେମାନଙ୍କର ଆବଶ୍ୟକତାକୁ ପୂରଣ କରୁଛନ୍ତି । ବହୁ ସନ୍ତାନ ପିରବାରରେ ଲୋକମାନେ ଆତ୍ମ ସମ୍ମାନ ହରାଇ ବହୁ ପରିଶ୍ରମ କରିଥାନ୍ତି । ନିଜର ଆବଶ୍ୟକତାକୁ ପୂରଣ କରିବା ପାଇଁ ଓ ବହୁ ସନ୍ତାନଙ୍କର ସର୍ବନିମ୍ନ ଚାହିଦାକୁ ମେଣ୍ଟାଇବା ପାଇଁ ସେମାନେ କଠିନ ପରିଶ୍ରମ କରିଥାନ୍ତି । ଆମ ଦେଶରେ ଅନେକ ପରିବାରରେ ଏହି ସ୍ଥିତି ଦେଖିବାକୁ ମିଳେ । ବିଶେଷକରି ଏଥିରେ ଆମର ମହିଳାମାନେ ବେଶି ଅସୁବିଧାର ସମ୍ମୁଖୀନ ହୁଅନ୍ତି । ମହିଳାମାନଙ୍କର ସଂପତ୍ତି ଅଧିକାର ନାହିଁ । ସେମାନଙ୍କର କୌଣସି ବ୍ୟବସାୟ ବୃତ୍ତି ବା ସ୍ଥାୟୀ ରୋଜଗାର ନାହିଁ । ନିଜର ପିଲାମାନଙ୍କର ଆବଶ୍ୟକତାକୁ ପୂରଣ କରିବା ପାଇଁ ସେମାନଙ୍କୁ ଅନ୍ୟର ରୋଜଗାର ଉପରେ ନିର୍ଭର କରିବାକୁ ହୋଇଥାଏ । ସୁତରାଂ ମହିଳାମାନେ ପରିବାର ନିୟନ୍ତ୍ରଣ ପାଇଁ ଆଗଭର ହେବା ଆବଶ୍ୟକ । କେତେକ ମହିଳା ଗର୍ଭଧାରଣ ଯୋଗୁଁ ଅକାଳରେ ମୃତ୍ୟୁବରଣ ବି କରିଥାନ୍ତି । ଲୋକମାନଙ୍କ ମଧ୍ୟରେ କେତେକ ବ୍ରହ୍ମଚାରୀ, ସନ୍ନ୍ୟାସୀ, ଶଙ୍କରାଚାର୍ଯ୍ୟ, ବାବାମାନଙ୍କୁ ଆମେ ଦେଖୁ ଯେଉଁମାନେ ଅମାପ ସଂପତ୍ତି ଓ ସ୍ୱାଧୀନତା ଉପଭୋଗ କରନ୍ତି । ସେମାନଙ୍କୁ ନାରୀ ପୁରୁଷ ନିର୍ବିଶେଷରେ ସମସ୍ତେ ସମ୍ମାନ କରନ୍ତି । ତେବେ ଜଣେ ମହିଳା ଏହି ସ୍ଥିତି ବା ସମ୍ମାନ ସ୍ତରକୁ ଆସିପାରିବ କି? ସମ୍ଭବ ନୁହେଁ । କାରଣ ସେମାନେ ଗର୍ଭବତୀ ହେଉଛନ୍ତି । ମୋଟ ଉପରେ କହିଲେ ଯେଉଁ କାରଣ ଯୋଗୁଁ ହେଉ ନା କାହିଁକି ପିରବାର ନିୟନ୍ତ୍ରଣ ଏକ ବଡ ଆବଶ୍ୟକତା ଓ ଏହାଦ୍ୱାରା ଜନସଂଖ୍ୟାକୁ ନିୟନ୍ତ୍ରଣ କରିବା ସହ ଏକ ସୁସ୍ଥ ସମାଜ ସମ୍ଭବ ହୋଇପାରିବ ।

ରାଜ୍ୟ ବିଧାନ ସଭାରେ ସ୍ୱାସ୍ଥ୍ୟ ମନ୍ତ୍ରୀ ପରିବାର ନିୟନ୍ତ୍ରଣ ପ୍ରଚାରକୁ ବିରୋଧ କରିବା ଜାଣି ମୁଁ ହତୋତ୍ସାହ ହୋଇଥିଲି । ଡକ୍ଟର ଶ୍ରୀମତୀ ମୁଥୁଲକ୍ଷ୍ମୀ

Digitized by srujanika@gmail.com

ରେଡି ମନ୍ତ୍ରୀଙ୍କର ମତକୁ ମଧ୍ୟ ସମର୍ଥନ କରିଥିଲେ। ଜନ୍ମିତ ସନ୍ତାନମାନଙ୍କୁ ରାଷ୍ଟ୍ରର ସଂପତ୍ତି ଓ ଭବିଷ୍ୟତ ମନେ କରି ସେମାନେ ସାବାଳକ ହେବା ପର୍ଯ୍ୟନ୍ତ ସେମାନଙ୍କର ସମସ୍ତ ଆବଶ୍ୟକତା ପୂରଣ କରିବାକୁ ଯଦି ରାଷ୍ଟ୍ର ଯତ୍ନଶୀଳ ହେବ ତେବେ ମନ୍ତ୍ରୀ ପରିବାର ନିୟୋଜନ ପ୍ରଥାକୁ ସମାଲୋଚନା କରିନଥାନ୍ତେ। ତେବେ ଏହି ସ୍ଥିତି ସମ୍ଭବ ହୋଇ ନାହିଁ। ଦଂପତି ସନ୍ତାନ ଜନ୍ମ କରନ୍ତି ଓ ନିଜର ସୁଖ ଓ ଆତ୍ମସମ୍ମାନକୁ ବଳି ଦେଇ ପିଲାଙ୍କର ଯତ୍ନ ନିଅନ୍ତି। ସେମାନେ ବହୁ ସନ୍ତାନ କରିବା ଦ୍ୱାରା ବହୁ ଜଂଜାଳ ଭିତରେ ଅଭାବୀ ହୁଅନ୍ତି। ଯେହେତୁ ଏକ୍ଷେତ୍ରରେ ସରକାରଙ୍କର କିଛି ଦାୟିତ୍ୱ ନାହିଁ ତେଣୁ ମନ୍ତ୍ରୀ ପରିବାର ନିୟନ୍ତ୍ରଣକୁ ନିନ୍ଦା ବା ସମୋଲୋଚନା କରୁଛନ୍ତି। ମନ୍ତ୍ରୀ ଜଣେ ଡାକ୍ତର ଓ ମହିଳା ହୋଇ ପରିବାର ନିୟନ୍ତ୍ରଣର ସାମାଜିକ ଆବଶ୍ୟକତାକୁ ହୃଦୟଙ୍ଗମ ନକରିବା ଦୁର୍ଭାଗ୍ୟଜନକ। ଆମ ରାଜ୍ୟର ବିକାଶ ପାଇଁ ଜନସଂଖ୍ୟାକୁ ନିୟନ୍ତ୍ରଣ ଭିତରେ ରଖିବା ଦରକାର। ଏଥିପାଇଁ ପରିବାର ନିୟନ୍ତ୍ରଣକୁ ଗୁରୁତ୍ୱ ଦେବା ଆବଶ୍ୟକ। ସରକାର ଯାହା କୁହନ୍ତୁ ନା ପଛେ ଆମର ଜନଗଣ ପରିବାର ନିୟନ୍ତ୍ରଣ କରିବାକୁ ମୁଁ ନିବେଦନ କରୁଛି।

ମୋ ମତରେ ପରିବାର ନିୟନ୍ତ୍ରଣ ପାଇଁ ପ୍ରଚାରକୁ ପ୍ରାଧାନ୍ୟ ଦିଆଯିବା ଆବଶ୍ୟକ। ନିଶା ନିବାରଣ ଯୋଜନା ଅପେକ୍ଷା ଏହାର ଗୁରୁତ୍ୱ ଅଧିକ ଅଟେ। ଏପରିକି ସଂକ୍ରାମକ ରୋଗ ବି ବ୍ୟାପିବା ପାଇଁ ଜନ ସଚେତନତା ଯେତିକି ଆବଶ୍ୟକ ତା ଅପେକ୍ଷା ପରିବାର ନିୟନ୍ତ୍ରଣ ପାଇଁ ସାମାଜିକ ସଚେତନତା ଅଧିକ ଆବଶ୍ୟକ। ପରିବାର ନିୟୋଜନ କାର୍ଯ୍ୟକ୍ରମକୁ ଏକ ଗମ୍ଭୀର ପ୍ରଶ୍ନ ଭାବରେ ନେଇ ଏହାକୁ ସବୁଠାରୁ ଅଧିକ ପ୍ରାଧାନ୍ୟ ଦେବା ଦରକାର। ଏହାହିଁ ମୋର ଦୃଢ ମତ।

ପରିବାର ନିୟୋଜନ କାର୍ଯ୍ୟକୁ ସଫଳ କରିବା ପାଇଁ ଏକ ସ୍ୱତନ୍ତ୍ର ସଂଗଠନ କରିବାକୁ ମୁଁ ଲୋକମାନଙ୍କୁ ନିବେଦନ କରୁଛି। ତାହା ଜରିଆରେ ପ୍ରଚାରପତ୍ର, ପୁସ୍ତିକା ଇତ୍ୟାଦି ଛପା ଯାଇ ଲୋକମାନଙ୍କ ମଧ୍ୟରେ ପ୍ରସାର କରାଯିବା ଦରକାର। ବିଭିନ୍ନ ଭାଷାରେ ଏହା ଛପା ଯାଇ ଲୋକମାନଙ୍କୁ ବଣ୍ଟାଗଲେ ଲୋକମାନେ ସଚେତନ ହୋଇପାରିବେ । ବିଦେଶରେ ବିଶେଷକରି ଇଂଲଣ୍ଡରେ ଏହା କରାଯିବା ମୁଁ ଦେଖିଛି। ଆମର ଜନଗଣଙ୍କୁ ସଚେତନ କରିବା ପାଇଁ ଏହି

Digitized by srujanika@gmail.com

ଭଳି ପଛା ଗ୍ରହଣ କରାଯିବା ଦରକାର । ସେହିପରି ସରକାରଙ୍କ ପ୍ରଚାର ବିଭାଗ, ଡ୍ରାମା ଓ ସିନେମା ଇତ୍ୟାଦି ଦ୍ୱାରା ମଧ୍ୟ ଲୋକମାନଙ୍କୁ ଏକ୍ଷେତ୍ରରେ ସଚେତନ କରାଯାଇ ପାରିବ ।

ବିଭିନ୍ନ ପ୍ରଚାର ଓ ଜନସଚେତନତା ମାଧ୍ୟମରେ ଲୋକମାନଙ୍କୁ ଏହାର ଆବଶ୍ୟକତା ବୁଝାଇଲେ ଲୋକମାନେ ପରିବାର ନିୟୋଜନ ଜନ୍ମ ନିୟନ୍ତ୍ରଣ ବିଷୟରେ ସଚେତନ ହେବେ ।

* * * * * *

ପ୍ରିୟ ପାଠକଗଣ,

ସରକାରରେ ମନ୍ତ୍ରୀ ଥିବା ଓ ଅନ୍ୟାନ୍ୟ ଦାୟିତ୍ୱସଂପନ୍ନ ବ୍ୟକ୍ତିମାନେ ପରିବାର ନିୟୋଜନ କାର୍ଯ୍ୟକ୍ରମ ପ୍ରତି କିପରି ଉଦାସୀନ ତାହା ପୂର୍ବ ଆଲୋଚନାରୁ ଆପଣମାନେ ଦେଖିଛନ୍ତି । ରକ୍ଷଣଶୀଳ ମାନସିକତା ଭିତରେ ସେମାନେ ପରିବାର ନିୟନ୍ତ୍ରଣର ଗୁରୁତ୍ୱକୁ ବୁଝିପାରି ନାହାନ୍ତି । ତେବେ ପେରିୟାର ଯେଉଁ ଭାବନା ଏ କ୍ଷେତ୍ରରେ ବ୍ୟକ୍ତ କରିଛନ୍ତି ତାହାର ବହୁ ବର୍ଷ ପରେ ସରକାର ତାହାର ଗୁରୁତ୍ୱକୁ ଅନୁଭବ କରିଛନ୍ତି । ଯଦି ସରକାରୀ ସ୍ତରରେ ଏହାର ତାତ୍ପର୍ଯ୍ୟକୁ ପ୍ରଥମରୁ ଗୁରୁତ୍ୱ ଦିଆଯାଇଥାନ୍ତା, ତେବେ ଏହାଦ୍ୱାରା ସାମାଜିକ ସ୍ତରରେ ଉଲ୍ଲେଖନୀୟ ପରିବର୍ତ୍ତନ ଆସି ପାରିଥାନ୍ତା । ଦୁଃଖର କଥା ଅତୀତରେ ସମାଜର ଦାୟିତ୍ୱ ସଂପନ୍ନ ବ୍ୟକ୍ତିମାନେ ମଧ୍ୟ ଏହାର ମହତ୍ତ୍ୱକୁ ଉପଲବ୍ଧି କରିପାରି ନାହାନ୍ତି ।

* * * * * *

କେନ୍ଦ୍ର ମନ୍ତ୍ରୀ ଡ଼ ଚନ୍ଦ୍ରଶେଖର ୯.୩.୭୦ ଦିନ ପେରିୟାରଙ୍କୁ ସାକ୍ଷାତ କରି ପରିବାର ନିୟନ୍ତ୍ରଣ ବିଷୟ ଉପରେ ତାଙ୍କ ସହ ଆଲୋଚନା କରିଥିଲେ ।

ଡାକ୍ତର- ପରିବାର ନିୟନ୍ତ୍ରଣ ପ୍ରସଙ୍ଗ ଉପରେ ଆପଣ ପ୍ରଥମ ବ୍ୟକ୍ତି ଭାବେ ମତପୋଷଣ କରିଛନ୍ତି । ଏହା ଉପରେ ୧୯୨୮ ରେ ଆପଣ ଲେଖା ପ୍ରକାଶ କରିଛନ୍ତି । ମୋର ମତ ଯଦି ଠିକ୍ ତେବେ ଦୟାକରି କୁହନ୍ତୁ ଆପଣ କିପରି ଏହି ବିଷୟ ଉପରେ ଏପରି ମତ ବ୍ୟକ୍ତ କରିଥିଲେ ?

ପେରିୟାର- ମୋର କିଶୋର ବୟସରୁ ମୁଁ ସବୁ ଶ୍ରେଣୀର ଲୋକଙ୍କ ସହିତ ସଂପର୍କ ରଖିଆସିଛି । ମୁଁ ଯାହା ଅନୁଭବ କରେ ସେ ବିଷୟରେ ମୋର ମତ

Digitized by srujanika@gmail.com

ନିର୍ଭିକ ଭାବେ ବ୍ୟକ୍ତ କରିଥାଏ। ସେହିପରି ଯେଉଁ ବିଷୟ ଭୁଲ ବୋଲି ମୋର ଧାରଣା ହୁଏ ମୁଁ ତାହା ନିନ୍ଦା କରିଥାଏ। ପିଲାଟି ବୟସରୁ ମୁଁ ଥିଲି ଗପୁଡି ପ୍ରକୃତିର। ଆମ ଅଞ୍ଚଳରେ ଆମ ପରିବାର ଯେହେତୁ ଏକ ସମ୍ମାନଜନକ ପରିବାର ଥିଲା, ତେଣୁ ସବୁ ଶ୍ରେଣୀର ଲୋକ ମୋ ସହ ମିଶୁଥିଲେ ଓ ସେମାନଙ୍କ ପାରିବାରିକ ଅସୁବିଧା ବିଷୟ ମୋତେ କହୁଥିଲେ। ମୋର ଅନୁଭବ ହେଲା ଯେ ବଡ ପରିବାରର ଲୋକମାନଙ୍କର ସମସ୍ୟା ଅଧିକ। ବହୁ ପିଲା ଜନ୍ମ ହୋଇଥିବା ପରିବାରରେ ସ୍ୱାମୀ ସ୍ତ୍ରୀ ମଧ୍ୟରେ ଆଦୌ ଭଲ ସଂପର୍କ ନଥିବା ମୁଁ ଦେଖୁଥାଏ। ମୁଁ ଲୋକମାନଙ୍କ ସମସ୍ୟା ଉପରେ ଗଭୀର ଚିନ୍ତା କରୁଥାଏ। ଥରେ ଏରୋଡ ଠାରେ ଜଣେ ଭଦ୍ରଲୋକ ତାଙ୍କ ସ୍ତ୍ରୀଙ୍କୁ ବହୁତ ବାଡେଇଥାନ୍ତି। ମୁଁ ଯାଇ ସେ ଏପରି ନିଷ୍ଠୁର ଭାବେ କାହିଁକି ପିଟିଛନ୍ତି ବୋଲି ପଚାରିଲି। ସେମାନଙ୍କ ପାରିବାରିକ ବ୍ୟାପାରରେ ପ୍ରବେଶ ନ କରିବାକୁ ସେ ମୋତେ କହିଲେ। ସେ ମୋତେ ଯେପରି ବ୍ୟବହାର ଦେଖାଇଲେ ଏହା ତାଙ୍କ ସ୍ତ୍ରୀଙ୍କୁ ବହୁତ ଖରାପ ଲାଗିଲା। ତାଙ୍କ ସ୍ତ୍ରୀଙ୍କ କଥା ଶୁଣି ଓ କାନ୍ଦ ଦେଖି ମୋତେ ବହୁତ କଷ୍ଟ ଲାଗିଲା। ତାଙ୍କ ସ୍ତ୍ରୀ ମୋତେ କହିଲେ ଯେ ତାଙ୍କର ପିଲାମାନଙ୍କ ପାଇଁ ସେ ଅତି ଦୟନୀୟ ଭାବେ ଜୀବନ ବଞ୍ଚୁଛନ୍ତି। ସେ କହିଲେ ଯେ ପିଲାମାନଙ୍କ ପାଇଁ ସେ ମରିପାରୁ ନାହାନ୍ତି। ସେ କାହିଁକି ଏତେ ସନ୍ତାନ ଜନ୍ମ କରିଛନ୍ତି ବୋଲି ମୁଁ ପଚାରିବାରୁ ସେ କହିଲେ ଯେ- ଏସବୁ ଇଶ୍ୱରଙ୍କ ଦାନ। ଏହି ଘଟଣା ଦେଖିବା ପରେ ମୁଁ ଏହା ଉପରେ ଚିନ୍ତା କଲି ଓ ମୋର ମତ ଲେଖି ଲୋକମାନଙ୍କୁ ଜଣାଇଲି। ପାଶ୍ଚାତ୍ୟ ଦେଶମାନଙ୍କରେ ପରିବାର ନିୟୋଜନ କିପରି ଆରମ୍ଭ ହୋଇଛି ଏ ବିଷୟ ଉପରେ ମୁଁ ପଢିବାକୁ ପାଇଲି। ମୁଁ ଏହା ପଢିବା ପରେ ତାହାର ମୁଖ୍ୟ ପ୍ରସଙ୍ଗ ଅନୁବାଦ କରି ପ୍ରକାଶ କଲି ଓ ପରିବାର ନିୟନ୍ତ୍ରଣ ପାଇଁ ଲେଖାଲେଖି କରି ଏଥିପାଇଁ ସଚେତନତା ସୃଷ୍ଟି କରିବାକୁ ଲାଗିଲି।

ମୋର ନାଗମାଙ୍କ ସହିତ ବିବାହ ପରେ ଆମର ପିଲାଟିଏ ହେଲା। ପିଲାଟି କିନ୍ତୁ ପାଞ୍ଚ ମାସରେ ମରିଗଲା। ପିଲାଟିକୁ ଦେଖିବା ବି ମୋର ମନେ ନାହିଁ। ଏହାପରେ ଏଥିପାଇଁ ବିଶେଷ ଦୁଃଖ ନ କରିବାକୁ ମୁଁ ମୋ ପରିବାରରେ କହିଲି। ମୋର ଧାରଣା ହେଲା ଯେ ସମାଜ ସେବା ମୂଳକ କାର୍ଯ୍ୟରେ ରହିଲେ ପିଲା ଜନ୍ମ କରିବା ବଡ ପ୍ରତିବନ୍ଧକ।

Digitized by srujanika@gmail.com

ଡାକ୍ତର- ଆପଣଙ୍କ ସମୟରେ ପରିବାର ନିୟନ୍ତ୍ରଣକୁ ବିରୋଧ କରାଯାଉଥିଲା କି?

ପେରିୟାର - ଲୋକମାନେ କହିବାକୁ ଲାଗିଲେ ଯେ ମୋର ଯେହେତୁ ପିଲାପିଲି ନାହାନ୍ତି ତେଣୁ ମୁଁ ପରିବାର ନିୟନ୍ତ୍ରଣ ବିଷୟରେ କହୁଛି ।

ଡାକ୍ତର - ପୃଥିବୀରେ ଆମ ଦେଶର ପରିବାର ନିୟନ୍ତ୍ରଣ ଯୋଜନା ସବୁଠାରୁ ଅଧିକ । ଆପଣଙ୍କର ଏ ବିଷୟରେ କଣ ମତ ରହିଛି ?

ପେରିୟାର- ସୁଖର କଥା ସରକାର ଏହି ସମସ୍ୟାକୁ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ଏହାଦ୍ୱାରା ଜନସଂଖ୍ୟାକୁ ନିୟନ୍ତ୍ରଣ କରିବା ସହ ଲୋକମାନେ ସୁଖରେ ରହିପାରିବେ ।

ଏହା ସହିତ ଆଉ ଗୋଟିଏ କାର୍ଯ୍ୟ କରାଯିବା ଦରକାର । ପରିବାର ନିୟୋଜନ ପାଇଁ ପ୍ରଚାର ଦାୟିତ୍ୱ ମହିଳାମାନଙ୍କୁ ଦିଆଗଲେ ଏହା ଅଧିକ ପ୍ରଭାବ ପକାଇବ । ଆମର ମହିଳାମାନେ ଅଧିକ ସନ୍ତାନ ପ୍ରିୟ । ସୁତରାଂ ମହିଳା ପ୍ରଚାରିକାଙ୍କ ଦ୍ୱାରା ପରିବାର ନିୟନ୍ତ୍ରଣ ପାଇଁ ପ୍ରଚାର କରାଗଲେ ଏହା ଅଧିକ ଫଳପ୍ରଦ ହେବ । ତେବେ ପୁରୁଷ ସ୍ତ୍ରୀ ନିର୍ବିଶେଷରେ ଯେଉଁମାନେ ପରିବାର ନିୟନ୍ତ୍ରଣ ବିଷୟରେ ଲୋକମାନଙ୍କୁ ସଚେତନ କରାଇବେ ସେମାନେ ଧର୍ମ ଈଶ୍ୱର ଇତ୍ୟାଦି ଭାବନା ନେଇ ଅନ୍ଧବିଶ୍ୱାସୀ ହୋଇନଥିବା ଆବଶ୍ୟକ । ବିଚାରଶୀଳ ଦୃଷ୍ଟି ରଖିଥିବା ଲୋକମାନେ ହିଁ ଏହି ଦାୟିତ୍ୱ ନେଇ ଲୋକମାନଙ୍କୁ କ୍ଷୁଦ୍ର ପରିବାର ବିଷୟରେ ସଚେତନ କରାଇବା ଦରକାର ।

ଡାକ୍ତର- ଏହି ପ୍ରକାରର ଲୋକ ପାଇବା ଆମ ପାଇଁ ସହଜ ନୁହେଁ । ଝିଅମାନଙ୍କର ବିବାହ ବୟସ ଉପରେ ଆପଣଙ୍କର ମତ ବିଷୟରେ ଜଣାଇବେ କି ?

ପେରିୟାର- ଝିଅମାନଙ୍କ କ୍ଷେତ୍ରରେ ବିବାହ ବୟସକୁ ସର୍ବନିମ୍ନ ୨୦ ବର୍ଷ କରିବା ଦରକାର । ତା ନହେଲେ ଏହାର ବିଶେଷ ସୁଫଳ ମିଳିପାରିବ ନାହିଁ । ମୋର ପରାମର୍ଶକୁ ଯଦି ଗ୍ରହଣ କରାଯାଏ ତେବେ କେତେକ ସୁଫଳ ମିଳିବ ବୋଲି ମୁଁ ଆଶା କରୁଛି । ମହିଳାମାନଙ୍କର ସାମାଜିକ ସ୍ଥିତିରେ ପରିବର୍ତ୍ତନ ଆସିପାରିବ । ସେମାନେ କୌଣସି ବୃତ୍ତିଗତ ଜ୍ଞାନ ହାସଲ କରିପାରିବେ । ଉଚ୍ଚ ଶିକ୍ଷା ମଧ୍ୟ

Digitized by srujanika@gmail.com

ପାଇପାରିବେ । ଏପରିକି ସେମାନଙ୍କର ବିବାହ ବୟସକୁ ଯଦି ଅଧିକ ବଢାଯାଏ, ମନେକରନ୍ତୁ ୨୨ ବର୍ଷ କରାଯାଏ, ତେବେ ତାହା ଅଧିକ ଶୁଭଙ୍କର ହେବ ।

ଏବେ ଜଣେ ଝିଅ ୨୦ ବର୍ଷ ହେବା ବେଳକୁ ଦୁଇ ତିନୋଟି ସନ୍ତାନର ମାଆ ହୋଇଯାଉଛି । ସେମାନଙ୍କର ଅକାଳ ବାର୍ଦ୍ଧକ୍ୟ ମଧ୍ୟ ଆସିଯାଉଛି । ଏସବୁକୁ ପରିହାର କରିବାକୁ ହେଲେ ସେମାନଙ୍କର ବିବାହ ବୟସକୁ ୨୦ ରୁ ୨୨ କୁ ବୃଦ୍ଧି କରାଯିବା ଦରକାର ।

ଡାକ୍ତର - ସନ୍ତାନ ସଂଖ୍ୟା ସୀମିତ ରଖିବାକୁ ଆମେ ଲୋକମାନଙ୍କୁ ନିବେଦନ କରୁଛୁ । ଦୁଇଟି ସନ୍ତାନ ଭିତରେ ସନ୍ତୁଷ୍ଟ ରହିବାକୁ ଲୋକମାନଙ୍କୁ କୁହାଯାଉଛି । ତେବେ ଯେଉଁଠି ଦୁଇଟି ଯାକ ସନ୍ତାନ ଝିଅ ହେଉଛନ୍ତି ସେଠାରେ ବାପା ମା ପୁଅଟିଏ ପାଇଁ ସନ୍ତାନ ସଂଖ୍ୟା ବଢାଉଛନ୍ତି । ଲୋକମାନଙ୍କୁ ଏହି ସ୍ଥିତିରେ କିପରି ବଝାଯାଇ ପାରିବ?

ପେରିୟାର- ଏହାର ସମାଧାନ ମୋ ମତରେ ହେଉଛି ସବୁ ଚାକିରୀରେ ୫୦ ଶତକଡା ଝିଅମାନଙ୍କ ପାଇଁ ସଂରକ୍ଷଣ ରଖିବା । ଏହାକୁ ଯଦି ବାଧ୍ୟତାମୂଳକ କରାଯାଏ, ତେବେ ବାପା-ମାଙ୍କର ପୁଅ ନ ଥିଲେ ମଧ୍ୟ ସେମାନେ ଦୁଃଖିତ ହେବେ ନାହିଁ ।

ଡାକ୍ତର- ପୁରୁଷମାନେ ଏହାକୁ ବିରୋଧ କରିବେ ନାହିଁକି?

ପେରିୟାର- ବାପା-ମା ପୁଅଟିଏ ଚାହାନ୍ତି କାହିଁକି ନା ସେମାନେ ଭାବନ୍ତି ଯେ ପୁଅଟି ପାଠ ପଢିସାରି ଚାକିରି କରି ବାପା-ମାଙ୍କୁ ଭରଣ ପୋଷଣ କରିବ । ଯଦି ଝିଅମାନଙ୍କୁ ୫୦ଶତକଡା ଚାକିରି ଦିଆଯାଏ, ତେବେ ବାପା ମା ମାନେ କାଳକ୍ରମେ ଏହି ଆଶା ପରିହାର କରିବେ । ପୁଅ ଝିଅଙ୍କର ଚାକିରି କ୍ଷେତ୍ରରେ ସମାନତା ରକ୍ଷା କରିବାକୁ ହେବ । ପରିବାରରେ ଭଉଣୀ, ଝିଅ ବୃତ୍ତି କରି ପରିବାରର ଭରଣପୋଷଣ କରିପାରିବେ । ଏହା ହେଲେ ପୁରୁଷ-ପ୍ରାଧାନ୍ୟ ଲୋପ ପାଇବ ।

ଡାକ୍ତର - ଆପଣଙ୍କର ଏହି ମୂଲ୍ୟବାନ ପରାମର୍ଶ ପାଇଁ ଧନ୍ୟବାଦ ।

* * * * * *

Digitized by srujanika@gmail.com

ପେରିୟାରଙ୍କର ମନ୍ତ୍ରୀଙ୍କ ସହ ଆଲୋଚନାରୁ ପେରିୟାରଙ୍କର ପ୍ରତିଭାର ପରିଚୟ ମିଳେ। ତାଙ୍କର ପରାମର୍ଶ ଓ ତତକ୍ଷଣାତ୍ ଉତ୍ତରରୁ ତାଙ୍କ ବିଚାର ଦେଖି ଆଶ୍ଚର୍ଯ୍ୟ ହେବାକୁ ହୁଏ। ସେ ଯାହା କୁହନ୍ତି କିପରି ଆତ୍ମବିଶ୍ୱାସ ଓ ଯୁକ୍ତିଶୀଳ ଆଧାରରେ ତାହା ବ୍ୟକ୍ତ କରନ୍ତି ତାହା ବେଶ୍ ସ୍ପଷ୍ଟ।

ଏକଦା ତ୍ରିଚିଠାରେ ଏକ ସାଧାରଣ ସଭାରେ ସେ ଜନଗଣଙ୍କୁ ସତର୍କ କରି କହିଲେ ଯେ ଯେଉଁମାନେ କ୍ଷୁଦ୍ର ପରିବାର ଭିତରେ ନିଜକୁ ସୀମିତ ରଖିବେ ନାହିଁ ସେମାନେ ପରେ ଅନୁତାପ କରିବେ। ସେ କହିଥିଲେ-

ସମସ୍ତ ପ୍ରାଣୀମାନଙ୍କ ମଧ୍ୟରେ ମଣିଷ ପାଖରେ ବିଚାର ବୁଦ୍ଧି ରହିଛି। ମଣିଷ ନିଜର ବୁଦ୍ଧି ଯୋଗୁଁ ଭଲ ମନ୍ଦ ବିଷୟରେ ଚିନ୍ତା କରିପାରେ। ଜୀବନର ମାନକୁ ବୃଦ୍ଧି କରିବାକୁ ସେ ନିଜର ବୁଦ୍ଧିଦ୍ୱାରା ପ୍ରୟାସ କରିଥାଏ। ମଣିଷ କେବଳ ସ୍ୱାଧୀନ ଭାବେ ଚିନ୍ତା କରିପାରେ ଓ ସେ ଅନୁଯାୟୀ କାର୍ଯ୍ୟ କରିପାରେ। ସେ ଦୁଶ୍ଚିନ୍ତା ବା ପ୍ରତିକୂଳ ଅବସ୍ଥାକୁ ପରିହାର କରି ଏକ ସୁଖକର ଜୀବନ ପାଇଁ ଆଗ୍ରହୀ ହୋଇଥାଏ।

କିନ୍ତୁ ମଣିଷର ଅବସ୍ଥା ଆମେ କ'ଣ ଦେଖୁଛେ? ସେ ପଶୁଠାରୁ ବେଳେକେ ହୀନ। ସେ ବେଳେବେଳେ ଅସଭ୍ୟ ଓ ଅନୈତିକ ଭାବେ କାର୍ଯ୍ୟ କରିଥାଏ।

କିନ୍ତୁ ମଣିଷର ବୁଦ୍ଧି ବିବେକ ଯୋଗୁଁ ସେ ବହୁତ ସୁଖରେ ଜୀବନ ଅତିବାହିତ କରିପାରନ୍ତା। କିନ୍ତୁ ପରିତାପର ବିଷୟ ସେ ଅନୈତିକତା ଓ ଅସଭ୍ୟତା ପାଖରେ ନତମସ୍ତକ ହୋଇଥାଏ। ଅନେକ ଦୁଶ୍ଚିନ୍ତାରୁ ସେ କାହିଁକି ମୁକ୍ତ ହୋଇପାରୁ ନାହିଁ ? ମଣିଷ କାହିଁକି ଏପରି ନ୍ୟୂନ ହୋଇ ରହିଛି? ଆପଣମାନେ ମଣିଷର ଏହି ସ୍ଥିତି ବିଷୟରେ ଚିନ୍ତା କରନ୍ତୁ।

ଗୁରୁତ୍ୱପୂର୍ଣ୍ଣ କଥା ହେଲା ସେ ନିଜର ଆତ୍ମବିଶ୍ୱାସ ହରାଇ ଦେଉଛି। ସେ ଭାବୁଛି ଯେ ସେ କିଛି କରିପାରିବ ନାହିଁ। ସେ ହେଉଛି ଭାଗ୍ୟର କ୍ରୀଡନକ। ତା ଦୃଷ୍ଟିରେ ଈଶ୍ୱର ହିଁ ସବୁ କରୁଛନ୍ତି।

କିନ୍ତୁ ବାସ୍ତବରେ ଦେଖିଲେ ମଣିଷ ହିଁ ସବୁ କରେ। ଏହା ଆମ ପାଇଁ ଈଶ୍ୱର କରିଦେବେ ବୋଲି ମଣିଷ କିଛି ଛାଡି ଦିଏ କି ? ଈଶ୍ୱର କେଉଁ କାର୍ଯ୍ୟ

Digitized by srujanika@gmail.com

କରିଦେବେ ଭାବି ମଣିଷ ଆରାମରେ ବସେ ନାହିଁ। ଏ ସତ୍ତ୍ୱେ କେତେକ ଲୋକ ଭାବନ୍ତି ଯେ ଈଶ୍ୱର ସବୁ କିଛି କରୁଛନ୍ତି। ଆମ ଲୋକମାନେ କେତେ ନିର୍ବୋଧ ଭାବନ୍ତୁ। ସୁତରାଂ ମୁଁ କହେ ଯେ ମଣିଷ ଯଦିବି ବିଚାରଶୀଳ, ସେ ନିଜର ବିଚାରଶୀଳତା ପ୍ରୟୋଗ କରିବାରୁ ବଞ୍ଚିତ। ପ୍ରାୟ ଶତକଡା ୯୦ ଭାଗ ଲୋକ ଅତ୍ୟନ୍ତ ଦୟନୀୟ ଭାବେ ଜୀବନ ବଞ୍ଚୁଛନ୍ତି। ସେମାନେ ସାଧୁତାକୁ ନା ଗୁରୁତ୍ୱ ଦିଅନ୍ତି ନା ସ୍ୱାଧୀନ ଭାବରେ ଜୀବନ ନିର୍ବାହ କରନ୍ତି। ଏସବୁର କାରଣ କ'ଣ ହୋଇପାରେ? ମଣିଷ କାହିଁକି ଏପରି ମନ୍ଦ ବିଚାର୍ରରେ ପୀଡିତ? ଆମେ ଯେତେବେଳେ ଏହି ସବୁ ସଙ୍କଟ ବିଷୟରେ ଚିନ୍ତା କରେ ବିଭିନ୍ନ କାରଣ ମଧ୍ୟରୁ ଗୋଟିଏ ମୁଖ୍ୟ କାରଣ ହେଉଛି ଅନିୟନ୍ତ୍ରିତ ପରିବାର। ବହୁ ସନ୍ତାନ ଜନ୍ମ କରି ବଡ ପରିବାର କରିଥିବା ଲୋକମାନେ ନାନା ଦୁଃଖରେ ଜୀବନ ନିର୍ବାହ କରନ୍ତି। ସେମାନେ ପିଲାମାନଙ୍କ ପାଇଁ ଚିନ୍ତିତ ରହିବା ଭିତରେ ସେମାନେ ନିଜକୁ ଭୁଲି ଯାନ୍ତି। ପିଲାମାନଙ୍କୁ କିପରି ଖାଇବାକୁ ଦେଇହେବ, ସେମାନଙ୍କର ସର୍ବନିମ୍ନ ଆବଶ୍ୟକତା ପୂରଣ କରିହେବ ଓ ସେମାନଙ୍କୁ ଦି ଅକ୍ଷର ପାଠ ପଢାଇହେବ ଏହି ଚିନ୍ତାରେ ସେମାନେ ସର୍ବଦା ବିବ୍ରତ ରହିଥାନ୍ତି। ଏହି ପରି ନାନା ଚିନ୍ତା ଓ ଜଂଜାଳ ଭିତରେ ସେମାନେ ଜୀବନ ଅତିବାହିତ କରନ୍ତି। ନିଜର ପିଲାମାନଙ୍କ ପାଇଁ କିପରି ସଂପତ୍ତି ରଖି ହେବ ଏହି ଚିନ୍ତାରେ କେତେକ ଘାରି ହୁଅନ୍ତି। ପିଲାମାନଙ୍କ ପାଇଁ ଚିନ୍ତା ଦୁଷ୍ଚିନ୍ତା ସେମାନଙ୍କୁ ସର୍ବଦା ଦୁଃଖ ଦେଉଥାଏ। ଏହା ଫଳରେ ସେମାନେ ବେଳକେ ମନ୍ଦ କାର୍ଯ୍ୟ ବି କରନ୍ତି। ଯେହେତୁ ଅଧିକାଂଶ ଲୋକ ଏହି ସାମାଜିକ ସ୍ଥିତି ଭିତରେ ରହିଛନ୍ତି ସେମାନେ ନିଜର ପରିସ୍ଥିତି ନେଇ ଲଜ୍ଜିତ ନୁହନ୍ତି। ଏପରିକି ସ୍ୱଚ୍ଛଳ ଲୋକମାନଙ୍କର ତିନି/ଚାରୋଟି ସନ୍ତାନ ରହିଥିଲେ ସେମାନେ ମଧ୍ୟ ନିଜର ଅଧିକାର କୁ ସାବ୍ୟସ୍ତ କରିବା ପାଇଁ ଆଗ୍ରହ ପ୍ରକାଶ କରନ୍ତି ନାହିଁ। ମୋଟ ଉପରେ ବହୁ ସନ୍ତାନ ବିଶିଷ୍ଟ ପରିବାର ନାନା ପ୍ରତିକୂଳ ଅବସ୍ଥାର ସମ୍ମୁଖୀନ ହୁଅନ୍ତି।

ନିଜର ପିଲାମାନଙ୍କୁ ଉପଯୁକ୍ତ କରି ମଣିଷ କରିବା ପ୍ରତ୍ୟେକଙ୍କର କର୍ତ୍ତବ୍ୟ। ଚିନ୍ତା ଦୁଷ୍ଚିନ୍ତା ଭିତରେ ପ୍ରତ୍ୟେକ ଲୋକ ସାହସର ସହ ନିଜର କାର୍ଯ୍ୟ କରିଥାନ୍ତି। ପ୍ରତ୍ୟେକ ଲୋକ ପିଲାମାନଙ୍କୁ ବଡ କରିବାରେ ଭଲ ପାଏ, କିନ୍ତୁ କେହି ଏହାର ମନ୍ଦ ଦିଗ ପ୍ରତି ଗୁରୁତ୍ୱ ଦିଏ ନାହିଁ।

Digitized by srujanika@gmail.com

ମଣିଷ ସନ୍ତାନ କାହିଁକି ଚାହେଁ ? ହୁଏତ ଶତକଡା ୫ ରୁ ୧୦ ଭାଗ ପୁରୁଷମାନେ ପତ୍ନୀମାନଙ୍କ ସହ ସହବାସ କଲାବେଳେ ସନ୍ତାନ ଆଶା କରୁଥିବେ । ସହବାସରେ ସଂପୃକ୍ତ ହେବା ନାରୀ-ପୁରୁଷର ସହଜାତ ପ୍ରବୃତ୍ତି । ଯଦିବା ପ୍ରତ୍ୟେକ ପୁରୁଷ ଏହା ଜାଣେ, ତେବେ ଯଦି କାହାକୁ ପଚରାଯାଏ ଯେ ସେ କାହିଁକି ଏତେ ସନ୍ତାନ ଜନ୍ମ କରିଛନ୍ତି ସେ କହନ୍ତି- ମୁଁ କଣ ଏଥିପାଇଁ ଦାୟୀ ? ଏହି ପ୍ରକାର ଉତ୍ତର ଶିକ୍ଷିତ ଲୋକମାନେ ଏପରିକି ଡାକ୍ତରମାନେ ବି ଦେଉଛନ୍ତି । ଏପରିକି ସମାଜର ପ୍ରତିଷ୍ଠିତ ଲୋକମାନେ ବହୁ ସନ୍ତାନ ଜନ୍ମ ପାଇଁ ପୁରୁଷକୁ ଦାୟୀ କରନ୍ତି ନାହିଁ । ସେମାନେ ଏପରି କାହିଁକି କୁହନ୍ତି ଆପଣମାନେ ଅନୁମାନ କରୁଥିବେ । କେତେକ ଅପ୍ରିୟ ମନ୍ତବ୍ୟରୁ ନିଜକୁ ମୁକ୍ତ ରଖିବାକୁ ସେମାନେ ଏପରି ପ୍ରାୟ କହିଥାନ୍ତି । ସେମାନେ ନିଜକୁ ଦୋଷମୁକ୍ତ କରିବାକୁ ଏହା କୁହନ୍ତି । ନିଜର ଅଜ୍ଞତା ପାଇଁ ସେମାନେ ଏଥିପାଇଁ ଦାୟିତ୍ୱ ନିଜ ମୁଣ୍ଡକୁ ନିଅନ୍ତି ନାହିଁ । ନିଜକୁ ଦାୟିତ୍ୱମୁକ୍ତ କରିବାକୁ ସେମାନେ ଏପ୍ରକାର କହିଥାନ୍ତି ।

ଏକ ସମୟରେ ଲୋକସଂଖ୍ୟା ନେଇ ଲୋକମାନେ ଉତ୍କଣ୍ଠା ପ୍ରକାଶ କରୁଥିଲେ । ଅତୀତରେ ଏହା ସମସ୍ୟା ଥିଲା । କିନ୍ତୁ ଆଜି ଲୋକସଂଖ୍ୟା ବୃଦ୍ଧି ଏକ ସମସ୍ୟା । ମଣିଷ ବୁଦ୍ଧି ବଳରେ ଲୋକସଂଖ୍ୟା ବୃଦ୍ଧିକୁ ରୋକିବା ପାଇଁ ବିଭିନ୍ନ ପନ୍ଥା ବାହାର କରିପାରିଛି । ସନ୍ତାନ ଜନ୍ମ କରିବା ଏବେ ଜନଗଣଙ୍କ ପାଇଁ ଅଦରକାରୀ ।

ଏକ ହଜାର ବର୍ଷ ତଳେ ବହୁ ସନ୍ତାନ ଜନ୍ମ କରିବା ମୂର୍ଖାମି ନଥିଲା । ବହୁ ସନ୍ତାନ ଜନ୍ମ ହେଉଥିଲେ, ବହୁ ସନ୍ତାନ ବି ମୃତ୍ୟୁ ମୁଖରେ ପଡୁଥିଲେ । ଆମେ ଯଦି ଭବିଷ୍ୟତ କଥା ଚିନ୍ତା କରିବା ତେବେ ଆଧୁନିକ ବିଜ୍ଞାନ ଏତେ ବିକାଶ କରିବ ଯେ ମଣିଷର ଜୀବନ କାଳ ଅଧିକ ବଢି ପାରିବ ଓ ମୃତ୍ୟୁ ହାର ବହୁତ କମିଯିବ । ଅଧିକାଂଶ ରୋଗ ପାଇଁ ଆଧୁନିକ ଚିକିତ୍ସା ଉପଲବ୍ଧ ହେବ । ଅତୀତରେ ରୋଗରେ ଲୋକମାନେ ଯେପରି ମରି ଯାଉଥିଲେ, ଏବେ ତାହାକୁ ନିୟନ୍ତ୍ରଣ କରାଯାଇ ପାରିଲାଣି । ଈଶ୍ୱର ଜନ୍ମ ଦେଉଛନ୍ତି ବା ମୃତ୍ୟୁକୁ ନିୟନ୍ତ୍ରଣ କରୁଛନ୍ତି ଏହା କହିବା ଆମ ପାଇଁ ହାସ୍ୟାସ୍ପଦ କଥା । ଶିଶୁମାନଙ୍କର ଯତ୍ନ ଏବେ ଅତି

Digitized by srujanika@gmail.com

ସହଜ ବ୍ୟାପାର ହେଲାଣି । ଶିଶୁମାନଙ୍କର କିପରି ଯତ୍ନ ନିଆଯିବ ଓ ସେମାନଙ୍କୁ କିପରି ସୁସ୍ଥ ପରିବେଶରେ ବିକଶିତ କରାଯିବ ଏ ସଂପର୍କରେ ଅଧିକରୁ ଅଧିକ ଜ୍ଞାନ ମିଳି ପାରିଲାଣି । ପିଲାମାନଙ୍କୁ ପ୍ରତିଷୋଧକ ଟୀକା ଦେଇ ସେମାନଙ୍କୁ ରୋଗମୁକ୍ତ କରାଯିବ । ଏକ୍ଷେତ୍ରରେ ଈଶ୍ୱରଙ୍କୁ ସଂପୃକ୍ତ କରିବା କେବଳ ନିର୍ବୋଧତା । ଆଧୁନିକ ଚିକିତ୍ସାର ସୁଯୋଗ ଯୋଗୁଁ ତ ଜନସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଇଚାଲିଛି ।

ଆମେ ବ୍ରିଟିଶରଙ୍କୁ ଧନ୍ୟବାଦ ଦେବା ଉଚିତ । ସେମାନେ ଆମ ଦେଶ ଶାସନ କରୁଥିବା ବେଳେ ଆଧୁନିକ ଚିକିତ୍ସା ବ୍ୟବସ୍ଥାର ପ୍ରଚଳନ ସେମାନେ କରିଥିଲେ । ସେମାନେ ମେଡିକାଲ କଲେଜ ଇତ୍ୟାଦି ସ୍ଥାପନ କରି ଚିକିତ୍ସାର ପରିବେଶ ସୃଷ୍ଟି କଲେ । ଆଧୁନିକ ଚିକିତ୍ସାର ସୁଯୋଗ ଯୋଗୁଁ ଅନେକ ଲୋକ ବହୁ ବର୍ଷ ବଞ୍ଚିପାରୁଛନ୍ତି । ଅଳ୍ପ ବର୍ଷ ମଧ୍ୟରେ ଆମ ଦେଶର ଜନସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଇଛି । ଆଧୁନିକ ଚିକିତ୍ସା ପୂର୍ବରୁ ଆମ ଦେଶରେ ଜନ୍ମ-ମୃତ୍ୟୁ ହାର ପାଖାପାଖି ସମାନ ରହୁଥିଲା । ଲୋକମାନେ ଏହାକୁ ଈଶ୍ୱରଙ୍କ ଇଚ୍ଛା ବୋଲି ବିଶ୍ୱାସ କରୁଥିଲେ ।

ସଂପ୍ରତି ଜଣେ ସାଧାରଣ ନାଗରିକର ଜୀବନ କାଳ ହାରାହାରି ୫୦ ବର୍ଷ । ଲୋକମାନେ ସହଜରେ ଚିକିତ୍ସାର ସୁବିଧା ପାଇ ପାରୁଛନ୍ତି । ହଇଜା, ବସନ୍ତ ପରି ମହାମାରୀ ରୋଗ ଗୁଡିକୁ ପ୍ରାୟତଃ ନିୟନ୍ତ୍ରଣ କରାଯାଇ ପାରିଲାଣି । ଗୋଟିଏ ସମୟରେ ଏହି ସବୁ ରୋଗ ଈଶ୍ୱରଙ୍କ ଦଣ୍ଡ ବୋଲି ଲୋକମାନେ ବିଶ୍ୱାସ କରୁଥିଲେ । ଏହାକୁ ଚିକିତ୍ସା କଲେ ଈଶ୍ୱର ଅଧିକ ଦଣ୍ଡ ଦେବେ ବୋଲି ଲୋକମାନେ ଭାବୁଥିଲେ ।

ସଂପ୍ରତି ମାଡ୍ରାସର ଜନସଂଖ୍ୟା ୩୦ ଲକ୍ଷ । ଏବେ ଯଦି କେଉଁଠି ହଇଜା ଆରମ୍ଭ ହୁଏ ତେବେ ସ୍ୱାସ୍ଥ୍ୟ ବିଭାଗର ଅଧିକାରୀ ମାନେ ଏହାକୁ ନିୟନ୍ତ୍ରଣ କରିବାକୁ ତୁରନ୍ତ ପଦକ୍ଷେପ ନେବେ, ନଚେତ ସେମାନଙ୍କୁ ଦାୟୀ କରାଯିବ । ଆମା ଦେବୀଙ୍କ ପ୍ରକୋପରୁ ହଇଜା ଆରମ୍ଭ ହେଲା ବା ଏଥିରେ କେହି ମଲେ ବୋଲି ସେ କହିପାରିବେ ନାହିଁ । ସ୍ୱାସ୍ଥ୍ୟ ବିଭାଗର ଅଧିକାରୀମାନେ ରୋଗକୁ ନିୟନ୍ତ୍ରଣ କରିବା ଓ ସକଳ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରିବା ସେମାନଙ୍କର କର୍ତ୍ତବ୍ୟ । କେଉଁଠି ହଇଜା ଆରମ୍ଭ ହେଲେ ସେମାନେ ତୁରନ୍ତ ପଦକ୍ଷେପ ନେବା ଆବଶ୍ୟକ । ସେ

Digitized by srujanika@gmail.com

ଈଶ୍ୱର, ଦେବୀଙ୍କ ପ୍ରକୋପରୁ ଏହା ହେଲା ବୋଲି କହିବେ କି? ଏହି ଦୃଷ୍ଟି ଭଙ୍ଗୀରେ ପରିବର୍ତ୍ତନ ଯୋଗୁଁ ମୃତ୍ୟୁ ହାରକୁ ଅନେକ କମାଯାଇ ପାରିଛି ।

ଏକ ଲକ୍ଷ ବର୍ଗ ଫୁଟ ଜାଗା ମୁଁ ଫୁଟକୁ ଏକ ଟଙ୍କା ଦରରେ କିଣିଥିଲି । ଏବେ ସରକାରୀ ବିଭାଗ ସେହି ଜାଗାକୁ ଏକ ବର୍ଗଫୁଟକୁ ୬୦ ଟଙ୍କା ଆକଳନ କରିଛନ୍ତି । ମୋତେ ଯଦି ବି ସରକାରୀ ଦାମରେ ଟଙ୍କା ଦିଏ ତେବେ ବି ମୁଁ ସେହି ସ୍ଥାନ ବିକ୍ରି କରିବି ନାହିଁ, ଯେହେତୁ ଜାଗାଟି ଆମର କାର୍ଯ୍ୟ ପାଇଁ ଆବଶ୍ୟକ । ଲୋକସଂଖ୍ୟା ଯେତିକି ବୃଦ୍ଧି ପାଇବ, ଜମି ପାଇଁ ଚାହିଦା ସେତିକି ବଢିବା ସହ ମୂଲ୍ୟ ବି ବହୁଗୁଣ ବୃଦ୍ଧିପାଇବ ।

ମୋ ବାପାଙ୍କ ପାଖରୁ ମୁଁ ଶୁଣିଛି ଯେ ତାଙ୍କ ସମୟରେ ଟଙ୍କାକୁ ୮ କିଲୋ ଚାଉଳ ମିଳୁଥିଲା । ଏତେ ଶସ୍ତା ଥାଇ ବି ଲୋକଙ୍କ ହାତରେ ପଇସା ନଥିଲା । ବର୍ତ୍ତମାନ ଚାଉଳ କିଲୋ ତ ୨ଟଙ୍କା ହେଲାଣି । ଏହା ଭିତରେ ଉତ୍ପାଦନ ପ୍ରାୟ ୩/୪ ଗୁଣ ବୃଦ୍ଧି ପାଇଲାଣି ।

ଜନସଂଖ୍ୟାର ବୃଦ୍ଧି ଯୋଗୁଁ ଖାଦ୍ୟ ଶସ୍ୟ ଉତ୍ପାଦନର ବୃଦ୍ଧି ପାଇଁ ଉଦ୍ୟମ ହୋଇଛି ଓ ଏହାଦ୍ୱାରା ସମାଜରେ ଦୁଃଖ ଦୁର୍ଦ୍ଦଶା ବଢିଛି । ସମାଜର ଦୁଃଖ ଦୁର୍ଦ୍ଦଶା ପାଇଁ ତ୍ରୁଟି କେଉଁଠି ରହୁଛି ? ଏଥିପାଇଁ ଲୋକମାନଙ୍କୁ ବା ଈଶ୍ୱରଙ୍କୁ ଦୋଷ ଦିଆଯିବ? ଲୋକମାନେ ଅହେତୁକ ଭାବେ ପିଲା ସଂଖ୍ୟା ବଡାଇଛନ୍ତି । ଏଥିପାଇଁ କେହି ଚିନ୍ତିତ ହୋଇ ନାହାନ୍ତି । ସଂପ୍ରତି କେତେକ ଲୋକ ଜନସଂଖ୍ୟା ବୃଦ୍ଧି ନେଇ ଗମ୍ଭୀର ଚିନ୍ତା ପ୍ରକଟ କରିବା ସହ ଜନସଂଖ୍ୟା ନିୟନ୍ତ୍ରଣ ପାଇଁ ଯୋଜନା କରୁଛନ୍ତି । ପୂର୍ବେ ଲୋକମାନେ ମନ ଇଚ୍ଛା ସନ୍ତାନ ଜନ୍ମ କରୁଥିଲେ । ସନ୍ତାନ ଜନ୍ମ ଈଶ୍ୱରଙ୍କ ଦାନ ବୋଲି ସେମାନେ ବିଶ୍ୱାସ କରୁଥିଲେ । ବର୍ତ୍ତମାନ ଏପରି ଭାବିବା ଯଥାର୍ଥ କି? ସଂପ୍ରତି ମୃତ୍ୟୁହାର ଯେହେତୁ କମିବାରେ ଲାଗିଛି ତେଣୁ ଜନ୍ମ ହାରକୁ ନିୟନ୍ତ୍ରଣ ଭିତରେ ନ ରଖିଲେ ଲୋକସଂଖ୍ୟା ହୁ ହୁ ହୋଇ ବଢି ଚାଲିବ । ଆଗାମୀ ଦିନମାନଙ୍କରେ ଲୋକଙ୍କର ଆୟୁ ମଧ୍ୟ ବଢି ଚାଲିବ ।

ମୋ କଥା ବିଚାର କରନ୍ତୁ । ମୁଁ ଚାଳିଶ ବର୍ଷ ତଳୁ ମୃତ୍ୟୁ ମୁଖରେ ପଡନ୍ତିଣି । ମୋର ଅନେକ ସାଙ୍ଗ ଏବେ ନାହାନ୍ତି । ସେମାନେ ୪୦, ୪୨ ଓ ୫୦

Digitized by srujanika@gmail.com

ବର୍ଷରେ ମରି ଯାଇଛନ୍ତି । ମୋର ବର୍ତ୍ତମାନ ବୟସ ୯୪ । ମୁଁ ଏବେ ବି ସୁସ୍ଥ ରହିଛି । ଏହା ସମ୍ଭବ ହୋଇଛି ଆବଶ୍ୟକୀୟ ଚିକିତ୍ସା ଯୋଗୁଁ । ଡାକ୍ତରମାନଙ୍କ ଚେଷ୍ଟା ଯୋଗୁଁ ମୁଁ ସୁସ୍ଥ ରହିବା ସହ ମୋର କାର୍ଯ୍ୟ କରିପାରୁଛି । ଏବେ ତ ଲୋକମାନେ ଡାକ୍ତରଙ୍କ ପରାମର୍ଶ ବାରମ୍ବାର ନେଉଛନ୍ତି ଓ ସ୍ୱାସ୍ଥ୍ୟ ପରୀକ୍ଷା ନିୟମିତ କରାଉଛନ୍ତି ।

ଯେଉଁଠି ଲୋକମାନେ ସୁବିଧାରେ ଓ ସହଜରେ ଡାକ୍ତରୀ ଚିକିତ୍ସା ପାଇ ପାରୁଛନ୍ତି ଲୋକମାନେ ଅଧିକ ଦିନ ବଞ୍ଚି ପାରୁଛନ୍ତି । ନୂଆ ନୂଆ ପ୍ରକାର ଔଷଧ ଦିନକୁ ଦିନ ପ୍ରସ୍ତୁତ ହେଉଛି ଓ ଲୋକମାନଙ୍କୁ ସହଜରେ ଉପଲବ୍ଧ ହୋଇପାରୁଛି । ଉତ୍ତମ ସ୍ୱାସ୍ଥ୍ୟ ପାଇଁ ଅନେକ ପୁଷ୍ଟିକର ଭିଟାମିନ, ଟନିକ, ଇଂଜେକସନ ଓ ବଟିକା ମିଳି ପାରୁଛି । ଏହିଥିରୁ ଭବିଷ୍ୟତ ବିଷୟ଼ ଚିନ୍ତା କରନ୍ତୁ । ଭବିଷ୍ୟତରେ ଲୋକସଂଖ୍ୟା ବଢି ଚାଲିବ । ଏଥିରେ କିପରି ଲୋକସଂଖ୍ୟାକୁ ନିୟନ୍ତ୍ରଣ ଭିତରେ ରଖାଯିବ ତାହା ଭାବନ୍ତୁ ।

ପ୍ରତ୍ୟେକ ଲୋକର ଏକ ବାସଗୃହ ସହ ଏକ ବୃତ୍ତି ଦରକାର, ଯାହାଦ୍ୱାରା ସେ ସ୍ୱାବଲମ୍ବୀ ହୋଇ ନିଜ ପରିବାରର ଖାଦ୍ୟ, ବସ୍ତ୍ର, ଶିକ୍ଷାର ସୁବିଧା କରିପାରିବ । ପରିବାର ନିୟନ୍ତ୍ରଣ ବ୍ୟତୀତ ଏହା ସମ୍ଭବ କି ? ଏହା ଯଦି ଲୋକମାନେ ଅନୁଭବ କରିବେ, ତେବେ ସେମାନେ ଗୋଟିଏ ଦୁଇଟି ସନ୍ତାନ ଭିତରେ ପରିବାରକୁ ସୀମିତ କଲେ ନିଜର ପିଲାମାନଙ୍କୁ ଭଲ ମଣିଷ କରିପାରିବେ । ସ୍ତ୍ରୀ ଲୋକଟି ମଧ୍ୟ ନିଜର ସ୍ୱାସ୍ଥ୍ୟକୁ ଭଲ ରଖିପାରିବ । ଦୁଇଟି ସନ୍ତାନ ଭିତରେ ସୀମିତ ରହି ସେ ନିଜ ପିଲାଙ୍କର ଉପଯୁକ୍ତ ଯତ୍ନ ନେଇପାରିବ । ପିଲାମାନଙ୍କୁ ଏହାଦ୍ୱାରା ଭଲ ଖାଦ୍ୟ, ପୋଷାକ ଓ ଶିକ୍ଷା ଦିଆଯାଇ ପାରିବ । ଜନସଂଖ୍ୟା ନିୟନ୍ତ୍ରଣ ହୋଇପାରିଲେ ସରକାରୀ ଯୋଜନାର ସୁଫଳ ମିଳିପାରିବ । ଏକ ଜନମଙ୍ଗଳକାରୀ ରାଷ୍ଟ୍ରର ଲକ୍ଷ୍ୟ ପୂରଣ ହୋଇପାରିବ । ଏଥିପାଇଁ ସରକାର ପରିବାର ନିୟୋଜନ ଉପରେ ଏତେ ପ୍ରାଧାନ୍ୟ ଦେଉଛନ୍ତି ।

ଯେତେବେଳେ ଜନସଂଖ୍ୟାର ବୃଦ୍ଧି ଏକ ଗୁରୁତର ସମସ୍ୟା ହୋଇ ନଥିଲା ସେତେବେଳେ ସରକାର ପରିବାର ନିୟୋଜନ ନେଇ ଏକ୍ଷେତ୍ରରେ କୌଣସି

Digitized by srujanika@gmail.com

ଯୋଜନା କାର୍ଯ୍ୟକାରୀ କରୁ ନଥିଲେ। ଏହି ସମସ୍ୟା ନେଇ ମୁଁ ପ୍ରଥମେ ଚିନ୍ତା କଲି ଓ ପ୍ରାୟ ୩୦ ବର୍ଷ ତଳେ ପରିବାର ନିୟୋଜନ ବିଷୟରେ ପୁସ୍ତକଟିଏ ଲେଖିଲି। ମୁଁ ଯେତେବେଳେ ପରିବାର ନିୟନ୍ତ୍ରଣ ବିଷୟରେ କହିଲି କେତେକ ଲୋକ ଅତ୍ୟନ୍ତ ବିରକ୍ତି ପ୍ରକାଶ କଲେ। ମୁଁ ଯେ ବାଜେ କଥା କହୁଛି ଏହା କେତେକ ଲୋକ ମୋ ପ୍ରତି ଆକ୍ଷେପ କଲେ। ପରିବାର ନିୟନ୍ତ୍ରଣ କାହିଁକି ଆବଶ୍ୟକ ମୁଁ ଏହା କହିବାରୁ କେତେକ ରକ୍ଷଣଶୀଳ ଧାର୍ମିକ ଲୋକ ମୋର କଟୁ ସମାଲୋଚନା କଲେ। ଖ୍ରୀଷ୍ଟିୟାନ, ମୁସଲମାନ ସବୁ ଧର୍ମର ଲୋକ ମୋ ବିରୁଦ୍ଧରେ ବିଦ୍ୱେଷମୂଳକ କଥା କହିଲେ। ମୁଁ ସେମାନଙ୍କ ମନ୍ତବ୍ୟରେ ବିବ୍ରତ ହେଲି ନାହିଁ। ମୁଁ ଭବିଷ୍ୟତ ନେଇ ଲୋକମାନଙ୍କୁ ସଚେତନ କରିବାକୁ ମୋର ପ୍ରୟାସ ଜାରି ରଖିଲି। ୧୯୫୦ ମସିହା ପର୍ଯ୍ୟନ୍ତ ମୋ କଥାର ତାତ୍ପର୍ଯ୍ୟ ଲୋକମାନେ ଉପଲବ୍ଧି କରି ନଥିଲେ। ମୋ କଥା ପ୍ରତି ଲୋକମାନେ କୌଣସି ଧ୍ୟାନ ଦେଉ ନଥିଲେ। ଏବେ ଲୋକମାନେ ଧୀରେ ଧୀରେ କ୍ଷୁଦ୍ର ପରିବାରର ମହତ୍ତ୍ୱ ବିଷୟରେ ଉପଲବ୍ଧି କରିବାକୁ ଆରମ୍ଭ କରିଛନ୍ତି।

ଜନସଂଖ୍ୟାକୁ ନିୟନ୍ତ୍ରଣ କରିବାକୁ ଆମେ ଯଦି ଉଦ୍ୟମ କରିବା ନାହିଁ ତେବେ ଭବିଷ୍ୟତରେ ବହୁ ଗୁରୁତର ସମସ୍ୟା ମୁଣ୍ଡ ଟେକିବ। ଲୋକମାନେ ସୁଖରେ ଓ ସାଧୁତାର ସହ ଜୀବନ ନିର୍ବାହ କରିପାରିବେ ନାହିଁ। ଦାରିଦ୍ର୍ୟ ବଢିଚାଲିବ। ଲୋକମାନଙ୍କୁ ପରିବାରର ଆବଶ୍ୟକତା ପୂରଣ ପାଇଁ ଯଥେଷ୍ଟ ଦରମା ଦିଆଯାଇ ପାରିବ ନାହିଁ। ଆପଣଙ୍କର ଦୁଇଟି ସନ୍ତାନ ଥାଆନ୍ତୁ କି ଆଠଟି ସନ୍ତାନ ଥାଆନ୍ତୁ ଆପଣଙ୍କୁ ନିଜର ଉପାର୍ଜନ ଭିତରେ ସେମାନଙ୍କର ଆବଶ୍ୟକତାକୁ ପୂରଣ କରିବାକୁ ହେବ। ବହୁ ସନ୍ତାନ ବିଶିଷ୍ଟ ପରିବାର ହୋଇଥିଲେ ଆପଣଙ୍କର ସମସ୍ୟା ବଢି ଚାଲିବ। ଆପଣ ଅନ୍ୟ ଉପରେ ଅଧିକରୁ ଅଧିକ ନିର୍ଭରଶୀଳ ହେବେ।

ଜଣେ ବ୍ୟକ୍ତିଙ୍କର ଏକ ଭିନ୍ନ ସ୍ଥାନକୁ ବଦଳି ହେଲେ ସେ ଯିବା ପାଇଁ ଇଚ୍ଛା ପ୍ରକାଶ କରନ୍ତି ନାହିଁ। ସେ କହନ୍ତି- ମୋର ଗୁଡିଏ ପିଲା। ପିଲାମାନଙ୍କୁ ଛାଡି ମୁଁ କିପରି ଯିବି ! ମୋର ସ୍ତ୍ରୀ ଗର୍ଭବତୀ ଅଛନ୍ତି। ମୁଁ ସେଥିରେ କିପରି ଯାଇପାରିବି? ମୁଁ ଗଲେ ମୋର ପରିବାରର ବହୁ ଅସୁବିଧା ହେବ।" ଏହି ପରି ଅନେକ କର୍ମଚାରୀ କହିଥାନ୍ତି। ଏକ୍ଷେତ୍ରରେ ସରକାର କ'ଣ କରିବେ!

Digitized by srujanika@gmail.com

ସବୁଥିରେ ସରକାରଙ୍କୁ ଦୋଷ ଦିଆଯାଏ । ତେଣୁ ଅବିଚାରିତ ଭାବରେ ନିଜର ପିଲାସଂଖ୍ୟା ବଢାଇବା ଦ୍ୱାରା ପରିବାରରେ ନାନା ସମସ୍ୟା ଆସିଥାଏ । ଲୋକମାନେ ଆତ୍ମ ସମ୍ମାନ ହରାଇ ସମସ୍ତ ଅସମ୍ମାନକୁ ମୁଣ୍ଡ ପାତି ସହ୍ୟ କରନ୍ତି । ଏକ୍ଷେତ୍ରରେ ଆମର ନିର୍ବୋଧତାକୁ ଆମେ ଦାୟୀ କରିବା ଆବଶ୍ୟକ ।

ଲୋକମାନେ ପୁଅଟିଏ କାମନା କରନ୍ତି । ତାଙ୍କର ବିଶ୍ୱାସ ପୁଅଥିଲେ ସେ ମୃତ୍ୟୁରେ ମୁଖାଗ୍ନି ଦେବ । ପୁଅ ଥିଲେ ମୃତ ବାପାର କ୍ରିୟା କର୍ମ କରିବ । କେତେକ ଜାତିରେ ଯେଉଁମାନଙ୍କର ସନ୍ତାନ ନାହିଁ ସେମାନଙ୍କୁ ପାପୀ ବୋଲି ଧରାଯାଏ । ଏପରିକି ନିସନ୍ତାନ ପରିବାରରେ କେତେକ ଖାଇବାକୁ ଇଚ୍ଛା ପ୍ରକାଶ କରନ୍ତି ନାହିଁ, ସେହି ପରିବାରରେ ଖାଦ୍ୟ ଗ୍ରହଣ କରିବା ପାପ ବୋଲି ସେମାନେ ଭାବନ୍ତି । ସନ୍ତାନ ନଥିଲେ ପରିବାର ନର୍କଗାମୀ ହେବ ବୋଲି କେତେକ ବ୍ୟକ୍ତି ଲୋକମାନଙ୍କୁ ଧାରଣା ଦେଇଥାନ୍ତି । ଏହି ସବୁ ମୂର୍ଖତା ଓ ବିଚାରହୀନତା ଯୋଗୁଁ ଆମ ସମାଜ ନାନା ଦୁଃଖରେ ଘାଣ୍ଟି ହୋଇ ରହିଛି ।

କିଛି ଲୋକଙ୍କର ଅଭାବ ନାହିଁ । ତେବେ ସେମାନଙ୍କର ସଂଖ୍ୟା ଜନସଂଖ୍ୟାର ପାଞ୍ଚ ଭାଗରୁ ଭାଗେ ବି ହେବନାହିଁ । ଅନେକ ଲୋକ ମୂଲ କରି, ଶଗଡ ଟାଣି, ଶାରୀରିକ ଶ୍ରମ କରି ଅତି କଷ୍ଟରେ ଜୀବନ ବଞ୍ଚନ୍ତି । ତେବେ ବିବାହ ପରେ ସେମାନେ ପ୍ରତି ବର୍ଷ ସନ୍ତାନ ଜନ୍ମ କରି ଚାଲନ୍ତି । ଭବିଷ୍ୟତ ନେଇ ସେମାନଙ୍କର କୌଣସି ଲକ୍ଷ୍ୟ ନଥାଏ । ପିଲା ହେବା ନ ହେବା ଈଶ୍ୱରଙ୍କ ଇଚ୍ଛା ବୋଲି ସେମାନେ ଭାବନ୍ତି । ମୁଁ ଯେତେବେଳେ ସେମାନଙ୍କୁ କହେ ଆପଣଙ୍କର ରୋଜଗାର ବିଷୟରେ ଭଗବାନ ଜାଣନ୍ତି କି ନାହିଁ, ଆପଣଙ୍କର ଅଧିକ ପିଲା ପାଇଁ ଆପଣଙ୍କୁ ଈଶ୍ୱର ଅଧିକ କିଛି ରୋଜଗାର ଦେବେ କି, ସେମାନେ ଅଧିକ ପିଲା ପାଇଁ ସେମାନଙ୍କ ପତ୍ନୀମାନଙ୍କୁ ଦୋଷ ଦେଇଥାନ୍ତି । କେତେକ ନିଜର ଶାଶୁଙ୍କୁ ବି ଦୋଷ ଦେଇଥାନ୍ତି । ଏହି ସବୁ କଥାରେ ଆମେ ଲଜ୍ଜିତ ହେବା ଉଚିତ । ଜନସଂଖ୍ୟାକୁ ଅବିଚାରିତ ଭାବେ ବଢାଇ ଚାଲିବାଦ୍ୱାରା ସମାଜର କିଛି ମଙ୍ଗଳ ହେବ କି? ଅଧିକ ଜନସଂଖ୍ୟା ବହୁଳ ରାଷ୍ଟ୍ରମାନେ ପଛୁଆ ହୋଇ ରହିଛନ୍ତି । ଅଧିକ ସନ୍ତାନ ଥିବା ପରିବାରର ଲୋକମାନେ ନାନା ଅସୁବିଧା ଭୋଗ କରନ୍ତି ।

Digitized by srujanika@gmail.com

ସମାଜର ହିତସାଧନ ପାଇଁ ଜନସଂଖ୍ୟାର ବୃଦ୍ଧିକୁ ନିୟନ୍ତ୍ରଣ କରାଯିବା ଦରକାର। ଲୋକମାନେ ଅଧିକ ସନ୍ତାନ ଜନ୍ମ କରିବା ପାଇଁ ଆଗ୍ରହ ପ୍ରକାଶ କରିବା ଯଥାର୍ଥ ନୁହେଁ। ଲୋକମାନେ ସମାଜର ହିତ ଓ ରାଷ୍ଟ୍ରର ବିକାଶ ବିଷୟରେ ଚିନ୍ତା କରିବା ଆବଶ୍ୟକ। ନାନା ପ୍ରଚାର ମାଧ୍ୟମରେ ଏଥିପାଇଁ ଲୋକମାନଙ୍କୁ ସଚେତନ କରାଯିବା ଆବଶ୍ୟକ। ଦୁଇଟି ସନ୍ତାନ ଭିତରେ ସନ୍ତୁଷ୍ଟ ରହିବା ପାଇଁ ଆମେ ଲୋକମାନଙ୍କୁ ଶିକ୍ଷା ଦେବା ଉଚିତ। ତୃତୀୟ ସନ୍ତାନ ପାଇଁ ଆଗ୍ରହ ପ୍ରକାଶ କରୁଥିବା ଲୋକଙ୍କ ପ୍ରତି କୌଣସି ଅନୁକଂପା ପ୍ରଦର୍ଶନ କରିବା ଠିକ୍ ନୁହେଁ।

ବିବାହ କ୍ଷେତ୍ରରେ ଆମ ସମାଜରେ କଟକଣା ନାହିଁ। ବିବାହ ପାଇଁ ଓ ସନ୍ତାନ ଜନ୍ମ କରିବା କ୍ଷେତ୍ରରେ କୌଣସି ପ୍ରତିବନ୍ଧକ ସମାଜରେ ନାହିଁ। ଏହି ସ୍ଥିତିରେ ଝିଅମାନଙ୍କର ବିବାହ ବୟସକୁ ୨୨ ବର୍ଷ କରିବାକୁ ସରକାର ଆଇନ କରିବା ଆବଶ୍ୟକ। ଏହାଦ୍ୱାରା ଜନସଂଖ୍ୟାର ନିୟନ୍ତ୍ରଣ କିଛି ହୋଇ ପାରିବ। ଏହାଦ୍ୱାରା ଝିଅମାନେ ଶିକ୍ଷା ଲାଭ ସହ ନିଜର, ପରିବାରର ଓ ସମାଜର ହିତସାଧନ କରିପାରିବେ। ଝିଅମାନେ ସମାଜର ବିଭିନ୍ନ ସ୍ତରରେ କାର୍ଯ୍ୟ କରିପାରିବେ। ଆମ ସମାଜରେ ମହିଳାମାନେ ପିଲା ଜନ୍ମ କରିବା, ରୋଷାଇ କରିବା ଓ ସ୍ୱାମୀମାନଙ୍କର ସେବା କରିବା କାର୍ଯ୍ୟରେ କେବଳ ସଂପୃକ୍ତ। ଏହାଦ୍ୱାରା ଆମର ବିକାଶ ନାନା ଭାବେ ବାଧାପ୍ରାପ୍ତ ହେଉଛି। ଆମର ଅଧିକାଂଶମହିଳା ନିଜର ଏହି କାର୍ଯ୍ୟ ଛଡା ବାହାର ଜଗତ ବିଷୟରେ କିଛି ଜାଣନ୍ତି ନାହିଁ।

ସବୁ କଥା ଇଶ୍ୱର କରୁଛନ୍ତି ଓ ମଣିଷ ହାତରେ କିଛି ନାହିଁ- ଏହି ଭାବନାରୁ ଆମର ଲୋକମାନେ ମୁକ୍ତ ହେବା ଆବଶ୍ୟକ। ମଣିଷ ନିଜର ବୁଦ୍ଧି ଖଟାଇ କାର୍ଯ୍ୟ କରିବା ଉଚିତ। ଯେଉଁମାନେ ଭାବନ୍ତି ଯେ ମଣିଷ ହାତରେ କିଛି ନାହିଁ, ସବୁ ଇଶ୍ୱରଙ୍କ ଇଚ୍ଛାରେ ପରିଚାଳିତ ହେଉଛି ମୋର ସେମାନଙ୍କୁ ଗୋଟିଏ କଥା କହିବାର ଅଛି। ଆଗାମୀ ଦିନରେ ପୁରୁଷମାନଙ୍କର ଶୁକ୍ରାଣୁ ଓ ମହିଳାଙ୍କର ଡିମ୍ବାଣୁକୁ ନେଇ ଟେଷ୍ଟ ଟିଉ ଜରିଆରେ ସନ୍ତାନ ସୃଷ୍ଟି କରାଯାଇ ପାରିବ। ଏଥିପାଇଁ ହୁଏତ ଜଣେ ମହିଳାଙ୍କୁ ଦଶମାସ ଧରି ଗର୍ଭ ଧାରଣ କରିବାକୁ ପଡିବ ନାହିଁ। ଜଣେ ମହିଳାଙ୍କୁ ଗର୍ଭଧାରଣ କ୍ଷେତ୍ରରେ ବା ପ୍ରସବପରେ ଯେଉଁ ବିପଦର ସମ୍ଭାବନା

Digitized by srujanika@gmail.com

ଥାଏ ତାହାକୁ ଅକ୍ଳେଶରେ ଦୂର କରାଯାଇ ପାରିବ । ଜଣେ ମହିଳା ପ୍ରସବ ଯନ୍ତ୍ରଣା ସହିବା ବା ଡାକ୍ତରଖାନା ଯାଇ ପ୍ରସବ କରିବା ଆବଶ୍ୟକ ହେବ ନାହିଁ । ଆଧୁନିକ ବିଜ୍ଞାନର ବିକାଶ ଏଥିପାଇଁ ନୂତନ ପନ୍ଥା ହୁଏତ ବାହାର କରିବ । ସହବାସ ବ୍ୟତୀତ ସନ୍ତାନ ଜନ୍ମ ହୁଏତ ଭବିଷ୍ୟତରେ ସମ୍ଭବ ହେବ । ମୁଁ ଏହା ୧୯୩୮ ମସିହାରେ ଲେଖିଥିଲି । ବୁଦ୍ଧିମାନ, ନିରୋଗ ଓ ସୁନ୍ଦର ସ୍ୱାସ୍ଥ୍ୟ ଥିବା ପୁରୁଷଙ୍କଠାରୁ ଶୁକ୍ରାଣୁ ନିଆଯାଇ ସେହିପରି ବୁଦ୍ଧିମାନ, ନିରୋଗ ଓ ସ୍ୱାସ୍ଥ୍ୟବାନ ମହିଳାଙ୍କୁ ଇଂଜେକସନ ଦିଆଯିବ । କେତେକ ପ୍ରାଣୀ କ୍ଷେତ୍ରରେ ଯେପରି ଡିମ୍ବରୁ କୃତ୍ରିମ ପଦ୍ଧତିରେ ଛୁଆ ସୃଷ୍ଟି କରାଯାଉଛି ମଣିଷ ପାଖରେ ତାହା ବି ସମ୍ଭବ ହେବ । କୁକୁଡା ଅଣ୍ଡାରୁ ଛୁଆ ବାହାର କରିବାକୁ ମା କୁକୁଡା ୨୦ ଦିନ ଅଣ୍ଡାକୁ ଉଷୁମ କରିବା ଆବଶ୍ୟକ ନାହିଁ, ଏହାକୁ ମେସିନ ସାହାଯ୍ୟରେ କରାଯାଇ ପାରୁଛି ।

ଲୋକମାନଙ୍କୁ ଶିକ୍ଷିତ କରିବାକୁ ଆମେ ପ୍ରୟାସ କରିବା ଆବଶ୍ୟକ । ନିରକ୍ଷରତା ଯୋଗୁଁ ଆମର ଲୋକମାନେ ଅନ୍ଧକାର ଭିତରେ ରହିଛନ୍ତି । ବାହାର ଦୁନିଆଁରେ କଣ ବିକାଶ ହୋଇଛି ସେ ବିଷୟରେ ଆମର ଲୋକମାନେ ସଚେତନ ହେବାକୁ ହେଲେ ସେମାନଙ୍କର ଶିକ୍ଷା ଆବଶ୍ୟକ । ଆମର ଲୋକମାନେ ବହୁ ଠାକୁର, ସେମାନଙ୍କର ଜନ୍ମ, ପରିବାର ଓ ସେମାନଙ୍କର କାହାଣୀ ବିଷୟରେ ବେଶ୍ ସଚେତନ । ଏହି ସବୁ ବିଶ୍ୱାସ ଯୋଗୁଁ ସେମାନେ କୁସଂସ୍କାର ଭିତରେ ବୁଡି ରହିଛନ୍ତି । ଲୋକଙ୍କର କୁସଂସ୍କାରକୁ ଦୂର କରିବାକୁ ପ୍ରଯତ୍ନ ଆବଶ୍ୟକ । ଲୋକମାନଙ୍କୁ ଏହି ଶିକ୍ଷା ଦିଆଯିବା ଦରକାର ଯେ କେଉଁ ଈଶ୍ୱର ସର୍ବଶକ୍ତିମାନ ନୁହନ୍ତି । କେଉଁ କଳ୍ପିତ ଦିଅଁ ଦେବତା ଆମକୁ ସୁରକ୍ଷା ଦେବେ ବା ସାହାଯ୍ୟ କରିବେ ଭାବିବା ନିରର୍ଥକ । କେଉଁ ଠାକୁର ଆର୍ତ୍ତ ମଣିଷର କଥା ଶୁଣେ ନାହିଁ । କଳ୍ପିତ ଦିଅଁ ଦେବତାରେ ବିଶ୍ୱାସ କରିବା ନିରର୍ଥକ । ଯେଉଁମାନେ ଏତେ ଦିଅଁ ଦେବତା ସୃଷ୍ଟି କରିଛନ୍ତି ସେମାନେ ମଣିଷ ଜାତିକୁ ସାହାଯ୍ୟ କରିବାକୁ ଜଣେ ହେଲେ ଈଶ୍ୱରଙ୍କୁ ସୃଷ୍ଟି କରିନାହାନ୍ତି । ସେମାନେ ନିଜର ମଙ୍ଗଳ ପାଇଁ ଧର୍ମ, ଧର୍ମାନୁଷ୍ଠାନ, ଉଦ୍ଭଟ ସାହିତ୍ୟ ଓ ଅର୍ଥହୀନ ଧର୍ମୀୟ କର୍ମକାଣ୍ଡ ସୃଷ୍ଟି କରିଛନ୍ତି । ଯଦି କୌଣସି ଈଶ୍ୱର ଆମର ମଙ୍ଗଳ ସାଧନ କରୁଛନ୍ତି ଆମେ ତାଙ୍କୁ ସ୍ୱାଗତ କରିବା ଉଚିତ୍ । ତେବେ ଏ

Digitized by srujanika@gmail.com

ସବୁ କେବଳ ବିଶ୍ୱାସ । କେବଳ ବିଶ୍ୱାସ ଆଧାରରେ ଆମେ କାହିଁକି କେଉଁ ଦିଅଁ ଦେବତାଙ୍କୁ ଗ୍ରହଣ କରିବା ?

ଯଦି କେହି ଏ କ୍ଷେତ୍ରରେ ସନ୍ଦେହ ବ୍ୟକ୍ତ କରେ ବା କୌତୂହଳୀ ହୋଇ ପ୍ରଶ୍ନ ପଚାରେ ତେବେ ତାଙ୍କୁ ନିରୀଶ୍ୱରବାଦୀ କୁହାଯାଏ । ଏହାଦ୍ୱାରା ଲୋକମାନେ କେତେକ ବିଶ୍ୱାସକୁ ଅନ୍ଧାନୁକରଣ କରନ୍ତି । ଲୋକମାନେ କୁସଂସ୍କାର ଜନିତ ଅନ୍ଧବିଶ୍ୱାସରୁ ମୁକ୍ତ ହୋଇପାରୁ ନାହାନ୍ତି । ସମାଜରେ ଏ ବିଷୟରେ ସାମାନ୍ୟ ମାତ୍ର ସଚେତନତା ସୃଷ୍ଟି ହୋଇଛି । ଆସ୍ତେ ଆସ୍ତେ ଲୋକମାନେ ପ୍ରଶ୍ନ ପଚାରିବାକୁ ଆରମ୍ଭ କଲେଣି । ବିଚାରଶୀଳ ଦୃଷ୍ଟି ସମାଜରେ ପ୍ରସାର ଲାଭ କରିବାକୁ ଯାଉଛି । ଆମର ହେତୁବାଦୀ ଆନ୍ଦୋଳନ ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଅଛି । କାଳକ୍ରମେ ଏହା ଶକ୍ତିଶାଳୀ ହେବାରେ ଲାଗିଛି ।

ତେବେ ମୁଁ ଯାହା କହୁଛି ଲୋକମାନେ ତାକୁ ଗ୍ରହଣ କରନ୍ତୁ ମୁଁ ଏହା ଚାହୁଁନାହିଁ । ମୁଁ ଚାହୁଁଛି ଲୋକମାନେ ନିଜେ ଚିନ୍ତା କରନ୍ତୁ । ମୁଁ ଯାହା କହୁଛି ଯଦି ସେଥିରେ ସତ୍ୟତା ଥାଏ ବୋଲି ସେମାନଙ୍କର ହୃଦବୋଧ ହେଉଛି, ତେବେ ତାହା ସେମାନେ ଗ୍ରହଣ କରନ୍ତୁ । ମୋତେ କେହି ଅନ୍ଧାନୁକରଣ କରିବା ମୁଁ ଆଦୌ ଚାହେଁ ନାହିଁ । ଆପଣମାନେ ସମସ୍ତେ ବିଚାର କରିପାରିବେ । ସତ୍ୟ କଣ ଓ ଆମ ପାଇଁ କଣ ହିତକର ସେ ବିଷୟରେ ଆପଣମାନେ ଚିନ୍ତାକରି ଦେଖନ୍ତୁ ।

ପରିବାର ନିୟୋଜନ ଯେ ଏକ ଆବଶ୍ୟକତା ଏହାକୁ ଲୋକମାନେ ଅନୁଭବ କରିବା ଦରକାର । ଆମର ଜନସଂଖ୍ୟା ବୃଦ୍ଧି ଯଦି ନିୟନ୍ତ୍ରିତ ନ ହୁଏ ତେବେ ଆମ ରାଷ୍ଟ୍ର ବିକଶିତ ହୋଇପାରିବ ନାହିଁ । ପରିବାର ନିୟୋଜନ ପାଇଁ ଲୋକମାନଙ୍କୁ ସଚେତନ କରିବାକୁ, ବିଶେଷକରି ସମାଜର ନିରକ୍ଷର ଲୋକମାନଙ୍କୁ ଏକ୍ଷେତ୍ରରେ ସଚେତନ କରିବାକୁ ନିଷ୍ଠାପର ଉଦ୍ୟମ ଦରକାର ।

## ଈଶ୍ୱର ପ୍ରାଚୀନ ଲୋକଙ୍କର ମନଗଢା ସୃଷ୍ଟି :-

ଈଶ୍ୱର, ଧର୍ମ, ଧର୍ମଗ୍ରନ୍ଥ ଓ ପ୍ରାଚୀନ ଲୋକମାନଙ୍କର ଶାସ୍ତ୍ର ଇତ୍ୟାଦିକୁ ମୁଁ କାହିଁକି କେବେ ଓ କିପରି ଅସତ୍ୟ ମନେକରି ବିରୋଧ କରୁଛି? ଏଗୁଡିକ ଦୁଇ

Digitized by srujanika@gmail.com

ହଜାର ତିନି ହଜାର ବର୍ଷ ତଳେ ମଣିଷଦ୍ୱାରା ସୃଷ୍ଟି କରାଯାଇଥିଲା । ସେତେବେଳେ ମଣିଷ ସଭ୍ୟତା ଆଦିମ ସ୍ତରରେ ରହିଥିଲା । ସେହି ସମୟରେ ବିଜ୍ଞାନ ସମ୍ବନ୍ଧୀୟ ଜ୍ଞାନ ଆରମ୍ଭ ହୋଇନଥିଲା । ସାମାଜିକ ବିକାଶ, ପ୍ରଗତି ଇତ୍ୟାଦିର କୌଣସି ଭାବନା ବିଷୟରେ ଲୋକମାନେ ପୂରା ଅଜ୍ଞ ରହିଥିଲେ ।

ବିଭିନ୍ନ ପୁରାଣ ଓ ଧର୍ମୀୟ କାହାଣୀ ଗୁଡିକରୁ ଏହାର ପ୍ରମାଣ ମିଳିଥାଏ । ଧାର୍ମିକ ମାନସିକତାରୁ ସୃଷ୍ଟ ଅଜ୍ଞତା ଭିତରେ ଏବେବି ସମାଜର ଶତକଡା ନବେ ଭାଗ ଲୋକ ରହିଛନ୍ତି । ଅନେକ ପଣ୍ଡିତ, ଭାଷା ଶିକ୍ଷକ, ଏପରିକି ବି.ଏ., ଏମେ.ଏ. ଓ ଡକ୍ଟରେଟ ପାଇଥିବା ଲୋକମାନେ ନାନା ଧାର୍ମିକ କୁସଂସ୍କାରରେ ବିଶ୍ୱାସ କରନ୍ତି । ସେମାନେ କୁସଂସ୍କାରରେ ବିଶ୍ୱାସ କରିବା ସହ ସେସବୁ ନିଜ ଜୀବନରେ ପାଳନ କରନ୍ତି । ଭକ୍ତିଭାବ ବୋଲି ଯାହା କୁହାଯାଉଛି ତାହା ପ୍ରାଚୀନ ଲୋକଙ୍କର କେତେକ ଆଧାରହୀନ ବିଶ୍ୱାସ ଉପରେ ଆସ୍ଥାସ୍ଥାପନ କହିଲେ ଅତ୍ୟୁକ୍ତି ହେବନାହିଁ । ପୂଜାପାଠ, ପର୍ବପର୍ବାଣୀ, ପବିତ୍ର ଦିନ କେବଳ ଆମର କଳ୍ପନା ଆଧାରିତ । ଆଜିର ଯୁଗରେ ଲୋକମାନେ ଯଦି ଏତେ ଧାର୍ମିକ କୁସଂସ୍କାରରେ ବିଶ୍ୱାସ କରୁଛନ୍ତି ତେବେ ଦୁଇତିନି ହଜାର ବର୍ଷ ତଳେ କେତେ କୁସଂସ୍କାର ସମାଜରେ ରହିଥିବ ଓ ଲୋକମାନେ କେତେ ଅସଭ୍ୟ ସ୍ତରରେ ଥିବେ ତାହା ବେଶ୍ ଅନୁମେୟ ।



Digitized by srujanika@gmail.com

# ୧ . ଫଳିତ ଜ୍ୟୋତିଷ

ଫଳିତ ଜ୍ୟୋତିଷ ଜାତକ ପ୍ରସ୍ତୁତି , ଭଲ ମନ୍ଦ ସମୟ ନିରୂପଣ ଓ ଭବିଷ୍ୟ କଥନ ସହ ନିବିଡ ଭାବେ ସଂପୃକ୍ତ । ଜ୍ୟୋତିଷମାନେ ଆମର ଭବିଷ୍ୟତ , ବର୍ତ୍ତମାନ ଓ ଅତୀତର ଘଟଣା ଜାଣିବାକୁ ସମର୍ଥ ବୋଲି ବିଶ୍ୱାସ କରାଯାଏ । ହେତୁବାଦୀମାନେ ଫଳିତ ଜ୍ୟୋତିଷର ମୂଲ୍ୟାୟନ କଲାବେଳେ ଏହା ଧର୍ମ ସହିତ ଅନେକାଂଶରେ ସଂଶ୍ଳିଷ୍ଟ ଥିବା ଦେଖନ୍ତି । କାରଣ ଧର୍ମ ଯେପରି ଅନେକ କୁସଂସ୍କାର ସହିତ ସଂପୃକ୍ତ , ଫଳିତ ଜ୍ୟୋତିଷ ମଧ୍ୟ ସେହିପରି କୁସଂସ୍କାର ସହ ସଂପୃକ୍ତ । ଜ୍ୟୋତିଷ ବିଦ୍ୟାରେ ଗ୍ରହ , ନକ୍ଷତ୍ର , ତିଥି , ଶୁଭଦିନ ଇତ୍ୟାଦିକୁ ଗୁରୁତ୍ୱ ଦିଆଯାଏ ଓ ଏସବୁ ସହ ଅନେକ କାହାଣୀ ଓ କିମ୍ବଦନ୍ତୀ ଜଡିତ । ସେହିପରି ହିନ୍ଦୁ ପୁରାଣ ମାନଙ୍କରେ ଅନେକ କାହାଣୀ ଓ କିମ୍ବଦନ୍ତୀର ବର୍ଣ୍ଣନା ଦେଖିବାକୁ ମିଳେ । କେତେକ ଗ୍ରହ , ନକ୍ଷତ୍ର ସହିତ ଯେଉଁ କଥା ବା ଲକ୍ଷଣ ସଂଯୁକ୍ତ କରାଯାଏ ସେସବୁକୁ କାଳ୍ପନିକ , ପୌରାଣିକ କାହାଣୀ ମାନଙ୍କରୁ ନିଆଯିବା ଦେଖାଯାଏ ।

**ଆତ୍ମା ସହ ସଂପର୍କ:**

କେଉଁ କେଉଁ ଧର୍ମରେ ଗ୍ରହ , ନକ୍ଷତ୍ର ଓ କେତେକ ଦିନ ସହ କାଳ୍ପନିକ ଲକ୍ଷଣ ସଂଯୁକ୍ତ କରାଯାଏ ଓ ଅନ୍ୟ ଧର୍ମରେ ଏହା କରାଯାଏ ନାହିଁ । ହିନ୍ଦୁଧର୍ମରେ ଫଳିତ ଜ୍ୟୋତିଷ ଆତ୍ମା , ପୁନର୍ଜନ୍ମ , କର୍ମ , ଭାଗ୍ୟ , ପାପ , ପୁଣ୍ୟ ଭାବନା ସହ ଜଡିତ । ଏସବୁ ଗୁଡିକ କେବଳ କଳ୍ପନା ମାତ୍ର ।

କେତେକ ଧର୍ମ ଫଳିତ ଜ୍ୟୋତିଷରେ ବିଶ୍ୱାସ କରନ୍ତି ନାହିଁ । ଏପରିକି କେତେକ ଧର୍ମ-ପ୍ରବକ୍ତାମାନେ ଫଳିତ ଜ୍ୟୋତିଷକୁ ନିରୀଶ୍ୱରବାଦ ସହ ସଂଯୁକ୍ତ କରିଥାନ୍ତି । ବର୍ତ୍ତମାନ ସୁଦ୍ଧା ଜ୍ୟୋତିଷ ମାନଙ୍କର ଗଣନା ବା ଭବିଷ୍ୟ କଥନକୁ କୌଣସି ବୈଜ୍ଞାନିକ ଗୁରୁତ୍ୱ ଦିଅନ୍ତି ନାହିଁ କିମ୍ବା ଫଳିତ ଜ୍ୟୋତିଷର ଭବିଷ୍ୟ କଥନ ବୈଜ୍ଞାନିକ ସିଦ୍ଧାନ୍ତର ସମୀପବର୍ତ୍ତୀ ମଧ୍ୟ ନୁହେଁ । ଏପରିକି ସାମୁଦ୍ରିକ

Digitized by srujanika@gmail.com

ହସ୍ତରେଖା ଗଣନା, ମୁଖ ବା ଶରୀରର ଅଙ୍ଗ ଭଙ୍ଗୀ ଦେଖି ସ୍ୱଭାବ କହିବା ବା ଭବିଷ୍ୟତର ପୂର୍ବ ସୂଚନା ଦେବା ବିଜ୍ଞାନ ସ୍ତରରେ ଗ୍ରହଣ ଯୋଗ୍ୟ ହୋଇ ନାହିଁ ।

**ବିଜ୍ଞାନର ଅସ୍ୱୀକାର:**

ଯଦି ଫଳିତ ଜ୍ୟୋତିଷ କ୍ଷେତ୍ରରେ କୌଣସି ସତ୍ୟତା ରହିଥାନ୍ତା କିମ୍ବା ଯଦି ଏହା ମାନବଜାତିର କୌଣସି ହିତ ସାଧନ କରୁଥାନ୍ତା, ତେବେ ବିଜ୍ଞାନ ଏହାକୁ ଗୁରୁତ୍ୱ ଦେଇଥାନ୍ତା । ଯେଉଁ ମହାନ ବୈଜ୍ଞାନିକମାନେ ରେଡିଓ, ଟେଲିଫୋନ, ଅଣୁ ଇତ୍ୟାଦି ବହୁ ବିଷୟକୁ ଉଦ୍ଭାବନ ବା ଆବିଷ୍କାର କରିଛନ୍ତି, ସେମାନେ ଫଳିତ ଜ୍ୟୋତିଷର କିଛି ମହତ୍ତ୍ୱ ରହିଥିଲେ ତାହା ଉପରେ ମଧ୍ୟ ଗୁରୁତ୍ୱ ଦେଇଥାନ୍ତେ । ବିଜ୍ଞାନ ମାଧ୍ୟମରେ ବୃକ୍ଷଲତାର ଜୀବନଧାରାକୁ ଯେପରି ଅନୁଶୀଳନ କରାଯାଉଛି, ମହାକାଶ ଯାତ୍ରା ସମ୍ଭବ ହୋଇଛି, ପୃଥିବୀର ଦୂର ସ୍ଥାନକୁ ଯାତ୍ରା ହୋଇପାରୁଛି ସେକ୍ଷେତ୍ରରେ ଯଦି ଫଳିତ ଜ୍ୟୋତିଷର କିଛି ସତ୍ୟତା ଥାନ୍ତା, ତେବେ ବୈଜ୍ଞାନିକମାନେ ତାହାର ନିଶ୍ଚୟ ସାହାଯ୍ୟ ନେଇଥାନ୍ତେ ।

ବିଭିନ୍ନ ରାଷ୍ଟ୍ରରେ ସରକାରମାନେ ବୈଜ୍ଞାନିକ ଗବେଷଣା ପାଇଁ ବଡ ବଡ ବିଜ୍ଞାନାଗାର ମାନ ସ୍ଥାପନ କରିଛନ୍ତି । ଏହାଦ୍ୱାରା ଜ୍ଞାନର ବିକାଶ ଘଟିଛି ଓ ମାନବ ଜାତିର ବହୁ ହିତ ସାଧନ ହୋଇପାରୁଛି । ତେବେ ଫଳିତ ଜ୍ୟୋତିଷ ଦ୍ୱାରା ସମାଜର କିଛି ହିତ ସାଧନ ହେବା ସମ୍ଭବ ଥିଲେ, ଏଥିପାଇଁ ମଧ୍ୟ ବିଜ୍ଞାନାଗାର ମାନ ସରକାର ସ୍ଥାପନ କରିଥାନ୍ତେ । କିନ୍ତୁ ବିଜ୍ଞାନ ସ୍ତରରେ ଫଳିତ ଜ୍ୟୋତିଷକୁ କୌଣସି ଗୁରୁତ୍ୱ ଦିଆଯାଏ ନାହିଁ, କାରଣ ଏହାର କୌଣସି ବୈଜ୍ଞାନିକ ଆଧାର ନାହିଁ ।

**ବିରାଗଭାଜନର ଭୟ :**

ଧର୍ମଦ୍ୱାରା ବହୁ କୁସଂସ୍କାର ସମାଜରେ ପରିବ୍ୟାପ୍ତ ହୋଇ ରହିଛି । ସେହିପରି ଫଳିତ ଜ୍ୟୋତିଷ ମଧ୍ୟ ବହୁ ଆଧାରହୀନ ବିଶ୍ୱାସ ଉପରେ ପ୍ରତିଷ୍ଠିତ । ତାହାକୁ ପ୍ରସାର କରାଗଲେ ମଣିଷ ସମାଜରେ କୁସଂସ୍କାର ବ୍ୟାପକ ହୋଇ ସାମାଜିକ ଅବସ୍ଥାକୁ ଅଧିକ ଖରାପ କରିବ । ଏହା ଆମେ ଚାହୁଁ କି ?

Digitized by srujanika@gmail.com

ଫଳିତ ଜ୍ୟୋତିଷ ଉପରେ ମୋର ବକ୍ତବ୍ୟ ହୁଏତ ଆଂଶିକ ବା ପୂର୍ଣ୍ଣ ଭ୍ରମାତ୍ମକ ହୋଇପାରେ । ଫଳିତ ଜ୍ୟୋତିଷ ପରି ଏକ ପ୍ରାଚୀନ ଗଣନବିଦ୍ୟା ଯାହା ହଜାର ହଜାର ବର୍ଷ ଧରି ଲୋକମାନଙ୍କୁ ଆକର୍ଷିତ କରିଆସିଛି ତାହା ବିଷୟରେ କହିବା ପାଇଁ ମୁଁ ହୁଏତ ଯୋଗ୍ୟ ନୁହେଁ । ତେବେ ଜ୍ୟୋତିଷ ବିଦ୍ୟା ସଂପର୍କରେ ଏହାର ସତ୍ୟ ମିଥ୍ୟା ନେଇ ଯେଉଁମାନେ ଅବଗତ, ସେମାନେ ଅପ୍ରିୟ ହେବାର ଆଶଙ୍କା ଯୋଗୁଁ ଏହା ବିଷୟରେ କିଛି ମନ୍ତବ୍ୟ ଦେବାକୁ ଚାହାନ୍ତି ନାହିଁ । ମୋ ପରି ଏହି ବିଦ୍ୟାରେ ଅନଭିଜ୍ଞ ଜଣେ ବ୍ୟକ୍ତିଙ୍କର ମତାମତ ପରିପ୍ରେକ୍ଷୀରେ ଫଳିତ ଜ୍ୟୋତିଷ ସଂପର୍କିତ ଭବିଷ୍ୟବାଣୀ କେତେ ଦୂର ବିଜ୍ଞାନ ସମ୍ମତ ବା ଏହାର କେତେ ଭାଗ ସତ୍ୟ ତାହାର ପରିସଂଖ୍ୟାନ ଜନିତ ବିବରଣୀ ଗଣକମାନେ ଦେବା ଉଚିତ । ଫଳିତ ଜ୍ୟୋତିଷ ପରି ଏକ ବିବାଦୀୟ ବିଷୟ ଉପରେ ଜ୍ୟୋତିଷ ଗଣକମାନେ ଏହାର ସତ୍ୟାସତ୍ୟ ବା ବାସ୍ତବତା ନେଇ ବିତର୍କ କରିବା ଆବଶ୍ୟକ ।

**ଫଳିତ ଜ୍ୟୋତିଷ ଓ ହିନ୍ଦୁଧର୍ମ :**

ହିନ୍ଦୁମାନେ ଅନେକ କଥା ବିଶ୍ୱାସ କରନ୍ତି । ମଣିଷ ଭିତରେ ଦେବୀ ପ୍ରବେଶ କରି ନୃତ୍ୟ କରିବା, କାଳିସୀ ଲାଗିବା, ଭୂତ ଲୋକଙ୍କୁ ଆକ୍ରମଣ କରିବା, ରୋଗ, ମହାମାରୀ ଦେବ ଦେବୀ ପ୍ରକୋପରୁ ହେବା, ମନ୍ଦ ଶକ୍ତି ପ୍ରଭାବରେ ଅମଙ୍ଗଳ ଘଟିବା, ପୂର୍ବ କର୍ମଫଳରୁ ଏ ଜୀବନର ଘଟଣା ପ୍ରବାହ ରୂପ ନେବା ଇତ୍ୟାଦି ନାନା କଥାକୁ ସେମାନେ ଅକ୍ଲେଶରେ ଗ୍ରହଣ ବା ବିଶ୍ୱାସ କରିଥାନ୍ତି । ନିଜ ଜୀବନର ପରିସ୍ଥିତିରେ ଉନ୍ନତି ପାଇଁ କିମ୍ବା ଅନ୍ୟର ଅପକାର ସାଧନ ପାଇଁ ବିଭିନ୍ନ ପୂଜା ଜନିତ ଅହେତୁକ କଥାରେ ହିନ୍ଦୁମାନେ ବିଶ୍ୱାସ କରନ୍ତି । ସେହିପରି ଏହି ସବୁ କାର୍ଯ୍ୟ ପାଇଁ ବିଭିନ୍ନ କର୍ମକାଣ୍ଡ କରିବାକୁ ସେମାନେ ବହୁ ଅର୍ଥ, ଶକ୍ତି ଓ ସମୟ ଅପବ୍ୟୟ କରିଥାନ୍ତି ।

ସେହିପରି ଫଳିତ ଜ୍ୟୋତିଷ ଉପରେ ହିନ୍ଦୁମାନେ ଗଭୀର ଆସ୍ଥା ରଖି ଆସିଛନ୍ତି । ଏଥିପାଇଁ ମଧ୍ୟ ସେମାନେ ନାନା ପୂଜା ବା କର୍ମକାଣ୍ଡ କରିଥାନ୍ତି । ଏଥିରେ ବି ଗ୍ରହପୂଜା, ଗ୍ରହଶାନ୍ତି ପରି କାର୍ଯ୍ୟକରି ବହୁ ସମୟ, ଶକ୍ତି ଓ ଅର୍ଥ

Digitized by srujanika@gmail.com

ବ୍ୟୟ କରନ୍ତି । ଏହାଦ୍ୱାରା କିଛି ତ ଉପକାର ହୁଏ ନାହିଁ, ବରଂ ଲୋକମାନଙ୍କର ଦୁଃଖ ଦୁର୍ଦ୍ଦଶା ଅଧିକ ବଢିଥାଏ ।

**ପୂଜକ ଶ୍ରେଣୀର ଶୋଷଣ :**

ଗଣକମାନେ, ମନ୍ଦିରର ପୂଜକମାନେ ଓ ଯାଦୁକର ମାନେ ଲୋକମାନଙ୍କର ଅଜ୍ଞତା ଓ କୁସଂସ୍କାରର ସୁଯୋଗ ନେଇ ସେମାନଙ୍କୁ ଶୋଷଣ କରିଥାନ୍ତି । ଜ୍ୟୋତିଷ ଗଣକ, ପୂଜକ ଓ ଚମତ୍କାର ଦେଖାଉଥିବା ବ୍ୟକ୍ତି ଲୋକମାନଙ୍କୁ କୌଶଳପୂର୍ଣ୍ଣ କୁସଂସ୍କାର ପ୍ରସାର କରି ଶୋଷଣ କରନ୍ତି । ସେମାନେ ପରସ୍ପର ସହ ସଲାସୁତରା କରି ଲୋକଙ୍କୁ ଠକନ୍ତି ।

ଖରାପ କାଳ ଆଗତ ହେବାକୁ ଯାଉଛି, ଅନେକ ବିଘ୍ନ ଘଟିବାର ସମ୍ଭାବନା ଅଛି ଇତ୍ୟାଦି ଗଣକମାନେ କହି ସେଥିରୁ ଉଦ୍ଧାର ପାଇଁ ବିଭିନ୍ନ ପୂଜା ପାଠ କରିବାକୁ ପରାମର୍ଶ ଦେଇଥାନ୍ତି । ଗ୍ରହପୂଜା, ନବଗ୍ରହ ଶାନ୍ତି ପାଇଁ ଅଭିଷେକ କଲେ ଗ୍ରହଦୋଷ କଟି ଯିବ କହି କେତେ କେତେ ପୂଜାର ପରାମର୍ଶ ଦେଇଥାନ୍ତି । ଗ୍ରହପୂଜା କଲେ ଦେବା ଦେବୀଙ୍କର ମନ୍ଦ ପ୍ରକୋପରୁ ପ୍ରତିହତ କରିହେବ ବୋଲି ଲୋକମାନଙ୍କୁ ସେମାନେ ନାନା ଭାବରେ ପ୍ରଭାବିତ କରିଥାନ୍ତି ।

**ଶାନ୍ତିର ଷଡ଼ଯନ୍ତ୍ର :**

ଗଣକମାନଙ୍କର ଠକାମିର ଶରବ୍ୟ ହେବା ଲୋକ ବି ଗ୍ରହ ପୂଜା ବା ଦେବୀଙ୍କର ଅଶାନ୍ତିରୁ ମୁକ୍ତ ହେବା ପାଇଁ ମାୟାବୀ ଲୋକଙ୍କର ଶିକାର ହୋଇଥାଏ । ଗାଁ ଗହଳରେ ଦେବଦେବୀ ପୂଜା ଇତ୍ୟାଦି ଭାବନା ଅତି ବ୍ୟାପକ ହୋଇ ରହିଛି ଓ ଲୋକମାନେ ସେହି ସବୁ କଥାରେ ବିଶ୍ୱାସ କରି ଆସିଛନ୍ତି । ଗାଁ ଗହଳରେ ଅନେକ ବୃଥାଭିମାନୀ ଚିକିତ୍ସକ ବା କ୍ୱାକମାନେ ରହିଛନ୍ତି । ଏହି କ୍ୱାକମାନେ ଗ୍ରହକୋପରୁ ରୋଗ ହୁଏ, ଫଳତଃ ଗ୍ରହଶାନ୍ତି କରାଗଲେ ରୋଗ ଭଲହେବ ବୋଲି ଲୋକମାନଙ୍କୁ ବିଶ୍ୱାସ ଦେଇଥାନ୍ତି । ସେହି କ୍ୱାକମାନେ ୪୮ ଦିନ ଧରି ପୂଜାକରି ଗ୍ରହ ଶାନ୍ତି କରିବାକୁ କେତେ କେତେ ଉପଚାର ମାନ କରିଥାନ୍ତି । ତେବେ ମନ୍ଦ ଗ୍ରହ ଯଦି ଶନି ବା ମଙ୍ଗଳ ହୁଏ ତେବେ ଅଧିକ ଦିନ ଓ କଠୋର ନିୟମରେ

Digitized by srujanika@gmail.com

ବ୍ୟୟ ବହୁଳ ପୂଜା ପରିଚାଳିତ ହୁଏ। ଏହି କାର୍ଯ୍ୟକ୍ରମରେ ମନ୍ଦିର ପରିସରକୁ ଆଲୋକିତ କରିବାକୁ ପଡେ ଓ ଏକ ଅବଧି ସମୟ ପର୍ଯ୍ୟନ୍ତ ପୁରାଣ ପାଠ କରିବାକୁ ହୋଇଥାଏ।

ମନ୍ଦ ଗ୍ରହ ପ୍ରକୋପଠାରୁ ଉଦ୍ଧାର ପାଇଁ ଜ୍ୟୋତିଷ ଗଣକ, ମାୟାବୀ ଓ ମନ୍ଦିର ପୂଜକମାନେ ସାଧାରଣ ଲୋକଙ୍କୁ ଶୋଷଣ କରିଥାନ୍ତି ଓ ସେମାନଙ୍କର କଷ୍ଟ ଅର୍ଜିତ ଧନକୁ ଲୁଟିଥାନ୍ତି। ସେମାନଙ୍କ ସ୍ୱାର୍ଥପର ମନୋଭାବ ଜନିତ ସନ୍ଦେହ ଯଜମାନ ମନରୁ ଦୂର କରିବାକୁ ଏହିମାନେ ନାନା ଫିକର କରିଥାନ୍ତି। ସାଧୁମାନଙ୍କୁ ବା ଦୁଃଖୀ ରଙ୍କୀ ଭୋଜନ କରିବାକୁ ମଧ୍ୟ ପ୍ରସ୍ତାବ ଦେଇଥାନ୍ତି। ଏହା ସହିତ ଗାଆଁର କରଜ ଦେଉଥିବା ଲୋକମାନଙ୍କ ପାଖରୁ ଟଙ୍କା ଧାର କରି ଏସବୁ କରିବାକୁ କହିଥାନ୍ତି। ପୂଜା ପାଇଁ ବହୁ ଜିନିଷ କିଣିବାକୁ ପଡୁଥିବାରୁ ଦୋକାନୀମାନେ ବି ବେଶ୍ ଦୁଇ ପଇସା ପାଇଥାନ୍ତି। ସାଧାରଣ ମଣିଷଟିଏ ଭାବେ ଯେ ତାର ମଙ୍ଗଳ ପାଇଁ ଏସବୁ ସେମାନେ କରୁଛନ୍ତି। ଗ୍ରହଶାନ୍ତି ବା ପୂଜାପାଠ ତାର ହିତ ପାଇଁ କରାଯାଉଛି ବୋଲି ସେ ବିଶ୍ୱାସ କରେ ଓ ସେମାନଙ୍କ ଠକାମିର ଶିକାର ହୁଏ।

**ଫଳିତ ଜ୍ୟୋତିଷ କ'ଣ ?:**

ଫଳିତ ଜ୍ୟୋତିଷ କେବଳ ଭବିଷ୍ୟ ଗଣନା ବା ଆଗକୁ ହେବାକୁ ଥିବା ଭଲ ମନ୍ଦ ସଂପର୍କରେ ସୀମାବଦ୍ଧ ନୁହେଁ। ଗ୍ରହ ପ୍ରକୋପରୁ ଉଦ୍ଧାର ପାଇବା ପାଇଁ ଆବଶ୍ୟକୀୟ ପଦକ୍ଷେପ ନେବାର ବିଧାନ ବି ଏଥିରେ ବତା ଯାଇଥାଏ। ସତେ ଯେପରି ବିଶାଳ ଗ୍ରହ ଓ ଅଦୃଶ୍ୟ ଭବିଷ୍ୟତର ଧାରାକୁ କେତେକ ପୂଜା ମାଧ୍ୟମରେ ପରିବର୍ତ୍ତନ କରିହେବ। ଭୟ ଓ ଅଜ୍ଞତା ଯୋଗୁଁ ସାଧାରଣ ମଣିଷଟିଏ ସେମାନଙ୍କ କୌଶଳ ପ୍ରଚାରର ଶିକାର ହୋଇଥାଏ।

**ଜନ୍ମ ସମୟ :**

ପ୍ରକୃତରେ ଜଣଙ୍କର ଜନ୍ମ ସମୟ ସ୍ଥିର କରିବା ଏକ ଜଟିଳ ବିଷୟ। ଫଳିତ ଜ୍ୟୋତିଷ ମାନଦଣ୍ଡରୁ ଜଣଙ୍କର ଜନ୍ମ ସମୟକୁ ସଠିକ ରୂପେ ନିର୍ଦ୍ଧାରିତ କରିବା ସହଜ ନୁହେଁ। ତେବେ ଜଣଙ୍କର ଭାଗ୍ୟ କେଉଁ ସମୟ ନେଇ ନିର୍ଦ୍ଧାରିତ

Digitized by srujanika@gmail.com

ହୋଇଥାଏ? ଗର୍ଭଧାରଣ ସମୟ, ମାତୃଗର୍ଭରେ ଭ୍ରୂଣ ଯେଉଁ ସମୟରେ, ପ୍ରାୟତଃ ପାଞ୍ଚ ମାସରେ, ଜୀବନ ପାଉଥିବା ସମୟ କିମ୍ବା ଗର୍ଭଧାରଣଠାରୁ ସାତ, ଆଠ ନଅ ବା ଦଶମାସରେ ଜନ୍ମ ହେବା ସମୟ? ଯେଉଁ ସମୟରେ ଶିଶୁର ମସ୍ତକ ପ୍ରଥମେ ଦେଖାଯାଏ ନା ଯେଉଁ ସମୟରେ ଶିଶୁଟି ମାତୃଗର୍ଭରୁ ଆସି ଭୂମିଷ୍ଠ ହୁଏ ନା ଯେଉଁ ସମୟରେ ଧାୟୀଟି ଚେଷ୍ଟା କରି ଶିଶୁଟିକୁ ଜନ୍ମ କରାଇଦିଏ? ଯେଉଁଠି ଡାକ୍ତର ସିଜେରିଆନ ଅପରେସନ ଦ୍ୱାରା ଶିଶୁଟିକୁ ମା' ଗର୍ଭରୁ ବାହାର କରେ? କେଉଁ ସମୟଟି ପିଲାର ଭବିଷ୍ୟତକୁ ନିର୍ଣ୍ଣୟ କରେ ?

ତେବେ ସାଧାରଣରେ ବିଶ୍ୱାସ କରାଯାଏ ଯେ ଯେଉଁ ସମୟରେ ପିଲାଟି ଯେତେବେଳେ ମାତୃ ଗର୍ଭରୁ ଆସି ଭୂମିଷ୍ଠ ହୁଏ ତାହା ହିଁ ତାହାର ଜନ୍ମ ସମୟ। ଆମର ପରବର୍ତ୍ତୀ ଆଲୋଚନା ପାଇଁ ଆମେ ବି ଏହି ସମୟଟିକୁ ଶିଶୁର ଜନ୍ମ ସମୟ ବୋଲି ଗ୍ରହଣ କରିବା।

**ଆକାଶକୁ ଚାହିଁ ସମୟ:-**

ଯେଉଁ ଶିଶୁଟି ଜନ୍ମ ହେଲା ତାହା ଜୀବିତ କି ନୁହଁ ଓ ତାହାର ଲିଙ୍ଗ କଣ ଜାଣିବାକୁ କିଛି ସମୟ ଲାଗେ। ବାହାରେ ଅପେକ୍ଷା କରିଥିବା ଲୋକଙ୍କ ପାଖରେ ଜନ୍ମର ସମ୍ବାଦ ପହଞ୍ଚିବାକୁ ଆଉ କିଛି ସମୟ ଲାଗିଥାଏ। ଶିଶୁଟିର ଜନ୍ମ ସମୟକୁ ଲିପିବଦ୍ଧ କରିବାକୁ ଜଣଙ୍କ ପାଖରେ ଘଣ୍ଟାଟିଏ ଥିବା ଦରକାର। ଯଦି ଘଣ୍ଟାଟିଏ ଥାଏ ତେବେ ଜନ୍ମ ସମୟକୁ ସ୍ଥିର ଭାବେ ଲିପିବଦ୍ଧ କରିବାର ସମ୍ଭାବନା ରହେ। ଯଦି ଘଣ୍ଟା ନ ଥାଏ, ପାଖ ଓଡ଼ିଶାରେ କାହାର ଘଣ୍ଟା ଥିଲେ ବୁଝିବାକୁ ହୁଏ। ତେବେ ଆଗେ ଲୋକମାନେ ଆକାଶକୁ ଚାହିଁ ସୂର୍ଯ୍ୟ ବା ଚନ୍ଦ୍ରକୁ ଦେଖି ସମୟ ଅନୁମାନ କରୁଥିଲେ। ଏହି ସବୁ ସର୍ତ୍ତ ଭିତରେ ପ୍ରକୃତ ସମୟ ନିରୂପଣ କରିବା ସହଜ ନୁହେଁ। ଗୋଟିଏ ଭୁଲ ସମୟକୁ ନେଲେ ଜାତକ ବି ଭୁଲ ହେବାର ସମ୍ଭାବନା ଥାଏ।

୧୯୫୭ ରେ ପୃଥିବୀରେ ରହିଥିବା ୨୭୦ କୋଟି ଲୋକଙ୍କୁ ବିଚାରକୁ ନେଲେ ଏକ ମିନିଟରେ ୧୭୦ ଜଣ, ଏକ ଘଣ୍ଟାରେ ୧୦୨୦୦ ଜଣ ଓ ଗୋଟିଏ ଦିନରେ ୨,୪୪୮୦୦ ଜଣ ଓ ଏକ ବର୍ଷରେ ୮୮୧୦୦୦ ଲୋକ ଜନ୍ମ ହୋଇଛନ୍ତି

Digitized by srujanika@gmail.com

ବୋଲି କଳ୍ପନା କରାଯାଏ। ଭାରତରେ ଏହି ସମୟରେ ପୃଥିବୀ ଜନସଂଖ୍ୟାର ନଅ ଭାଗରୁ ଏକ ଭାଗ ଲୋକ ଥିବା ଦେଖାଯାଏ। ସେହି ଦୃଷ୍ଟିରୁ ଦେଖିଲେ ଭାରତରେ ବର୍ଷକୁ ୯୮୦୦,୦୦୦ ଜଣ ଘଣ୍ଟାକୁ ୪୫୬ ଜଣ ଓ ମିନିଟକୁ ୧୯ ଜଣ ଜନ୍ମ ନେଇଛନ୍ତି।

**ପଶୁମାନଙ୍କର ଜାତକ :-**

ଏକ ମିନିଟକୁ ୧୯ ଜଣ ହିସାବରେ ଜନ୍ମ ହେଲେ ଏକ ଲଗ୍ନରେ ଜନ୍ମ ହୋଇଥିବା ପିଲାଙ୍କର ସଂଖ୍ୟା ବହୁ ଅଧିକ ହେବ। ଗୋଟିଏ ଲଗ୍ନରେ ଜନ୍ମ ହୋଇଥିବା ସବୁ ପିଲାଙ୍କର ଭବିଷ୍ୟ ଗଣନା କରି କହିବା ସହଜସାଧ୍ୟ ନୁହେଁ। ପୁନଶ୍ଚ ବିଭିନ୍ନ ଭୂଖଣ୍ଡରେ ଲଗ୍ନ ମଧ୍ୟ ପୃଥକ ପୃଥକ ହେବା ସମ୍ଭବ। ଗୋଟିଏ ଲଗ୍ନର ଅବଧି ପ୍ରାୟ ୧୨୬ ମିନିଟ ହୋଇଥାଏ।

ମନେ କରାଯାଉ ବ୍ରାମଧି ବର୍ଷ, ପୁରାଉସି ମାସ, ଦ୍ୱିତୀୟ ବୁଧବାରର ୧୦.୩୦ ମିନିଟରେ ଗୋଟିଏ ଶିଶୁ ଜନ୍ମ ହୋଇଛି ଯାହା ଅଷ୍ଟ ନକ୍ଷତ୍ର ଓ ବ୍ରିଛିକା ଲଗ୍ନର ଅନ୍ତର୍ଭୁକ୍ତ। ଏହି ସମୟ ନିର୍ଘଣ୍ଟ ଗଣକକୁ ଦେଲେ ସେ ଜଣଙ୍କର ଜାତକ ପ୍ରସ୍ତୁତ କରି ତାଙ୍କର ଭବିଷ୍ୟତ କଣ ହେବ ଭବିଷ୍ୟବାଣୀ କରିଦେବେ। ତେବେ ଏହି ସମୟରେ ଗୋଟିଏ ମଣିଷ ଶିଶୁ, ଗୋଟିଏ ପଶୁ, ଗୋଟିଏ କୀଟ, ଏକ ପୂର୍ଣ୍ଣାଙ୍ଗ ଟେବୁଲ ବା ଏକ ପଥର ମୂର୍ତ୍ତି ଉଦ୍ଭବ ହେବା ସମ୍ଭବ। ଗଣକକୁ ଜଣକର ଜନ୍ମ ନିର୍ଘଣ୍ଟ ଦେଲେ ସେ ଜାତକ ପ୍ରସ୍ତୁତ କରିଦେବେ, ସେ ସମୟରେ କିଏ ଜନ୍ମ ହୋଇଛି ତାହା ତାଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ ନୁହେଁ।

**ଅସ୍ପଷ୍ଟତା ଓ ବିଭ୍ରାନ୍ତ :-**

ବ୍ରିଛିକା ଲଗ୍ନର ୧୨୬ ମିନିଟରେ ଭାରତରେ ୨୫୨୦ ଜଣ ପିଲା ଜନ୍ମ ହୋଇଥିଲେ। କେବଳ ତାମିଲନାଡୁକୁ ନେଲେ ସେହି ସମୟ ଭିତରେ ୨୫ ଜଣ ପିଲା ଜନ୍ମ ହୋଇଛନ୍ତି। ଏହି ଲଗ୍ନରେ ତାମିଲନାଡୁରେ ଗ୍ରହ ଓ ନକ୍ଷତ୍ର ମାନଙ୍କର ଅବସ୍ଥିତି ଅନେକ ଅଞ୍ଚଳ ପାଇଁ ପୃଥକ୍ ନୁହେଁ। ସୁତରାଂ ଏହି ୨୫ ଜଣ ପିଲାଙ୍କର ଚରିତ୍ର ଓ ଭାଗ୍ୟ ଯେ ସମାନ ହେବ ଏହା କହିବା ଅତ୍ୟନ୍ତ ଅବାନ୍ତର ହେବ।

Digitized by srujanika@gmail.com

ମଣିଷର ଭବିଷ୍ୟତ ତାର କାର୍ଯ୍ୟ, ଗ୍ରହର ପ୍ରଭାବ, ପୂର୍ବ ଜନ୍ମର କର୍ମ ବା ଭାଗ୍ୟ କାହାଦ୍ୱାରା ସ୍ଥିରୀକୃତ ହୁଏ ? ଯଦି ଏଥିରୁ ଗୋଟିଏ ତାର ଭବିଷ୍ୟତକୁ ନିର୍ଣ୍ଣୟ କରେ, ତେବେ ଅନ୍ୟର ପ୍ରଭାବ ଅପାଂକ୍ତେୟ ହୋଇଥାଏ । ଯଦି ଏସବୁ ମିଶି ମଣିଷର ଭାଗ୍ୟ ସ୍ଥିର କରେ ତେବେ ଏହାଦ୍ୱାରା ନାନା ଅସ୍ପଷ୍ଟତା ଆସିଥାଏ । ଯେହେତୁ କୌଣସି କିଛିକୁ ସ୍ଥିର କରାଯାଇ ପାରେ ନାହିଁ, ସମସ୍ତ ବିଷୟଟି ଅସ୍ପଷ୍ଟ ଓ କାଳ୍ପନିକ ହୋଇପଡେ । ଯଦି ଗ୍ରହଣ କରାଯାଏ ଯେ ଏ ପ୍ରତ୍ୟେକର କିଛି ପ୍ରଭାବ ରହିଛି ତେବେ ମଣିଷ କାହାକୁ ନିର୍ଦ୍ଦିଷ୍ଟ ଭାବେ ଗ୍ରହଣ କରି ନପାରି ଅସହାୟ ଓ ଭାଗ୍ୟବାଦୀ ହୋଇପଡେ ।

**ଗ୍ରହର ପ୍ରଭାବ :-**

ଗ୍ରହ, ନକ୍ଷତ୍ର ପ୍ରଭାବକୁ ଦୁର୍ବଳ ବା ପରିବର୍ତ୍ତନ କରିବାକୁ ପ୍ରାର୍ଥନା, ପୂଜା, ଗ୍ରହଶାନ୍ତି, ମନ୍ତ୍ର ଇତ୍ୟାଦି ଉପରେ ଗୁରୁତ୍ୱ ଦିଆଯାଏ ଯାହାର ସୂଚନା ପୂର୍ବରୁ ଦିଆଯାଇଛି । ତେବେ ଏସବୁ କାର୍ଯ୍ୟଦ୍ୱାରା ଗୋଟିଏ ମନ୍ଦ ଗ୍ରହର ପ୍ରଭାବକୁ କିପରି ଏକ ସ୍ଥାନରୁ ହଟାଇ ଦିଆଯାଏ ? ଯଦି ଗ୍ରହର କିଛି ପ୍ରଭାବ ଅଛି ତେବେ ଧାର୍ମିକ କାର୍ଯ୍ୟ ବା ପୂଜାଦ୍ୱାରା ଏହାକୁ ହଟାଇ ଦେଇ ହେବ ବୋଲି କହିବା କୁସଂସ୍କାର ନୁହେଁ କି ? ସାଧାରଣ ମଣିଷଟିକୁ ଏସବୁର ଭୟ ଦେଖାଇ ତାକୁ କୌଶଳକ୍ରମେ ଶୋଷଣ କରାଯିବାର ଉଦ୍ଦେଶ୍ୟ ଏହା ପଛରେ ନିହିତ ରହିଥାଏ । ଯଦି କେତେକ କୁସଂସ୍କାରପୂର୍ଣ୍ଣ ପୂଜାଦ୍ୱାରା ଜନ୍ମ ସମୟରୁ ସ୍ଥିର ହୋଇ ଯାଇଥିବା ଗ୍ରହ-ନକ୍ଷତ୍ରର ପ୍ରଭାବକୁ ଦୂର କରିହେବ, ତେବେ ଫଳିତ ଜ୍ୟୋତିଷର ବିଜ୍ଞାନ ଏହାଦ୍ୱାରା ଭୁଲ ପ୍ରମାଣିତ ହେଉ ନାହିଁକି ?

ଜାତକର ନିର୍ଣ୍ଣୟ ଅନୁଯାୟୀ ଯାହା ହେବାକୁ ଅଛି ତାହାର ପରିଣାମକୁ ଯଦି ପରିବର୍ତ୍ତନ କରି ଦେଇହେବ, ତେବେ ଫଳିତ ଜ୍ୟୋତିଷର ସମସ୍ତ ଭବିଷ୍ୟବାଣୀ ପ୍ରତାରଣାପୂର୍ଣ୍ଣ ନୁହେଁ କି? ଏସବୁ ଭବିଷ୍ୟବାଣୀ ସହ ଅନ୍ୟ ଉପଚାର ଯଥା ପୂଜା, ଗ୍ରହଶାନ୍ତି ଇତ୍ୟାଦି ମଧ୍ୟ ସଂଶ୍ଳିଷ୍ଟ । ଜ୍ୟୋତିଷୀମାନେ, ଗଣକମାନେ ଓ ପୂଜକମାନେ ଅସାଧୁ ଉପାୟରେ ସାଧାରଣ ମଣିଷକୁ ଠକିବା ପାଇଁ ଫଳିତ ଜ୍ୟୋତିଷ ଜନିତ ଗଣନା ଓ ବିଦ୍ୟାକୁ କଳ୍ପନା କରିଛନ୍ତି । ଯେ ପର୍ଯ୍ୟନ୍ତ ଲୋକମାନେ ବିଚାରଶୀଳ

Digitized by srujanika@gmail.com

ହୋଇନାହାନ୍ତି କିମ୍ବା ଏସବୁ ବିଷୟରେ ଚିନ୍ତା କରିନାହାନ୍ତି ଏସବୁ ସମାଜରେ ତିଷ୍ଠି ରହିବ।

ଫଳିତ ଜ୍ୟୋତିଷ ଅନୁଯାୟୀ ଜଣେ ବ୍ୟକ୍ତିର ଜନ୍ମ ସମୟରେ ଗ୍ରହ, ନକ୍ଷତ୍ର ମାନଙ୍କର ସ୍ଥିତି ଯାହା ଥାଏ ତାହା ବ୍ୟକ୍ତି ଜୀବନର ଭବିଷ୍ୟତ ଘଟଣା ପ୍ରବାହକୁ ନିର୍ଦ୍ଧାରଣ କରିଥାଏ। ଜଣେ ବ୍ୟକ୍ତି ଧନୀ ହେବା, ପ୍ରମୋଶନ ପାଇବା, କୌଣସି ରୋଗରେ ଆକ୍ରାନ୍ତ ହେବା ଇତ୍ୟାଦି ଘଟଣା ପ୍ରବାହ ତାର ଜନ୍ମ ସମୟରୁ ହିଁ ନିର୍ଦ୍ଧାରିତ ହୋଇଥାଏ। ଗ୍ରହମାନଙ୍କର ଜନ୍ମ ସମୟର ସ୍ଥିତି ବ୍ୟକ୍ତିର ଭବିଷ୍ୟତକୁ କିପରି ନିର୍ଦ୍ଧାରିତ କରିପାରୁଛି ଓ କେଉଁ ପରିସ୍ଥିତି ପାଇଁ ଏହା ସମ୍ଭବ ହେଉଛି ତାହା ଦର୍ଶାଇବା ଦରକାର। .କ' ର କାର୍ଯ୍ୟଦ୍ୱାରା ଅନ୍ୟମାନେ କିପରି ପ୍ରଭାବିତ ହେଉଛନ୍ତି ଓ ଅନ୍ୟମାନଙ୍କର କାର୍ଯ୍ୟଦ୍ୱାରା କ' କିପରି ପ୍ରଭାବିତ ହେଉଛି ଏସବୁକୁ ମଧ୍ୟ ଗ୍ରହମାନଙ୍କର ଉପସ୍ଥିତି ବ୍ୟାଖ୍ୟା କରିବା ଆବଶ୍ୟକ। ଜଣଙ୍କର ଭଲ ମନ୍ଦ କିପରି ଓ କେଉଁ ଭଳି ଗ୍ରହର ପ୍ରଭାବରେ ନିର୍ଦ୍ଧାରିତ ହେଉଛି ତାହାର ଯଥାଯଥ କାରଣ ଦେବା ଦରକାର। ଏସବୁ କିପରି ଘଟୁଛି ତାହାର ପରିସଂଖ୍ୟାନଗତ ବିବରଣୀ କେହି ପରୀକ୍ଷା କରିଛନ୍ତି କି ?

**ଚୋରର ଜାତକ :-**

ଧରାଯାଉ ଜଣେ ବ୍ୟକ୍ତିଙ୍କର ସଂପତ୍ତି ଚୋରିଦ୍ୱାରା କମିଗଲା। ଚୋରି କରିବାର ଘଟଣା କଣ ବ୍ୟକ୍ତିର ଜାତକରେ ଗ୍ରହ ଯୋଗୁଁ ରହିଛି ? ଜଣଙ୍କର ସଂପତ୍ତି ନଷ୍ଟ ହେବା ଯଦି ତାଙ୍କ ଭାଗ୍ୟରେ ଗ୍ରହର ପ୍ରଭାବ ଯୋଗୁ ରହିଛି, ତେବେ ଚୋରି କରି ସଂପତ୍ତି ଲାଭ କରିବାର ଅବକାଶ ଅନ୍ୟ ଜଣଙ୍କର ଗ୍ରହର ପ୍ରଭାବର ଫଳ ମଧ୍ୟ ହୋଇଥିବ। ଜଣଙ୍କର ସଂପତ୍ତି କେଉଁ ସମୟରେ ଚୋରି ହେବ ଯଦି ତାଙ୍କ ଭାଗ୍ୟର ଫଳ, ତେବେ ଚୋରି କରି ସଂପତ୍ତି ଲାଭ କରିବା ଅନ୍ୟ ଜଣଙ୍କର ଭାଗ୍ୟର ଲିଖନ ବୋଲି କୁହାଯିବ।

**ଜାତକରେ ହତ୍ୟା :-**

ମନେ କରାଯାଉ କ ଖକୁ ହତ୍ୟା କରିବ। କ ହତ୍ୟାକାରୀ ହେବା ତା ଗ୍ରହର ପରିଣାମ ଓ ଏହା ତାର ଜାତକର ଫଳ। କ ଯେତେବେଳେ ହତ୍ୟାକରିବ

Digitized by srujanika@gmail.com

ଯଦି ତା ଗ୍ରହର ସ୍ଥିତିଦ୍ୱାରା ସ୍ଥିର ହୋଇରହିଛି, ତେବେ ଖ ଯେ ହତ୍ୟା ହେବ ଏହା ମଧ୍ୟ ତା ଗ୍ରହର ସ୍ଥିତିଦ୍ୱାରା ସ୍ଥିର ହୋଇଥିବା ଦରକାର। ଯେଉଁ କାର୍ଯ୍ୟରେ ଉଭୟ ପକ୍ଷର ସଂପୃକ୍ତି ରହିଛି ସେଠାରେ ଉଭୟ ପକ୍ଷ ଗ୍ରହର ପ୍ରଭାବରେ ପ୍ରଭାବିତ ବୋଲି କୁହାଯିବ। ଯଦି ଉଭୟ ଗ୍ରହର ପ୍ରଭାବରେ ଏହା ହେଉ ନାହିଁ, ତେବେ ଉଭୟ ପକ୍ଷର ସଂପୃକ୍ତି ଥିବା କାର୍ଯ୍ୟ କିପରି ସମ୍ଭବ? ଏପରିକି ନିର୍ଜୀବ ବସ୍ତୁମାନଙ୍କର ବି ଜାତକ ରହିବା ଦରକାର। ଗୋଟିଏ ଛୁରୀ ବା ବନ୍ଧୁକ କେଉଁ ସମୟରେ ପ୍ରୟୋଗ ହୋଇ ହତ୍ୟା କରିବ ତାହା ବି ଗଣନା ହେବା ଆବଶ୍ୟକ, ନହେଲେ ଏହା କିପରି ବ୍ୟବହୃତ ହୋଇ ଏକ ପରିଣାମ ସୃଷ୍ଟି କରିବ? ଲୋକମାନେ ଏସବୁ ବିଷୟରେ ଚିନ୍ତା କରନ୍ତି ନାହିଁ ବା ଏହାକୁ ଅନୁଶୀଳନ କରନ୍ତି ନାହିଁ। ସରଳ ଭାବରେ ବିଶ୍ୱାସ କରୁଥିବା ହେତୁ ସେମାନେ ଅନ୍ୟମାନଙ୍କଦ୍ୱାରା ଶୋଷିତ ହୁଅନ୍ତି।

**ପଶୁମାନଙ୍କର ଜାତକ :-**

ଯେପରି ଜଣେ ମଣିଷର ଜାତକ ପ୍ରସ୍ତୁତ ହୋଇ ତାର ଭବିଷ୍ୟତ ଗଣନା କରି ହେଉଛି, ସେହିପରି ପ୍ରତ୍ୟେକ ଜୀବିତ ପ୍ରାଣୀ ଓ ଉଦ୍ଭିଦର ମଧ୍ୟ ଜାତକ ପ୍ରସ୍ତୁତ ହୋଇ ପାରୁଥିବା ଆବଶ୍ୟକ। ଗୋଟିଏ ପ୍ରତିମା ଯେବେ ପ୍ରସ୍ତୁତ ହେବା ଆରମ୍ଭ ହୁଏ ଓ ଯେବେ ତାହା ପୂର୍ଣ୍ଣାଙ୍ଗ ହୁଏ ତାହା ତାର ଭବିଷ୍ୟ ପରିଣାମ ସ୍ଥିର କରେ ବୋଲି ଜ୍ୟୋତିଷମାନେ କହିଥାନ୍ତି। ଏହି ପ୍ରତିମାଟିକୁ ସମ୍ମାନର ସହ ନେଇ ପୂଜା କରାଯିବ ନା ଏହାକୁ ଅଦରକାରୀ କହି ଫିଙ୍ଗି ଦିଆଯିବ ଏହାର ମଧ୍ୟ ଗଣନା ହୋଇପାରିବ ବୋଲି କୁହାଯାଏ। ଯଦି ପ୍ରତିମା ବିଷୟରେ ଏହା କୁହାଯାଇ ପାରୁଛି, ତେବେ ସଂସାରରେ ନିର୍ମିତ ହେଉଥିବା ପ୍ରତ୍ୟେକ ବସ୍ତୁ ବିଷୟରେ ମଧ୍ୟ ଏହା କୁହାଯାଇ ପାରିବ। ଯେପରି ସ୍ଥଳେ ଘଣ୍ଟା, ଲଣ୍ଠନ, ପାତ୍ର, ଚଉକି ଇତ୍ୟାଦି ପ୍ରତ୍ୟେକ ବସ୍ତୁ ବିଷୟରେ ବି ଏହା କୁହାଯିବ। ପ୍ରତ୍ୟେକ ବସ୍ତୁ କେବେ ପ୍ରସ୍ତୁତ ହେବା ଆରମ୍ଭ ହେଲା ବା କେବେ ଶେଷ ହେଲା କିମ୍ବା କେତେବେଳେ ଜଣେ ଗ୍ରାହକ ଏହାକୁ କ୍ରୟ କଲା ଏହି ସମୟ ଅନୁସାରେ ବସ୍ତୁର ଜାତକ ହୋଇପାରିବ। ମଣିଷ ଜୀବନରେ ଯେପରି ସମୟର ଭିନ୍ନତା ଦେଖିବାକୁ ମିଳେ, ବସ୍ତୁ କ୍ଷେତ୍ରରେ ମଧ୍ୟ ସେହିପରି ସମୟର ଭିନ୍ନତା ରହିବା ସମ୍ଭବ। ଜୀବିତ ପ୍ରାଣୀ ହେଉ କିମ୍ବା

Digitized by srujanika@gmail.com

ନିର୍ଜୀବ ବସ୍ତୁ ହେଉ ସମସ୍ତେ ଏକା ଭବିଷ୍ୟତର ସମ୍ମୁଖୀନ ହୁଅନ୍ତି ନାହିଁ। ସେମାନଙ୍କର ସ୍ଥିତି ଓ ବିଲୟ କ୍ଷେତ୍ରରେ ପାର୍ଥକ୍ୟ ଦେଖାଯାଏ।

ଗୋଟିଏ ଘୋଡା ସମ୍ରାଟଙ୍କର ଘୋଡା ଭାବେ ଯତ୍ନ ଓ ସମ୍ମାନର ଅଧିକାରୀ ହୋଇଥାଏ। ଏକା ସମୟରେ ଜନ୍ମ ନେଇଥିବା ଆଉ ଗୋଟିଏ ଘୋଡା ଜୀବନସାରା ଅନ୍ୟର ଗାଡି ଟାଣିବାରେ ବ୍ୟବହୃତ ହୋଇଥାଏ। ଆମ ଜ୍ୟୋତିଷ ଗଣକମାନଙ୍କର ମତ ହେବ ଯେ ସେମାନେ ଘୋଡା ହୋଇଥିଲେ ବି ସେମାନଙ୍କର ସ୍ଥିତି ସେମାନଙ୍କର ଜନ୍ମର ସମୟ ଓ ଦିନ ଉପରେ ନିର୍ଭର କରୁଛି। ଯଦି ଘୋଡା ଦୁଇଟି ଏକା ସ୍ଥାନରେ ଓ ସମୟରେ ଜନ୍ମ ହୋଇଥାନ୍ତି, ତେବେ ସେମାନଙ୍କର ପୃଥକ ସ୍ଥିତି ଯୋଗୁ ଫଳିତ ଜ୍ୟୋତିଷର ସତ୍ୟତା କେଉଁଠି ରହିଛି?

**ମୂର୍ତ୍ତି ଓ ପଥର :-**

ଗୋଟିଏ ପଥରରୁ ମୂର୍ତ୍ତିଟିଏ ନିର୍ମିତ ହୋଇ ଏକ ମନ୍ଦିରରେ ସ୍ଥାପିତ ହୁଏ। ଏଠାରେ ପ୍ରତିଦିନ ମୂର୍ତ୍ତିଟିକୁ ସ୍ନାନ କରାଯାଏ, ଅଳଙ୍କାରରେ ଭୂଷିତ କରାଯାଏ, ଦିନକୁ ବହୁବାର ପୂଜା କରାଯାଏ, ଦାମିକା ଭୂଷଣରେ ଆବୃତ୍ତ କରାଯାଏ। ପ୍ରତ୍ୟେକ ଦିନ ମୂର୍ତ୍ତି ସମ୍ମୁଖରେ ସୁନ୍ଦର ଦେବଦାସୀ ରମଣୀମାନେ ନୃତ୍ୟ କରନ୍ତି ଓ ପ୍ରତ୍ୟେକ ବର୍ଷ ଭକ୍ତମାନଙ୍କର ଆନନ୍ଦ ଓ ମେଳନ ପାଇଁ ମୂର୍ତ୍ତିର ବିବାହ ମଧ୍ୟ କରାଯାଏ। ଜନତାର ଭକ୍ତି ନିବେଦନ ପାଇଁ ପ୍ରତ୍ୟେକ ବର୍ଷ ମୂର୍ତ୍ତିଟିକୁ ବିରାଟ ପଟୁଆରରେ ନିଆଯାଏ। ଯେଉଁ ପଥର ଖଣ୍ଡରୁ ଏହି ପଥର ମୂର୍ତ୍ତିଟି ନିର୍ମିତ ହୋଇଥାଏ ସେହି ପଥର ଖଣ୍ଡର ଅନ୍ୟ ଅଂଶଟି ଯାହା ଏକ ସମୟରେ ଉତ୍ପତ୍ତି ହୋଇଥିଲା ପଥର ହୋଇ ପଡି ରହେ ଯାହା ଉପରେ ଲୋକମାନେ ପାଦରେ ଚାଲନ୍ତି ବା ମଳମୂତ୍ର ତ୍ୟାଗକରନ୍ତି ବା ତା ଉପରେ ଛାପ ପକାନ୍ତି। ସେହି ପଥରକୁ ହୁଏତ ସପ୍ତାହରେ ଥରେ ଦୁଇଥର ଝାଡୁରେ ଝାଡୁଦାର ସଫା କରେ ବା ତା ଉପରେ ଗାଧୁଆ ପାଣି ଢାଳେ। ଦୁଇଟି ପଥର ଭିତରେ ଗୋଟିଏ ମୂର୍ତ୍ତି ହୋଇ ପୂଜା ପାଇବା ଓ ଅନ୍ୟଟି ରାସ୍ତା କଡରେ ପଡି ରହିବା ଭିତରେ ଯେଉଁ ପାର୍ଥକ୍ୟ ଆମେ ଦେଖେ ତାହା ଜ୍ୟୋତିଷମାନେ ବ୍ୟାଖ୍ୟା କଲେ କହିବେ ଯେ ସେମାନଙ୍କର ଜନ୍ମ ସମୟରେ ଗ୍ରହମାନଙ୍କର ସ୍ଥିତି ହିଁ ସେମାନଙ୍କର ଏହି ଭିନ୍ନ ସ୍ଥିତିର କାରଣ।

Digitized by srujanika@gmail.com

**ମଠାଧୀଶଙ୍କ ହାତୀ :-**

ଏବେ କୁହାଯାଇପାରିବ ଯେ ଫଳିତ ଜ୍ୟୋତିଷ ଯଦି ମଣିଷ ମାନଙ୍କ ପାଇଁ ସତ୍ୟ, ତେବେ ଏହା ଅନ୍ୟାନ୍ୟ ଜୀବ ଯନ୍ତୁ, ଗଛଲତା ଓ କାଠ ପଥର ପାଇଁ ମଧ୍ୟ ସତ୍ୟ। ମଣିଷମାନଙ୍କ ଭିତରେ ଭିନ୍ନତା ଯଦି ସେମାନଙ୍କ ଜନ୍ମ ସମୟର ରାଶିଚକ୍ର ଯୋଗୁଁ ହେଉଛି, ପଶୁପକ୍ଷୀ ମାନଙ୍କ କ୍ଷେତ୍ରରେ ବା ନିର୍ଜୀବ ବସ୍ତୁ ମାନଙ୍କ ପାଖରେ ଭିନ୍ନତା ମଧ୍ୟ ଗ୍ରହର ପ୍ରଭାବ ଯୋଗୁଁ ହେଉଛି। ଏହି ଯୁକ୍ତି କିପରି ଅବାନ୍ତର ଓ ଅବୈଧ ତାହା ବୁଝିବା ଦରକାର।

ଘୋଡା ଓ ହାତୀମାନଙ୍କର ଜନ୍ମ ସମୟରେ ସେମାନଙ୍କର ଜନ୍ମ ସମୟକୁ କେତେକ ଲୋକ ଲିପିବଦ୍ଧ କରି ରଖନ୍ତି ଓ ସେମାନଙ୍କର ବି ଜାତକ ଗଣନା କରନ୍ତି। ହର୍ସ ରେସରେ ଭାଗ ନେଉଥିବା ଘୋଡା ମାଲିକମାନେ ଘୋଡା ଓ ହାତୀମାନଙ୍କର ବି ଏହା କରନ୍ତି। କେତେକ ମନ୍ଦିରରେ ରହିଥିବା ହାତୀଙ୍କର ବି ଜନ୍ମ ଜାତକ ପ୍ରସ୍ତୁତ କରାଯାଏ। ହାତୀ, ଘୋଡାମାନଙ୍କର ଜାତକ ଯଦି ପ୍ରସ୍ତୁତ କରାଯାଉଛି ତେବେ କୁକୁଡା, ସାପ, ଝିଟିପିଟି, ପି-ୁଡି କୀଟ ପତଙ୍ଗ ଇତ୍ୟାଦିଙ୍କର ଜନ୍ମ ଜାତକ କାହିଁକି ପ୍ରସ୍ତୁତ କରାଯିବ ନାହିଁ? ମଂଜିରୁ ଅଙ୍କୁରୋଦଗମ୍ ହେବାର ସମୟ ମଧ୍ୟ ଲିପିବଦ୍ଧ କରି ଗଛର ଭବିଷ୍ୟତ ଗଣନା କରିବା ଦରକାର।

**ମୁଣ୍ଡ ନା ଅଙ୍ଗ ପ୍ରତ୍ୟଙ୍ଗ :-**

ଏହି ସବୁ ସମ୍ଭାବନା ବା ପ୍ରଶ୍ନ ସହିତ ଜନ୍ମ ସମୟ କହିଲେ ପ୍ରକୃତରେ କଣ ବୁଝାଯାଏ ବିଚାର କରିବା ଆବଶ୍ୟକ। ଗର୍ଭ ଯନ୍ତ୍ରଣାଠାରୁ ଗୋଟିଏ ଗୋଟିଏ ଅଙ୍ଗ ବାହାରି ଶିଶୁଟି ଜନ୍ମ ନେଇଥାଏ। ଅନେକ କ୍ଷେତ୍ରରେ ମୁଣ୍ଡ ପ୍ରଥମେ ବାହାରି ଥାଏ, ହୁଏତ ପ୍ରଥମେ ଖପୁରି ଦେଖାଯାଏ ବା ମୁହଁ ଦେଖାଯାଏ। କୌଣସି ଅଙ୍ଗ କେତେକ କ୍ଷେତ୍ରରେ ମଧ୍ୟ ପ୍ରଥମେ ଦେଖାଯିବା ନିହାତି ବ୍ୟତିକ୍ରମ ନୁହେଁ। ମୁଣ୍ଡଟି ପ୍ରଥମେ ଦେଖାଯିବାକୁ ଯଦି ଜନ୍ମ ସମୟ ଭାବେ ନିଆଯାଏ, ସେ କ୍ଷେତ୍ରରେ ମୁହଁଟି ଦେଖାଯିବାର ସମୟକୁ ନିଆଯାଏ। କେତେକ କ୍ଷେତ୍ରରେ ମୁଣ୍ଡ ଦେଖାଯିବାଠାରୁ ପୁରା ଜନ୍ମ ଭିତରେ ଘଣ୍ଟାକରୁ ଅଧିକ ବ୍ୟବଧାନ ରହିପାରେ। ଯଦି ମାତୃ ଗର୍ଭ

Digitized by srujanika@gmail.com

ଛାଡି ଶିଶୁଟି ପୂର୍ଣ୍ଣ ଭୂମିଷ୍ଠ ହେବାକୁ ତାର ଜନ୍ମ ସମୟ ଭାବେ ନିଆଯିବ, ତେବେ ପ୍ରକୃତରେ କେଉଁ ସମୟକୁ ତାର ଭବିଷ୍ୟ ଗଣନା ପାଇଁ ଠିକ୍ କରାଯିବ? ଗୋଟିଏ ଦିନକୁ ଜ୍ୟୋତିଷ ଶାସ୍ତ୍ରରେ ୧୬ ଭାଗରେ ବିଭକ୍ତ କରାଯାଇଛି। ପୁଣି ଗୋଟିଏ ଭାଗକୁ ୩.୭୫ ରୁ ୫.୫୦ ଭାଗରେ ବିଭକ୍ତ କରାଯାଇଛି। ଗୋଟିଏ ନକ୍ଷତ୍ର ରାଶିକୁ ୬୦ ଦଣ୍ଡରେ ବିଭାଜନ କରାଯାଏ। ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଏକ ନିର୍ଦ୍ଦିଷ୍ଟ ସମୟରେ ଜନ୍ମ ହୋଇଥିବା ଶିଶୁମାନଙ୍କର ଏକା ପ୍ରକାର ରାଶି ଚକ୍ର ରହିଥାଏ। ସବୁ ଜନ୍ମ ମୃତ୍ୟୁ ପୃଥିବୀରେ ଏହି ସମୟ ଚକ୍ରଦ୍ୱାରା ନିୟନ୍ତ୍ରିତ ହେବା ଦରକାର।

**ପୁଅ ଝିଅ ବିବାହ ଯୋଟକ :-**

ଜନ୍ମ ସମୟରେ ଗ୍ରହମାନଙ୍କର ଅବସ୍ଥିତି ଦେଖି ଯଦି ବି ବ୍ୟକ୍ତିର ଜନ୍ମ ଜାତକ ପ୍ରସ୍ତୁତ କରାଯାଏ, ତେବେ ଜଣେ ବ୍ୟକ୍ତିର ନିତିଦିନିଆ ଜୀବନର ଘଟଣା ପ୍ରବାହକୁ ଗ୍ରହମାନେ କିପରି ପ୍ରଭାବିତ କରିପାରିବେ? ଭିନ୍ନ ଭିନ୍ନ ସମୟରେ ଗ୍ରହମାନେ ବିଭିନ୍ନ ସଂଯୋଗରେ ଅବସ୍ଥାନ କରିପାରନ୍ତି, ତେବେ ଜନ୍ମ ସମୟରେ ଗ୍ରହମାନଙ୍କର ସ୍ଥିତି ବା ସଂଯୋଗ କିପରି ସମଗ୍ର ଜୀବନକୁ ପ୍ରଭାବିତ କରେ ? ଜଣଙ୍କର ଜୀବନରେ ଶତାଧିକ ଘଟଣା ଗୁରୁତ୍ୱପୂର୍ଣ୍ଣ ମନେ ହୋଇପାରେ। ଭବିଷ୍ୟ ଗଣନା କରୁଥିବା ଜ୍ୟୋତିଷୀମାନେ ସେମାନଙ୍କ ପାଖକୁ ଜଣେ ଯେଉଁ ସମୟରେ ଯାଏ, ସେହି ସମୟରେ ଗ୍ରହ ସ୍ତିତି ଦେଖି ଭବିଷ୍ୟ ଗଣନା କରିଥାନ୍ତି। ଜଣଙ୍କର ଜନ୍ମ ସମୟ ନେଇ ଅସ୍ପଷ୍ଟତା ଥିଲେ ବା ଜନ୍ମ ସମୟ ଜଣାନଥିଲେ ନାମକୁ ବିଚାରକୁ ନେଇ ଜଣଙ୍କର ଭବିଷ୍ୟତ ଗଣନା କରାଯାଏ। ତେବେ ପୁଅ ଝିଅଙ୍କର ବିବାହ ପ୍ରସ୍ତାବ ବେଳେ ସେମାନଙ୍କର ନାମ-ରାଶିରେ ଗଣନା ମଧ୍ୟ କରାଯାଏ ନାହିଁ କି? ଏପରିକି କେତେକ ଗୋଟିଏ ଫୁଲର ନାମ ବା ଗୋଟିଏ ପଶୁର ନାମ କହିବାକୁ କହି ତାହାରି ଆଧାରରେ ଭବିଷ୍ୟ ଗଣନା କରନ୍ତି। ଏପରିକି ସର୍ବଜ୍ଞ ଜ୍ୟୋତିଷୀ ଯେଉଁ ଅଙ୍ଗକୁ ପ୍ରଥମେ ଜଣେ ସ୍ପର୍ଶ କରୁଛି ତାକୁ ନେଇ ବି ଭବିଷ୍ୟ କଥା କହନ୍ତି। ଜଣଙ୍କର ଭବିଷ୍ୟତ ଏହିପରି ନାନା ଭାବରେ କହିବାର ଯେଉଁ ଧାରା ଜ୍ୟୋତିଷୀମାନେ ଅବଲମ୍ବନ କରନ୍ତି ତାହାକୁ କେତେଦୂର ବିଶ୍ୱାସ କରାଯିବ?

Digitized by srujanika@gmail.com

ବିଜ୍ଞାନ କେବେ ନାନା ଫନ୍ଦି ଫିକର୍‌କୁ ଗ୍ରହଣ କରେ କି ? ଯଦି ଫନ୍ଦି ଫିକର, ଅନୁମାନ, କଳ୍ପନାଦ୍ୱାରା ଜ୍ଞାନ ସମ୍ଭବ ହେଉଥାନ୍ତା ତେବେ ବିଜ୍ଞାନର ଆବଶ୍ୟକତା ପଡନ୍ତା ନାହିଁ । ବିଜ୍ଞାନ ବରଂ ଆମକୁ ସାର୍ବଜନୀନ ଜ୍ଞାନ ଦେଇଥାଏ, ଯାହା ସ୍ଥିର ଓ ଯଥାର୍ଥ । ବୈଜ୍ଞାନିକ ନିୟମ ଓ ଶୃଙ୍ଖଳା ବ୍ୟତୀତ ଜୀବନର ଧାରା ନିରର୍ଥକ ମନେ ହୁଅନ୍ତା । କୁସଂସ୍କାର, କଳ୍ପନା, ଅନ୍ଦାଜ ଉପରେ ଧର୍ମ ଓ ଫଳିତ ଜ୍ୟୋତିଷ ହିଁ ଗଢି ଉଠିଥିବା ମନେ ହୁଏ ।

**ପୂର୍ବକର୍ମ ଓ ସାଂପ୍ରତିକ ଜୀବନ :-**

ଫଳିତ ଜ୍ୟୋତିଷର ଭବିଷ୍ୟ ଗଣନା ସହ ଆଉ ଏକ ବିଷୟ୍ ମଧ୍ୟ ସଂଶ୍ଲିଷ୍ଟ । ଜଣଙ୍କର ଜନ୍ମ ସମୟ୍‌ରେ ଏପରି ନିର୍ଦ୍ଦିଷ୍ଟ ସ୍ଥିତି କାହିଁକି ହେବା ଦେଖାଯାଏ? ଧର୍ମବିଶ୍ୱାସୀଙ୍କ ମତରେ ଅତୀତର କର୍ମ ବର୍ତ୍ତମାନ ଜୀବନର ଗତିପଥକୁ ନିୟନ୍ତ୍ରଣ କରୁଥିବା ହେତୁ ଜଣଙ୍କର ଜନ୍ମ ସମୟ୍‌ରେ ଗ୍ରହମାନେ ଏକ ନିର୍ଦ୍ଦିଷ୍ଟ ସ୍ଥିତିରେ ରହିଥାନ୍ତି । ଇଶ୍ୱର ଗ୍ରହମାନଙ୍କର ଏକ ନିର୍ଦ୍ଦିଷ୍ଟ ସ୍ଥିତିକୁ ଜଣଙ୍କର ଜନ୍ମ ସମୟ୍‌ରେ ସ୍ଥିର କରି ଦିଅନ୍ତି ଯଦ୍ୱାରା ସେ ଜନ୍ମ ହୋଇ କର୍ମର ଫଳ ଭୋଗକରିବ । ଜ୍ୟୋତିଷଗଣକ ଲୋକଙ୍କର ଭାଗ୍ୟ ଗଣନା କରି ଯେଉଁ ଭବିଷ୍ୟବାଣୀ କରନ୍ତି ଲୋକମାନେ ତାହାକୁ ବିନା ସନ୍ଦେହରେ ମାନି ନିଅନ୍ତି । କାରଣ ଲୋକଙ୍କର ବିଶ୍ୱାସ ଯେ ସେମାନଙ୍କର ଅତୀତର କର୍ମଫଳ ସେମାନଙ୍କୁ ଭୋଗ କରିବାକୁ ହିଁ ହେବ । ସେମାନଙ୍କର ଭବିଷ୍ୟତ ପୂର୍ବରୁ ହିଁ ନିର୍ଦ୍ଧାରିତ ହୋଇ ଯାଇଛି । ତେବେ ଜଣଙ୍କର ଅତୀତର କର୍ମ ତାଙ୍କର ଭବିଷ୍ୟତକୁ ନିର୍ଦ୍ଧାରିତ କରେ ନା ଜନ୍ମ ସମୟ୍‌ର ଗ୍ରହ-ସ୍ଥିତି ତାଙ୍କର ଭବିଷ୍ୟତକୁ ନିର୍ଦ୍ଧାରିତ କରେ ? ଏହି ସମସ୍ୟାର ସମାଧାନ ପାଇଁ ଏହା ବିଶ୍ୱାସ କରାଯାଏ ଯେ ଗ୍ରହମାନଙ୍କର ସଂଯୋଗ ତାଙ୍କର କର୍ମ ସହ ସୁସଂଗତ ହେବାକୁ ଏକ ନିର୍ଦ୍ଦିଷ୍ଟ ସ୍ଥିତିରେ ରୁହନ୍ତି । ପୁନଶ୍ଚ ଆମକୁ କୁହାଯାଏ ଯେ କର୍ମଫଳକୁ ଏହି ଜନ୍ମର କର୍ମଦ୍ୱାରା ପରିବର୍ତ୍ତନ କରାଯାଇପାରିବ । ଏହିପରି ନାନା ଅସ୍ପଷ୍ଟତା ଭିତରେ ଜଣଙ୍କୁ ପୁରା ବିଭ୍ରାନ୍ତ କରାଯାଏ । ଜଣଙ୍କର ଜୀବନର ଘଟଣା ପ୍ରବାହ ପ୍ରକୃତରେ କିପରି ପ୍ରଭାବିତ ହୁଏ ସେ ନେଇ ସେ କିଛି ବୁଝିପାରେ ନାହିଁ । (୧) ପୂର୍ବଜନ୍ମର କର୍ମ ୨) ଜନ୍ମ ସମୟ୍‌ରେ ଗ୍ରହମାନଙ୍କର ସ୍ଥିତି, ୩) ଜୀବନର କୌଣସି

Digitized by srujanika@gmail.com

ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସଂପାଦନ ସମୟରେ ଗ୍ରହମାନଙ୍କର ଅବସ୍ଥିତି, ୪) ଜଣଙ୍କୁ ବାପା ମା ଯେଉଁ ନାମରେ ନାମିତ କରିଛନ୍ତି, ୫) ଭାଗ୍ୟ ବା ଅନ୍ୟର କାର୍ଯ୍ୟ, ୬) ଜଣେ ନିଜର ଏହି ଜୀବନ କାଳ ଭିତରେ କରୁଥିବା କାର୍ଯ୍ୟ, ୭) ମୃତ ଆତ୍ମାମାନଙ୍କୁ ସନ୍ତୁଷ୍ଟ କରିବାକୁ ସେ ଯେଉଁ କାର୍ଯ୍ୟ କରୁଛି ସେମାନଙ୍କର ପ୍ରଭାବ, ୮) ଜଣଙ୍କର ପାର୍ଥନା ଓ କରୁଣାଭାବ, ୯) ପିତା-ମାତାଙ୍କ ଠାରୁ ଲାଭ କରିଥିବା ଗୁଣ ବା ପରିବେଶ ଜନିତ ପ୍ରଭାବ, ୧୦) ଈଶ୍ୱରଙ୍କ କରୁଣା - କେଉଁ କାରଣ ଦ୍ୱାରା ଓ କେତେ ମାତ୍ରାରେ ଜଣଙ୍କର ଜୀବନର ଘଟଣାମାନ ପ୍ରଭାବିତ ତାହା ନେଇ ଜଣେ କିଛି ଭାବିପାରେ ନାହିଁ।

**ସାଧାରଣ ପ୍ରବାଦ :-**

ଯଦି ଜଣଙ୍କର ଭାଗ୍ୟରେ ସେ ହତ୍ୟାଦ୍ୱାରା ମୃତ୍ୟୁବରଣ କରିବେ ବୋଲି ଲେଖାନାହିଁ ତେବେ ତାଙ୍କୁ ଅନ୍ୟ ଜଣେ ଏକ ନିର୍ଦ୍ଦିଷ୍ଟ ସମୟରେ ହତ୍ୟା କରିପାରିବ ନାହିଁ। ଏହାଦ୍ୱାରା ଜଣେ ବ୍ୟକ୍ତିର କାର୍ଯ୍ୟ କ୍ଷେତ୍ରରେ ତାହାର ନୈତିକ ଦାୟିତ୍ୱ ନ୍ୟୂନ ହୋଇଯିବା ମନେହୁଏ। ତେଣୁ ହତ୍ୟାକାରୀକୁ ନିନ୍ଦା କରିବା କିମ୍ବା ହତ୍ୟାରେ ଶିକାର ହୋଇଥିବା ବ୍ୟକ୍ତି ପ୍ରତି ଦୟାବାନ ହେବା ନିରର୍ଥକ। କାରଣ ଯାହା ହେଲା ତାହା ପୂର୍ବରୁ ବିଧିନିର୍ଦ୍ଦିଷ୍ଟ ହୋଇରହିଛି। ଭାଗ୍ୟବାଦ ଜନିତ ସିଦ୍ଧାନ୍ତ ଲୋକମାନଙ୍କୁ ବେପରବାୟ କିମ୍ବା ଭୟାଳୁ କରିଥାଏ। କାରଣ ଏଥିରେ କାର୍ଯ୍ୟ କ୍ଷେତ୍ରରେ କୌଣସି ନୈତିକ ଦାୟିତ୍ୱ ନଥାଏ।

ଯେଉଁ ଈଶ୍ୱର ଭାଗ୍ୟରେ ଯାହା ଲେଖିଛନ୍ତି ତାହାକୁ ଲିଭାଇ ପୁଣି ଥରେ ଲେଖିବେ ନା କ'ଣ ? ଭାଗ୍ୟକୁ କିଏ ଅତିକ୍ରମ କରିପାରିବ ? ପ୍ରତ୍ୟେକ ନିଜ ପୂର୍ବ ଜନ୍ମର କର୍ମ, ଫଳ ଭୋଗ କରିବାକୁ ବାଧ୍ୟ।

ଏହାର ପ୍ରବାଦ ଗୁଡିକୁ ଭାରତୀୟ ଜନଜୀବନରେ ସାଧାରଣ ବିଶ୍ୱାସ ଭାବେ ନିଆଯାଏ। ଏହା ବ୍ୟକ୍ତିର ନୈତିକ ଦାୟିତ୍ୱବୋଧକୁ ନଷ୍ଟ କରିବା ସହ ବ୍ୟକ୍ତି ଭିତରେ କର୍ମ କରିବାର ଆଗ୍ରହକୁ ବି ପରାହତ କରିଥାଏ। ଗ୍ରହ, ନକ୍ଷତ୍ର ପୂର୍ବ କର୍ମ, କର୍ମଫଳ, ଭାଗ୍ୟ ଆଳରେ ବ୍ୟକ୍ତି ଭିତରର ଅନୁସନ୍ଧିତ୍ସା ଓ କର୍ମ-ପ୍ରେରଣାକୁ ଏହି ସବୁ ଭାବନା ନଷ୍ଟ କରିଦିଏ।

Digitized by srujanika@gmail.com

**ସ୍ୱର୍ଗ ଓ ନରକ :-**

ବ୍ୟକ୍ତିର କର୍ମର ଦାୟିତ୍ୱକୁ ବ୍ୟକ୍ତି ପରିବର୍ତ୍ତେ ଅବ୍ୟକ୍ତିକ ଶକ୍ତି ଉପରେ ନ୍ୟସ୍ତ କଲେ ନିଜର କର୍ମ ପାଇଁ ପାପ ପୁଣ୍ୟ ଅର୍ଜନ କରିବାର ପ୍ରଶ୍ନ କେଉଁଠି ଉଠିବ? ସେପରି ସ୍ଥଳେ ସ୍ୱର୍ଗ ପ୍ରାପ୍ତ ହେବା, ନରକ ଗତି ପ୍ରାପ୍ତ ହେବାର କିଛି ତାତ୍ପର୍ଯ୍ୟ ରହିବ ନାହିଁ। ଯଦି ବ୍ୟକ୍ତି ତାର କାର୍ଯ୍ୟର ଦାୟିତ୍ୱରୁ ମୁକ୍ତ, ତେବେ ମନ୍ଦ କାର୍ଯ୍ୟ ପାଇଁ ଦଣ୍ଡ ବା ଭଲ କାର୍ଯ୍ୟ ପାଇଁ ଆଦରର ଅର୍ଥ କିଛି ରହିବ କି? ଏହି ଦୃଷ୍ଟିରୁ ବିଚାର କଲେ ବି ଫଳିତ ଜ୍ୟୋତିଷର କୌଣସି ଅର୍ଥ ହିଁ ରହିବ ନାହିଁ। ଜଣେ ବ୍ୟକ୍ତି ଭବିଷ୍ୟତରେ କ'ଣ ହେବ ତାହା ଫଳିତ ଜ୍ୟୋତିଷ ନିର୍ଦ୍ଧାରଣ କରିପାରିବ ନାହିଁ। ଏସବୁ ବିଷୟ ଅହେତୁକ ମନେହେବା ସହିତ ଏହା ସଂପୂର୍ଣ୍ଣ ଅବୈଜ୍ଞାନିକ ମନେ ହୁଏ।

ଏହା ସତ୍ୟ ଯେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ସମସ୍ତେ ଫଳିତ ଜ୍ୟୋତିଷରେ ବିଶ୍ୱାସ କରନ୍ତି। ଏପରିକି କେତେକ ନିରୀଶ୍ୱରବାଦୀ ମଧ୍ୟ ଫଳିତ ଜ୍ୟୋତିଷର ପ୍ରଚାରରେ ଭୁଲିଥାନ୍ତି। ଫଳିତ ଜ୍ୟୋତିଷର ପ୍ରବକ୍ତାମାନେ ଏହାକୁ ବିଜ୍ଞାନର ପୁଟ ଦେଇ ପ୍ରଚାର କରନ୍ତି ଓ ଏହାକୁ ଈଶ୍ୱର ଭାବନାରୁ ମୁକ୍ତ ରଖନ୍ତି। ଫଳିତ ଜ୍ୟୋତିଷ ଉପରେ ବିଶ୍ୱାସର କାରଣ ହେଉଛି ଲୋକମାନେ ଭୟ ଜନିତ ଓ ମନସ୍ତାତ୍ତ୍ୱିକ କାରଣରୁ ଏଥିରେ ଆସ୍ଥା ସ୍ଥାପନ କରନ୍ତି। ମାନସିକ ଭୟ, ଜୀବନର ବାସ୍ତବତାକୁ ସମ୍ମୁଖୀନ ହେବାରେ ସାହସର ଅଭାବ ଓ ସର୍ବଦା ଭଲ ଫଳ ପାଇଁ ଆଶା କରୁଥିବା କାରଣ ଯୋଗୁଁ ଲୋକମାନେ ଏଥିରେ ଏତେ ବିଶ୍ୱାସ କରନ୍ତି। ନିଜର ସୁଖମୟ ଭବିଷ୍ୟତ ପାଇଁ ସମସ୍ତେ ଆଗ୍ରହୀ । ଫଳିତ ଜ୍ୟୋତିଷରେ ବିଶ୍ୱାସ ନଥିଲେ ମଧ୍ୟ ଜଣେ ଅନ୍ୟମାନଙ୍କ ସହ ଏହି ବିଶ୍ୱାସରେ ଏକାଠି ପହଁରିବାକୁ ଭଲ ପାଏ। ଏହିପରି କୁସଂସ୍କାର ଏପରି ରକ୍ତ ମଜ୍ଜାଗତ ହୋଇଯାଏ ଯେ ସେଥିରୁ ମୁକ୍ତ ହେବା ସହଜ ସାଧ୍ୟ ହୁଏ ନାହିଁ।

**ମୁସଲମାନ ଓ ଖ୍ରୀଷ୍ଟିଆନମାନେ କାହିଁକି ବିଶ୍ୱାସ କରନ୍ତି ?**

ୟୁରୋପ, ଆମେରିକା ଓ ରୁଷର ଲୋକମାନେ ବିଜ୍ଞାନ କ୍ଷେତ୍ରରେ ବେଶ୍ ଆଗୁଆ। ଯଦି ଫଳିତ ଜ୍ୟୋତିଷ କ୍ଷେତ୍ରରେ କିଛି ସତ୍ୟତା ଥାନ୍ତା ତେବେ ସେ

Digitized by srujanika@gmail.com

ଦେଶର ବୈଜ୍ଞାନିକ ମାନେ ଏହାକୁ ଗୁରୁତ୍ୱ ଦେଇନଥାନ୍ତେ କି ? ବିଜ୍ଞାନ କୌଣସି ଧର୍ମ ସହ ସଂପୃକ୍ତ ନୁହେଁ। ବରଂ ବିଜ୍ଞାନ ସତ୍ୟ ଓ ମଣିଷ ପ୍ରଜ୍ଞାର ଗଭୀରତମ ଅନୁଶୀଳନର ପରିଣାମ। ବୈଜ୍ଞାନିକମାନେ ଫଳିତ ଜ୍ୟୋତିଷର ଅସତ୍ୟତା ଯୋଗୁଁ ଏଥିରେ କୌଣସି ଆଗ୍ରହ ଦେଖାନ୍ତି ନାହିଁ। ଏଥିରେ ସତ୍ୟତା ଥିଲେ ଏହା ବୈଜ୍ଞାନିକ ଅନୁଶୀଳନରୁ ବାଦ୍ ପଡିନଥାନ୍ତା।

ପ୍ରକୃତରେ ଦେଖିଲେ ମୁସଲମାନ, ଖ୍ରୀଷ୍ଟିୟାନମାନେ ଏଥିରେ ଏତେ ବିଶ୍ୱାସ କରନ୍ତି ନାହିଁ। କେବଳ ଭାରତୀୟ ଲୋକମାନେ ହିଁ ଏସବୁରେ ବିଶ୍ୱାସ କରନ୍ତି। ଭାରତୀୟ ମୁସଲମାନ ଓ ଖ୍ରୀଷ୍ଟିଆନମାନେ ହିନ୍ଦୁଧର୍ମରୁ ଯାଇଛନ୍ତି, ଫଳରେ ସେମାନେ ହିନ୍ଦୁ ବିଶ୍ୱାସରୁ ପୂର୍ଣ୍ଣ ମୁକ୍ତ ହୋଇପାରି ନାହାନ୍ତି। ହିନ୍ଦୁ ସଂପୃକ୍ତିରୁ ସେମାନେ ଏଥିରେ ବିଶ୍ୱାସ କରୁଛନ୍ତି। ହିନ୍ଦୁମାନଙ୍କ ପାଇଁ ଜ୍ୟୋତିଷ ଗଣନା ଧର୍ମର ଏକ ଅଙ୍ଗ। ଏହା ବହୁ କୁସଂସ୍କାର ପରି ଆଉ ଏକ କୁସଂସ୍କାର ଯାହାକୁ ଲୋକମାନେ ବିଶ୍ୱାସ କରି ଆସିଛନ୍ତି। ହେତୁବାଦୀମାନେ ଫଳିତ ଜ୍ୟୋତିଷକୁ ପ୍ରତ୍ୟାଖ୍ୟାନ କରିବା ଆବଶ୍ୟକ।

* * * * * * *



Digitized by srujanika@gmail.com

# ୨ . ବିପ୍ଳବ ପଶ୍ଚାତର ଦର୍ଶନ

ବିପ୍ଳବ କହିଲେ କଣ ବୁଝାଏ ? ଏହାକୁ ଭୟ କରିବା ଆବଶ୍ୟକ କି ? ଗମନାଗମନ କ୍ଷେତ୍ରରେ ଏହା ଭିତରେ ଏକ ବିପ୍ଳବ ହୋଇଯାଇଛି । ପ୍ରଥମରେ ମଣିଷ ଘଣ୍ଟାକୁ ମାତ୍ର ଚାରି ମାଇଲ ଯାଇ ପାଇଥିଲା । ଯଦି ସେ ଏବେ ଆକାଶରେ ଘଣ୍ଟାକୁ ୪୦୦, ୫୦୦, ୧୦୦୦ ମାଇଲ ଯାଇପାରୁଛି ତେବେ ତାହା ଏକ ବୈପ୍ଳବିକ ପରିବର୍ତ୍ତନ । ଯେ ଘଣ୍ଟାକୁ ପୂର୍ବ ଗତିରେ ମାତ୍ର ଚାରି ମାଇଲ ଯାଏ ସେ ଆକାଶରେ ଘଣ୍ଟାକୁ ୫୦୦ ମାଇଲ ଯାଇ ପାରୁଥିବା ଜାଣିଲେ ଆଶ୍ଚର୍ଯ୍ୟାନ୍ୱିତ ହୁଏ । ତେବେ ଏଥିରେ ଆଶ୍ଚର୍ଯ୍ୟ ହେବାର ବା ଭୟ କରିବାର କିଛି କାରଣ ନାହିଁ ।

**ପରବର୍ତ୍ତୀ ପରିବର୍ତ୍ତନ ପାଇଁ ପ୍ରସ୍ତୁତି -**

କୌଣସି ପୁରାତନ ଓ ପରଂପରାଗତ ଅଭ୍ୟାସ ବଦଳରେ ଏକ ନୂତନ ବ୍ୟବସ୍ଥାର ପ୍ରଚଳନ ହିଁ ଏକ ବିପ୍ଳବ । ଯେଉଁମାନେ ଏକ ପରିବର୍ତ୍ତନ ଦ୍ୱାରା ଉପକୃତ ହେବେ ସେମାନେ ପରିବର୍ତ୍ତନକୁ ସ୍ୱାଗତ କରିବେ । କିନ୍ତୁ ଯେଉଁମାନେ ପରିବର୍ତ୍ତନ ଦ୍ୱାରା କ୍ଷତିଗ୍ରସ୍ତ ହେବେ ସେମାନେ ଏହାକୁ ନାନା ଭାବରେ ବିରୋଧ କରିବେ ଓ ଏହା ବିରୁଦ୍ଧରେ ଅପପ୍ରଚାର ଓ ମିଥ୍ୟା ଆରୋପମାନ ଆଣିବେ । ତେବେ ମଣିଷ ସମାଜରେ ବହୁ ଅତୀତରୁ ବୈପ୍ଳବିକ ପରିବର୍ତ୍ତନ ମାନ ସଂଘଟିତ ହୋଇ ଆସୁଛି । ପ୍ରଗତି ପାଇଁ ଗୋଟିଏ ନୂତନ ପ୍ରୟାସ ଦ୍ୱାରା ଉଲ୍ଲେଖନୀୟ ପରିବର୍ତ୍ତନ ହୋଇଛି । ସାରା ପୃଥିବୀରେ ବିଭିନ୍ନ ପରିବର୍ତ୍ତନ ଦେଇ ସଭ୍ୟତାର କିପରି ବିକାଶ ହୋଇଛି ଆମେ ତାହା ଶୁଣିଛେ, ପଢୁଛେ । ତେବେ ଏହି ପରିବର୍ତ୍ତନ ଯୋଗୁଁ କୌଣସି ଦେଶ ବା ଜାତିର ଅବକ୍ଷୟ ବା ନିମ୍ନଗତି ହୋଇଛି କି ? ଆରମ୍ଭରେ ପରିବର୍ତ୍ତନକୁ ନେଇ ହୁଏତ କିଛି ସନ୍ଦେହ ଉପୁଜିଛି ବା ଝଡ ଉଠିଛି, ତେବେ ଲୋକମାନେ ଧୀରେ ଧୀରେ ପରିବର୍ତ୍ତନର ଧାରାକୁ ଗ୍ରହଣ କରିଛନ୍ତି ଓ ପରବର୍ତ୍ତୀ ପରିବର୍ତ୍ତନ ପାଇଁ ପ୍ରସ୍ତୁତ ହୋଇଛନ୍ତି ।

Digitized by srujanika@gmail.com

**ରାଜା ହିଁ ବିଷ୍ଣୁ :**

ରାଜନୈତିକ ସ୍ତରରେ ହୋଇଥିବା ପରିବର୍ତ୍ତନକୁ ଦେଖାଯାଉ। ବହୁଦିନ ଧରି ଭାବନା ଥିଲା ଯେ ରାଜାମାନେ ହେଉଛନ୍ତି ଭଗବାନଙ୍କ ଅବତାର, ଦିବ୍ୟ ଶକ୍ତିର ପ୍ରତୀକ ଓ ନ୍ୟାୟର ମୂର୍ତ୍ତିମନ୍ତ ପ୍ରତୀକ। ହିନ୍ଦୁ ଧର୍ମ ଶାସ୍ତ୍ରରେ ମଧ୍ୟ ଏହି ମତ ରହିଛି। ଏପର୍ଯ୍ୟନ୍ତ ବି ରାଜାଙ୍କୁ ବିଷ୍ଣୁଙ୍କର (ଈଶ୍ୱରଙ୍କର) ପ୍ରତିନିଧି ଭାବେ ସମ୍ମାନ କରାଯାଇଛି । ବର୍ତ୍ତମାନର ସ୍ଥିତି କ'ଣ ? ରାଜା ଓ ରାଜତନ୍ତ୍ର ବ୍ୟବସ୍ଥାକୁ ଏବେ କେହି ଗ୍ରହଣ କରିବେ କି ? ଲୋକମାନଙ୍କର ଆତ୍ମସମ୍ମାନ ଭାବନା ସହିତ ରାଜା ଓ ରାଜତନ୍ତ୍ର ଭାବନା ଅସଂଗତ ମନେହୁଏ। ରାଜଭକ୍ତି ଏକ ଦାସତ୍ୱ ମାନସିକତାର ପ୍ରତୀକ। ଆମମାନଙ୍କର ଜୀବନକାଳ ଭିତରେ ରାଜତନ୍ତ୍ର କିପରି ଅଲୋଡା ହେଉଛି ଆମେ ଦେଖିବାକୁ ପାଇଛେ। ପ୍ରାଚ୍ୟ ଓ ପାଶ୍ଚାତ୍ୟ ସବୁ ସ୍ଥାନରେ ରାଜତନ୍ତ୍ରର ମୃତ୍ୟୁ ଘଣ୍ଟି ବାଜିଛି। ରାଜନୈତିକ ସ୍ତରରେ ଏହା ଏକ ବୈପ୍ଳବିକ ପରିବର୍ତ୍ତନ ନୁହେଁ କି ? ରାଜମାନଙ୍କର ପତନ ଓ ରାଜତନ୍ତ୍ରର ବିଲୋପ ଦ୍ୱାରା କଣ କିଛି ଦୁର୍ଦ୍ଦଶା ଘଟିଛି କି? ରାଜାମାନେ ଈଶ୍ୱରଙ୍କ ପ୍ରତିନିଧି ଓ ସେମାନଙ୍କ ପ୍ରତି ଆଙ୍ଗୁଳି ନିର୍ଦ୍ଦେଶ କରାଯାଇ ପାରିବ ନାହିଁ ଭାବନାକୁ ବିରୋଧ କରାଯିବାରୁ କେଉଁ ରାଜ୍ୟ ଈଶ୍ୱରଙ୍କ କ୍ରୋଧର ଶିକାର ହୋଇଛି କି? ଈଶ୍ୱରଙ୍କ ପ୍ରତିନିଧିଙ୍କୁ ହଟା ଯାଉଥିବାରୁ କେଉଁଠି ଭୂକଂପ, ଅଗ୍ନିଉତ୍ପାତ ପରି ଦୁର୍ବିପାକ ଘଟିଛି କି ? ରାଜତନ୍ତ୍ର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ବିପ୍ଳବ ପାଇଁ ଆହ୍ୱାନ ଦେଇଥିବା କୌଣସି ବ୍ୟକ୍ତିର ଜିଭ ପୋଡିଯାଇଛି ନା ତାର ମୁଣ୍ଡ ଫାଟି ଯାଇଛି ? ଷାଠିଏ ସତୁରୀ ବର୍ଷ ତଳେ ରାଜା ବା ସରକାର ବିରୁଦ୍ଧରେ କହିବା ପାଇଁ ଲୋକମାନେ ପ୍ରାଣଭୟ କରୁଥିଲେ। କୌଣସି ପୁରାଣ ବା ଶାସ୍ତ୍ରରେ ରାଜାଙ୍କ ବିରୁଦ୍ଧରେ ନା କିଛି କୁହାଯାଇଛି ନା ବିପ୍ଳବ ପାଇଁ କିଛି ସନ୍ଦେଶ ରହିଛି। ଅତୀତରେ ରାଜା ଓ ରାଜତନ୍ତ୍ରର ବିଲୋପ ପାଇଁ ଆମେ କାହିଁକି କୌଣସି ସଂପୃକ୍ତି ପ୍ରକାଶ କରି ନାହେଁ? ଏହାକୁ ପରିବର୍ତ୍ତନ ପାଇଁ ଲୋକମାନେ କେଉଁଠାରୁ ଓ କିପରି ପ୍ରେରଣା ପାଇଛନ୍ତି? ତେବେ ଏହି ପ୍ରେରଣା ଈଶ୍ୱର ବା ଧର୍ମଠାରୁ ମିଳିନାହିଁ।

Digitized by srujanika@gmail.com

**ଅସ୍ପୃଶ୍ୟତା**

ସେହିପରି ସମାଜର କିଛି ବ୍ୟକ୍ତିଙ୍କୁ ଆମେ ଈଶ୍ୱରଙ୍କ ପ୍ରତିନିଧି ବୋଲି ଭାବୁଥିଲେ ଓ ଅନ୍ୟ ଏକ ଗୋଷ୍ଠୀକୁ ଛୁଇଁବା ବା ଏପରିକି ଦେଖିବା ମଧ୍ୟ ଅନୁଚିତ ବୋଲି ଭାବି ଆସିଥିଲେ। ବେଦ, ଶାସ୍ତ୍ର ଓ ପୁରାଣକୁ ଉଦ୍ଧାର କରି ଈଶ୍ୱରଙ୍କ ପ୍ରତିନିଧି ବୋଲାଉଥିବା ବ୍ରାହ୍ମଣମାନଙ୍କୁ ଭୂଦେବ କହି ଲୋକମାନେ ସେମାନଙ୍କ ପାଦତଳେ ପଡୁଥିଲେ ଓ ଅନ୍ୟପଟେ ଅସ୍ପୃଶ୍ୟ କହୁଥିବା ଲୋକମାନଙ୍କ ପ୍ରତି ଅତ୍ୟନ୍ତ ଅମାନବୀୟ ବ୍ୟବହାର ପ୍ରଦର୍ଶନ କରୁନଥିଲେ କି ? ଯେଉଁମାନେ ଏହି ପରି ଭେଦଭାବ ମୂଳକ ବିଚାର ଦେଇ ଆସିଛନ୍ତି ସେମାନେ ଶଙ୍କରାଚାର୍ଯ୍ୟ, ମହାତ୍ମା, ଗୁରୁ ଓ ବ୍ରାହ୍ମଣ ଭାବେ ସମ୍ମାନିତ ହୋଇ ଆସିଛନ୍ତି। ଆଜିର ସ୍ଥିତି କଣ ? ଅସ୍ପୃଶ୍ୟତା ସମାଜରୁ ଅନେକାଂଶରେ ଲୋପ ପାଇ ଆସିଲାଣି। ଆୟର, ଆୟେଙ୍ଗର, ରାଜା, ଜମିଦାର ନିର୍ବାଚନ ଲଢି, ଜିତି, ଅସ୍ପୃଶ୍ୟ ଲୋକମାନଙ୍କ ସହ ବିଧାନସଭାରେ ଏକାଠି ବସିବାକୁ ହଜାର ହଜାର ଟଙ୍କା ବ୍ୟୟ କରୁନାହାନ୍ତି କି? ମାନସିକତାରେ ଓ ବିଚାରରେ ଏହି ପରିବର୍ତ୍ତନ ହିଁ ହେଉଛି ବିପ୍ଳବ।

**ବାଲ୍ୟ ବିବାହ :**

ଆମର ଶାସ୍ତ୍ରମାନେ କହିଛନ୍ତି ଯେ ଗୋଟିଏ ଝିଅ ଯଦି ଦଶ ବର୍ଷ ପୂର୍ବରୁ ବିବାହ ନ କରେ ତେବେ ତାର ବାପା, ମା ନର୍କଗାମୀ ହେବେ ଓ ସେ ଝିଅ ବି ନିଜର ପବିତ୍ରତା ରକ୍ଷା କରିପାରିବ ନାହିଁ। ଆମ ଋଷି ଓ ଶାସ୍ତ୍ରକାରମାନଙ୍କର ଏହି ମତକୁ ଆମେ ପ୍ରତ୍ୟାଖ୍ୟାନ କରିଛେ। ପନ୍ଦର ବର୍ଷ ପୂର୍ବରୁ କୌଣସି ଝିଅ ବିବାହ କରିପାରିବ ନାହିଁ ବୋଲି ସରକାର ବି ନିୟମ କରିଛନ୍ତି। ଯଦି କୌଣସି ବାପା, ମା ଝିଅର ବାଲ୍ୟ ବିବାହ କରାନ୍ତି ତେବେ ସେମାନେ ଆଇନଦ୍ୱାରା ଦଣ୍ଡିତ ହେବେ। ଏହା ନିଶ୍ଚିତ ଭାବେ ଏକ ସାମାଜିକ ବିପ୍ଳବ। ଏହି ନୂତନ ନିୟମ ହେବା ଦ୍ୱାରା ସେପରି କିଛି ଅଘଟଣ ଘଟି ନାହିଁ। ଶାସ୍ତ୍ର ବିରୁଦ୍ଧରେ ଯାଇ ଏପରି ନିୟମ କରିଥିବାରୁ କେଉଁ ଈଶ୍ୱର ସ୍ୱର୍ଗରୁ ଆସି କୌଣସି ଧ୍ୱଂସ କରିନାହାନ୍ତି ବା ପରିବର୍ତ୍ତନ କରିଥିବା ଲୋକଙ୍କୁ ଦଣ୍ଡିତ କରିନାହାନ୍ତି।

Digitized by srujanika@gmail.com

**ଦିଅଁ ଦେବତା- ହାସ୍ୟର ପାତ୍ର:**

ରାଜନୈତିକ ଓ ସାମାଜିକ ପରିସରରେ ଏହି ପରିବର୍ତ୍ତନକୁ ଆଜି ସମସ୍ତେ ସାଧାରଣ ଘଟଣା ବୋଲି ଗ୍ରହଣ କରି ନେଇଛନ୍ତି । ଏହି ପରିବର୍ତ୍ତନ ଯଥାର୍ଥ ଓ ଉପଯୋଗୀ ମଧ୍ୟ ।

ଆମ ଦିଅଁ ଦେବତା ଯେଉଁମାନେ ସବୁ ସୃଷ୍ଟି କରିଛନ୍ତି ବା ସବୁକିଛିକୁ ସୁରକ୍ଷା ଦେଉଛନ୍ତି ବୋଲି ଭାବନା ରହିଛି ସେମାନଙ୍କର ଗମନାଗମନ ବିଷୟ ଦେଖନ୍ତୁ । ଆମେ ଭାବି ଆସିଛୁ ଆମ ଭୂମି ହେଉଛି ପବିତ୍ର, କାରଣ ଏଠାରେ କେତେ ଦେବ ଦେବୀ ରହିଛନ୍ତି । ଆମ ପୁରାଣର ଦେବ-ଦେବୀମାନେ କିନ୍ତୁ ହାସ୍ୟର ପାତ୍ର । ଯେଉଁ ଧାର୍ମିକ ବିଶ୍ୱାସରୁ ଆମେ ଏତେ ଦେବ-ଦେବୀଙ୍କୁ ବିଶ୍ୱାସ କରିଆସିଛେ, ସେହି ଭାବନାର ଉପଯୋଗିତା ରହିଛି କି ? ଧାର୍ମିକ ମାନସିକତାରେ ଯେଉଁ ପରିବର୍ତ୍ତନ ଆସିଛି, ତାହା ଏକ ବିପ୍ଳବ ନୁହେଁ କି? ଏହି ପରିବର୍ତ୍ତନଯୋଗୁଁ ସମାଜରେ କିଛି ଅଘଟଣ ଘଟୁଛି କି ? ତେବେ ମୁଷ୍ଟିମେୟ ପୂଜକ ଗୋଷ୍ଠୀ ଯେପରି ବିନା ପରିଶ୍ରମରେ ଅର୍ଥ ଉପାର୍ଜନ କରୁଥିଲେ, ସେଥିରେ କିଛି ବିଘ୍ନ ସୃଷ୍ଟି ହୋଇଛି । କର୍ମଭିରୁ ଏହି ଲୋକମାନଙ୍କର ସଂଖ୍ୟା କିନ୍ତୁ ନଗଣ୍ୟ ଓ ଏହାଦ୍ୱାରା ସମାଜର କୌଣସି କ୍ଷତି ହୋଇନାହିଁ ।

ପୂଜକଙ୍କ ଦୁର୍ଗ

ମଣିଷର ଭାବନା ଓ ଦୃଷ୍ଟିଭଙ୍ଗୀରେ ଏହି ବୈପ୍ଳବିକ ପରିବର୍ତ୍ତନ ଯୋଗୁଁ ଆମେ ସଂପ୍ରତି ରାଜା, ପୂଜକ, ଜାତି, ଧର୍ମ ଓ ଦେବ ଦେବୀମାନଙ୍କର ଆବଶ୍ୟକତା ନେଇ ପ୍ରଶ୍ନ ଉଠାଉଛୁ । ଏହି ଶତାବ୍ଦୀରେ ପରିବର୍ତ୍ତନର କେତେ ନାରା ଉଠିଛି । ବର୍ତ୍ତମାନ ଲୋକମାନେ ପୁଂଜିବାଦ ଓ ନାନା ଉପାଧିର ଆବଶ୍ୟକତା ଉପରେ ବି ପ୍ରଶ୍ନ ଉଠାଇଛନ୍ତି । ସମାଜରେ ମୁଷ୍ଟିମେୟ କର୍ମକୁଡ ବ୍ୟକ୍ତି ଅଗଣିତ ବ୍ୟକ୍ତିଙ୍କୁ ଶୋଷଣ କରି ଆସିଛନ୍ତି ଓ ସେମାନଙ୍କ ଦୁଃଖ ଦୁର୍ଦ୍ଦଶାର କାରଣ ହୋଇଛନ୍ତି । ଅତୀତରେ ମୁଷ୍ଟମେୟ ଲୋକ ଅନ୍ୟମାନଙ୍କୁ ଶୋଷଣ କରିବାକୁ ନିଜର ଦୁର୍ଗ ନିର୍ମାଣ କରିଛନ୍ତି । ଶୋଷକ ବର୍ଗ ଈଶ୍ୱର, ଧର୍ମ, ଶାସ୍ତ୍ର, ପୁରାଣ, ବେଦ, ଭାଗ୍ୟ, କର୍ମ ଇତ୍ୟାଦି ଭାବନା

Digitized by srujanika@gmail.com

ସୃଷ୍ଟିକରି ନିଜର ଦୁର୍ଗ ନିର୍ମାଣ କରିଛନ୍ତି । ପୂଜକ ଗୋଷ୍ଠୀ ଓ ଶାସକ ଗୋଷ୍ଠୀ ନିଜର ଶୋଷଣ ଓ ଧନତାନ୍ତ୍ରିକ ବ୍ୟବସ୍ଥାକୁ ସୁଦୃଢ ରଖିବାକୁ ଏସବୁ ବିଶ୍ୱାସକୁ ଢାଲ କରି ଆସିଛନ୍ତି । ଏକଦା ଏସବୁ ବିଶ୍ୱାସ ଅଲଂଘନୀୟ ଓ ଚିରନ୍ତନ ବୋଲି ଯେଉଁ ଭାବନା ସୃଷ୍ଟି ହୋଇଥିଲା, ତାହା ବିରୁଦ୍ଧରେ ସ୍ୱର ଉଠିପାରିଛି । ସେମାନଙ୍କର ଦୁର୍ଗ ଏବେ ଭୁଷୁଡିବାକୁ ଆରମ୍ଭ ହୋଇଛି । ଏହି ସଂଗ୍ରାମ ଆରମ୍ଭ ହୋଇଛି ମାତ୍ର, ସଂଗ୍ରାମ ସରିବାକୁ ଅନେକ ପଥ ଯିବାକୁ ରହିଛି । ଅତୀତରେ କେତେକ ଭାବନା ବିରୁଦ୍ଧରେ ଯେପରି ସ୍ୱର ଉଠିଥିଲା ଏବେ ସେହିପରି ଧାର୍ମିକ ଶୋଷଣ ଓ ସାମାଜିକ ଭେଦଭାବ ବିରୁଦ୍ଧରେ ସ୍ୱର ତୀବ୍ର ହେବାକୁ ଯାଉଛି । ପରିବର୍ତ୍ତନର ଗତି ନିଶ୍ଚୟ ଆଗକୁ ଯିବ, ଏହାକୁ ବନ୍ଦ କରିହେବ ନାହିଁ କିମ୍ବା ପଛକୁ ନେଇହେବ ନାହିଁ ।ସେମାନଙ୍କୁ ପ୍ରତ୍ୟାଖ୍ୟାନ କରାଯାଉ ।

ଅତୀତରେ ରାଜାମାନେ ଯେଉଁ ଦୁର୍ଗ ଭିତରେ ରହିଥିଲେ ତାହାର ପତନ ଆମେ ଦେଖିଲେ । ସେହିପରି ପୁଂଜିବାଦ ଓ ପୂଜକଗୋଷ୍ଠୀର ପତନର ସମ୍ଭାବନା ସାଧାରଣ ମଣିଷର ସଂଗ୍ରାମ ଦେଇ ଆସିବ । ଈଶ୍ୱର, ଧର୍ମ, ଶାସ୍ତ୍ର, ପୁରାଣ ରାଜତନ୍ତ୍ରକୁ ସୁରକ୍ଷା ଦେଇ ଆସିଥିଲା, କିନ୍ତୁ ତାହାର ପତନ ହେଲା । ସେହିପରି ସାଂପ୍ରତିକ ସ୍ଥିତିରେ ପୂଜକଗୋଷ୍ଠୀ ଓ ପୁଞ୍ଜିପତି ଗୋଷ୍ଠୀ ସାଧାରଣ ମଣିଷକୁ ଶୋଷଣ କରି ଆସିଛନ୍ତି ଓ ତାହା ବିରୁଦ୍ଧରେ ସଂଗ୍ରାମ ବି ଅନିବାର୍ଯ୍ୟ । ତେବେ ରାଜାମାନଙ୍କର ସଂଖ୍ୟାଠାରୁ ପୂଜକ ଓ ପୁଂଜିପତି ଗୋଷ୍ଠୀ ସଂଖ୍ୟାରେ ଅଧିକ ଓ ସେମାନେ ଜନତାର ନିକଟରେ ଥିବାରୁ ସେମାନଙ୍କର ଶୋଷଣ ପ୍ରକିୟା ବେଶ ଜଟିଳ ଓ ବ୍ୟାପକ । ସୁତରାଂ ପୂଜକ ଶ୍ରେଣୀ ଓ ଧନତାନ୍ତ୍ରିକ ଗୋଷ୍ଠୀ ବିରୁଦ୍ଧରେ ସଂଗ୍ରାମ ଦୀର୍ଘ ଦିନ ଧରି ଚାଲିପାରେ । କିନ୍ତୁ ସକଳ ଶୋଷଣ ବ୍ୟବସ୍ଥାର ଅବସାନ ଅବଶ୍ୟମ୍ଭାବୀ ମନେହୁଏ । ଏହି ସଂଗ୍ରାମରେ କୌଣସି ତ୍ରୁଟି ନଥିବା ମନେହୁଏ ।

ବୌଦ୍ଧିକ ଓ ଅର୍ଥନୈତିକ ସ୍ୱାଧୀନତା ପ୍ରଜ୍ଞାବାନ ଓ ପ୍ରଗତି ଚାହୁଁଥିବା ବ୍ୟକ୍ତିଗଣ ବେଶ୍ କଳ୍ପନା କରିପାରୁଛନ୍ତି । ଏହି ସ୍ୱାଧୀନତା ପାଇଁ ସଂଗ୍ରାମକୁ ସରକାର ଶକ୍ତି ପ୍ରୟୋଗ କରି ସାମୟିକ ସମୟ ପର୍ଯ୍ୟନ୍ତ ଦବେଇ ଦେଇ ପାରନ୍ତି କିନ୍ତୁ ଶୋଷଣ ବିରୁଦ୍ଧରେ ମଣିଷ ମନର ପ୍ରତିକ୍ରିୟାକୁ ଦବେଇ ଦେଇ ହେବ ନାହିଁ । ବୈପ୍ଳବିକ

Digitized by srujanika@gmail.com

ବିଚାରକୁ କେବେ ନଷ୍ଟ କରି ଦିଆଯାଇ ପାରିବ ନାହିଁ । ରାଜାମାନଙ୍କ ଚତୁର୍ପାର୍ଶ୍ୱରେ ଥିବା ଦୁର୍ଗ ସେମାନଙ୍କୁ ସୁରକ୍ଷା ଦେଇପାରିଲା ନାହିଁ । ସେହିପରି ପୂଜକଗୋଷ୍ଠୀ ଓ ଧନୀକ ଗୋଷ୍ଠୀ ଯେଉଁ ଦୁର୍ଗ ଭିତରେ ରହିଛନ୍ତି ତାହା ତାଙ୍କୁ ସୁରକ୍ଷା ଦେଇପାରିବ ନାହିଁ । ଏଠାରେ ମଧ୍ୟ ପରିବର୍ତ୍ତନ ହେବ । ଏହି ପରିବର୍ତ୍ତନ ଫଳରେ ୯୦ ଶତକଡା ଲୋକ ଉପକୃତ ହେବେ । ଯେଉଁ ବ୍ୟବସ୍ଥା ୧୦ ଶତକଡା ଲୋକଙ୍କ ଉପକାର ପାଇଁ ରହିଛି ସେହି ବ୍ୟବସ୍ଥା ସବୁଦିନ ଯାଏ ତିଷ୍ଠି ରହିପାରିବ ନାହିଁ । ପଶୁମାନଙ୍କ ପ୍ରତି ନିଷ୍ଠୁରତା ସାମାନ୍ୟ ଦୟା ଦେଖାଇଲେ ଲୋପ ହେବ ନାହିଁ । ନିଷ୍ଠୁରତାକୁ ଦୂର କରିବାକୁ ହେବ । ଅଗଣିତ ମଣିଷଙ୍କ ପ୍ରତି ଯେଉଁ ଅମାନବିକ ନିଷ୍ଠୁରତା ମୁଷ୍ଟିମେୟ ବ୍ୟକ୍ତି କରି ଆସିଛନ୍ତି ସେହି ଶୋଷଣକୁ ବନ୍ଦ କରିବାକୁ ହେବ । ସେହି ସଂଗ୍ରାମ ଶୋଷଣ ସମାପ୍ତ ପର୍ଯ୍ୟନ୍ତ ଚାଲିବା ଆବଶ୍ୟକ ।

* * * * * *



Digitized by srujanika@gmail.com

# ୩. ଆଗାମୀ ପୃଥିବୀ

କେତେ ଶତାବ୍ଦୀ ତଳର ପୃଥିବୀଠାରୁ ଆଜିର ପୃଥିବୀ କେତେ ଭିନ୍ନ। ଆଗାମୀ ଶତାବ୍ଦୀ ମାନଙ୍କରେ ପୃଥିବୀ ଆଜିର ପୃଥିବୀଠାରୁ କେତେ ପୃଥକ ନ ହେବ? ଏହି ପ୍ରଶ୍ନ ବିଚାରଶୀଳ ଲୋକମାନଙ୍କର ଦୃଷ୍ଟିକୁ ଆସିଥାଏ। ପୁରାଣ ଯୁଗର ପଣ୍ଡିତମାନଙ୍କୁ ବା ଇତିହାସକାରମାନଙ୍କୁ ଅତୀତରେ ଏହି ପ୍ରଶ୍ନ ଆନ୍ଦୋଳିତ କରିନଥିଲା। ପୁରାଣମାନଙ୍କରେ ବର୍ଣ୍ଣିତ ନାନା କାଳ୍ପନିକ କାହାଣୀମାନଙ୍କୁ ସେମାନେ ସତ୍ୟ ବୋଲି ମାନି ନେଉଥିଲେ ଓ ତାହା ସେହି ବିଶ୍ୱାସର ଅଙ୍ଗ ବିଶେଷ ହୋଇ ଯାଉଥିଲା। ପୁରାଣମାନଙ୍କରେ ବର୍ଣ୍ଣିତ ନାନା ଚମତ୍କାରିତା ବା ଅଶ୍ଳୀଳତାର ବାସ୍ତବତା ବା ଉପଯୋଗିତା ନେଇ ସେମାନେ ପ୍ରଶ୍ନ ଉଠାଇନଥିଲେ। ସେମାନେ ବିଶ୍ୱାସ କରୁଥିଲେ ଯେ ଦେବ-ପୁରୁଷ ବା ଅବତାର ମାନଙ୍କ ପାଇଁ କୌଣସି କିଛି ଅସମ୍ଭବ ନୁହେଁ। ପ୍ରାଚୀନ କାଳରେ ଚମତ୍କାରିତାରେ ବିଶ୍ୱାସ ସମାଜରେ ବ୍ୟାପକ ଭାବେ ରହିଥିଲା।

ହେତୁବାଦୀମାନେ ସାଂପ୍ରତିକ ସମୟ ଉପରେ ଗୁରୁତ୍ୱ ଦିଅନ୍ତି ଓ ସମାଜରେ ଯେଉଁ ପରିବର୍ତ୍ତନମାନ ସଂଘଟିତ ହେଉଛି ତାହାକୁ ଅନୁଶୀଳନ କରନ୍ତି। ମଣିଷ ଜାତିର ଉପକାର ପାଇଁ କେଉଁ ପ୍ରକାର ପ୍ରଯୁକ୍ତି ଓ ପ୍ରାକୃତିକ ପରିବର୍ତ୍ତନ ଆବଶ୍ୟକ ତାହାକୁ ସେମାନେ ଗୁରୁତ୍ୱ ଦିଅନ୍ତି। ବର୍ତ୍ତମାନକୁ ଅନୁଧ୍ୟାନ କରି ହେତୁବାଦୀମାନେ ବିଚାରଶୀଳ ଭାବେ ଅତୀତର ପରିସ୍ଥିତିକୁ ଅନୁମାନ କରନ୍ତି ଓ ଭବିଷ୍ୟତକୁ ବୈଜ୍ଞାନିକ ଧାରାରେ ସଂରଚନା କରନ୍ତି।

**ସ୍ୱପ୍ନଚିତ୍ର ଓ ବିଷ**

ପଣ୍ଡିତମାନେ ପୁରାଣ ବର୍ଣ୍ଣିତ ପ୍ରାଚୀନ ସମୟକୁ ମହିମାନ୍ୱିତ କରିବାକୁ ପ୍ରୟାସ କରିଥାନ୍ତି ଓ ସମ୍ଭବ ହେଉଥିଲେ ସେମାନେ ସେହି ପ୍ରାଚୀନ ଯୁଗକୁ ଫେରିଯିବାକୁ ବି ଚାହିଁଥାନ୍ତେ। ବୈଜ୍ଞାନିକମାନେ ଭବିଷ୍ୟତର ଚିତ୍ର ଅଙ୍କନ କରି

Digitized by srujanika@gmail.com

ଏକ ନୂତନ ଓ ଉନ୍ନତ ପରିସ୍ଥିତି ପାଇଁ ପ୍ରୟାସ କରନ୍ତି । ମଣିଷର ପ୍ରୟାସଦ୍ୱାରା ଏକ ସୁନ୍ଦର ସ୍ଥିତି ଯେ ସମ୍ଭବ ହୋଇପାରିବ ଏହା ସେମାନେ ଚିନ୍ତା କରନ୍ତି । ଯେଉଁମାନେ ଅତୀତକୁ ଗୌରବାନ୍ୱିତ କରନ୍ତି ସେମାନେ ବହୁ ଦୁର୍ବୋଧ୍ୟ କଳ୍ପନା ପୋଷଣ କରନ୍ତି । ତେବେ ସବୁ ଦେଶର ପଣ୍ଡିତମାନେ ଏହା କରନ୍ତି ନାହିଁ ।

ଏଠାରେ ଆମେ ମୁଖ୍ୟତଃ ଭାରତୀୟ ପଣ୍ଡିତମାନଙ୍କ ସଂପର୍କରେ ଉଲ୍ଲେଖ କରୁଛେ । ଏଠାରେ ସେମାନେ ଯେଉଁ ଶିକ୍ଷା ଓ ପ୍ରଶିକ୍ଷଣ ପାଉଛନ୍ତି ତାହା ସେମାନଙ୍କ ଭିତରେ ବିଚାରଶୀଳ ବା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଉଦ୍ରେକ କରାଉ ନାହିଁ । ସେମାନଙ୍କ ଭିତରେ ଯୁକ୍ତିଶୀଳ ମନୋଭାବର ଅଭାବର କାରଣ ନୁହେଁ ଯେ ସେମାନେ ସ୍ୱରୂପରେ ବିଚାରହୀନ ବରଂ ସେମାନଙ୍କୁ ଯେଉଁ ଶିକ୍ଷା ଓ ସଂସ୍କାର ଦିଆଯାଉଛି ତାହା ସେମାନଙ୍କ ଭିତରେ ଏକ ରକ୍ଷଣଶୀଳ ମାନସିକତା ହିଁ ସୃଷ୍ଟି କରୁଛି । ପୁରାଣର କାଳ୍ପନିକ କାହାଣୀର ପଙ୍କ ଭିତରେ ଧର୍ମ, ଈଶ୍ୱର ଭାବନା ନେଇ ସେମାନେ ନିଜକୁ ନିବିଷ୍ଟ କରିବା ଦ୍ୱାରା ସେମାନେ ମୁକ୍ତ ମନରେ ବିଚାର କରିପାରୁ ନାହାନ୍ତି । ସ୍ୱପ୍ନଚିତ୍ରର ବିଷବଳୟ ଭିତରେ ସେମାନେ ମୁକ୍ତ ମନ ଓ ପ୍ରକୃତିର ପର୍ଯ୍ୟବେକ୍ଷଣକୁ ହରାଇ ବସୁଛନ୍ତି ।

**ଆଧିଦୈବିକବାଦର ଭିତ୍ତିଉପରେ:**

ଆମର ଧର୍ମୋତ୍ସାହୀମାନେ ପଣ୍ଡିତମାନଙ୍କଠାରୁ ଅଧିକ ମନ୍ଦ ମନେହୁଅନ୍ତି । ପଣ୍ଡିତମାନେ ହଜାରେ ବର୍ଷ ତଳର ପୁରାଣ ଯୁଗରେ ଥିବାବେଳେ ଧର୍ମୋତ୍ସାହୀମାନେ ସହସ୍ର ସହସ୍ର ବର୍ଷ ତଳର ଯୁଗରେ ରହିବାକୁ ଆଗ୍ରହ କରନ୍ତି । ପ୍ରକୃତିରେ ଘଟୁଥିବା ସାଧାରଣ ପରିବର୍ତ୍ତନ କ୍ଷେତ୍ରରେ ଏମାନେ କୌଣସି ଆଗ୍ରହ ପ୍ରକାଶ କରନ୍ତି ନାହିଁ । ମଣିଷ ବିଚାରଶୀଳତାର ବହିର୍ଭୂତ ଗୁଡିଏ ଅସମ୍ଭବ କାଳ୍ପନିକ ସ୍ୱପ୍ନଚିତ୍ରରୁ ଏମାନେ ଆନନ୍ଦ ପାଆନ୍ତି । ସେମାନଙ୍କର ସମସ୍ତ ଭାବନା ଆଧିଦୈବିକ ଶକ୍ତିର ଆଧାର ଉପରେ ନିହିତ । ଫଳତଃ ସେହି ପଣ୍ଡିତମାନେ ଆଧୁନିକ ବିଜ୍ଞାନ ଯୁଗର ସମସ୍ତ ପରିବର୍ତ୍ତନକୁ ଅତି ମନ୍ଦ ଦୃଷ୍ଟିରେ ଦେଖନ୍ତି । କୌଣସି ବୈଜ୍ଞାନିକ କୀର୍ତ୍ତିକରଣୀ ପ୍ରତି ସେମାନେ କୌଣସି ଆଗ୍ରହ ପ୍ରକାଶ କରନ୍ତି ନାହିଁ । ସେମାନଙ୍କଠାରୁ ପରାମର୍ଶ

Digitized by srujanika@gmail.com

ନେଉଥିବା ଲୋକମାନେ ଏଣୁ କୁସଂସ୍କାରୀ ଓ ଅହେତୁକ ହୋଇଥାନ୍ତି । ଅତୀତ ବହୁତ ଭଲ ଥିଲା, ସେ ଯୁଗର ଋଷି ମୁନିମାନେ ଯାହା କହିଛନ୍ତି ତାହା ଧ୍ରୁବ ଓ ଅଲଂଘ୍ୟ । ଏହି ମାନସିକତାରେ ସେମାନେ ଅତୀତକୁ ସନ୍ଦେହ କରୁଥିବା ଓ ଭବିଷ୍ୟତକୁ ନିର୍ମାଣ କରିବାକୁ ପ୍ରୟାସ କରୁଥିବା ବ୍ୟକ୍ତିମାନଙ୍କ ଉପରେ ଆସ୍ଥା ସ୍ଥାପନ କରିପାରନ୍ତି ନାହିଁ ।

**ବ୍ୟକ୍ତିଗତ ସଂପତ୍ତି ନୁହଁ :**

ଆମେ ଅତୀତକୁ ପ୍ରତ୍ୟାଖ୍ୟାନ କରିବାକୁ କହୁ ନାହୁଁ । ବରଂ ଅତୀତର ଭିତ୍ତି ଉପରେ ଆମେ ଭବିଷ୍ୟତକୁ ନିର୍ମାଣ କରିବାକୁ ଚାହୁଁଛେ । ଆମର ଲକ୍ଷ୍ୟ ହେଉଛି ବର୍ତ୍ତମାନର ଜ୍ଞାନ ଓ ପ୍ରଯୁକ୍ତିକୁ ଅଧିକ ଉନ୍ନତ କରିବା ଯଦ୍ୱାରା ଆମର ବିକାଶର ଧାରା ଅବ୍ୟାହତ ରହିବ । ପାଶ୍ଚାତ୍ୟ ଦେଶମାନଙ୍କରେ ସେମାନେ ସର୍ବଦା ନୂତନତ୍ୱ ସନ୍ଧାନ କରିଆସିଛନ୍ତି ଓ ଅତୀତକୁ ବସି ଝୁରୁ ନାହାନ୍ତି । ସେମାନେ ନୂଆ ନୂଆ ଗବେଷଣାଦ୍ୱାରା ବିଜ୍ଞାନର ଅଗ୍ରଗତି ସହ ଜୀବନର ଗୁଣାତ୍ମକ ମାନକୁ ଉନ୍ନତ କରି ଚାଲିଛନ୍ତି ।

ଅତୀତର ଇତିହାସକୁ ବିଶ୍ଳେଷଣ କରି ବିଖ୍ୟାତ ଐତିହାସିକମାନେ ମତ ଦିଅନ୍ତି ଯେ ଭବିଷ୍ୟତରେ ଆଉ ରାଜତନ୍ତ୍ରର ଯୁଗ ଫେରିବ ନାହିଁ । ସୁନା ଓ ରୂପା ମୁଷ୍ଟିମେୟ ଲୋକଙ୍କର ସଂପତ୍ତି ହୋଇ ରହିବ ନାହିଁ । ଆଗାମୀ ଭବିଷ୍ୟତ ଏକ ସମାଜବାଦୀ ସମାଜ ବ୍ୟବସ୍ଥାକୁ ରୂପଦେବ । ରାଜତନ୍ତ୍ର ଯୁଗରେ ରାଜାମାନେ ଯେପରି ସବୁ ସଂପତ୍ତିର ମାଲିକ ହୋଇ ରହୁଥିଲେ, ସେ ସ୍ଥିତି ଆଧୁନିକ ଯୁଗର ଜୀବନଧାରା ସହିତ ଅସଙ୍ଗତିପୂର୍ଣ୍ଣ ମନେହୁଏ । ପ୍ରତ୍ୟେକ ବ୍ୟକ୍ତି ଶ୍ରମ କରିବ, ଅବସର ପାଇବ ଓ ଜୀବନର ଆବଶ୍ୟକତା ପୂରଣ କରି ଏକ ମର୍ଯ୍ୟାଦାର ଜୀବନ ଅତିବାହିତ କରିବ ।

**ଏତେ ଦାରିଦ୍ର୍ୟ କାହିଁକି ?**

ଜୀବନର ଆବଶ୍ୟକତା ପୂରଣ ପାଇଁ କରାଯାଉଥିବା ଶ୍ରମର ସମୟ ଅବଧି ବହୁ ଅଧିକ ଓ ଶ୍ରମର ଫଳକୁ ଉପଭୋଗ କରିବାର ସମୟ ଅବଧି ବହୁତ

Digitized by srujanika@gmail.com

କମ୍ । ସଂପ୍ରତି ଅନେକ ଶସ୍ୟ ଉତ୍ପାଦନ ହୋଇପାରୁଛି ଓ ବହୁ ସାମଗ୍ରୀ ମଧ୍ୟ ତିଆରି ହେଉଛି ଓ ବଜାରରେ ମିଳୁଛି । କିନ୍ତୁ ତାହା କ୍ରୟ କରି ଜୀବନକୁ ଉପଭୋଗ କରିବାର ସାମର୍ଥ୍ୟ ଲୋକମାନଙ୍କର ନାହିଁ । ଲୋକମାନେ ବହୁତ ଗରିବ ରହିଛନ୍ତି । ସମାଜରେ ବ୍ୟକ୍ତିବାଦ ଓ ସ୍ୱାର୍ଥପର ମନୋଭାବ ତ ନିଶ୍ଚୟ ରହିଛି, କିନ୍ତୁ ଲୋକଙ୍କର ପ୍ରକୃତ ସ୍ୱାଧୀନତା ନାହିଁ । କେତେକ ବ୍ୟକ୍ତି ସ୍ୱାର୍ଥପର ଭାବରେ ଅନେକ ସଂପତ୍ତିର ଅଧିକାରୀ ହୋଇ ରହିଛନ୍ତି । ଉତ୍ପାଦନ ସାଧନ ଓ ସାମଗ୍ରୀ ବହୁ ବୃଦ୍ଧି ପାଇଛି ଓ ବହୁ ଜିନିଷ ବି ଉପଲବ୍ଧ ହୋଇ ପାରୁଛି । କିନ୍ତୁ ଲକ୍ଷ ଲକ୍ଷ ମଣିଷ ଜୀବନର ସର୍ବନିମ୍ନ ଆବଶ୍ୟକତାରୁ ବଞ୍ଚିତ ହୋଇ ରହିଛନ୍ତି ।

ଚାଷ ପାଇଁ ଜମି ବହୁତ ରହିଛି, ଜମିହୀନ ଶ୍ରମିକ ବି ଅସଂଖ୍ୟ ସଂଖ୍ୟାରେ ରହିଛନ୍ତି । ଆମ ସୁନ୍ଦର ପୃଥିବୀରେ ବହୁ ସଂପତ୍ତି ରହିଛି । ଏହିପରି ଏକ ସଂପଦଭରା ସୁନ୍ଦର ପୃଥିବୀରେ କାହିଁକି ଏତେ ଦାରିଦ୍ର୍ୟ, ଅନାହାର, ଜୀବନ ପାଇଁ ସଂଗ୍ରାମ ଲାଗି ରହିଛି? ଏସବୁ ସହ ଧର୍ମ, ଈଶ୍ୱରଙ୍କର କଣ ସଂପର୍କ ରହିଛି ? ଯେଉଁମାନେ ସବୁ କିଛି ଈଶ୍ୱର ନିୟନ୍ତ୍ରିତ ବୋଲି କହୁଛନ୍ତି ସେମାନେ ଏହି ବିଭେଦ, ଦାରିଦ୍ର୍ୟ ପାଇଁ କଣ ଉତ୍ତର ଦେବେ? ଆମ ସଂସାରରେ କାହିଁକି ଏତେ ମନ୍ଦ ରହିଛି ?ଏକ ଈଶ୍ୱର କୈନ୍ଦ୍ରିକ ଜୀବନ ଦୃଷ୍ଟି ଭିତରେ ଜଗତର ସବୁ ମନ୍ଦ ବା ଇଭିଲ ପାଇଁ ଈଶ୍ୱର, ଧର୍ମ ଦାୟୀ ନା ନୁହଁ? ମଣିଷ କିପରି ସକଳ ମନ୍ଦରୁ ତ୍ରାଣ ପାଇ ପାରିବ?

## ଭବିଷ୍ୟତର ପୁନର୍ଗଠନ

ମଣିଷ ସମସ୍ତ ପ୍ରାଣୀମାନଙ୍କ ମଧ୍ୟରେ ବୁଦ୍ଧିମାନ । ସେ ଈଶ୍ୱର, ଧର୍ମ, ଦର୍ଶନ ଓ ଆଧ୍ୟାତ୍ମବାଦକୁ ଉଦ୍‌ଭାବନ କରିଛି । କେତେକ ଅସାଧାରଣ ବ୍ୟକ୍ତି ଈଶ୍ୱରଙ୍କୁ ଅନୁଭବ କରିଥିବା ଓ ଏପରିକି ଈଶ୍ୱର ପାଲଟି ଯାଇଥିବା କୁହାଯାଉଛି । ତେବେ ଏହି ଲୋକମାନେ ପୃଥିବୀରେ ରହିଥିବା ଅନେକ ଦୁଃଖ, ଦୁର୍ଗତିର କୌଣସି ସମାଧାନ ପାଇନାହାନ୍ତି । ଏହାର କାରଣ ହୋଇପାରେ ଯେ ଲୋକମାନେ ଜଗତର ଘଟଣାକୁ ଈଶ୍ୱର ଓ ଧର୍ମଠାରୁ ପୃଥକ କରିବାକୁ ଶିକ୍ଷା କରି ନାହାନ୍ତି ଓ ଘଟଣାମାନଙ୍କୁ ନିରପେକ୍ଷ ଭାବେ ବିଚାର କରିନାହାନ୍ତି ।

Digitized by srujanika@gmail.com

ଅନେକ ବୈଜ୍ଞାନିକ ଓ ବିଚାରଶୀଳ ବ୍ୟକ୍ତି ରହିଛନ୍ତି ଯେଉଁମାନେ ମଣିଷର ଦୁଃଖ ଦୂର କରିବାକୁ କିଛି ପ୍ରୟାସ କରିଛନ୍ତି । କାରଣ ସେମାନେ ନିଜକୁ ଈଶ୍ୱର ଓ ଧର୍ମଠାରୁ ନିଜକୁ ଦୂରେଇ ନେଇଛନ୍ତି । ସେମାନେ ଯେଉଁ ପୃଥିବୀଟିରେ ରହି ଲୋକଙ୍କର ଯନ୍ତ୍ରଣା ଦେଖିଛନ୍ତି, ସେଥିରୁ ଲୋକମାନଙ୍କୁ ତ୍ରାଣ କରିବାକୁ ଉପାୟ ଚିନ୍ତା କରିଛନ୍ତି । ଲୋକଙ୍କର ଦୁଃଖରେ ଜର୍ଜରିତ ଏହି ସମ୍ବେଦନଶୀଳ ବ୍ୟକ୍ତିମାନେ ଗବେଷଣା ଓ ବୈଜ୍ଞାନିକ ଉଦ୍‌ଭାବନରେ ବ୍ରତୀ ହୋଇଛନ୍ତି । ଗୋଟିଏ ବିଚାରଶୀଳ ଦୃଷ୍ଟି ନେଇ ସେମାନେ ଜୀବନକୁ ଉନ୍ନତ କରିବାକୁ ପ୍ରୟାସ କରିଛନ୍ତି । ସେମାନଙ୍କର ପ୍ରୟାସ ଫଳରେ ଦୁନିଆଁର ରୂପ ବଦଳିଛି ଓ ସେମାନେ ଏକ ସୁଖକର ଭବିଷ୍ୟତ ନିର୍ମାଣ ପାଇଁ ସ୍ୱପ୍ନ ଦେଖିଛନ୍ତି ।

ମଣିଷ କାହିଁକି ଜନ୍ମ ହୁଏ? ଜନ୍ମ ହେବା ପରେ ବଞ୍ଚିବା ପାଇଁ କାହିଁକି ଏତେ ସଂଗ୍ରାମ କରିଥାଏ ? ମଣିଷ ଶେଷରେ କାହିଁକି ମୃତ୍ୟୁ ମୁଖରେ ପଡେ? ଏସବୁ ପ୍ରଶ୍ନର ଉତ୍ତର ବିଚାରଶୀଳ ଭାବେ ଚିନ୍ତା କରାଯାଇପାରେ । ଏପରି ଦିନ ଆସିପାରେ ଯେତେବେଳେ ମଣିଷ ଜୀବନରେ ବୈପ୍ଲବାତ୍ମକ ପରିବର୍ତ୍ତନ ହେବ । ସେହି ପରିବର୍ତ୍ତନ ଫଳରେ ଧାତୁର ମୁଦ୍ରା ଲୋକଙ୍କ ଭିତରେ ପ୍ରଚଳନ ହେବ ନାହିଁ, କେହି ପୁଂଜିପତି ଲୋକମାନଙ୍କ ଉପରେ ପ୍ରଭାବ ବିସ୍ତାର କରିବ ନାହିଁ, କଠିନ ପରିଶ୍ରମର ଅନ୍ତହେବ, ସମସ୍ତ ନୀଚ କର୍ମ ସମାଜରୁ ଲୋପ ପାଇବ, ଦାସତ୍ୱ କଣ ଅଜ୍ଞାତ ହୋଇଯିବ, କେହି କାହାର ଦୟାରେ ବଞ୍ଚିବେ ନାହିଁ, ମହିଳାମାନେ କୌଣସି ସ୍ୱତନ୍ତ୍ର ସୁରକ୍ଷା ଆବଶ୍ୟକ କରିବେ ନାହିଁ ବା ଅନ୍ୟର ସାହାଯ୍ୟ ଲୋଡିବେ ନାହିଁ ।

**ସକଳ ଭେଦଭାବ ଲୋପ ପାଇବ:**

ସଂପ୍ରତି ମଠାଧୀଶ, ରାଜକୁମାର ଓ ଜମିଦାରମାନେ ବିଳାସ ଓ ଅବସରର ଜୀବନ ନିର୍ବାହ କରୁଛନ୍ତି । ଭବିଷ୍ୟତରେ ଏମାନେ କେହି ରହିବେ ନାହିଁ ଓ ସମସ୍ତେ ସାଧାରଣ ନାଗରିକର ଜୀବନ ଅତିବାହିତ କରିବେ । ଅଳ୍ପ ସମୟ କାମ କଲାପରେ ଲୋକମାନେ ନିଜର ଆବଶ୍ୟକୀୟ ଜିନିଷ ପ୍ରସ୍ତୁତ କରିପାରିବେ । ଲୋକମାନେ ଅଧିକ ସମୟ ଅବସର ଭାବେ ପାଇବେ ଯେଉଁ ସମୟକୁ ସେମାନେ କଳାକୃତିରେ

Digitized by srujanika@gmail.com

ବା ସୁଖରେ ଅତିବାହିତ କରିବେ। ଲୋକମାନେ ଗୋଷ୍ଠୀ ଜୀବନ ଅତିବାହିତ କରିବେ ଓ ପରସ୍ପରର ଭଲ ମନ୍ଦରେ ଆପଣାର ହେବେ। ସହଯୋଗର ମନୋଭାବ ଭିତରେ ସେମାନଙ୍କ ମଧ୍ୟରୁ ସକଳ ଭେଦଭାବ ଓ ପାର୍ଥକ୍ୟ ଦୂର ହୋଇପାରିବ।

**ସାମରିକ ବିଭାଗ ରହିବ ନାହିଁ :**

ଆଧୁନିକ ଯୁଗରେ ସାମରିକ ବିଭାଗ ଲୋପପାଇବ। ପୃଥିବୀର ସବୁ ଅଞ୍ଚଳର ଲୋକମାନେ ଶାନ୍ତିରେ ରହିବାକୁ ଚାହିଁବେ। ସମସ୍ତ ଯୁଦ୍ଧ, ସଂଘର୍ଷ ଓ ହତ୍ୟା ଲୋପହେବ। କେହି ବେକାର ରହିବେ ନାହିଁ ବା କେହି ଖାଦ୍ୟ ନ ପାଇ ମୃତ୍ୟୁବରଣ କରିବେ ନାହିଁ। ଲୋକମାନେ ଶ୍ରମଭିତ୍ତିକ କାର୍ଯ୍ୟକୁ ଆଦର କରିବେ। ମନୋରଂଜନ ଦୃଶ୍ୟ, ଉପଭୋଗ୍ୟ ସୁନ୍ଦର ପ୍ରଦର୍ଶନୀ ଓ ସାଧାରଣ ଆମୋଦଦାୟକ କ୍ରୀଡାକୁ ମୁଷ୍ଟିମେୟ ସଂଭ୍ରାନ୍ତ ଲୋକମାନେ ନୁହଁ, ସବୁ ଲୋକ ଉପଭୋଗ କରିବାର ଅବକାଶ ପାଇବେ। ବେସରକାରୀ ଶିଳ୍ପୋଦ୍ୟୋଗୀ, କରଜଦାତା, ବଡ ବ୍ୟବସାୟୀ, ଇନସ୍ୟୁରାନ୍ସ ଏଜେଣ୍ଟ ଓ ଲାଭଖୋର ମଧ୍ୟସ୍ଥମାନେ ରହିବେ ନାହିଁ। ଯୁଦ୍ଧ ଓ ଧ୍ୱଂସ ସାଧନ କରିବା ପାଇଁ ନୌସେନା, ସୈନ୍ୟବାହିନୀ ଓ ବିମାନବାହିନୀ ରହିବେ ନାହିଁ। ପୃଥିବୀରେ ଏକ ସହଯୋଗ ଓ ପାରସ୍ପରିକ ସାହାଯ୍ୟ ମନୋଭାବ କାଳକ୍ରମେ ଦୃଢଭାବେ ବିକଶିତ ହୋଇପାରିବ।

**ସମସ୍ତଙ୍କ ପାଇଁ କାମ:**

କାମଟିଏ ପାଇଁ ସଂଗ୍ରାମ କରିବାକୁ ପଡିବ ନାହିଁ। ଜଣେ ନିଜର ଆଗ୍ରହ ଓ ସାମର୍ଥ୍ୟ ଅନୁଯାୟୀ କାମ ପାଇବ। ବୈଜ୍ଞାନିକ, ଅର୍ଥନୀତିଜ୍ଞ ଓ ଶିଳ୍ପପତିମାନେ ସାଧାରଣ ଜୀବନର ସୁଖ ଶାନ୍ତି ପାଇଁ କାମ କରିବେ। ଲୋକମାନେ ଆଧୁନିକ ଚିକିତ୍ସାର ସୁଯୋଗ ଯୋଗୁଁ ଅଧିକ ସମୟ ବଞ୍ଚିବେ। କାଳକ୍ରମେ ଅଧିକ ନିରାପଦ ପରିବେଶ ଯୋଗୁଁ ଜୀବନ ଅଧିକ ପ୍ରୀତିପଦ ହୋଇପାରିବ। ମଣିଷର ଆବଶ୍ୟକତା ବଢି ଚାଲିଲେ ବି ଆଧୁନିକ ପ୍ରଯୁକ୍ତି ଯୋଗୁଁ ଲୋକମାନେ ଅଳ୍ପ ପରିଶ୍ରମରେ ନିଜର ଆବଶ୍ୟକ ପଦାର୍ଥ ପାଇପାରିବେ।

Digitized by srujanika@gmail.com

**ଶ୍ରମ ନାହିଁ ତ ଖାଦ୍ୟ ନାହିଁ:**

ଅତୀତରେ ବୁଣାକାର ମାନେ ଲୁଗା ବୁଣିବା ପାଇଁ ବହୁ ଶକ୍ତି ଓ ସମୟ ବ୍ୟୟ କରୁଥିଲେ। ଆଗେ ଶହ ଶହ ବୁଣାକାର ଯାହା ଲୁଗା ବୁଣି ପାରୁଥିଲେ ଏବେ ଗୋଟିଏ ଘଣ୍ଟା ଭିତରେ ଗୋଟିଏ ଯନ୍ତ୍ର ତାହା ବୁଣି ଦେଇପାରୁଛି। ଜଣେ ବୁଣାକାର ଏକ ମିନିଟରେ ଯେତିକି ସୁତା କରେ ଗୋଟିଏ ମେସିନ ତାର ୩୦୦ ଗୁଣ କରିପାରୁଛି। ହାତରେ ଗୋଟିଏ ମିନିଟରେ ୩ ରୁ ୫ ଟି ସିଗାରେଟ ତିଆରି କଲାବେଳେ ସିଗାରେଟ ମେସିନ୍‌ଟିଏ ଗୋଟିଏ ମିନିଟରେ ହଜାର ହଜାର ସିଗାରେଟ ପ୍ରସ୍ତୁତ କରିପାରୁଛି। ସବୁ କ୍ଷେତ୍ରରେ ଯନ୍ତ୍ରଚାଳିତ ମେସିନ ଦ୍ୱାରା ଉତ୍ପାଦନ ବହୁ ଗୁଣରେ ବୃଦ୍ଧି ପାଇଛି। ମେସିନଦ୍ୱାରା ଉତ୍ପାଦନର ପରିମାଣ ଏପରି ବୃଦ୍ଧି କରିବା ସମ୍ଭବ ହୋଇଛି । ଯନ୍ତ୍ରର ସାହାଯ୍ୟରେ ଅନେକ କିଛି ଉତ୍ପାଦନ କରିପାରୁଥିବାରୁ ଜଣେ ବ୍ୟକ୍ତି ନିଜର ବହୁ ସମୟ ବଞ୍ଚାଇ ପାରୁଛି। ତେବେ ଜଣେ ସମୟ ବଞ୍ଚାଉଥିବାରୁ ସେ ଯେ ଅଳସୁଆ ହୋଇଯିବ ଓ ସମୟକୁ ବୃଥାରେ ଅପଚୟ କରିବ ତାହା ଠିକ୍ ନୁହେଁ। ଯେପରି ବହୁ ଜିନିଷ ଉତ୍ପାଦନ ପାଇଁ ମଣିଷ କୌଶଳ ବାହାର କରିପାରିଛି, ସେହିପରି ଜଣେ ନିଜର ଅବସର ସମୟ କିପରି ବ୍ୟୟ କରିପାରିବ ସେ ପାଇଁ ମଧ୍ୟ ବ୍ୟବସ୍ଥା କରିହେବ। ପୁନଶ୍ଚ ଉପଯୁକ୍ତ ବ୍ୟାୟାମ, ସ୍ୱାସ୍ଥ୍ୟରକ୍ଷା ଇତ୍ୟାଦି ବିଷୟରେ ଲୋକମାନଙ୍କୁ ଅବଗତ କରାଇଲେ ସେମାନେ ନିଜର ସମୟକୁ ନିୟନ୍ତ୍ରଣ ଭିତରେ ଅତିବାହିତ କରିପାରିବେ। ଏକ ସୁସଭ୍ୟ ସମାଜରେ ଆଳସ୍ୟ ପାଇଁ ପରିବେଶ ରହିବ ନାହିଁ। ଯଦି ବି କେହି ଅଳସୁଆ ହୁଏ, ତେବେ ସେ ଅନ୍ୟମାନଙ୍କର କାର୍ଯ୍ୟଦକ୍ଷତାକୁ ପ୍ରଭାବିତ କରିପାରିବ ନାହିଁ। ଭବିଷ୍ୟତର ଆଦର୍ଶ ହେବ ଯେ କର୍ମ କରିବ ନାହିଁ ସେ ଖାଦ୍ୟ ପାଇବ ନାହିଁ।

**ଯନ୍ତ୍ର ସାହାଯ୍ୟରେ ସଫାଇ:**

ସଫାଇ ଓ ଛୋଟ ମୋଟ କାମ କରିବାକୁ ଲୋକ ମିଳିବେ କି? ଯାହା ଏବେ ଛୋଟ କାମ ବୋଲି ଭାବନା ରହିଛି ତାହା ଭବିଷ୍ୟତରେ ପରିବର୍ତ୍ତନ ହୋଇଯିବ। ମଇଳା ସଫା, ଝାଡୁକାର୍ଯ୍ୟ, ବାସନ ଧୁଆ ଇତ୍ୟାଦି କାର୍ଯ୍ୟ ଯନ୍ତ୍ର ସାହାଯ୍ୟରେ କରାଯାଇ ପାରିବ। ଏହି କାର୍ଯ୍ୟ କରିବା ପାଇଁ ବ୍ୟବହୃତ ହେଉଥିବା

Digitized by srujanika@gmail.com

ଯନ୍ତ୍ରର ଜଣେ ଚାଳକ ରହିବେ ଯେପରି ଅନ୍ୟ ଯନ୍ତ୍ର ଚାଳନା କ୍ଷେତ୍ରରେ ଚାଳକ ରହନ୍ତି । କୌଣସି ଓଜନଦାର ଜିନିଷ ଟେକିବାକୁ, ଅନ୍ୟସ୍ଥାନକୁ ନେବାକୁ ମଣିଷର ଆବଶ୍ୟକତା ପଡିବ ନାହିଁ । ଏହି ସବୁ ମେସିନ ସାହାଯ୍ୟରେ କରାଯାଇପାରିବ । ଆଜି ଯେଉଁ କାର୍ଯ୍ୟକୁ ସମ୍ମାନଜନକ ମନେ କରାଯାଉ ନାହିଁ, ଯନ୍ତ୍ର ସାହାଯ୍ୟରେ ସେହି କାର୍ଯ୍ୟ କରି ଯନ୍ତ୍ର ଚାଳନା ପାଇଁ ବ୍ୟକ୍ତି ନିଯୁକ୍ତ ହେଲେ ତାଙ୍କ କାର୍ଯ୍ୟକୁ ସମ୍ମାନଜନକ ମନେ କରାଯିବ । ଜନସ୍ୱାର୍ଥ ପାଇଁ ହେଉ ବା ସମାଜ ସେବା ପାଇଁ ହେଉ ମେସିନ ଚଳାଇବା କାର୍ଯ୍ୟ ପାଇଁ ପ୍ରତିଯୋଗିତା ହେବ । ସମାଜରେ କୌଣସି କାର୍ଯ୍ୟକୁ କେହି ନ୍ୟୂନ ଦୃଷ୍ଟିରେ ଦେଖିବେ ନାହିଁ ।

କବି, ସ୍ଥାପତ୍ୟ ଶିଳ୍ପୀ, ଔପନ୍ୟାସିକ, ନାଟ୍ୟକାର ଏକ ସୁନ୍ଦର ପୃଥିବୀ ପାଇଁ ଉନ୍ନତ ସୃଷ୍ଟି ଦିଗରେ ପ୍ରୟାସୀ ହେବେ ଓ ପରସ୍ପର ଭିତରେ ପ୍ରତିଯୋଗିତା କରିବେ । ଦକ୍ଷ, ପ୍ରତିଭାବାନ ଓ ପ୍ରବୀଣ ଲୋକମାନଙ୍କୁ ସାମାଜିକ ସ୍ୱୀକୃତି ଦିଆଯିବ କାରଣ ସେମାନେ ସମାଜର କଲ୍ୟାଣ ଦିଗରେ ନିଜର ଅବଦାନ ଦେଇପାରିବେ ।

**ମନ୍ଦ ଆଚରଣ ସହ୍ୟ କରାଯିବ ନାହିଁ**

ଆଗାମୀ ପୃଥିବୀରେ ପ୍ରତ୍ୟେକ ବ୍ୟକ୍ତି ଜଣେ ସଂସ୍କୃତିସଂପନ୍ନ ସୁନାଗରିକ ହୋଇପାରିବେ । କୌଣସି ବ୍ୟକ୍ତି ମନ୍ଦ ଆଚରଣଦ୍ୱାରା ଯଦି ଉପକୃତ ହେଉଥାଏ ଓ ତାଙ୍କର ଅନୈତିକ କାର୍ଯ୍ୟକୁ ଅନ୍ୟମାନେ ସମର୍ଥନ ଦେଉଥାନ୍ତି ତେବେ ସେ ଖରାପ ଆଚରଣ ଦେଖାଇବାରେ ବ୍ରତୀ ହେଉଥାଏ । ଯଦି ସାମାଜିକ ପରିବେଶ ଉନ୍ନତ ହୋଇଥାଏ ତେବେ ବ୍ୟକ୍ତି ସାଧାରଣତଃ ନାଗରିକ ଶୃଙ୍ଖଳା ପାଳନ କରେ କାରଣ କୌଣସି ବିଶୃଙ୍ଖଳ ଆଚରଣକୁ ଅନ୍ୟମାନେ ସହ୍ୟ କରିବେ ନାହିଁ । ଆଗାମୀ ପୃଥିବୀରେ କୌଣସି ବ୍ୟକ୍ତି ତାର ବ୍ୟକ୍ତିଗତ ଖିଆଲ ବା ମର୍ଜିରେ ଅନ୍ୟକୁ ଶୋଷଣ କରିପାରିବ ନାହିଁ ବା ନିଜସ୍ୱ ପ୍ରଚାର କରିପାରିବ ନାହିଁ । ଈର୍ଷା, ଘୃଣା ଓ ପ୍ରତିହିଂସାର ମନୋଭାବ ସେତିକିବେଳେ ଆସେ ଯେତେବେଳେ କମ ସାମର୍ଥ୍ୟର ଲୋକମାନେ ଅଧିକ ସୁବିଧା ସୁଯୋଗର ସହ ଜୀବନକୁ ଉପଭୋଗ କରନ୍ତି । ଜାତି ଓ ଶ୍ରେଣୀର ଆଳରେ କେତେକ ବ୍ୟକ୍ତି ନିଜର ସ୍ୱାର୍ଥ ପାଇଁ ଅନ୍ୟକୁ ଶୋଷଣ କରି ଆସିଛନ୍ତି । ଜାତିଆଣ ଭାବକୁ ସେମାନେ ସଂସ୍କୃତି ଓ ପରଂପରାର ଆଖ୍ୟା ଦେଇ ସମାଜରେ

Digitized by srujanika@gmail.com

ବିଭେଦ ସୃଷ୍ଟି କରି ଆସୁଛନ୍ତି । ଯଦି ପୁଁଜିବାଦୀ ଓ ଭେଦଭାବ ସୃଷ୍ଟିକାରୀ ମାନସିକତା ସମାଜରୁ ଦୂର ହୋଇଯିବ, ତେବେ ସାମାଜିକ ଜୀବନରୁ ନୀତିଭ୍ରଷ୍ଟତା ଦୂର ହୋଇଯିବ । କେହି ଚୌର୍ଯ୍ୟବୃତ୍ତି ଅବଲମ୍ବନ କରିବେ ନାହିଁ, କାରଣ କେହି ସର୍ବନିମ୍ନ ଆବଶ୍ୟକତା ଠାରୁ ବଞ୍ଚିତ ହେବନାହିଁ । ଗଙ୍ଗାନଦୀ କୂଳରେ ରହୁଥିବା କୌଣସି ବ୍ୟକ୍ତି ଜଳ ଚୋରି କରିବ ନା ଆଗାମୀ ଦିନ ପାଇଁ ସଞ୍ଚିତ କରି ରଖିବାକୁ ଚାହିଁବ? ଯେତେବେଳେ ଆମର ଆବଶ୍ୟକତାଠାରୁ ଅଧିକ ଶସ୍ୟ ଓ ପଦାର୍ଥ ମିଳିବ ଓ ଏହା ସହିତ ବଣ୍ଟନ ବ୍ୟବସ୍ଥା ଦ୍ୱାରା ପ୍ରତ୍ୟେକର ଆବଶ୍ୟକତାନୁଯାୟୀ ତାକୁ ଜିନିଷ ମିଳିବ, ସେତେବେଳେ ଅଧିକ ନେଇ ଯିବାର ମନୋଭାବ ବା ଚୋରି କରିବାର ମାନସିକତା କାହାର ରହିବ ନାହିଁ । ସେହିପରି ମିଥ୍ୟାର ଆଶ୍ରୟ ଭବିଷ୍ୟତରେ କେହି ନେବେ ନାହିଁ, କାରଣ ମିଥ୍ୟାଦ୍ୱାରା କାହାର ଉପକାର ସାଧିତ ହେବ ନାହିଁ ।

ଏକ ବିପ୍ଳବ ପରିପ୍ରେକ୍ଷୀରେ ବିତ୍ତଶାଳୀ ଲୋକଙ୍କର ସନ୍ତାପ ପାଇଁ ଚିନ୍ତିତ ହେବା ଆବଶ୍ୟକ ନାହିଁ । ଚୋରଙ୍କର ସୁବିଧା ପାଇଁ ଓ ତାଙ୍କ ପତ୍ନୀଙ୍କର ଆବଶ୍ୟକତା ପୂରଣ ପାଇଁ କେହି ରାତ୍ରିରେ ଶୋଇବାବେଳେ ନିଜର ଦ୍ୱାର ଉନ୍ମୁକ୍ତ କରି ରଖେ ନାହିଁ । ନିଜର ଘର ଓ ଜିନିଷ ପତ୍ରର ସୁରକ୍ଷା ପାଇଁ ଜଣେ ସଚେତନ ରହିବା ପରି ଅଗଣିତ ବ୍ୟକ୍ତିଙ୍କର ଶ୍ରମ ଓ ଅର୍ଥକୁ ଶୋଷଣ କରୁଥିବା ମୁଷ୍ଟିମେୟ ବ୍ୟକ୍ତିଙ୍କର କାର୍ଯ୍ୟକୁ ପ୍ରତିହତ କରିବା ପାଇଁ ସମାଜ ସଚେତନ ରହିବା ଆବଶ୍ୟକ । ଅନ୍ୟର ଶ୍ରମ ଓ ଅର୍ଥକୁ ଯେଉଁମାନେ କୌଶଳ କ୍ରମେ ଶୋଷଣ କରି ବିତ୍ତଶାଳୀ ହୋଇଛନ୍ତି ସେମାନଙ୍କର ସେହି ଅନୈତିକ କାରବାରକୁ ଅଙ୍କୁଶ ଲଗାଇ ବନ୍ଦ କରିବା ସମାଜର କାର୍ଯ୍ୟ । ଜଣେ ଚୋର ବ୍ୟକ୍ତିଠାରୁ ଏମାନେ ଶହେ ଗୁଣରେ ମନ୍ଦ ବୋଲି କୁହାଯାଇପାରେ ।

କୌଣସି ପରିବର୍ତ୍ତନ ପାଇଁ ହିଂସାର ଆବଶ୍ୟକତା ନାହିଁ । ଯେଉଁମାନେ କୌଶଳର ସହ ଅନ୍ୟକୁ ଶୋଷଣ କରୁଛନ୍ତି, ସେହି ଧାରାକୁ ବନ୍ଦ କରିବା ପାଇଁ ସୁଚିନ୍ତିତ ପଦକ୍ଷେପ ନିଆଯାଇ ପାରିବ । ତେବେ କୌଣସି ଧନୀ ବ୍ୟକ୍ତି ଭବିଷ୍ୟତର ପରିଣାମ ପାଇଁ ଚିନ୍ତିତ ହେବା ଠିକ୍ ନୁହେଁ । ଆଗାମୀ ସମାଜ ସମାଜର ସବୁ ଲୋକଙ୍କର ଜୀବନର ଆବଶ୍ୟକତା ଯଥା- ସୁଖ, ଶିକ୍ଷା, ଚିକିତ୍ସା ଇତ୍ୟାଦି ପାଇଁ

Digitized by srujanika@gmail.com

ବ୍ୟବସ୍ଥା କରିପାରିବ । କୌଣସି ଆର୍ଥିକ ସମସ୍ୟାରେ ସବୁବେଳେ ଶ୍ରମଜୀବୀ ଗରିବ ଲୋକଟି ଓ ଚାଷୀଟି ହିଁ ଅସୁବିଧାରେ ପଡିଥାନ୍ତି । କିନ୍ତୁ ସେହି ପରିସ୍ଥିତିରେ ପରିବର୍ତ୍ତନ ହେବା ଆବଶ୍ୟକ ।

ପୁଂଜିପତି ଓ ଶିଳ୍ପପତିମାନେ ପ୍ରତିବନ୍ଧକର ସମ୍ମୁଖୀନ ହେଉଛନ୍ତି ଓ ସେମାନେ ବି କଷ୍ଟକର ପରିସ୍ଥିତିର ମୁକାବିଲା କରୁଛନ୍ତି , ଯାହା ସମସ୍ତେ ଜାଣନ୍ତି । ସେମାନେ ଅର୍ଥ ଉପାର୍ଜନ ପାଇଁ ଓ ତାକୁ ନିରାପଦରେ ରଖିବା ପାଇଁ ବହୁ ମାନସିକ ଅଶାନ୍ତି ଭିତରେ ସମୟ କାଟନ୍ତି । ବଡ ବ୍ୟବସାୟୀ କ୍ଷତି ସହିଲେ ବା ବହୁତ ଲାଭ କଲେ ମାନସିକ ସ୍ଥିରତା ରଖିପାରେ ନାହିଁ । ତାର କ୍ଷତିଦ୍ୱାରା ସେ ସଂସାର ଛାଡି ଚାଲିଯାଏ ନାହିଁ । ଲାଭରେ ସେ ଅଧିକ ଲାଭ ପାଇଁ ବି ଚିନ୍ତିତ ଓ ଆଶାୟୀ ହୋଇଥାଏ ।

**ସମାଜବାଦ : ସଭିଙ୍କ ଆଦର୍ଶ**

କୌଣସି ବ୍ୟକ୍ତି ନିଜର ସଂପତ୍ତି ବା ନିଜର ରୋଜଗାର ନେଇ ସଂପୂର୍ଣ୍ଣ ସନ୍ତୁଷ୍ଟ ନୁହେଁ । ଜଣେ ପୁଂଜିପତି ତାଙ୍କର ଆର୍ଥିକ ସାମର୍ଥ୍ୟ ଯୋଗୁଁ ଲୋକମାନଙ୍କ ପାଖରୁ ଯେଉଁ ସମ୍ମାନ ପାଆନ୍ତି ତାହା ତାଙ୍କର ବ୍ୟକ୍ତିଗତ ଦୁଶ୍ଚିନ୍ତା ତୁଳନାରେ ଯଥେଷ୍ଟ କମ୍ । ଏକ ବୃହତ୍ତର ପରିସ୍ଥିତିରୁ ଦେଖିଲେ ଲାଭ ବା କ୍ଷତିର କିଛି ଅର୍ଥ ହିଁ ନଥାଏ । ଲୋକମାନେ ଧନୀ ହେବାକୁ ଚାହାନ୍ତି ଓ ଏହା ତାଙ୍କୁ କିଛି ସମୟ ପାଇଁ ଆନନ୍ଦ ଦେଇଥାଏ । କାରଣ ଏସବୁ ଜୀବନରେ କ୍ଷଣସ୍ଥାୟୀ । ପ୍ରକୃତରେ ଆମର ଆବଶ୍ୟକ ମାନସିକ ସ୍ଥିରତା ଓ ଏକ ଶାନ୍ତିପୂର୍ଣ୍ଣ ଜୀବନ ।

ଯଦି ସମାଜରୁ ଧନୀକ ଶ୍ରେଣୀର ବିଲୋପ ଘଟେ, ସେପରି କିଛି ପ୍ରଳୟ ହୋଇଯିବ ନାହିଁ । ଧନୀ ହେବାର ଯେଉଁ ଅସ୍ୱାସ୍ଥ୍ୟକର ପ୍ରତିଯୋଗିତା ସମାଜରେ ଲାଗି ରହିଛି ଓ ମୁଷ୍ଟିମେୟ ଲୋକ ଧନ ଦୌଲତ ପଛରେ ଯେଉଁ ଗୋଡାଇଛନ୍ତି ତାହାର ବିଲୋପ ହେଲେ ବରଂ ସେମାନଙ୍କର ଶକ୍ତି ସାମର୍ଥ୍ୟ ବୃହତ୍ତର ସମାଜର ମଙ୍ଗଳ ପାଇଁ ବିନିଯୋଗ ହୋଇପାରିବ । ଏହାଦ୍ୱାରା ସମାଜରେ ସୁଖ, ଶାନ୍ତିର ପରିବେଶ ପ୍ରତିଷ୍ଠା ହେବ । ଯଦି ସମାଜର ସବୁ ଲୋକ ସୁଖ, ଶାନ୍ତିରେ ଜୀବନ

Digitized by srujanika@gmail.com

ନିର୍ବାହ କରନ୍ତି ତାହା ସବୁଠାରୁ ବଡ ପରିବର୍ତ୍ତନ କୁହାଯିବ । ଏହା ହିଁ ହେଉଛି ସମାଜବାଦ ଓ ଏହି ଆଦର୍ଶ ହିଁ ଆମର କାମ୍ୟ ।

**ଧନୀ ଦରିଦ୍ର ମଧ୍ୟରେ ଭେଦଭାବ:**

ସମାଜରେ ଧନୀ ଗରିବ ଭିତରେ ଥିବା ଭେଦଭାବ ଯୋଗୁଁ ସମାଜରେ ସବୁ ଅଶାନ୍ତି ଓ ମନ୍ଦର ପରିବେଶ ରହିଆସିଛି । ବିବର୍ତ୍ତନ ଧାରାରେ ପ୍ରକୃତିରେ ମଣିଷ ହେଉଛି ସର୍ବଶ୍ରେଷ୍ଠ ବିବର୍ତ୍ତିତ ପ୍ରାଣୀ ଓ ଅନ୍ୟ ସବୁ ପ୍ରାଣୀଙ୍କଠାରୁ ସେ ଉନ୍ନତ । କିନ୍ତୁ ସମାଜର ବାସ୍ତବ ସ୍ଥିତି ଦେଖିଲେ ଏହି କଥାରେ ସନ୍ଦେହ ସୃଷ୍ଟିହୁଏ । ଯଦି ସମାଜରେ ମଣିଷ ସ୍ଥିତିର ବାସ୍ତବ ମୂଲ୍ୟାୟନ କରାଯାଏ, ତେବେ ମଣିଷ ସମାଜରେ ଭରି ରହିଥିବା ଅନ୍ୟାୟ, ଶୋଷଣ ଇତ୍ୟାଦିକୁ ଦେଖିଲେ ମଣିଷକୁ କିପରି ଶ୍ରେଷ୍ଠ କୁହାଯିବ, ମଣିଷ ଭାବରେ ଜନ୍ମ ହେବା ଏକ ଆଶୀର୍ବାଦ ପରିବର୍ତ୍ତେ ଏକ ଅଭିଶାପ ବୋଲି ଧାରଣା ଆସିବ ।

ଇତର ପ୍ରାଣୀମାନଙ୍କୁ ଦେଖିଲେ ଗୋଟିଏ ଶ୍ରେଣୀର ଗୋଟିଏ ଦଳ·ଅନ୍ୟ ଦଳକୁ ଶୋଷଣ କରେ ନାହିଁ ବା ଠକେ ନାହିଁ । ସେମାନେ ସ୍ୱାର୍ଥପର ନୁହନ୍ତି । ସେମାନେ ନିଜର ପୁଅ, ନାତିଙ୍କର ସୁଖ ଶାନ୍ତି ପାଇଁ ଏତେ ଶକ୍ତି ବ୍ୟୟ କରି ଅନ୍ୟକୁ ଠକନ୍ତି ନାହିଁ କି ଅଚିନ୍ତନୀୟ ଅପରାଧ ସୃଷ୍ଟି କରନ୍ତି ନାହିଁ । ଅତି ନୀଚ ଭାବନା ଓ ଅତ୍ୟନ୍ତ ଘୃଣ୍ୟ କାର୍ଯ୍ୟ କେବଳ ମଣିଷମାନଙ୍କ ପାଖରେ ହିଁ ଦେଖାଯାଏ । ବିଡମ୍ବନାର ବିଷୟ ଏହା ପୁଣି ଈଶ୍ୱରଙ୍କ ନାମରେ କରାଯାଏ ଓ ଈଶ୍ୱରଙ୍କ ପ୍ରତିବିମ୍ବ ବୋଲାଉଥିବା ମଣିଷମାନେ କରନ୍ତି । ଗୋଟିଏ ଗଧ ଅନ୍ୟ ଗଧ ଉପରେ ସବାର ହୁଏ ନାହିଁ କିମ୍ବା ଗୋଟିଏ ବାଘ ଅନ୍ୟ ବାଘର ପିଠିରେ ବସି ଯାଏ ନାହିଁ । କିନ୍ତୁ ମଣିଷ ଅନ୍ୟ ମଣିଷ ଉପରେ ଅତ୍ୟାଚାର କରେ ଓ ମଣିଷ ଉପରେ ସବାର ହୁଏ । ରିକ୍ସା ଟାଣୁଥିବା ଲୋକଟିର କଥା ଭାବନ୍ତୁ । ମଣିଷ ଭିତରେ ଯେପରି ମହତ୍ତର ଗୁଣ ରହିଛି ଯାହା ଅନ୍ୟ ପ୍ରାଣୀ ପାଖରେ ନାହିଁ, ଏହା କହିବା ସନ୍ଦେହପୂର୍ଣ୍ଣ ମନେହୁଏ ।

Digitized by srujanika@gmail.com

**ବିପ୍ଳବ ପାଇଁ ସମୟକୁ ତ୍ୱରାନ୍ୱିତ କର:**

ଈଶ୍ୱର, ରାଜା, ଧର୍ମ, ଜାତି, ଶାସ୍ତ୍ର ଇତ୍ୟାଦି ନାମରେ ମୁଷ୍ଟିମେୟ ଲୋକ ଅଗଣିତ ମଣିଷ ମାନଙ୍କୁ ଠକି ଆସୁଛନ୍ତି ଓ ସେମାନଙ୍କୁ ଶୋଷଣ କରୁଛନ୍ତି। ଗୋଟିଏ କ୍ଷୁଦ୍ର ଗୋଷ୍ଠୀକୁ ସମସ୍ତ ସୁଖ ସୁବିଧା ଯୋଗାଇ ଦେବା ପାଇଁ ସେମାନେ କେବଳ ପ୍ରୟାସ କରି ଆସିଛନ୍ତି।

ମଣିଷର ଜନ୍ମ ମୃତ୍ୟୁ ଈଶ୍ୱରଙ୍କ ନିୟନ୍ତ୍ରଣରେ ବୋଲି କୁହାଯାଏ। ମଣିଷ ଯାହା କରେ, ଭଲ ହେଉ କି ମନ୍ଦ ହେଉ, ତାହାକୁ ସେ ଈଶ୍ୱରଙ୍କ ଉପରେ ଆରୋପ କରେ। ଯଦି ସବୁ କିଛି ଈଶ୍ୱର-ନିୟନ୍ତ୍ରିତ-ବିଶ୍ୱରେ ଈଶ୍ୱରଙ୍କ ନିର୍ଦ୍ଦେଶରେ ହୁଏ, ତେବେ ମଣିଷର କେଉଁ କାର୍ଯ୍ୟ ପାଇଁ ଈଶ୍ୱରଙ୍କୁ ଗୌରବ ଦିଆଯିବ! ମଣିଷର କେଉଁ ସ୍ଥିତି ଓ କେଉଁ କର୍ମ ପାଇଁ ଈଶ୍ୱରଙ୍କୁ ପ୍ରଶଂସା କରାଯିବ? ଈଶ୍ୱରଙ୍କୁ ସବୁର ନିୟନ୍ତ୍ରକ କହି ଆମେ ପ୍ରକୃତରେ ଈଶ୍ୱରଙ୍କୁ ଅସମ୍ମାନିତ ଓ ନ୍ୟୂନ କରୁନାହେଁ କି? ଆମେ କେତେଦିନ ଏପରି ଠକି ଚାଲିବା? ଏହି ସବୁ ତ୍ରୁଟିପୂର୍ଣ୍ଣ ଭାବନାରୁ ଆମେ ମୁକ୍ତ ହେବା ଦରକାର ଓ ବିଚାର ସ୍ତରରେ କ୍ରାନ୍ତି ପାଇଁ ପ୍ରସ୍ତୁତ ହେବା ଆବଶ୍ୟକ।

ଆଗାମୀ ଦିନରେ ପାନୀୟ କ୍ଷେତ୍ରରେ ନିଷେଧ ରହିବ ନାହିଁ ବା ମଦ୍ୟପାନର କୌଣସି ମନ୍ଦ ପ୍ରଭାବ ରହିବ ନାହିଁ। ସାମାଜିକ ସଂପର୍କ ଅତ୍ୟନ୍ତ ପ୍ରୀତିପଦ ହୋଇ ରହିବ ଓ କେହି କାହାକୁ ହତ୍ୟା କରିବେ ନାହିଁ। ମଣିଷମାନଙ୍କ ଭିତରେ ଖେଳୁଆଡ ମନୋଭାବ ଓ ପ୍ରୀତିପୂର୍ଣ୍ଣ ପ୍ରତିଯୋଗିତା ହେବ, କିନ୍ତୁ ଜୁଆଖେଳ ହେବ ନାହିଁ।

**ସଦ୍ଭମତିରେ ପ୍ରେମ**

ବେଶ୍ୟାବୃତ୍ତିର ଭାବନା ହିଁ ରହିବ ନାହିଁ, କାରଣ କେହି ବେକାର ବା ବୁଭୁକ୍ଷୁ ରହିବେ ନାହିଁ। ପେଟ ଦାଉରେ ମଣିଷ ଯେକୌଣସି ମନ୍ଦ କାର୍ଯ୍ୟ କରିପାରେ। ଅଭାବ ନ ରହିଲେ ସମସ୍ତେ ସମ୍ମାନର ସହ ବଞ୍ଚିବେ। ପ୍ରତ୍ୟେକଙ୍କ ଭିତରେ ଆତ୍ମମର୍ଯ୍ୟାଦାର ଭାବନା ରହିଲେ, ଜଣେ ଅନ୍ୟ ପାଖରେ ନିଜକୁ ନ୍ୟୂନ କରିବ ନାହିଁ ବା କେହି କାହା ଉପରେ ପ୍ରଭୁତ୍ୱ ବିସ୍ତାର କରିବ ନାହିଁ। କେହି ପ୍ରଭୁ ହେବେ

Digitized by srujanika@gmail.com

ନାହିଁ କିମ୍ବା କେହି ଦାସ ହେବେ ନାହିଁ । ସେହିପରି ପୁରୁଷ ଓ ନାରୀ ଭିତରେ ମଧ୍ୟ ସମାନତାର ସଂପର୍କ ରହିବ । ସେମାନେ ସେମାନଙ୍କ ସଂପର୍କ କ୍ଷେତ୍ରରେ ସମାନ ହୋଇଥିବାରୁ ସେମାନଙ୍କର ସହମତିରେ ଓ ମୁକ୍ତ ମନରେ ସେମାନଙ୍କ ମଧ୍ୟରେ ପ୍ରେମ-ସଂପର୍କ ସ୍ଥାପିତ ହେବ ।

ସଭ୍ୟ ମାନସିକତାରେ ନାରୀ ପୁରୁଷ ଭିତରେ ସମ୍ବନ୍ଧ ଆଦର୍ଶ ସ୍ଥାନୀୟ ହେବ । ଶାରୀରିକ ସୁସ୍ଥତା ପ୍ରତ୍ୟେକ ବ୍ୟକ୍ତିର ସବୁଠାରୁ ବଡ ସଂପଦ । ସୁତରାଂ ବେଶ୍ୟାବୃତ୍ତି ସମାଜରୁ ଲୋପ ପାଇବ ଓ ଏହା ଅତୀତର ବସ୍ତୁ ହୋଇଯିବ ।

**ମଣିଷର ହାରାହାରି ଆୟୁ ଶହେ ବର୍ଷ ହେବ**

ଭବିଷ୍ୟତରେ ଯାତାୟତ ମୁଖ୍ୟତଃ ବିମାନଯାତ୍ରା ଯୋଗେ ହେବ । ଫଳରେ ଗୋଟିଏ ସ୍ଥାନରୁ ଏକ ଦୂର ସ୍ଥାନକୁ ମଣିଷ ଅଳ୍ପ ସମୟ ଭିତରେ ଯାତ୍ରା କରିପାରିବ । ରେଡିଓ ଓ ସେପରି ସମ୍ବାଦ ପରିବେଷଣ ବସ୍ତୁ ମଣିଷର ପକେଟରେ ରହିପାରିବ । ଟେଲିଭିଜନ କ୍ଷେତ୍ରରେ ଏପରି ଉଲ୍ଲେଖନୀୟ ପରିବର୍ତ୍ତନ ମାନ ହେବ ଯେ ଜଣେ ବ୍ୟକ୍ତି ଦୂରରେ ଥିବା ଯେକୌଣସି ବ୍ୟକ୍ତି ସହ କଥା ହୋଇପାରିବ ଓ ତାହାର ଫଟୋ ଦେଖିପାରିବ । ଜଣେ ଶିକ୍ଷକ ଭିନ୍ନ ଭିନ୍ନ ସ୍ଥାନରେ ଥିବା ପିଲାମାନଙ୍କୁ ଏକା ସମୟରେ ପଡାଇ ପାରିବେ ।

ଶରୀର ପାଇଁ ଆବଶ୍ୟକ ହେଉଥିବା ଖାଦ୍ୟ ଓ ଭିଟାମିନ୍ କ୍ୟାପସୁଲ୍‌ରେ ମିଳିପାରିବ, ଯାହା ଶରୀର ପାଇଁ ଆବଶ୍ୟକୀୟ ଶକ୍ତି ଦିନକ ପାଇଁ ବା ସପ୍ତାହକ ପାଇଁ ଯୋଗାଇ ପାରିବ । ଜଣେ ବ୍ୟକ୍ତି ସାଧାରଣ ଭାବେ ଶହେ ବର୍ଷ ବା ତାଠାରୁ ଅଧିକ ସମୟ ବଞ୍ଚିପାରିବ ।

**ଶିଶୁ ଜନ୍ମପାଇଁ ଯୌନ କ୍ରିୟା ଆବଶ୍ୟକ ହେବ ନାହିଁ**

ଶିଶୁ ଜନ୍ମ ପାଇଁ ନାରୀ ପୁରୁଷ ଭିତରେ ଯୌନକ୍ରିୟା ଆବଶ୍ୟକ ହେବ ନାହିଁ । ପୁରୁଷର ଉଚ୍ଚ ଗୁଣ ବିଶିଷ୍ଟ ଶୁକ୍ରାଣୁକୁ ସଂଗ୍ରହ କରାଯାଇ ଟେଷ୍ଟ ଟ୍ୟୁବ ଭିତରେ ଗର୍ଭ ସଂଚାର କରାଯିବା ସମ୍ଭବ ହେବ । ପରିବାର ନିୟୋଜନ ଓ ଜନସଂଖ୍ୟା ନିୟନ୍ତ୍ରଣ ଲୋକମାନେ ଓ ସରକାର ଅନାୟାସରେ କରିପାରିବେ ।

Digitized by srujanika@gmail.com

. ଆବଶ୍ୟକୀୟ ଜିନିଷ ପତ୍ର ନାନା ଭାବରେ ଓ ନାନା ଆକାରରେ ସୁଲଭ ମୂଲ୍ୟରେ ମିଳିପାରିବ । ଜଣେ ସାଧାରଣ ନାଗରିକ ଏସବୁ ଅକ୍ଳେଶରେ ପାଇପାରିବ । ମଟରଗାଡି ସାଧାରଣ ଲୋକ ବି ରଖି ପାରିବ ଓ ଏହା ପେଟ୍ରୋଲ ପରିବର୍ତ୍ତେ ବେଟାରୀରେ ଚାଲିପାରିବ, ଯେଉଁ ବେଟାରୀକୁ ଇଲେକ୍‌ଟ୍ରିକଦ୍ୱାରା ଚାର୍ଜ କରାଯିବ ।

**ଈଶ୍ୱରଙ୍କ ସ୍ଥାନ କ'ଣ ହେବ ?**

ଇଲେକଟ୍ରିକ ଆଲୁଅ ସବୁ ରାସ୍ତାରେ ଜଳିପାରିବ ଓ ସବୁ ଘରେ ଉପଲବଧ ହୋଇପାରିବ । ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ଏଥିରେ ଚାଲିପାରିବ ଓ ଜୀବନ ଧାରଣ ଅତ୍ୟନ୍ତ ସହଜସାଧ୍ୟ ହୋଇଯିବ ।

କୌଣସି ଶିଳ୍ପ ବା କଳକାରଖାନା କୌଣସି ବ୍ୟକ୍ତି ବିଶେଷଙ୍କର ସଂପତ୍ତି ହେବ ନାହିଁ ବା ତାର ଲାଭାଂଶ ବ୍ୟକ୍ତିବିଶେଷଙ୍କ ପକେଟକୁ ଯିବ ନାହିଁ । ଏହା ସର୍ବସାଧାରଣ ସଂପତ୍ତି ହେବ । ସମସ୍ତ ଉଦ୍‌ଭାବନ ଓ ଉତ୍ପାଦନର ସୁଫଳ ସବୁ ମଣିଷ ପାଇବେ ଓ ସୁଖକର ଜୀବନ ଅତିବାହିତ କରିବେ ।

ଆଗାମୀ ପୃଥିବୀରେ ଈଶ୍ୱରଙ୍କ ସ୍ଥାନ କଣ ହେବ ? ଏହି ପ୍ରଶ୍ନ ସମସ୍ତଙ୍କ କଳ୍ପନା ଭିତରକୁ ଏବେ ଆସୁଛି ।

**ପୃଥିବୀ ଏକ ସୁଖମୟ ସ୍ଥାନରେ ପରିଣତ ହେବ**

ଈଶ୍ୱର କାହାକୁ ସାକ୍ଷାତ ଦେଇନାହାନ୍ତି । ଧର୍ମୋତ୍ସାହୀ ଲୋକମାନେ ଈଶ୍ୱରଙ୍କୁ ରୂପ, ନାମ ଓ ଚରିତ୍ର ଦେଇ ଲୋକମାନଙ୍କ ପାଖରେ ବ୍ୟକ୍ତ କରିଛନ୍ତି । ଆଗାମୀ ଦିନରେ ଈଶ୍ୱରଙ୍କ କଥା କେହି ପ୍ରଚାର କରିବେ ନାହିଁ । ଲୋକମାନେ ଈଶ୍ୱରଙ୍କୁ ସ୍ମରଣ କରିବାର କୌଣସି ଆବଶ୍ୟକତା ଅନୁଭବ କରିବେ ନାହିଁ । ପୃଥିବୀର ଅବସ୍ଥା ଭିତରେ ମଣିଷ ଆବଶ୍ୟକତା ବେଳେ ଏକ ଅଦୃଶ୍ୟ ଶକ୍ତିର କଳ୍ପନା କରିଛି । ମଣିଷର ଅଜ୍ଞତା, ଭୟ, କାମନା ଓ କଳ୍ପନା ଭିତରୁ ଈଶ୍ୱର ବହୁ ଅତୀତରେ ସୃଷ୍ଟି ହୋଇଛନ୍ତି । ଯଦି ସକଳ ଭୟ ଓ ଅଭାବ ଦୂର ହୋଇଯିବ, ସେତେବେଳେ ଈଶ୍ୱର ବି ରହିବେ ନାହିଁ । ବିଜ୍ଞାନ ଓ ବୈଜ୍ଞାନିକ ମାନସିକତା ଭିତରେ ଈଶ୍ୱରଙ୍କୁ କଳ୍ପନା କରିବାର ଆବଶ୍ୟକତା ପଡିବ ନାହିଁ ।

Digitized by srujanika@gmail.com

## ଈଶ୍ୱର ଆରାଧନା କୌଣସି ଉଦ୍ଦେଶ୍ୟ ପୂରଣ କରେ ନାହିଁ

ବିଶ୍ୱର ସ୍ଥିତିରୁ ଈଶ୍ୱର ଭାବନା ସୃଷ୍ଟି ହୋଇଛି । ମଣିଷ ମନକୁ ପ୍ରଶ୍ନ ଆସିଛି ଏ ବିଶ୍ୱକୁ କିଏ ନିର୍ମାଣ କରିଛି ଓ ବିଶ୍ୱ କିପରି ପରିଚାଳିତ ହେଉଛି? ମଣିଷ "ଈଶ୍ୱର" କହି ଉତ୍ତର ଦେବାକୁ ପ୍ରୟାସ କରିଛି । ତେବେ ଏହି ପ୍ରଶ୍ନ ସଂପ୍ରତି ବୈଜ୍ଞାନିକମାନଙ୍କୁ ଚିନ୍ତିତ କରୁନାହିଁ । ଜୀବନର କେଉଁ ଆଧାରଟି ଈଶ୍ୱରଙ୍କ କାର୍ଯ୍ୟ ବୋଲି ଆମେ ଭାବୁଛୁ ? ଆମେ ଯାହା ଜାଣିନାହୁଁ ବା ବୁଝିପାରୁ ନାହୁଁ ତାହାକୁ ଈଶ୍ୱର ବୋଲି ଆଖ୍ୟା ଦେଉଛୁ । ଆମେ ଯାହା ଜାଣୁଛୁ ବା ଯାହାକୁ ବ୍ୟାଖ୍ୟା କରିପାରୁଛୁ ତାହା ପାଇଁ ଈଶ୍ୱରଙ୍କୁ ଅନୁମାନ କରୁ ନାହୁଁ । ଯାହା ଜାଣି ପାରୁ ନାହୁଁ ଆମେ କହିବା ଉଚିତ ଯେ "ଆମେ ଜାଣି ନାହୁଁ" ବା ଏହା ଜ୍ଞେୟ ନୁହେଁ" । ଯାହା ଆମ ଜ୍ଞାତସାରର ବାହାର, ସେଥିପାଇଁ ଈଶ୍ୱରଙ୍କୁ ଆଣିବା ଅନାବଶ୍ୟକ ।

ଭବିଷ୍ୟତର ପୃଥିବୀରେ ଏହା ହିଁ ମଣିଷର ଦୃଷ୍ଟିଭଙ୍ଗୀ ହେବ । ଯାହା ମଣିଷର ବୁଦ୍ଧି ଭିତରେ ବୋଧଗମ୍ୟ ହେବ ନାହିଁ, ଭବିଷ୍ୟତର ମଣିଷ ଈଶ୍ୱରଙ୍କୁ କଳ୍ପନା କରି ସମୟର ଅପଚୟ କରିବ ନାହିଁ । ଈଶ୍ୱରଙ୍କ ଆରାଧନା ଯେ ମଣିଷ ସମାଜର କୌଣସି ଲକ୍ଷ୍ୟ ପୂରଣ କରିବ ନାହିଁ ଏହା ବିଚାରଶୀଳ ଭାବେ ମଣିଷ ଅନୁଭବ କରିବ ।

## ସ୍ୱର୍ଗ ନରକର ଭାବନା ଦୂର ହେବ

ଆଗାମୀ ପୃଥିବୀରେ ସ୍ୱର୍ଗ ଓ ନରକର ଭାବନା ମଣିଷ ମନରୁ ଦୂର ହୋଇଯିବ । ଆମ ସଂସାରରେ ଯେତେବେଳେ ବହୁ ମନ୍ଦ ଲୋକ ଥାନ୍ତି ସେତେବେଳେ ଏହି ସବୁ ଭାବନାର ଆବଶ୍ୟକତା ପଡେ । ଆଗାମୀ ଦିନରେ କୌଣସି ବ୍ୟକ୍ତି ଅନ୍ୟର ଦୟା ଅନୁକଂପାରେ ରହିବ ନାହିଁ । ମାନସିକ ସ୍ତରରେ ବିକାର ଗ୍ରସ୍ତ ହେଲେ ସେ ଅନ୍ୟର କ୍ଷତି କରିବ ନାହିଁ । କିମ୍ବା ନିଜର ସୁବିଧା ପାଇଁ ଜଣେ ଅନ୍ୟକୁ ଖରାପ ବ୍ୟବହାର ଦେଖାଇବ ନାହିଁ ।

ମୁଁ ମୋଟାମୋଟି ଭାବରେ ଆଗାମୀ ଭବିଷ୍ୟତର ରୂପରେଖ କଳ୍ପନା କରିଛି । ବର୍ତ୍ତମାନ ସୁଦ୍ଧା ମଣିଷ ଯେଉଁ ପ୍ରଗତି ହାସଲ କରିଛି ଏବଂ ଭବିଷ୍ୟତ ପାଇଁ ଯେଉଁ କଳ୍ପନା କରୁଛି ଓ ସେଥିରେ ବିଜ୍ଞାନ, ପ୍ରଯୁକ୍ତିଜ୍ଞାନ ଓ ସମାଜଜ୍ଞାନର

Digitized by srujanika@gmail.com

ଯେଉଁ ଅବଦାନ ରହିଛି ସେ ଦୃଷ୍ଟିରୁ ମୋର କଳ୍ପନା ବାସ୍ତବତାଠାରୁ ବହୁତ ଦୂର ନୁହେଁ।

**ପୃଥିବୀର ବର୍ତ୍ତମାନର ଦୂରବସ୍ଥା ଦୂର ହୋଇଯିବ**

ମୋ ଭାବନାର ଆଗାମୀ ପୃଥିବୀ ଯଦି ବା ଏକ କଳ୍ପନା ବିଚାରଶୀଳ ଭାବେ କେହି ଏହାକୁ ଅସ୍ୱୀକାର କରିବେ ନାହିଁ। ପ୍ରତ୍ୟେକ ମଣିଷ ପୃଥିବୀରୁ ସମସ୍ତ ଦୁଃଖ ଓ ଦୁରାବସ୍ଥା ଦୂର ହେବା ଚାହେଁ। ଜୀବନ ଯେଉଁଠି ସମସ୍ୟାବହୁଳ ବୋଝ ହୋଇଛି, ସେହି ଜୀବନକୁ ସରସ ସୁନ୍ଦର କରିବାକୁ କିଏ ନ ଚାହିଁବ! ବଞ୍ଚିବା ପାଇଁ ଜୀବନ ସଂଗ୍ରାମ ଏକ ସୁଖମୟ ଜୀବନରେ ରୂପାନ୍ତରିତ ହେବା ଆବଶ୍ୟକ।

ମୁଁ ଆଗାମୀ ପୃଥିବୀର ଚିତ୍ର ନେଇ ଯାହା ଭାବୁଛି ତାହାର ରୂପାୟନ ପାଇଁ ଯଦି ମଣିଷମାନେ ପ୍ରୟାସ କରନ୍ତି ତେବେ ବହୁତ କିଛି ହାସଲ ହୋଇପାରିବ। ଜଣେ ସାଧାରଣ ମଣିଷର ଦୃଷ୍ଟି ସମଗ୍ର ମଣିଷ ଜାତି ପ୍ରତି ପ୍ରସାରିତ ହୋଇପାରିବ, ସେ ଉଦାର ହୃଦୟରେ ସବୁ ମଣିଷଙ୍କୁ ସମାନ ଭାବିବ ଓ ତାର ସାମର୍ଥ୍ୟ ଭିତରେ ଏକ ସୁନ୍ଦର ପୃଥିବୀର ରୂପାୟନ ପାଇଁ ସେ କାର୍ଯ୍ୟ କରିବ। ଯଦି ଏହି ଦିଗରେ ନିଷ୍ଠାପର ଉଦ୍ୟମ ହୁଏ, ତେବେ ଆଗାମୀ ପୃଥିବୀର ଚିତ୍ର ବଦଳିଯିବ।

**ଈଶ୍ୱରଙ୍କ ବିନା ଇଚ୍ଛାରେ ଘାସ ବି ହଲେ ନାହିଁ**

ମଣିଷ ପାଇଁ କିଛି ସମ୍ଭବ ନୁହେଁ, ଈଶ୍ୱରଙ୍କ ବିନା ଇଚ୍ଛାରେ ଘାସ ବି ହଲେ ନାହିଁ- ଏହି ପ୍ରକାରର ଭାବନାରୁ ମଣିଷ ମୁକ୍ତ ହେବା ଦରକାର। ପୃଥିବୀରେ ଦୁଃଖ ଦୁର୍ଦ୍ଦଶା ପାଇଁ ବା ସମାଜର ସକଳ ଭେଦଭାବ ପାଇଁ ମଣିଷ କେଉଁ ଈଶ୍ୱର, କର୍ମଫଳ, ଭାଗ୍ୟକୁ ଦୋଷ ଦେବନାହିଁ। ସ୍ୱାର୍ଥସିଦ୍ଧି ପାଇଁ ଜାତିଭେଦ ପରି ଯେଉଁ ଭେଦଭାବ ମଣିଷ ସମାଜରେ ସୃଷ୍ଟି କରିଛି ଓ ଯେଉଁ ସବୁ ମନ୍ଦ ଭାବନାକୁ ବହୁ ଅତୀତର ଶାସ୍ତ୍ରରେ ସିଏ ଲେଖିଛି ସେଥିରୁ ମଣିଷ ମୁକ୍ତ ହେବା ଦରକାର। ସେ ନିଜର ଭବିଷ୍ୟତକୁ ନିର୍ମାଣ କରିବାକୁ ପ୍ରୟାସ କରିବ। ବିଜ୍ଞାନ ଓ ମାନବବାଦ ତା ଜୀବନର ନିର୍ଣ୍ଣାୟକ ଆଦର୍ଶ ହୋଇପାରିବ।

Digitized by srujanika@gmail.com

ଗଣତନ୍ତ୍ର, ସମାଜବାଦ ଭାବନାକୁ ମନ୍ଦ ଦିଗରେ ବ୍ୟବହାର କରିବ ନାହିଁ ବା ଏହା ସମାଜକୁ ଖରାପରୁ ଖରାପତର ସ୍ଥିତିକୁ ନେବ ବୋଲି ସେ ଭାବିବା ଠିକ୍ ନୁହେଁ । ମଣିଷର ନିରନ୍ତର ବିକାଶ ଓ ଏକ ପ୍ରୀତିପୂର୍ଣ୍ଣ ବିଶ୍ୱ ଦିଗରେ ତାହାର ଦୃଷ୍ଟି ପ୍ରସାରିତ ହେବା ଦରକାର । ମଣିଷର କେବେ ପଶ୍ଚାତଗତି ହେବ ନାହିଁ । ବରଂ ସଭ୍ୟତାର ବିକାଶ ସାମାଜିକ ସମତା ଓ ସମସ୍ତଙ୍କର ସୁଖ ଶାନ୍ତି ପାଇଁ ଅଭିପ୍ରେତ ହେବା ଆବଶ୍ୟକ । ଏହି ଦୃଷ୍ଟିଭଙ୍ଗୀ ବ୍ୟାପକ ହେଲେ ମଣିଷକୁ ଏହା ଏକ ପ୍ରୀତିପୂର୍ଣ୍ଣ ବିଶ୍ୱର ରୂପାୟନ ପାଇଁ ପ୍ରେରଣା ଦେବ ।

* * * * * *



Digitized by srujanika@gmail.com

# ୪. ବୌଦ୍ଧ ଧର୍ମ

ବୌଦ୍ଧଧର୍ମାବଲମ୍ବୀ ମାନେ ତାଙ୍କର ବିଶ୍ୱାସ ଓ ପ୍ରଚାରରେ ଏହି କଥା କହିଥାନ୍ତି-

୧. ବୁଦ୍ଧଂ ଶରଣମ୍ ଗଚ୍ଛାମି

୨. ଧର୍ମଂ ଶରଣମ୍ ଗଚ୍ଛାମି

୩. ସଂଘଂ ଶରଣମ୍ ଗଚ୍ଛାମି

ପୃଥିବୀର ବିଭିନ୍ନ ପ୍ରାନ୍ତରରେ ରହିଥିବା ବୁଦ୍ଧିଷ୍ଟମାନେ ସେମାନଙ୍କ ପ୍ରାର୍ଥନା ଆରମ୍ଭରେ ଓ ଶେଷରେ ଏହି ବାକ୍ୟ ଉଚ୍ଚାରଣ କରିଥାନ୍ତି । ଏପରିକି ଯେକୌଣସି ଧାର୍ମିକ କାର୍ଯ୍ୟ ବା କର୍ମକାଣ୍ଡରେ ବି ସେମାନେ ଏହାକୁ ଆବୃତ୍ତି କରିଥାନ୍ତି । ଏହି ବାକ୍ୟ ସବୁର ତାତ୍ପର୍ଯ୍ୟ ହେଉଛି ଯେ ବୁଦ୍ଧଙ୍କର ଅନୁଗାମୀ ମାନେ ସେମାନଙ୍କର ଭକ୍ତିସମ୍ମାନ ବୁଦ୍ଧଙ୍କୁ (ପ୍ରବର୍ତ୍ତକ), ଧର୍ମକୁ (ବୁଦ୍ଧଙ୍କ ବାଣୀକୁ) ଓ ସଂଘକୁ (ପ୍ରତିଷ୍ଠାନକୁ) ଅର୍ପଣ କରି ନିଜକୁ ସମର୍ପଣ କରୁଛନ୍ତି ।

ଏହି ମୌଳିକ ନୀତି ଓ ସିଦ୍ଧାନ୍ତ କେବଳ ଯେ ବୌଦ୍ଧଧର୍ମାବଲମ୍ବୀଙ୍କ ପାଇଁ ପ୍ରଯୁଜ୍ୟ ତାହା ନୁହେଁ, ବରଂ ଯେ କୌଣସି ଧାର୍ମିକ ବା ଅଣଧାର୍ମିକ ସଂଗଠନ ପାଇଁ ମଧ୍ୟ ପ୍ରଯୁଜ୍ୟ। ଯେକୌଣସି ସଂଗଠନର ସଭ୍ୟ ସେହି ସଂଗଠନର ମୁଖ୍ୟ ବା ପ୍ରତିଷ୍ଠାତା, ସଂଗଠନର ଆଦର୍ଶ ଓ ସଂଗଠନର ବ୍ୟବସ୍ଥା ପ୍ରତି ନିଜର ଆନୁଗତ୍ୟ ବା ସମ୍ମାନ ରଖିବା ଆବଶ୍ୟକ। ବିଶେଷକରି ଏକ ଧାର୍ମିକ ସଂଗଠନ ହେଉ ବା ଅନ୍ୟ ସଂଗଠନ ହେଉ ଯେପର୍ଯ୍ୟନ୍ତ ସଂଗଠନର ମୁଖ୍ୟ ତାଙ୍କ ପଦରୁ ଅପସରି ଯାଇନାହାନ୍ତି ସେ ପର୍ଯ୍ୟନ୍ତ ସଂଗଠନର ଅନୁଗାମୀମାନେ ତାଙ୍କୁ ନର୍ଦ୍ଵନ୍ଦ୍ୱରେ ସ୍ୱୀକାର କରିବା ଦରକାର ।

**ବୁଦ୍ଧଂ ଶରଣଂ**

ସଂଗଠନର ପ୍ରାଣ ପ୍ରତିଷ୍ଠାତା ବା ଗୁରୁଙ୍କୁ ସମ୍ମାନର ସହ ସ୍ୱୀକାର କରିବା ଦ୍ୱାରା ତାଙ୍କ ଦ୍ୱାରା ସ୍ଥାପିତ ସଂଗଠନର ଶକ୍ତି ବୃଦ୍ଧି ହୋଇଥାଏ । ସଂଗଠନ ଏହାଦ୍ୱାରା

Digitized by srujanika@gmail.com

ସୁଦୃଢ ହେବା ସହିତ ଏହାର ଧାରାବାହିକ ବିକାଶ ଘଟିଥାଏ । ଏହା ଫଳରେ ଏହାର ଅନୁଗାମୀ ମାନେ ନିଷ୍ଠାପର ଭାବେ ସଂଗଠନରେ ସଂପୃକ୍ତ ହେବା ସହ ଏହା ପ୍ରତି ପ୍ରତିବଦ୍ଧତା ପୋଷଣ କରିପାରନ୍ତି । ଯିଏ ପ୍ରତିଷ୍ଠାତାକୁ ଶ୍ରଦ୍ଧା, ସମ୍ମାନ ଓ ଆନ୍ତରିକତା ପ୍ରଦର୍ଶନ କରନ୍ତି ନାହିଁ, ସେ ଜଣେ ନିଷ୍ଠାପର ଅନୁଗାମୀ ହୋଇପାରିବେ ନାହିଁ । ସେ କେବଳ ନିଜର ସ୍ୱାର୍ଥ ପାଇଁ ସଂଗଠନରେ ସଂପୃକ୍ତ ହୋଇଥାନ୍ତି । ଏହି କାରଣ ଯୋଗୁଁ ପ୍ରତ୍ୟେକ ବୁଦ୍ଧିଷ୍ଟ ବୁଦ୍ଧଙ୍କ ନାମରେ ଶପଥ ବ୍ୟକ୍ତ କରନ୍ତି ଯେ ସେ ଅନ୍ତଃକରଣରେ ବୁଦ୍ଧଙ୍କୁ ହିଁ ସମ୍ମାନ କରନ୍ତି ।

**ଧର୍ମଂ ଶରଣଂ**

ଉପରୋକ୍ତ କାରଣ ପରି ଦ୍ୱିତୀୟ ବିଶ୍ୱାସ ବା ନୀତିଟିର ଅବତାରଣା କରାଯାଇଛି "ଧର୍ମଂ ଶରଣମ୍" । ଏହାର ତାତ୍ପର୍ଯ୍ୟ ହେଉଛି ଗୁରୁ ଯାହା କହିଛନ୍ତି ତାକୁ ସେ ବିନା ଯୁକ୍ତିରେ ଗ୍ରହଣ କରିନେଉଛି ଓ ଗୁରୁଙ୍କ ବାଣୀ ପ୍ରତି ନିଜର ପୂର୍ଣ୍ଣ ସମର୍ଥନ ଜ୍ଞାପନ କରୁଛି । ଯଦି ଗୁରୁଙ୍କର ବା ସଂଗଠନର କୌଣସି ନୀତି ପ୍ରତି ତାଙ୍କର ସନ୍ଦେହ ବା ଅବିଶ୍ୱାସ ସୃଷ୍ଟି ହେଉଛି ତେବେ ସେ ସଂଗଠନରେ ରହିବା ଠିକ୍ ନୁହେଁ । ଗୁରୁଙ୍କର ନୀତି ଓ ଶିକ୍ଷାକୁ ସେ ସଂପୂର୍ଣ୍ଣ ଭାବେ ଗ୍ରହଣ କରୁଛନ୍ତି । ଦ୍ୱିତୀୟ ଶପଥଟିରେ ସେ ତାଙ୍କର ପୂର୍ଣ୍ଣ ସ୍ୱୀକୃତି ବ୍ୟକ୍ତ କରୁଛନ୍ତି ।

**ସଂଘଂ ଶରଣଂ**

ତୃତୀୟ ନୀତି "ସଂଘଂ ଶରଣଂ" କ୍ଷେତ୍ରରେ ମଧ୍ୟ ଅନୁଗାମୀ ସଂଗଠନର ନୀତି, ଆଦର୍ଶ ପାଖରେ ନିଜକୁ ସମର୍ପଣ କରୁଥିବାର ମନୋଭାବ ବ୍ୟକ୍ତ କରୁଛନ୍ତି । ବୁଦ୍ଧିଷ୍ଟମାନେ ବୁଦ୍ଧ, ତାଙ୍କର ଧର୍ମ ସଂପ୍ରଦାୟ ଓ ସଂଗଠନ ପାଖରେ ନିଜକୁ ସମର୍ପଣ କରିବାର ଶପଥ ଘୋଷଣା କରୁଛନ୍ତି । ନିଜକୁ ଏହି ବିଚାର ଓ ଆଦର୍ଶ ପାଖରେ ସମର୍ପଣ ନ କଲେ ଜଣେ ବୌଦ୍ଧଧର୍ମାବଲମ୍ବୀ ହୋଇପାରିବ ନାହିଁ । ମୋର ବିଶ୍ୱାସ ବୌଦ୍ଧଧର୍ମର ଏହି ତିନୋଟି ନିୟମ ଭିତରେ ବୁଦ୍ଧ, ତାଙ୍କର ଶିକ୍ଷା ବା ଉପଦେଶ ଓ ସଂଘ ପ୍ରତି ସର୍ତ୍ତହୀନ ସମର୍ପଣ ପାଇଁ ଏଥିରେ ଗୁରୁତ୍ୱ ଦିଆଯାଇଛି ।



Digitized by srujanika@gmail.com

## ୫. ବୁଦ୍ଧ

ଆମେ କାହିଁକି ବୁଦ୍ଧ ଜୟନ୍ତୀ ପାଳନ କରୁଛେ ? ବୁଦ୍ଧ ଜୟନ୍ତୀ ପାଳନର ଅର୍ଥ ନୁହେଁ ବୁଦ୍ଧଙ୍କର ଏକ ଫଟୋ ବା ମୂର୍ତ୍ତି ରଖି ସେଥିରେ ଧୂପ, ଦୀପ ଜାଳି ନଡିଆ ବାଡେଇ ଭୋଗ କରିବା । ବରଂ ଏହାର ଅର୍ଥ ହେଉଛି ଯେ ଆମେ ବୁଦ୍ଧଙ୍କ ଜୀବନ ଓ ବିଚାରାଦର୍ଶରୁ କିଛି ଶିକ୍ଷାକରି ତାହାକୁ ନିଜ ଜୀବନରେ ପ୍ରୟୋଗ କରିବା । ମୋତେ ଅନ୍ୟମାନେ ନାସ୍ତିକ ବା ନିରୀଶ୍ୱରବାଦୀ କୁହନ୍ତି । ଯଦି ନାସ୍ତିକର ଅର୍ଥ ହୁଏ ବେଦ, ପୁରାଣକୁ ଅସ୍ୱୀକାର କରିବା ତେବେ ମୁଁ ଜଣେ ନାସ୍ତିକ । ଏହି ବର୍ଣ୍ଣନାର ଜଣେ ବ୍ୟକ୍ତି ବୁଦ୍ଧଙ୍କ ଉପରେ କହିବା ମୋତେ ଯଥାର୍ଥ ଓ ଠିକ୍ ଲାଗେ । ଯିଏ ବେଦ, ଶାସ୍ତ୍ର, ପୁରାଣ ଉପରେ ବିଶ୍ୱାସ କରେ ସିଏ ବେଳେବେଳେ ଚତୁରତାର ସହ ଅନ୍ୟକୁ ଏପରି ଆରୋପ ଲଗାଇଥାଏ । ସେ ବେଶ୍ ଚତୁରତାର ସହ ଅନ୍ୟକୁ ବିଭ୍ରାନ୍ତ କରିଥାଏ ଓ ବେଶ୍ କପଟତାର ସହ ବ୍ୟବହାର କରିଥାଏ । ସେ ପୁରାଣ, ଶାସ୍ତ୍ରକାର ଲେଖକମାନଙ୍କୁ ଯେପରି ସମ୍ମାନ କରେ ବୁଦ୍ଧଙ୍କୁ ମଧ୍ୟ ଜଣେ ଋଷି ବା ମହାତ୍ମା ମନେ କରି ସେପରି ସମ୍ମାନ କରେ ।

### ବୁଦ୍ଧ ଋଷି ବା ମହାତ୍ମା ନୁହନ୍ତି-

ବୁଦ୍ଧ ଜଣେ ଋଷି ନୁହନ୍ତି ବା ଜଣେ ମହାତ୍ମା ନୁହନ୍ତି । ସେ ବରଂ ପ୍ରାଚୀନ ଋଷିମାନଙ୍କୁ ବିରୋଧ କରିଛନ୍ତି ଓ ସେଥିପାଇଁ ଆମେ ତାଙ୍କର ଜନ୍ମଦିବସ ପାଳନ କରୁଛେ । ବୁଦ୍ଧ ଯେପରି ଜଣେ ଋଷି ବା ମହାତ୍ମା ନୁହନ୍ତି, ବୌଦ୍ଧଧର୍ମ ବି ଚିରାଚରିତ ଅର୍ଥରେ ଏକ ଧର୍ମ ନୁହେଁ । ଅନେକ ବ୍ୟକ୍ତି ଭୁଲରେ ବୌଦ୍ଧ ଦର୍ଶନକୁ ଏକ ଧର୍ମ ମନେ କରନ୍ତି । ଏକ ଧର୍ମର କେନ୍ଦ୍ରରେ ଈଶ୍ୱର ରହିଥାନ୍ତି । ଧର୍ମରେ ମୋକ୍ଷ, ନରକ, ଆତ୍ମା, ପରମାତ୍ମା, ପାପ, ପୁଣ୍ୟ ଇତ୍ୟାଦି ପ୍ରସଙ୍ଗ ଥାଏ । ଏକ ବିଶିଷ୍ଟ ଧର୍ମରେ ଏକ ଈଶ୍ୱର ଯଥେଷ୍ଟ ନୁହେଁ, ସେଥିରେ ବହୁ ଈଶ୍ୱର ରହିବା ଆବଶ୍ୟକ । ଏହି ଈଶ୍ୱର

Digitized by srujanika@gmail.com

ମାନଙ୍କର ପତ୍ନୀ ରକ୍ଷିତା ଓ ସମସ୍ତ ମାନବୀୟ ସଂପର୍କ ପରି ସଂପର୍କ ରହିବା ଦରକାର। ଭାରତୀୟ ମାନେ ଏହିପରି ଈଶ୍ୱର ଭାବନା ସହିତ ସୁପରିଚିତ।

ବୁଦ୍ଧଙ୍କ ବିଚାରରେ ବିଚାରଶୀଳଦୃଷ୍ଟି ଏକ ମହାନ ଗୁଣ। କହିବାକୁ ଗଲେ ବୁଦ୍ଧଙ୍କ ମତରେ ମଣିଷ ଜୀବନ ସହିତ କୌଣସି ଈଶ୍ୱରଙ୍କୁ ସଂଶ୍ଳିଷ୍ଟ କରିବା ଯଥାର୍ଥ ନୁହେଁ। ତାଙ୍କ ମତରେ ଲୋକମାନେ ମଣିଷର ପରିସ୍ଥିତି ସହ ସଂପୃକ୍ତ ହେବା ଆବଶ୍ୟକ। ସେ କେବେ ମୋକ୍ଷ ବା ନରକ ସଂପର୍କରେ କହିନାହାନ୍ତି। ସେ ମଣିଷର ଚରିତ୍ର ଓ ଆଚରଣ ଉପରେ ହିଁ ପ୍ରାଧାନ୍ୟ ଦେଇଛନ୍ତି। ବିଚାରଶୀଳ ଅନୁଶୀଳନ, ପ୍ରଜ୍ଞା ମଣିଷର ଶେଷ୍ଠ ଗୁଣ ବୋଲି ସେ ବିଶ୍ୱାସ କରିଛନ୍ତି। ଜଣେ ଋଷି ଏହା କହିଛନ୍ତି କିମ୍ବା ଜଣେ ମହାତ୍ମା ଏହା ଲେଖିଛନ୍ତି ତେଣୁ ଏହାକୁ ବିଶ୍ୱାସ କରିବା, ଏକ ଯଥାର୍ଥ ଦୃଷ୍ଟିଭଙ୍ଗୀ ନୁହେଁ। ଜଣେ ବିଚାରଶୀଳ ବ୍ୟକ୍ତି କୌଣସି ମତର ସତ୍ୟାସତ୍ୟ ଓ ବୈଧତାକୁ ବିଶ୍ଳେଷଣ କରି ନିଜ ପାଇଁ ସତ୍ୟ ନିରୂପଣ କରିବା ଦରକାର।

ବୌଦ୍ଧଦର୍ଶନ ଏକ ଧର୍ମ ନୁହେଁ, ସୁତରାଂ ବୁଦ୍ଧଙ୍କ ଜୟନ୍ତୀ ପାଳନରେ ଆମେ ଏଥିପାଇଁ ଆନ୍ତରିକତା ସହ ଏଥିରେ ଯୋଗ ଦେଇଛୁ। ବୁଦ୍ଧଙ୍କର ବିଚାରଶୀଳ ଚିନ୍ତନ ସେଥିପାଇଁ ପ୍ରତିକ୍ରିୟାଶୀଳ ବିରୋଧର ସମ୍ମୁଖୀନ ହୋଇଛି। ବୁଦ୍ଧ ୨୫୦୦ ବର୍ଷ ତଳେ ଭାରତରେ ବଞ୍ଚିଥିଲେ ଯେଉଁ ସମୟରେ ନାନା ଅସଭ୍ୟ ପ୍ରଥା ଭାରତରେ ରହିଥିଲା। ସେ ନିଜ ଯୁଗର ଧାର୍ମିକ କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ। ତାଙ୍କୁ ଯେଉଁପରି ବିରୋଧ କରାଗଲା, ସେଥିରୁ ତାଙ୍କର ମତ କେତେ ପ୍ରଭାବଶାଳୀ ଥିଲା ତାହା ଅନୁମେୟ। ବୁଦ୍ଧ ଯେଉଁ ବିଚାରଶୀଳ ଦୃଷ୍ଟିର ପ୍ରସାର କରିବାକୁ ପ୍ରୟାସ କରିଥିଲେ, ତାହାକୁ ରକ୍ଷଣଶୀଳ ବ୍ୟକ୍ତିମାନେ ବିରୋଧ କରିବା ସହ ନାନା କୁସଂସ୍କାରଗତ ବିଶ୍ୱାସକୁ ପୁଣି ପ୍ରତିଷ୍ଠା କରିବାକୁ ଚେଷ୍ଟା କଲେ। ଯେଉଁ ଅସଭ୍ୟ ପ୍ରଥା ଗୁଡିକୁ ସେ ଲୋପ କରିବାକୁ ଆବେଦନ ସୃଷ୍ଟି କରିଥିଲେ, ତାହା ପୁଣି ତାଙ୍କ ପରେ ପ୍ରବର୍ତ୍ତନ କରିବାକୁ ପ୍ରୟାସ ହେଲା।

Digitized by srujanika@gmail.com

## ବୁଦ୍ଧଙ୍କ ସଂପର୍କରେ ରାମାୟଣରେ ବର୍ଣ୍ଣନା

ରାମାୟଣ ବୌଦ୍ଧବାଦର ନିନ୍ଦା କରିଛି। ବୁଦ୍ଧଙ୍କ ପୂର୍ବରୁ ଯେଉଁ ରାମାୟଣ ଥିଲା ତାହା ଏକ କ୍ଷୁଦ୍ର କାହାଣୀ। ବୁଦ୍ଧଙ୍କ ପରେ ବୁଦ୍ଧଙ୍କ ମତକୁ ବିରୋଧ କରିବାକୁ ରାମାୟଣକୁ ବିସ୍ତୃତ ଭାବରେ ଲେଖାଗଲା। ବୈଷ୍ଣବବାଦୀ ନାଲୟିର ପ୍ରବନ୍ଧମ, ଶୈବବାଦୀ ଥେଭରାମ ଇତ୍ୟାଦି ବୁଦ୍ଧଙ୍କ ବିଚାରକୁ ସମାଲୋଚନା ଓ ବ୍ୟଙ୍ଗ କରିବାରେ ବହୁ ଆଗ୍ରହ ଦେଖାଇଛନ୍ତି। ବୌଦ୍ଧ ଓ ଜୈନମାନଙ୍କୁ ନାସ୍ତିକ, ଚୋର, ହତ୍ୟାକାରୀ ଓ ବୈଦିକ ରୀତିନୀତିର ଶତ୍ରୁ ବୋଲି ଚିତ୍ରଣ କରାଯାଇଛି। ଶିବ ଭକ୍ତ ମାନେ ବୌଦ୍ଧ ରମଣୀମାନଙ୍କୁ ହରଣ କରିବାକୁ ସେମାନଙ୍କୁ ଶକ୍ତି ଦେବାକୁ ଶିବଙ୍କୁ ପ୍ରାର୍ଥନା କରିଛନ୍ତି।

## ନାସ୍ତିକର ଅର୍ଥ

ସାଧାରଣ ଅର୍ଥରେ ବୁଦ୍ଧ ଜଣେ ବ୍ୟକ୍ତିଙ୍କୁ ସୂଚାଇଥାଏ। କିନ୍ତୁ ତାତ୍ପର୍ଯ୍ୟ ଦୃଷ୍ଟିରୁ ଦେଖିଲେ ବୁଦ୍ଧର ଅର୍ଥ ହେଉଛି ବୁଦ୍ଧି। ଯେ ନିଜର ବୁଦ୍ଧି ଓ ବିଚାରଶୀଳ ଦୃଷ୍ଟି ପ୍ରୟୋଗ କରିପାରନ୍ତି ସେ ହେଉଛନ୍ତି ବୁଦ୍ଧ। ସିଦ୍ଧ ମଧ୍ୟ ସେହିପରି ଏକ ଲକ୍ଷଣାର୍ଥକ ଅର୍ଥ ପ୍ରକାଶ କରିଥାଏ। ଯେ ସଂଯମତା ଅବଲମ୍ବନ କରି ଇନ୍ଦ୍ରିୟ ନିୟନ୍ତ୍ରଣ କରିପାରନ୍ତି ସେ ହେଉଛନ୍ତି ସିଦ୍ଧ। ବୈଷ୍ଣବବାଦୀମାନେ ଈଶ୍ୱର ବିଷ୍ଣୁକୁ ସର୍ବଦା ପ୍ରାଧାନ୍ୟ ଦିଅନ୍ତି। ବୌଦ୍ଧମାନେ ବୁଦ୍ଧି ବା ବିଚାରଶୀଳତାକୁ ହିଁ ମୁଖ୍ୟ ସ୍ଥାନ ଦିଅନ୍ତି। ସଂପ୍ରତି ଯେଉଁମାନେ ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରନ୍ତି ନାହିଁ ସେମାନଙ୍କୁ ନାସ୍ତିକ କୁହାଯାଏ। କିନ୍ତୁ ବାସ୍ତବରେ ଯେଉଁମାନେ ନିଜର ବୁଦ୍ଧି ପ୍ରୟୋଗ କରି ବିଚାରଶୀଳ ଭାବରେ ତର୍କଶୀଳ ସିଦ୍ଧାନ୍ତ ବାହାର କରନ୍ତି ସେମାନେ ନାସ୍ତିକ। ଯେଉଁମାନେ ବ୍ରାହ୍ମଣବାଦକୁ ଅସ୍ୱୀକାର କରନ୍ତି ସେମାନେ ହିଁ ନାସ୍ତିକ।

## ଅର୍ଥକୁ କଦର୍ଥ କରିବା

କିଛି ଦିନ ତଳେ ଏରୋଡଠାରେ ବୌଦ୍ଧମାନଙ୍କର ଏକ ସମ୍ମିଳନୀ ହୋଇଥିଲା। ବିଶ୍ୱ ବୌଦ୍ଧ ସଂଘର ମୁଖ୍ୟ ମାଲ୍ଲାଲା ଶେଖର ତାଙ୍କର ଉଦଘାଟନୀ ଅଭିଭାଷଣରେ କହିଲେ ଯେ ବିଶ୍ୱକୋଷ ବ୍ରିଟାନିକା ଅନୁଯାୟୀ ଯେଉଁମାନେ

Digitized by srujanika@gmail.com

ବିଚାରଶୀଳ ଭାବେ ବୁଦ୍ଧି ପ୍ରୟୋଗ କରି ସମସ୍ତ କୁସଂସ୍କାରକୁ ବିରୋଧ କରନ୍ତି ସେମାନେ ହେଉଛନ୍ତି, ବୌଦ୍ଧ। ଆମେ ଆଜି ଏଠାରେ ଯେଉଁମାନେ ସମବେତ ହୋଇଛେ ଏହି କଥାର ତାତ୍ପର୍ଯ୍ୟକୁ ବୁଝିବା ଆବଶ୍ୟକ।

ସଂପ୍ରତି ବିଚାରଶୀଳତାର ପ୍ରୟୋଗ ଉପରେ ଖୁବ୍ କମ୍ ଗୁରୁତ୍ୱ ଦିଆଯାଉଛି। ଏପରିକି ସ୍କୁଲ କଲେଜ ଶିକ୍ଷାନୁଷ୍ଠାନ ମାନଙ୍କରେ ଛାତ୍ରମାନେ ବିଚାରଶୀଳ ହୋଇ ପରଂପରା, ଲୋକବିଶ୍ୱାସ, କୁସଂସ୍କାରକୁ ପ୍ରଶ୍ନ କରିବାର ମାନସିକତା ପିଲାଙ୍କ ଭିତରେ ସୃଷ୍ଟି କରାଯାଉ ନାହିଁ। ଯଦି କେହି ନିଜର ବିଚାରଶୀଳ ବୁଦ୍ଧି ପ୍ରୟୋଗ କରି ତର୍କ କରୁଛି ତାଙ୍କୁ ନାସ୍ତିକ କହି ନ୍ୟୁନ କରାଯାଉଛି ଯାହାର କିଛି ଅର୍ଥ ହିଁ ନାହିଁ। ଜଣେ ହେତୁବାଦୀ ତାଙ୍କ ପ୍ରତି ଏହି ଆରୋପକୁ ଦୂର କରିବାକୁ ଚେଷ୍ଟା କରିଥାନ୍ତି, କାରଣ ନାସ୍ତିକ ଶବ୍ଦଟି ବହୁ କୁଅର୍ଥରେ ବ୍ୟବହୃତ ହୁଏ। ବିଚାରଶୀଳ ହେବାକୁ ନାସ୍ତିକ କହିବା ଅର୍ଥକୁ କଦର୍ଥ କରିବା ସହିତ ସମାନ।

ବୁଦ୍ଧ ଯାହା ପ୍ରଚାର କରିଥିଲେ ତାକୁ ବି ଅନ୍ଧାନୁକରଣ ନ କରିବାକୁ ସେ କହୁଥିଲେ। ତାଙ୍କ କଥାକୁ ବିଚାର କରିବାକୁ, ମୂଲ୍ୟାୟନ କରିବାକୁ ତାହାର ଉପଯୋଗିତାକୁ ତଉଲ କରିବାକୁ ସେ ଆହ୍ୱାନ କରୁଥିଲେ। ଯଦି ତାଙ୍କ କଥାର ମହତ୍ତ୍ୱ ଅଛି ତେବେ ତାହା ଗ୍ରହଣ କରିବାକୁ ସେ ନିବେଦନ କରୁଥିଲେ।

### ଆକାଶକୁ ଖାଲି ଆଖିରେ ଚାହିଁକରି

ବୁଦ୍ଧ ପ୍ରାୟ ୨୫୦୦ ବର୍ଷ ତଳେ ତାଙ୍କର ଭାବନାକୁ ସେ ଯୁଗର ଆବଶ୍ୟକତା ଅନୁଯାୟୀ ବ୍ୟକ୍ତ କରିଥିଲେ। ଲୋକମାନଙ୍କର ବିଚାରଶୀଳତା ପ୍ରଗତିଶୀଳ ଭାବେ ଅଗ୍ରଗତି କରିଚାଲିଛି। ସେତେବେଳେ ସେ ଯାହା କହିଥିଲେ ସେ ସବୁ ପୂର୍ଣ୍ଣ ଭାବେ ଆଜି ସତ୍ୟ ବା ପ୍ରାସଙ୍ଗିକ ନ ହୋଇପାରେ। ବୁଦ୍ଧଙ୍କର ପ୍ରତ୍ୟେକଟି ବାକ୍ୟ ବା ଶବ୍ଦକୁ ଅଲଂଘନୀୟ ବୋଲି ଭାବିବା ଆଉ ଏକ ପ୍ରକାରର ନାସ୍ତିକତା ବୋଲି ମୋର ମନେହୁଏ। ସେତେବେଳେ ଖାଲି ଆଖିରେ ଲୋକମାନେ ଆକାଶକୁ ଚାହୁଁଥିଲେ ଓ ଆଖିରେ ଯାହା ଦେଖୁଥିଲେ ତାହାକୁ ବିଶ୍ୱାସ କରୁଥିଲେ। ସଂପ୍ରତି ଆମେ ଶକ୍ତିଶାଳୀ କ୍ୟାମେରା ବା ଦୂରବିକ୍ଷଣ ଯନ୍ତ୍ର ସାହାଯ୍ୟରେ ଆକାଶକୁ ଦେଖି ତାହାର ବ୍ୟାଖ୍ୟା କରୁଛୁ। ସୂର୍ଯ୍ୟଙ୍କ ପାଖରେ ଥିବା କଳା ଗର୍ତ୍ତକୁ (ବ୍ଲାକ

Digitized by srujanika@gmail.com

ଷ୍ଟଟ) ଦେଖି ଆମେ ତାହାର ବିଶ୍ଳେଷଣ କରିପାରୁଛୁ। ଆମେ ଯଦି ଆମର ଅତୀତର ବିଶ୍ୱାସକୁ କେବଳ ଗ୍ରହଣ କରିବୁ ତାଦ୍ୱାରା ଜ୍ଞାନର ବିକାଶ ବାଧାପ୍ରାପ୍ତ ହେବା ସହ ସଭ୍ୟତା ଆଗକୁ ଯାଇପାରିବ ନାହିଁ।

**ଆର୍ଯ୍ୟବାଦ ଦେଶର ପତନ ଘଟାଇଛି**

ବୌଦ୍ଧ ବିଚାର ପରିପ୍ରେକ୍ଷୀରେ ଜ୍ଞାନର ସର୍ବଦା କ୍ରମବର୍ଦ୍ଧିଷ୍ଣୁ ଅଗ୍ରଗତି ହେଉଥିବ। ଜ୍ଞାନର ବିକାଶ ସହିତ ଆମର ଜୀବନଶୈଳୀରେ ମଧ୍ୟ ପରିବର୍ତ୍ତନ ସମ୍ଭବ। ପରିବର୍ତ୍ତନ ସହିତ ଆମର ଚିନ୍ତା ଓ ଦୃଷ୍ଟିଭଙ୍ଗୀକୁ ଆମେ ସେହିପରି ପରିବର୍ତ୍ତନ କରିବା ଆବଶ୍ୟକ।

ଯେତେବେଳେ ଆର୍ଯ୍ୟବାଦ ଦେଶରେ ନାନା କୁସଂସ୍କାର ଓ ଅସଭ୍ୟ ପ୍ରଥାର ପ୍ରଚଳନ କରୁଥିଲା ସେତେବେଳେ ବୁଦ୍ଧଙ୍କର ଆବିର୍ଭାବ ହୋଇଥିଲା। ସେ ସମୟରେ ଯେଉଁମାନେ ଶାସ୍ତ୍ର, ପୁରାଣ ସବୁ ଲେଖିଥିଲେ ସେମାନେ ବୁଦ୍ଧିମାନ ଥିଲେ। ତେବେ ସେମାନଙ୍କର ବୁଦ୍ଧି ସେମାନଙ୍କର ସାମନ୍ତବାଦୀ ଲକ୍ଷ୍ୟ ପୂରଣ ପାଇଁ ନିୟୋଜିତ ହେଉଥିଲା। ସମାଜର ସବୁ ଲୋକଙ୍କର ହିତ ସାଧନ ପାଇଁ କେବେ ବି ସେମାନେ ନିଜର ସଂପୃକ୍ତି ବ୍ୟକ୍ତ କରି ନଥିଲେ। ସେମାନଙ୍କ ରଚିତ ଶାସ୍ତ୍ର ପୁରାଣରୁ ଏହି ଚିତ୍ର ହିଁ ସ୍ପଷ୍ଟ ହୋଇଥାଏ।

**ଥିରୁଭାଲୁବର ଓ ତାଙ୍କର ସୀମା :**

ଥିରୁଭାଲୁବରଙ୍କ ପ୍ରତି ମୋର ଗଭୀର ସମ୍ମାନ ରହିଛି, କିନ୍ତୁ ତାଙ୍କର ମଧ୍ୟ ସୀମା ରହିଛି। ସେ ଯୁଗରେ ବୁଦ୍ଧିର ଯେତିକି ବିକାଶ ହୋଇଥିଲା ଓ ଯେତିକି ପ୍ରଗତି ହୋଇଥିଲା, ତାରି ଭିତରେ ସେ ଯୁଗର ଶ୍ରେଷ୍ଠ କୃତିଗୁଡିକ ହିଁ ସୀମାବଦ୍ଧ ହୋଇ ରହିଥିଲେ। ସୁତରାଂ ଋଷିମାନେ, ବୁଦ୍ଧ କିମ୍ବା ଥିରୁଭାଲୁବରଙ୍କର ବିଚାର ଯେ ଚିରନ୍ତନ ଓ ଅଲଂଘ୍ୟ ଏହା କହିବା ଠିକ୍ ନୁହେଁ। ତେବେ ସେ ଯୁଗରେ ବୁଦ୍ଧ ଓ ଥିରୁଭାଲୁବର ସାହାସର ସହିତ ଯେଉଁ ବିଚାରଶୀଳ ଦୃଷ୍ଟି ନେଇ ଧର୍ମ, ସମାଜର ବ୍ୟାଖ୍ୟା କରିବାକୁ ଆହ୍ୱାନ ଦେଇଛନ୍ତି ତାହା ବେଶ୍ ବୈପ୍ଳବିକ ମନେହୁଏ। ସେ ସମୟରେ ସମାଜରେ ଯେଉଁ ଭେଦଭାବ ରହିଥିଲା ଓ ମୁଷ୍ଟିମେୟ ପ୍ରଭାବଶାଳୀ

Digitized by srujanika@gmail.com

ଲୋକଙ୍କ ପାଖରେ ସମାଜର ଅଗଣିତ ମଣିଷ ଯେପରି ଦାସତ୍ୱ ସ୍ୱୀକାର କରି ରହିଥିଲେ, ତାହା ବିରୁଦ୍ଧରେ ସେମାନେ ସ୍ୱର ଉତ୍ତୋଳନ କରିଥିଲେ ।

ଆମର ଧର୍ମୋତ୍ସାହୀ ଲୋକମାନେ ପୁରାଣମାନଙ୍କରେ ଲେଖାଥିବା ଅବାନ୍ତର କଥାକୁ ବିଶ୍ୱାସ କରନ୍ତି । ଯେତେବେଳେ ଇତିହାସ ଦ୍ୱାରା ବାସ୍ତବ ଚିତ୍ରଟି ପଦାକୁ ଆସେ ସେତେବେଳେ ସେମାନେ ତୁମ୍ବି ତୋଫାନ କରି ସେ ସବୁକୁ ବିରୋଧ କରନ୍ତି । ସେମାନେ କହନ୍ତି "ଭାରତୀୟ ମାନଙ୍କ ବିଷୟରେ ଗୋରା ଲୋକମାନେ ଯାହା କହିଛନ୍ତି ସେ ସବୁକୁ ବିଶ୍ୱାସ କରନାହିଁ ।" ଏହି ପୁରାଣ ପ୍ରେମୀ ଲୋକମାନେ ନିଜର ବିଚାରଶୀଳ ବୁଦ୍ଧି ବା ବିବେକ ପ୍ରୟୋଗ କରନ୍ତି ନାହିଁ ଓ ଆମର ସାଧାରଣ ଲୋକମାନେ କୌଣସି ବିଷୟରେ ଗଭୀର ଚିନ୍ତା କରନ୍ତି ନାହିଁ । ଧର୍ମ, ଈଶ୍ୱର ନାମରେ ଧର୍ମୋତ୍ସାହୀ ଲୋକମାନେ ଯାହା ବିଶ୍ୱାସ କରନ୍ତି ସେମାନେ ଏଣୁ, ତେଣୁ ଅପ୍ରାସଙ୍ଗିକ ଓ ସଂହତି ବିହୀନ କଥାମାନ କହନ୍ତି । ଏହି କଥାର ସତ୍ୟତା ବା ଐତିହାସିକତା ନେଇ ସେମାନେ କୌଣସି ଚିନ୍ତା ପ୍ରକଟ କରନ୍ତି ନାହିଁ । ଧାର୍ମିକ ବିଶ୍ୱାସ ଗୁଡିକର ବାସ୍ତବତା କେତେ ତାହା ସେମାନେ ପରୀକ୍ଷା କରିବାକୁ ଚାହାନ୍ତି ନାହିଁ । ପରିଣାମତଃ ଧର୍ମ କୁସଂସ୍କାରରେ ରୂପାନ୍ତରିତ ହୋଇଯାଏ ।

**ବୁଦ୍ଧଙ୍କ ପରେ ପୁରାଣର ସୃଷ୍ଟି**

ବ୍ରିଟିଶର ମାନେ ଯେଉଁ ଇତିହାସ ଲେଖିଛନ୍ତି ତାହାକୁ ଅବିଶ୍ୱାସ କରିବାକୁ କହି ଉତ୍ତର ଭାରତରେ ପ୍ରତିଷ୍ଠିତ ଭାରତୀୟ ବିଦ୍ୟା ଭବନ କାଳ୍ପନିକ ପୁରାଣ ଓ ଅଗଣତାନ୍ତ୍ରିକ ଶାସ୍ତ୍ରକୁ ପ୍ରସାର କରୁଛି । ମୁନ୍‌ସି ଏହାର ମୁଖ୍ୟ ଅଛନ୍ତି । ଡ଼ ରାଧାକ୍ରିଷ୍ଣନ ଓ ପୁଂଜିପତି ବିରଳା ଏହାର ବିଶିଷ୍ଟ ସଭ୍ୟ ରହିଛନ୍ତି । "ବୈଦିକ ଯୁଗ" ନାମରେ ସେମାନେ ଏକ ପୁସ୍ତକ ପ୍ରକାଶ କରିଛନ୍ତି ଯେଉଁଥିରେ ମୁନସିଙ୍କର ମୁଖ୍ୟ ଭୂମିକା ରହିଛି । ସେହି ବହିର ମୁଖବନ୍ଧରେ ମଧ୍ୟ କୁହାଯାଇଛି, "ପ୍ରାଚୀନ ସମୟରେ ବହୁ ବର୍ବରତା ରହିଥିଲା । ପୁରାଣ, ଶାସ୍ତ୍ର ଇତିହାସ ନୁହେଁ ଓ ସେମାନେ ସେ ସମୟର ବାସ୍ତବ ଘଟଣାମାନଙ୍କୁ ଲିପିବଦ୍ଧ କରିନାହାନ୍ତି । ପୁରାଣ ମାନ କେବଳ କଳ୍ପନା । 'ବ୍ୟାସ' ର ଅର୍ଥ ଗଳ୍ପ ଲେଖକ ।" ସେଥିରେ ଏକଥା ମଧ୍ୟ କୁହାଯାଇଛି ପୁରାଣର କାହାଣୀମାନ ଲୋକଙ୍କ ମୁଣ୍ଡ ଭିତରେ ଏପରି ପ୍ରବେଶ କରିଛି ଯେ

Digitized by srujanika@gmail.com

ସେମାନେ ସେ ସବୁକୁ ସତ୍ୟ ଭାବୁଛନ୍ତି । ସେମାନେ ସେହି ବିଶ୍ୱାସରୁ ମୁକ୍ତ ହୋଇପାରୁ ନାହାନ୍ତି ଓ ତାହା ହିଁ ଅନେକ ସମସ୍ୟାର କାରଣ ହୋଇ ରହିଛି ।

ପଞ୍ଚସ୍ତରି ଭାଗରୁ ଅଧିକ ପୁରାଣ ମାନ ବୁଦ୍ଧଙ୍କ ପରେ ଲେଖା ଯାଇଥିବା କୁହାଯାଏ । ବୁଦ୍ଧଙ୍କର ବିଚାରଶୀଳ ଦର୍ଶନକୁ ପ୍ରତିହତ କରିବା ପାଇଁ ପୁରାଣର ରଚୟିତା ମାନେ ବିଭିନ୍ନ କାହାଣୀ, ଅବତାର ଇତ୍ୟାଦି କଥା କହି ଲୋକମାନଙ୍କୁ ବ୍ରାହ୍ମଣବାଦ ପ୍ରତି ଆକୃଷ୍ଟ କରିଛନ୍ତି । ଅବତାର ମାନଙ୍କ ମଧ୍ୟରେ କୃଷ୍ଣଙ୍କୁ ମୁଖ୍ୟ କରାଯାଇଛି । କୃଷ୍ଣଙ୍କୁ ନେଇ ଲେଖା ଯାଇଥିବା ପୁରାଣରେ ଅନେକ ଅଶ୍ଳୀଳତା ରହିଛି । ଏସବୁ ବର୍ଣ୍ଣନା ସହିତ ଈଶ୍ୱରତ୍ୱ ଆରୋପ କରାଯାଇ କେତେକ ଚରିତ୍ରକୁ ଅବତାର କରାଯାଇଛି । ଭଗବତ ଗୀତାକୁ ମହାଭାରତରେ ପରେ ସଂଶ୍ଳିଷ୍ଟ କରାଯାଇଛି ।

## "ମୁଁ ଜାତିର ଏକ ପୃଥକ ଅର୍ଥ କରେ"

ଏକ ଅଶ୍ଳୀଳ ପରିବେଶରେ କୃଷ୍ଣଙ୍କୁ ଈଶ୍ୱର କରି ଦିଆଯାଇଛି ଓ ତାଙ୍କୁ ନେଇ ନାନା ଭଜନ, ନାଟକ ଓ ନୃତ୍ୟର ଅବତାରଣା କରାଯାଉଛି । ସିନେମାରେ ବି କ୍ରିଷ୍ଣଲୀଳା ଅଭିନୀତ ହେଉଛି । କୃଷ୍ଣଙ୍କର ସ୍ୱଚ୍ଛନ୍ଦ ସଂଭୋଗ ଦୃଶ୍ୟ ଦେଖି ଭକ୍ତମାନେ ଖୁସିରେ ଗଦ୍‌ଗଦ୍ ହୋଇ ତାଳି ମାରୁଛନ୍ତି, ସେମାନେ ସେହି ଅବତାରଙ୍କୁ ନିଜ ପତ୍ନୀଙ୍କ ସହ ମିଶିବାର ସୁଯୋଗ ଦେବେ କି ? ଯାହା ସେମାନଙ୍କର ବିବେକ ବାରଣ କରୁଛି ତାହାକୁ ସେମାନେ କାହିଁକି ପ୍ରତ୍ୟାଖ୍ୟାନ କରୁନାହାନ୍ତି? ଜଣେ ଅବତାର- ଈଶ୍ୱରଙ୍କର ଏହି ଅଶ୍ଳୀଳତା ଓ କାମୁକତା ନେଇ ପର୍ବ ପାଳିତ ହେବା କେତେ ଦୂର ଯଥାର୍ଥ !

ସଂପ୍ରତି ଜାତିପ୍ରଥାକୁ କେହି ସମର୍ଥନ କରିବେ ନାହିଁ । ତେବେ ରାଜଗୋପାଳଚାରୀ ହେଉଛନ୍ତି ଏକ ବ୍ୟତିକ୍ରମ ଯେ ଜାତି- ବ୍ୟବସ୍ଥା ଚାଲୁ ରହିବା ଚାହାନ୍ତି । ତାଙ୍କୁ ବ୍ୟକ୍ତିଗତ ଭାବରେ ସାକ୍ଷାତ କରି ପ୍ରଶ୍ନ କଲେ ସେ କହନ୍ତି, "ମୁଁ ଜାତି ବ୍ୟବସ୍ଥାର ଏକ ଭିନ୍ନ ଅର୍ଥ ବୁଝେ ।" ବେଦ, ଶାସ୍ତ୍ର, ପୁରାଣ ମାନଙ୍କର ବିନା ସମର୍ଥନରେ ଜାତି ବ୍ୟବସ୍ଥା ରହିପାରିବ କି ? ଏସବୁକୁ ପ୍ରତ୍ୟାଖ୍ୟାନ ନ କଲେ ଜାତି ପ୍ରଥାର କିପରି ପ୍ରତ୍ୟାଖ୍ୟାନ ସମ୍ଭବ? ଶାସ୍ତ୍ରର ଉଦ୍ଦେଶ୍ୟ ହେଉଛି ଅବ୍ରାହ୍ମଣ,

Digitized by srujanika@gmail.com

ଶୂଦ୍ର ଓ ପରିହା (ଅସ୍ପୃଶ୍ୟ) ମାନଙ୍କୁ ନ୍ୟୂନକରି ପୂଜକ ଗୋଷ୍ଠୀର ପ୍ରାଧାନ୍ୟକୁ ପ୍ରତିଷ୍ଠା କରିବା ।

**ବୁଦ୍ଧଙ୍କ ପ୍ରଶଂସା ଓ ଅନେକ ଈଶ୍ୱର**

ବୁଦ୍ଧ ଜୟନ୍ତୀ ପାଳନ କରିବାର କଣ ଆବଶ୍ୟକତା ରହିଛି? ଯଦି ବୁଦ୍ଧଙ୍କୁ ଅଗଣିତ ଦେବ-ଦେବୀ ପରି ନିଆଯିବ, ତେବେ ତାଙ୍କର ଜୟନ୍ତୀ ପାଳନ କରିବାର ଆବଶ୍ୟକତା ରହିବ ନାହିଁ । ଅଲୱାର ଓ ନୟନମାର ମାନେ କରୁଥିବା ପୂଜାଠାରୁ ବୁଦ୍ଧ ଜୟନ୍ତୀ ଏକ ଭିନ୍ନ ଉତ୍ସବ । ବୁଦ୍ଧ ଜୟନ୍ତୀ ବୈଦିକ ପରଂପରା ଆଧାରିତ ପୂଜାଠାରୁ ସଂପୂର୍ଣ୍ଣ ଭିନ୍ନ ଓ ସେସବୁର ବିପରୀତ କହିଲେ ଅତ୍ୟୁକ୍ତି ହେବନାହିଁ । ତେବେ ବ୍ରାହ୍ମଣ ନିୟନ୍ତ୍ରିତ ପ୍ରେସ ବା ଗଣମାଧ୍ୟମ ଏପ୍ରକାର ଏକ ଆଲୋଚନା ଚକ୍ରର ବିବରଣୀ ଠିକ ଭାବରେ ପ୍ରକାଶ କରିବ ନାହିଁ । ସେମାନେ ତ ଏହାକୁ ବିଶେଷ ଗୁରୁତ୍ୱ ବି ଦେବେ ନାହିଁ । ବରଂ କୌଣସି ପୌରାଣିକ ଉତ୍ସବ ବା ପୂଜା ଇତ୍ୟାଦିର ବିବରଣୀ ସମ୍ବାଦପତ୍ରରେ ପୃଷ୍ଠା ପୃଷ୍ଠା ଧରି ପ୍ରକାଶ କରିବେ । ଏହି ପରି ଏକ ସାମାଜିକ ପରିବେଶରେ ଆଇନ ଓ ବିଚାରଶୀଳତାର କିପରି ପ୍ରତିଷ୍ଠା କରାଯିବ ବା ଭେଦଭାବମୂଳକ ଜାତିପ୍ରଥାର ବିଲୋପ କରାଯିବ ତାହା ଚିନ୍ତାର ବିଷୟ ।

ଆମ ଦେଶ ଭଳି ଏତିକି ଦିଅଁ ଦେବତାଙ୍କୁ ପୂଜା କରାଯାଉଥିବା ଏପରି କେଉଁ ଦେଶ ଅଛି କି? ଚରିତ୍ରହୀନ ଅନେକ ଦେବତାଙ୍କୁ ବି ଏଠାରେ ପୂଜା କରାଯାଏ । ଏତେ କଳ୍ପିତ ଦିଅଁ ଦେବତାଙ୍କୁ ପୂଜା କରାଯାଉଥିବା ସାମାଜିକ ପରିବେଶରେ ବୁଦ୍ଧଙ୍କୁ ସମ୍ମାନ କରିବା ବା ପ୍ରଶଂସା କରିବାର କିଛି ଅର୍ଥ ଅଛି କି? ଯେଉଁ ଲୋକମାନେ ଏତେ ଦିଅଁ ଦେବତାର ଭାବନାରୁ ମୁକ୍ତ ହେବେ, ସେମାନେ ବୁଦ୍ଧ ପାଲଟିଯିବେ । ମଣିଷମାନେ ବହୁ ଈଶ୍ୱରଙ୍କୁ କଳ୍ପନା କରିଛନ୍ତି ଓ ସେମାନଙ୍କୁ ମାନବିକ ସ୍ୱଭାବ ଯଥା ସୁଖ ଦୁଃଖର ଅନୁଭବ, ମାନବିକ ଗୁଣ, ଅପରାଧ ମନୋଭାବ ବି ଦେଇଛନ୍ତି । ଯେଉଁମାନଙ୍କ ପାଖରେ ମାନବୀୟ ଦୋଷ, ଦୁର୍ବଳତା, ହସ-କାନ୍ଦ ଇତ୍ୟାଦି ରହିଛି ସେମାନେ କିପରି ଈଶ୍ୱର ହେବେ? ହିନ୍ଦୁମାନଙ୍କର ତ୍ରି-ଶକ୍ତି ବିଷ୍ଣୁ, ଶିବ ଓ ବ୍ରହ୍ମା ଦେବତାମାନଙ୍କ ବିଷୟରେ ନାନା ମନ୍ଦ କାହାଣୀ

Digitized by srujanika@gmail.com

ଯଥା ଯୌନ-ଆବେଗ, ପାଶବିକତା, ହିଂସା, ଅନାଚାର, ହତ୍ୟା ଇତ୍ୟାଦି ବି ସଂଶ୍ଳିଷ୍ଟ କରାଯାଇଛି ।

**ପୂଜକ ଶ୍ରେଣୀର ପାଦ ଧୋଇବା**

ବିଡମ୍ବନାର ବିଷୟ ଯେଉଁମାନେ ପୁରାଣ ବର୍ଣ୍ଣିତ ଦେବ-ଦେବୀଙ୍କୁ ପୂଜା କରୁଛନ୍ତି ସେମାନେ ବି ବୁଦ୍ଧ ଜୟନ୍ତୀ ପାଳନରେ ଯୋଗ ଦେଉଛନ୍ତି ଓ ଏଥିରେ ବି ଆଗ୍ରହ ଦେଖାଉଛନ୍ତି । ସେମାନଙ୍କର ବିଶ୍ୱାସ, ଯେ ଏକ ମନ୍ଦିର ନିର୍ମାଣ କରନ୍ତି ସେ ଜଣେ ଦାନୀ ବ୍ୟକ୍ତି । ସେମାନେ ଭାବନ୍ତି ପଥର ନିର୍ମିତ ଏକ ମୂର୍ତ୍ତି ପାଖରେ ମୁଣ୍ଡ ନଇଁଲେ ବା ଏକ ପୂଜକର ପାଦ ପ୍ରକ୍ଷାଳନଦ୍ୱାରା ଭକ୍ତିଭାବ ଉଦ୍ରେକ ହେବ । ବୁଦ୍ଧଙ୍କ ବିଚାରକୁ ପୌରାଣିକ ଲୋକମାନେ କଦର୍ଥ କରିଛନ୍ତି । ଜଣେ କ୍ରାନ୍ତିକାରୀ ହେତୁବାଦୀଙ୍କ ଚିନ୍ତାକୁ ଏମାନେ କଳୁଷିତ କରି ଆସିଛନ୍ତି ।

**ଜାତିପ୍ରଥା ଧ୍ୱଂସ କରିବାର ସାହସ ନାହିଁ**

ରାମାୟଣ ଓ ମହାଭାରତ ପରି ପୁରାଣମାନଙ୍କୁ ହଜାର ହଜାର ସଂଖ୍ୟାରେ ଛପା ଯାଇ ବିକ୍ରି କରାଯାଉଛି । ଏହାର ଉଦ୍ଦେଶ୍ୟ କଣ ହୋଇପାରେ? ଜାତିପ୍ରଥା, କୁସଂସ୍କାର ଓ ଦାସତ୍ୱ ମନୋଭାବକୁ ବଜାଏ ରଖିବା ଏହାର ଲକ୍ଷ୍ୟ ନୁହେଁ କି? ଯଦି ଗଣତନ୍ତ୍ର ଓ ଏହାର ଅନ୍ତର୍ନିହିତ ଆଦର୍ଶ ଯଥା ସ୍ୱାଧୀନତା, ସମତା ଓ ଭାତୃତ୍ୱଭାବ ଭାରତରେ ଦୃଢ ଭିତ୍ତି ନେବ ତେବେ ଜାତିପ୍ରଥାର ମୂଳୋତ୍ପାଟନ ସମ୍ଭବ ହେବ । ସରକାର ଏହା କରିବାକୁ ଦୃଢ ପରିକର ହେବା ଆବଶ୍ୟକ । ଏବେ ଆମର ସରକାର ଜାତିପ୍ରଥା ଯେ ଏକ ମନ୍ଦ ବ୍ୟବସ୍ଥା ଏହା କହିଲେ ମଧ୍ୟ ଏହାର ବିଲୋପ ପାଇଁ ପଦକ୍ଷେପ ନେଇପାରୁ ନାହିଁ । ବିଚାର ସ୍ତରରେ ଆମେ ସୀମାବଦ୍ଧ ରହିଛେ କିନ୍ତୁ ତାହାକୁ କାର୍ଯ୍ୟକାରୀ କରିବା ପାଇଁ ଆମର ସଂକଳ୍ପ ନାହିଁ ।

ଡ. ରାଧାକ୍ରିଷ୍ଣନ ସାହସର ସହ ଏହା କହିଛନ୍ତି, ଆମେ ରାଜା ଜମିଦାରମାନଙ୍କୁ ଅପସାରଣ କରିପାରିଛେ । ଏହାର ପ୍ରଭାବକୁ ଦୀର୍ଘସ୍ଥାୟୀ କରିବାକୁ ହେଲେ ଆମେ ଜାତିପ୍ରଥାକୁ ବିଲୋପ କରିବା ଆବଶ୍ୟକ, ଏଥିପାଇଁ ଦୃଢ ମନୋଭାବ ଥିବା ବ୍ୟକ୍ତି ଦରକାର । ସରକାର ଜାତିପ୍ରଥାର ବିଲୋପ ଚାହାନ୍ତି, କିନ୍ତୁ ଏଥିପାଇଁ କୌଣସି ଦୃଢ ପଦକ୍ଷେପ ନେଇପାରୁ ନାହାନ୍ତି । ଏକ ଈଶ୍ୱରବିହୀନ ସମାଜ ଆମେ

Digitized by srujanika@gmail.com

ପରିକଳ୍ପନା କରୁ ନାହୁଁ । ଆମେ ଏପ୍ରକାର ଏକ ସମାଜ ଚାହୁଁ ଯାହା ସତ୍ୟ ଓ ବିଚାର ବୁଦ୍ଧିଦ୍ୱାରା ପରିଚାଳିତ ହେବ ।

## ବୁଦ୍ଧ ଓ ଆମର ବୈପ୍ଳବିକ ଲକ୍ଷ୍ୟ

୧୯୫୪ ଜାନୁୟାରୀ ୨୩ ରେ ଏରୋଡ ଠାରେ ବୁଦ୍ଧିଷ୍ଟ ମାନଙ୍କର ଏକ ସମ୍ମିଳନୀ ଆହୂତ କରିଥିଲୁ । ଏହା ଆମେ କାହିଁକି କରିଥିଲୁ ? ଆମକୁ ବୌଦ୍ଧ କରିବା ଏହାର ଉଦ୍ଦେଶ୍ୟ ଥିଲା କି ? ଲୋକମାନ ହିନ୍ଦୁଧର୍ମ ଛାଡି ବୌଦ୍ଧଧର୍ମରେ ଦିକ୍ଷିତ ହେବାକୁ ଆମେ ଆହ୍ୱାନ ଦେଇଥିଲୁ କି ? ନୁହେଁ । ତେବେ କଣ ପାଇଁ ବୁଦ୍ଧଙ୍କ ନାମରେ ଏହି ସମ୍ମିଳନୀ ଆମେ ଡାକିଥିଲୁ? ହିନ୍ଦୁଧର୍ମରେ ଥିବା ଯେଉଁ ସବୁ ବିଶ୍ୱାସ ଲୋକମାନଙ୍କୁ ନ୍ୟୁନ କରି ରଖିଛି ତାହାର ଦୂରୀକରଣ ପାଇଁ ବୁଦ୍ଧଙ୍କ ବିଚାରରେ ଅନେକ ପ୍ରେରଣାଦାୟକ ଉତ୍ସ ରହିଛି । ଏହା ସହିତ ଆମେ ଯେଉଁ ସାମାଜିକ ପରିବର୍ତ୍ତନ ଚାହୁଁଛୁ ସେ ପାଇଁ ବୁଦ୍ଧଙ୍କ ବାଣୀରେ ଅନେକ ଉତ୍ସାହଜନକ ପ୍ରେରଣା ରହିଛି । ବୁଦ୍ଧଙ୍କ ଦର୍ଶନ, ଉପଦେଶ ଓ ସିଦ୍ଧାନ୍ତ ସହିତ ଆମର ଆତ୍ମ ମର୍ଯ୍ୟାଦା ଆନ୍ଦୋଳନ ଓ ହେତୁବାଦୀ କାର୍ଯ୍ୟକ୍ରମର ପୂର୍ଣ୍ଣ ସଂହତି ରହିଛି । ଯେଉଁ ଦେବ-ଦେବୀ ପରଂପରା, ଶାସ୍ତ୍ର, ପୁରାଣ ଆମର ଲୋକମାନଙ୍କୁ ଦାସତ୍ୱର ବେଡି ପିନ୍ଧାଇଛି ଆମେ ତାହାକୁ ପ୍ରତ୍ୟାଖ୍ୟାନ କରିବାକୁ ଚାହୁଁ । ଆମର ଏହି ବୈପ୍ଳବିକ ଓ ସଂସ୍କାରବାଦୀ କାର୍ଯ୍ୟକ୍ରମ ପାଇଁ ବୁଦ୍ଧଙ୍କ ବାଣୀ ଓ ନୀତିର ଯଥେଷ୍ଟ ସହମତି ଥିବା ମନେହୁଏ ।

ସଂପ୍ରତି ଆମେ ପ୍ରସାର କରୁଥିବା କେତେକ ଆଦର୍ଶ ୨୫୦୦ ବର୍ଷ ତଳେ ବୁଦ୍ଧ ଶିକ୍ଷା ଦେଇଥିଲେ । ଆମ ଆଦର୍ଶର ସେ ଥିଲେ ଏକ ବିଶିଷ୍ଟ ଅଧିକାରୀ । ରାମସ୍ୱାମୀ ପରି ଜଣେ ସାଧାରଣ ମଣିଷ ଯେତେବେଳେ ଆତ୍ମ-ମର୍ଯ୍ୟାଦା ଆନ୍ଦୋଳନ ଆରମ୍ଭ କଲା, କେତେକ ଲୋକ ତାହାକୁ ଆଦୌ ଗୁରୁତ୍ୱ ଦେଇନଥିଲେ । ସେମାନଙ୍କର ଧାରଣା ହେଲା ମୋ ପରି ଲୋକଟିଏ କଣ ଗୀତାଠାରୁ ଅଧିକ ମହତ୍ତ୍ୱବାନ । ତେବେ ସେମାନଙ୍କ ପାଇଁ ବୁଦ୍ଧଙ୍କ ବ୍ୟକ୍ତିତ୍ୱ ବେଶ୍ ଗ୍ରହଣଯୋଗ୍ୟ । ପରଂପରାବାଦୀ ମାନଙ୍କ ପାଇଁ ବୁଦ୍ଧଙ୍କ ବାଣୀ ଅନ୍ତତଃ ପ୍ରେରଣାଦାୟକ । ହେତୁବାଦ ଓ ବିଚାରଶୀଳ ଦୃଷ୍ଟି ଅସ୍ୱୀକାର କରିବା ସହଜସାଧ୍ୟ ନୁହେଁ । ହେତୁବାଦ ଓ

Digitized by srujanika@gmail.com

ବିଚାରଶୀଳ ଦୃଷ୍ଟି ବୁଦ୍ଧଙ୍କ ପରି ଅତି ପ୍ରାଚୀନ । ସୁତରାଂ ଆମେ ଯେଉଁ ନୀତି ଓ ଆଦର୍ଶର କଥା କହୁଛୁ ତାହା ଆଜିର ଆଦର୍ଶ ନୁହେଁ ।

**ହିନ୍ଦୁମାନେ ବି ବୁଦ୍ଧଙ୍କୁ ସ୍ୱୀକାର କରନ୍ତି**

ଐତିହାସିକ କାରଣ ଯୋଗୁଁ ହିନ୍ଦୁମାନେ ବୁଦ୍ଧଙ୍କୁ ସ୍ୱୀକାର କରନ୍ତି । ତାଙ୍କୁ କେତେକ ବି ପୂଜା କରନ୍ତି । ତେବେ ବୁଦ୍ଧିଷ୍ଟମାନଙ୍କୁ ଅତୀତରେ ଅତ୍ୟାଚାର ଓ ଉତ୍ପୀଡନ କରାଯିବାର ବହୁ ଐତିହାସିକ ତଥ୍ୟ ରହିଛି । ସେମାନଙ୍କର ମଠ, ମନ୍ଦିର ମାନଙ୍କୁ ପୋଡା ଯାଇଛି ଓ ସେମାନଙ୍କର ଧର୍ମକୁ ବଳ ପୂର୍ବକ ଦମନ କରାଯାଇଛି । କେତେକ ବୌଦ୍ଧମାନଙ୍କୁ ସମୁଦ୍ରରେ ଫିଙ୍ଗା ଯାଇଛି ଓ ସେଥିରେ ସେମାନେ ମୃତ୍ୟୁ ବରଣ କରିଛନ୍ତି । ଏସବୁ ଅତ୍ୟାଚାର ସତ୍ତ୍ୱେ ବୁଦ୍ଧଙ୍କର ଆଦର୍ଶ ହିନ୍ଦୁମାନଙ୍କର ମନରୁ ସଂପୂର୍ଣ୍ଣ ଦୂର କରାଯାଇ ପାରିନାହିଁ ।

**ବ୍ରାହ୍ମଣମାନେ ତାଙ୍କୁ ବିଷ୍ଣୁଙ୍କର ଅବତାର କରିଛନ୍ତି**

ଶେଷରେ ବୁଦ୍ଧଙ୍କୁ ବିଷ୍ଣୁଙ୍କର ଦଶମ ଅବତାର ଭାବେ ନିଆଯାଇ ବୌଦ୍ଧଧର୍ମକୁ ହିନ୍ଦୁଧର୍ମର ଅଙ୍ଗ କରାଯାଇଛି, ଯେପରିକି ଶୈବବାଦୀ ଓ ବୈଷ୍ଣବବାଦୀମାନଙ୍କୁ ମଧ୍ୟ ହିନ୍ଦୁଧର୍ମରେ ସଂପୃକ୍ତ କରାଯାଇଛି । ସେମାନେ ଯାହା କରିଛନ୍ତି ତାହା ଯଥାର୍ଥ କି ଯଥାର୍ଥ ନୁହଁ ତାହା ଏକ ଭିନ୍ନ ପ୍ରଶ୍ନ, କିନ୍ତୁ ବୌଦ୍ଧଧର୍ମ ଭାରତ ମାଟିରୁ ସଂପୂର୍ଣ୍ଣ ବିଲୋପ ହୋଇ ନାହିଁ । ସ୍ୱାଧୀନ ଭାରତର ସରକାର ମଧ୍ୟ ବୁଦ୍ଧଙ୍କୁ ସଂପୂର୍ଣ୍ଣ ଭୁଲି ଯାଇନାହାନ୍ତି । ବ୍ରାହ୍ମଣବାଦୀ ହିନ୍ଦୁଧର୍ମର ଡାହାଣହାତ ଓ ବାମହାତ ହୋଇଥିବା ଶୈବବାଦ ଓ ବୈଷ୍ଣବବାଦକୁ ଏଡାଇ ଯାଇ ବରଂ ବୁଦ୍ଧଙ୍କର ବାଣୀକୁ ସ୍ୱୀକୃତି ଦିଆଯାଇଛି ।

**ଜାତୀୟ ପତାକାରେ ଧର୍ମ ଚକ୍ର**

ଆମର ଜାତୀୟ ପତାକାରେ ବୁଦ୍ଧିଷ୍ଟ ସଙ୍କେତ ଧର୍ମ ଚକ୍ରକୁ ଏକ ସମ୍ମାନ ଜନକ ସ୍ଥାନ ଦିଆଯାଇଛି । ସାରନାଥରେ ଥିବା ଅଶୋକ ସ୍ତମ୍ଭ ଯେଉଁଥିରେ ଚାରଟି ସିଂହର ପ୍ରତୀକ ରହିଛି ତାହାକୁ ଆମ ରାଷ୍ଟ୍ରର ସମସ୍ତ ସରକାରୀ ଦଲିଲରେ ଚିହ୍ନ ଭାବେ ନିଆଯାଇଛି । ଏହି ବୌଦ୍ଧ ସଙ୍କେତ ସମସ୍ତ ସୈନ୍ୟବିଭାଗର କର୍ମଚାରୀଙ୍କ

Digitized by srujanika@gmail.com

କାନ୍ଧରେ, ମନ୍ତ୍ରୀମାନଙ୍କର ସରକାରୀ ଗାଡିର ଅଗ୍ରଭାଗରେ ଓ ନିତି ପ୍ରତିଦିନ ଗାଁଗହଳରେ ବ୍ୟବହୃତ ହେଉଥିବା ପୋଷ୍ଟକାର୍ଡରେ ଚିହ୍ନ ଭାବରେ ବ୍ୟବହୃତ ହେଉଛି। ସ୍ୱାଧୀନତା ପରଠାରୁ ବୁଦ୍ଧଙ୍କର ଜନ୍ମଦିନକୁ ଏକ ଜାତୀୟ ଛୁଟି ଦିବସ ଭାବେ ଘୋଷଣା କରାଯାଉଛି।

## ଆମର ଆନ୍ଦୋଳନକୁ ନ୍ୟୂନ କରାଯାଇପାରିବ କି ?

ଏହାର ତାତ୍ପର୍ଯ୍ୟ କ'ଣ ? ସ୍ୱାଧୀନ ଭାରତର ସରକାର ବୁଦ୍ଧ ଓ ତାଙ୍କର ବାଣୀକୁ ଗ୍ରହଣ କରିଛନ୍ତି। ଭାରତ ସରକାର କୌଣସି ଶୈବ ବା ବୈଷ୍ଣବ ହିନ୍ଦୁ ଚିହ୍ନକୁ ଜାତୀୟ ସ୍ତରରେ ଗ୍ରହଣ କରିନାହାନ୍ତି। କୌଣସି ହିନ୍ଦୁ ଚିହ୍ନ ଜାତୀୟ ସ୍ତରରେ ଗ୍ରହଣଯୋଗ୍ୟ ହୋଇ ନାହିଁ। ଏହା ଜନବାଦୀ ଇତିହାସ କ୍ଷେତ୍ରରେ ଏକ ବୈପ୍ଳବାତ୍ମକ ପରିବର୍ତ୍ତନ ବୋଲି ମୁଁ ମନେ କରେ। ଆମେ ଯେଉଁ ଆତ୍ମ ମର୍ଯ୍ୟାଦା ଆନ୍ଦୋଳନ ବିଷୟରେ ସଚେତନତା ସୃଷ୍ଟି କରୁଛୁ ତାହା ୨୫୦୦ ବର୍ଷ ତଳେ ବୁଦ୍ଧଙ୍କର ବାଣୀ ହିଁ ରହିଥିଲା- ଏହା କହିବା ଦ୍ୱାରା ଲୋକମାନେ ଭାବୁଛନ୍ତି ଯେ ଆମର କାର୍ଯ୍ୟସୂଚୀକୁ ମଧ୍ୟ ସରକାରୀ ସ୍ୱୀକୃତି ରହିଛି। ଫଳରେ ବ୍ରାହ୍ମଣମାନେ, କଂଗ୍ରେସ ଲୋକମାନେ, ପୂଜକମାନେ ଶଙ୍କରାଚାର୍ଯ୍ୟମାନେ ମଠାଧିପତିମାନେ ଆମର ଆନ୍ଦୋଳନକୁ ନ୍ୟୂନ କରିପାରିବେ ନାହିଁ।

## ବ୍ରାହ୍ମଣବାଦୀ ବିଚାର ଦିଗରେ କୁରାଲର କଦର୍ଥ ?

ବ୍ରାହ୍ମଣବାଦରେ ଏକ ସୂକ୍ଷ୍ମ କୌଶଳ ପ୍ରୟୋଗ କରାଯାଏ। ବ୍ରାହ୍ମଣବାଦୀମାନେ କୌଣସି ହେତୁବାଦୀ ଚିନ୍ତକଙ୍କର ବିଚାରକୁ ନିଜକୁ ସୁହାଇଲା ପରି ଅର୍ଥ କରିଥାନ୍ତି। ସେମାନଙ୍କର ଅଗଣତାନ୍ତ୍ରିକ, ସ୍ୱେଚ୍ଛାଚାରୀ ଭାବନା ଦିଗରେ ସେମାନେ ହେତୁବାଦୀ ଓ ମାନବବାଦୀଙ୍କର ଚିନ୍ତାକୁ କଦର୍ଥ କରିଥାନ୍ତି। ସେମାନେ ଏହା ବୁଦ୍ଧଙ୍କ ପାଖରେ କରିଛନ୍ତି। ପରେ ସେମାନେ ଏହାକୁ ଥିରୁଭାଲୁଭରଙ୍କ କ୍ଷେତ୍ରରେ କରିବାକୁ ମଧ୍ୟ ପ୍ରୟାସ କରିଛନ୍ତି। ଆତ୍ମ-ମର୍ଯ୍ୟାଦା ଆନ୍ଦୋଳନ କୁରାଲକୁ ନିଜର ପ୍ରାମାଣିକ ଗ୍ରନ୍ଥ ଭାବରେ ସ୍ୱୀକାର କରିବା ପୂର୍ବରୁ ବ୍ରାହ୍ମଣମାନେ ଓ ସେମାନଙ୍କର ଦାସତ୍ୱ ଗ୍ରହଣ କରିଥିବା ଶୂଦ୍ରମାନେ କୁରାଲର ଉଚ୍ଚ ପ୍ରଶଂସା କରି କୁରାଲକୁ ନିଜ ବିଚାରଧାରାରେ କଦର୍ଥ କରିବାକୁ ପ୍ରୟାସ କରିଛନ୍ତି। ବ୍ରାହ୍ମଣ

Digitized by srujanika@gmail.com

ଭାଷ୍ୟକାର ପାରିମେଲଟାଗର ଅନେକ ବୈଦିକ ବିଶ୍ୱାସ ଆଧାରରେ କୁରାଲକୁ ବ୍ୟାଖ୍ୟା କରିବାକୁ ପ୍ରୟାସ କରିଛନ୍ତି, ଏହାଦ୍ୱାରା ଥିରୁଭାଲୁଭରଙ୍କ ଅସଲ ଉଦ୍ଦେଶ୍ୟକୁ ଘୋଡାଇଛନ୍ତି ଓ ସତ୍ୟକୁ ଲୁଚାଇଛନ୍ତି । ଆମ ଆନ୍ଦୋଳନ ଯେତେବେଳେ କୁରାଲର ଯଥାର୍ଥ ବ୍ୟାଖ୍ୟା ଉପସ୍ଥାପନ କରି ପ୍ରକାଶ କଲା, ଏହି ପ୍ରାଚୀନ ଗ୍ରନ୍ଥର ମୁଖ୍ୟ ଆଦର୍ଶ ପାଠକମାନଙ୍କ ପାଖରେ ଜାଜ୍ୱଲ୍ୟମାନ ହୋଇ ଉଠିଲା । ଏବେ ତ ତାମିଲନାଡୁରେ କୁରାଲ ଆଧାରରେ ବିଭିନ୍ନ ସଂଘ ଓ ଗୋଷ୍ଠୀ ଗଠିତ ହେଲାଣି । ଏପରିକି କୁରାଲରୁ ଅନେକ ଉଦ୍ଧୃତି ବିଦ୍ୟାଳୟ ସ୍ତରର ପାଠ୍ୟ ପୁସ୍ତକରେ ସ୍ଥାନ ପାଇଲାଣି । ଫଳରେ ଜାତି ଓ କୁସଂସ୍କାର ଜନିତ ଆର୍ଯ୍ୟ ଗ୍ରନ୍ଥ ଯଥା, ରାମାୟଣ ଓ ମହାଭାରତର ତାମିଲ ଅନୁବାଦମାନ ଶିକ୍ଷାନୁଷ୍ଠାନରେ କମରୁ କମ୍ ପଡାଯାଉଛି । କୁରାଲର ପ୍ରଭାବ ଯେତେ ଅଧିକ ବଢୁଛି, କୁସଂସ୍କାର ଆଧାରିତ ଲେଖାର ପ୍ରାଧାନ୍ୟ ସେତେ କମିଯିବାରେ ଲାଗିଛି ।

ଆମେ ଠିକ୍ ସେହିପରି ବୌଦ୍ଧ-ଦର୍ଶନର ଓ ବୌଦ୍ଧଧର୍ମର ସଠିକ୍ ବ୍ୟାଖ୍ୟା ପାଇଁ ପ୍ରୟାସ କରୁଛୁ । ସତ୍ୟ ଯେତିକି ପ୍ରକଟିତ ହେଉଛି, ପରଂପରାବାଦୀ, ରକ୍ଷଣଶୀଳ ବ୍ୟକ୍ତିଙ୍କର ସ୍ୱରୂପ ସେତିକି ପଦାକୁ ଆସୁଛି । ରକ୍ଷଣଶୀଳ ହିନ୍ଦୁମାନେ ଏଥିରେ କ୍ଷୁବ୍ଧ ହେଉଛନ୍ତି, କିନ୍ତୁ ଆମେ ଆମ ଲକ୍ଷ୍ୟ ଦିଗରେ ଅବିଚଳିତ ରହି କାର୍ଯ୍ୟ କରୁଛୁ ।

## ଋଷିମାନଙ୍କର ଶିକ୍ଷାରେ ପ୍ରଜ୍ଞା ନାହିଁ

ବୁଦ୍ଧ ପ୍ରଥମରେ ପ୍ରଜ୍ଞାକୁ ମହତ୍ତ୍ୱ ଦେଇଛନ୍ତି । ପ୍ରାଚୀନ ଲେଖାରେ କିଛି ମହାନ ସତ୍ୟ ଥିବା ସେ ଅସ୍ୱୀକାର କରିଛନ୍ତି । ଲୋକମାନେ ସତ୍ୟ ଅନ୍ୱେଷଣ କରିବାକୁ ବୁଦ୍ଧ ଆହ୍ୱାନ ଦେଇଛନ୍ତି । ଈଶ୍ୱର ବା ଅତିପ୍ରାକୃତିକ ସତ୍ତା ଉପରେ କୌଣସି ମତ ଦେବାକୁ ସେ ଅସ୍ୱୀକାର କରି ଆତ୍ମାକୁ ମଧ୍ୟ ସେ ଏହାର ପ୍ରଚଳିତ ଭାବନାରୁ ବିଚ୍ୟୁତ କରିଛନ୍ତି । କାରଣ ଆତ୍ମା ଭାବନା ପରମାତ୍ମା ପ୍ରତୀତି ସହ ସଂପୃକ୍ତ ଓ ଆତ୍ମାକୁ ସ୍ୱୀକାର କରିବା ଅର୍ଥ ପରୋକ୍ଷରେ ପରମାତ୍ମାକୁ ବି ସ୍ୱୀକାର କରିବା । ଈଶ୍ୱରଙ୍କ ପ୍ରତିବିମ୍ବ ଆତ୍ମା ପାପ, ପୁଣ୍ୟର ସାଧନ ହୋଇପାରିବ ନାହିଁ କାରଣ ଈଶ୍ୱର ଅର୍ଥ ଯିଏ ମହାନ ଓ ସର୍ବଜ୍ଞ । ଏହି ପୃଷ୍ଠଭୂମିରେ ଆତ୍ମା ଭାବନାକୁ

Digitized by srujanika@gmail.com

ଏହାର ଚିରାଚରିତ ବିଶ୍ୱାସରେ ଅର୍ଥାତ୍ ଆତ୍ମା-ପରମାତ୍ମା ସଂପର୍କ ପୃଷ୍ଠଭୂମିରେ ବୁଦ୍ଧ ଗମ୍ଭୀର ସମାଲୋଚନା କରିଛନ୍ତି ।

ପ୍ରତିମା ପୂଜା, ଈଶ୍ୱରଙ୍କୁ ଏକ ବ୍ୟକ୍ତିସତ୍ତା ନେଇ ତାଙ୍କର ପୂଜା ଆରାଧନା, ନାନା କର୍ମକାଣ୍ଡ, ସକଳ ଅହେତୁକ ବିଶ୍ୱାସ ଓ କୁସଂସ୍କାରକୁ ବୁଦ୍ଧ ପ୍ରତ୍ୟାଖ୍ୟାନ କରିଛନ୍ତି । ଯେଉଁ ସବୁ ଭାବନାକୁ ଆର୍ଯ୍ୟମାନେ ଦିବ୍ୟ ଓ ପବିତ୍ର ମନେ କରିଛନ୍ତି ବୁଦ୍ଧ ସେ ସବୁ ଉପରେ ଯୁକ୍ତିଶୀଳ ପ୍ରହାର କରିଛନ୍ତି ।

**ଈଶ୍ୱରମାନଙ୍କ ହାତରେ ମାରଣାସ୍ତ୍ର**

ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ମତରେ ଏବର ବହୁ ହିନ୍ଦୁ ମନ୍ଦିର ହେଉଛି ଅତୀତର ବୌଦ୍ଧ ବିହାର । ଏପରିକି ଶ୍ରୀରଙ୍ଗମ୍, କାଞ୍ଚିପୁରମ୍, ପାଲାତ, ତିରୁପତି ମନ୍ଦିର ମାନ ମୁଖ୍ୟତଃ ବୌଦ୍ଧ ମନ୍ଦିର ଥିଲା । କରୁଣା, ପ୍ରେମ ଓ ଦୟାର ବାର୍ତ୍ତା ଦେଉଥିବା ବୌଦ୍ଧ ମନ୍ଦିରର ଶାନ୍ତ ଓ ସୌମ୍ୟ ବୁଦ୍ଧ ମୂର୍ତ୍ତିକୁ ଯୁଦ୍ଧରେ ସଂପୃକ୍ତ ଓ ମାରଣାସ୍ତ୍ର ଧରିଥିବା ଦେବଦେବୀରେ ରୂପାନ୍ତରିତ କରାଯାଇଛି । ମାରଣାସ୍ତ୍ର ଧରି ନଥିବା କୌଣସି ହିନ୍ଦୁ ଦେବ-ଦେବୀଙ୍କର ମୂର୍ତ୍ତି ପାଇବା ସମ୍ଭବ ନୁହେଁ, ଏହାର ଅର୍ଥ ଏହି ଦେବ-ଦେବୀମାନେ ଗୌରବର ସହ ହତ୍ୟା କରି ଆସୁଛନ୍ତି । ଶୈବବାଦୀ ଓ ବୈଷ୍ଣବବାଦୀମାନେ ଈଶ୍ୱରଙ୍କୁ ପ୍ରେମମୟ ବୋଲି ପ୍ରଚାର କରିଥାନ୍ତି । ଏହା ଛଳନା ପରି ମନେହୁଏ । ସେମାନଙ୍କ ଠାକୁରଙ୍କର ହାତରେ ଥିବା ମାରଣାସ୍ତ୍ରରୁ ସେମାନଙ୍କ କଥା ଅସତ୍ୟ ପ୍ରମାଣିତ ହୁଏ । ପ୍ରେମ ଓ ହିଂସା ଭିତରେ କଣ ସଂପର୍କ ରହିଛି ? ବିଡମ୍ବନାର ବିଷୟ ଯୁଦ୍ଧଖୋର ଓ ମାରଣାସ୍ତ୍ର ଧରିଥିବା ଦେବ-ଦେବୀଙ୍କୁ ପୂଜା କରୁଥିବା ହିନ୍ଦୁମାନେ ଭୀରୁତାକୁ ରାଷ୍ଟ୍ରୀୟ ଜୀବନରେ ପ୍ରତିଫଳିତ କରି ଆସିଛନ୍ତି ।



Digitized by srujanika@gmail.com

# ୬. ବିବାହ ସଂପର୍କରେ

ମଣିଷମାନେ କାହିଁକି ବିବାହ କରନ୍ତି? କୁହାଯାଏ ଯେ ସନ୍ତାନ ଜନ୍ମ କରିବା ପାଇଁ ବିବାହ ଉଦ୍ଦିଷ୍ଟ। ସନ୍ତାନ ଜନ୍ମ କରି ବଂଶ ବିସ୍ତାର କରିବା ସମସ୍ତ ପ୍ରାଣୀମାନଙ୍କ ପାଖରେ ଦେଖାଯାଏ। ଏହା ମଣିଷର ବୈଶିଷ୍ଟ୍ୟ ନୁହେଁ। ନିଜର ପ୍ରବୃତ୍ତି ସାଧନ ନା ସନ୍ତାନ ଜନ୍ମ - କେଉଁ ପ୍ରଶ୍ନଟି ଆଗେ ଆସେ? ଏହି ପ୍ରଶ୍ନଟି ସେପରି ଯେପରି କୁକୁଡା ଆଗ ନା ଅଣ୍ଡା ଆଗ ? ଏସବୁ ପ୍ରଶ୍ନର ଉତ୍ତର ମଣିଷ ଅବବୋଧ ବାହାରେ ଓ ଏହାର ସଠିକ ଉତ୍ତର ଦେବା ସମ୍ଭବ ନୁହେଁ।

**ନାରୀଙ୍କୁ ସ୍ୱାଧୀନତା ମନା**

ଏକ ପତ୍ନୀ ବିବାହ ମଣିଷର ପ୍ରାକୃତିକ ପ୍ରବୃତ୍ତି କି ? ଇତର ପ୍ରାଣୀ ମାନଙ୍କ ପାଖରେ ଏହା ଦେଖାଯାଏ ନାହିଁ। ପଶୁମାନେ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ସାଥିମାନଙ୍କ ସହିତ ସଂଯୋଜିତ ହୁଅନ୍ତି। କେତେକ ପକ୍ଷୀ ଯଥା କପୋତ, ଶୁଆ ମାନେ ଗୋଟିଏ ସାଥି ସହ ସଂପର୍କିତ ହେବା କୁହାଯାଏ। ଏହି ଦୃଷ୍ଟିରୁ ଦେଖିଲେ ମଣିଷ କେଉଁ ଶ୍ରେଣୀରେ ଅନ୍ତର୍ଭୁକ୍ତ? ମଣିଷ ସମାଜରେ ଏ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ନୀତି ରହିଛି କି ? ସମାଜରେ ପୁରୁଷ କେତେକ ମହିଳାଙ୍କ ସହ ଶାରୀରିକ ସଂପର୍କ ରଖିବା ଦେଖାଯାଏ, କିନ୍ତୁ ଏହି ସ୍ୱାଧୀନତା ନାରୀମାନଙ୍କୁ ଦିଆଯାଏ ନାହିଁ।

**ବିବାହର ସୃଷ୍ଟି**

ଆରମ୍ଭରେ ମଣିଷମାନେ ପଶୁମାନଙ୍କ ପରି ନିଜ ନିଜ ଭିତରେ ସଂଭୋଗ କରି ବଞ୍ଚିବା ଅନୁମାନ କରାଯାଏ। ଯେତେବେଳେ ମଣିଷ କିଛି ସଂପତ୍ତି ଠୁଳ କରି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବାସ କରିବାକୁ ଲାଗିଲା, ସେତେବେଳେ ସ୍ୱାମୀ-ସ୍ତ୍ରୀ ହୋଇ ରହିବାର ଭାବନା ସୃଷ୍ଟି ହେଲା। ବ୍ୟକ୍ତିଗତ ସଂପତ୍ତିର ମାଲିକାନା ଯୋଗୁଁ ପୃଥକ ଓ ବ୍ୟକ୍ତିବାଦର ଭାବନା ଆସିଲା। ମଣିଷ ଯେଉଁ ସଂପତ୍ତି ଅର୍ଜନ କଲା ସେ ତାକୁ ମୃତ୍ୟୁ ପର୍ଯ୍ୟନ୍ତ ନିଜେ ଭୋଗ କରିବା ଓ ତାର ମୃତ୍ୟୁ ପରେ ଅନ୍ୟ କେହିଭୋଗ

Digitized by srujanika@gmail.com

କରିବାର ଚିନ୍ତା କଲା । ତେବେ ସେହି ଅନ୍ୟଟି କିଏ ? ସେହି ଅନ୍ୟ ଟି ତା ସହ ଘନିଷ୍ଠ ଭାବେ ସଂପୃକ୍ତ ଥିବା ବ୍ୟକ୍ତି ଯେ କେବଳ ଭୋଗ କରିପାରିବ । ଏହି ବ୍ୟକ୍ତିଟି କେବଳ ତାର ଅବିବାଦୀୟ ସନ୍ତାନ ହେବା ଆବଶ୍ୟକ । ଏହିଥିରୁ ସ୍ୱାମୀ-ସ୍ତ୍ରୀ ଭାବନା ଆସିଲା ଓ କାଳକ୍ରମେ ବିବାହ ଏକ ସାମାଜିକ ଅନୁଷ୍ଠାନରେ ପରିଣତ ହେଲା ।

ମଣିଷର ସଂପତ୍ତି ଉପରେ ଆଧିପତ୍ୟରୁ ବିବାହ, ପତ୍ନୀଙ୍କର ସ୍ୱାମୀଙ୍କ ପ୍ରତି ଆନୁଗତ୍ୟ ବା ପବିତ୍ରତା ଭାବନା ଆସିଲା । କାରଣ ପତ୍ନୀ ଯାହାଙ୍କୁ ବିବାହ କରିଛନ୍ତି ତାଙ୍କ ଔରସରୁ ହିଁ କେବଳ ସନ୍ତାନ ଧାରଣ କରିପାରିବେ । ସ୍ୱାମୀ ଅନ୍ୟ ସହିତ ସଂପର୍କ ରଖିଲେ ବି ତାଙ୍କ ପତ୍ନୀଙ୍କର ସନ୍ତାନମାନେ ହିଁ କେବଳ ତାଙ୍କ ସଂପତ୍ତିର ଅଧିକାରୀ ହେବେ । ଯଦି ନାରୀମାନେ ସଂପତ୍ତିର ଅଧିକାରୀ ହେବାର ବ୍ୟବସ୍ଥା ସମାଜରେ ପ୍ରଥମରୁ ପ୍ରଚଳିତ ହୋଇଥାନ୍ତା ଓ ତାଙ୍କ ଦ୍ୱାରା ଜନ୍ମିତ ସନ୍ତାନ ମାନେ ସଂପତ୍ତିର ଉତ୍ତରାଧିକାରୀ ହେଉଥାନ୍ତେ ତେବେ ସାମାଜିକ ବ୍ୟବସ୍ଥା ଭିନ୍ନ ହୋଇଥାନ୍ତା ।

**ଧର୍ମ ସହ ସମ୍ବନ୍ଧ**

ମଣିଷ ତାର ପରିବେଶକୁ ଆଶାତୀତ ଭାବେ ପରିବର୍ତ୍ତନ କରିପାରିଛି । ସଂପ୍ରତି ରେଲୱେ, ଟେଲିଫୋନ, ସିନେମା, ରେଡିଓ, ଟେଲିଭିଜନ, ଉଡାଜାହାଜ ଇତ୍ୟାଦି ବୈଜ୍ଞାନିକ ସାଧନମାନ ବଞ୍ଚିବାର ମାନରେ ବହୁ ପରିବର୍ତ୍ତନ ଆଣିପାରିଛି ଓ ଏହାଦ୍ୱାରା ସାରା ବିଶ୍ୱରେ ମଣିଷ ମଣିଷ ଭିତରେ ସଂପର୍କ ବଦଳିବାରେ ଲାଗିଛି । ପାଶ୍ଚାତ୍ୟ ଦେଶରେ ଉଦ୍‌ଭାବିତ ଏହି ସବୁ ସାମଗ୍ରୀ ଆମେ ବି ବ୍ୟବହାର କରିବାର ସୁଯୋଗ ପାଇପାରୁଛେ । ଏସବୁ ଆମ ଜୀବନକୁ ସୁଖପ୍ରଦ କରିବାରେ ସହାୟକ ହୋଇଛି । ତେବେ ବିବାହ ସଂପର୍କ ସହିତ ସଂଶ୍ଳିଷ୍ଟ ପ୍ରଥା ବା ଅଭ୍ୟାସରେ ବିଶେଷ ପରିବର୍ତ୍ତନ ହୋଇ ନାହିଁ । ଏହାର କାରଣ ହେଉଛି ବିବାହ ଅନେକାଂଶରେ ଧର୍ମ ସହିତ ସଂଶ୍ଳିଷ୍ଟ ହୋଇ ରହିଛି ଓ ଧର୍ମଦ୍ୱାରା ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ବି ସର୍ବଦା ଉପକୃତ ହୋଇ ଆସିଛନ୍ତି । ଫଳରେ ସେମାନେ ସେହି ରୀତି ନୀତିକୁ ଜାବୁଡି ଧରି ରଖିଛନ୍ତି ଓ ସେଥିରେ କୌଣସି ପରିବର୍ତ୍ତନ ଚାହାନ୍ତି ନାହିଁ । ରୀତି ନୀତି ଓ ପରଂପରା

Digitized by srujanika@gmail.com

ଯେତେ ଅର୍ଥଶୂନ୍ୟ ଓ ଅଦରକାରୀ ହେଲେ ମଧ୍ୟ ତାହାକୁ ପରିବର୍ତ୍ତନ କରିବା ଏତେ ସହଜସାଧ୍ୟ ନୁହେଁ।

ହିନ୍ଦୁ ବିବାହ ଜାତିଭିତ୍ତିକ, ଯେଉଁଥିରେ ଜାତିଗତ ପାର୍ଥକ୍ୟ ଓ ସାମାଜିକ ଭେଦଭାବ ପ୍ରତିଫଳିତ ହୋଇଥାଏ। ବିବାହରେ ପୂଜକକୁ ଡକାଯାଏ ଯେ ଏକ ଉଚ୍ଚ ଜାତିର ବ୍ୟକ୍ତି। ପଇତା ପିନ୍ଧା ପୂଜକ ବି ବିବାହ ପକ୍ଷ ସହିତ ବସି ଭୋଜନ କରେ ନାହିଁ। ବିବାହ ପକ୍ଷ ନିଜର ଆତ୍ମସମ୍ମାନ ବିନିମୟରେ ପୂଜକ ଗୋଷ୍ଠୀକୁ ଡାକିଥାଏ। ଏପରିକି ଶିକ୍ଷିତ ଓ ଧନୀ ବ୍ୟକ୍ତି ମଧ୍ୟ ସେମାନଙ୍କୁ ଏଡାଇ ଯାନ୍ତି ନାହିଁ କିମ୍ବା ନିଜ ଆତ୍ମ ସମ୍ମାନ ବିଷୟରେ ସଚେତନ ହୁଅନ୍ତି ନାହିଁ। ବିବାହ ହଲରେ ନାନା ପ୍ରକାର କର୍ମକାଣ୍ଡ ହୁଏ। ଏଗୁଡିକର କ'ଣ ଆବଶ୍ୟକତା ଅଛି ବା ଏହାର କିଛି ଅର୍ଥ ରହିଛି କି ବୋଲି କେହି ପ୍ରଶ୍ନ ଉଠାନ୍ତି ନାହିଁ। ତେବେ ଆମର ଆତ୍ମ ସମ୍ମାନ ଆନ୍ଦୋଳନର ପ୍ରଚାର ଫଳରେ କେତେକ ବିବାହ ବିନା ପୂଜକରେ ସରଳ ଭାବେ କରାଯାଉଛି। ତେବେ ଏ ପ୍ରକାର ସଂସ୍କାରବାଦୀ ବିବାହର ସଂଖ୍ୟା ବହୁତ କମ, ଏହି ଧାରା ଏବେ ଆରମ୍ଭ ହୋଇଛି।

### ପତି ସ୍ୱାମୀ ବା ଈଶ୍ୱର ନୁହନ୍ତି

ଏବେ ନାରୀମାନେ ନିଜର ସ୍ୱାଧୀନତା ନେଇ ସଚେତନ ହେବାରେ ଲାଗିଛନ୍ତି ଓ ଜାତି ବ୍ୟବସ୍ଥା ଧୀରେ ଧୀରେ ନଷ୍ଟ ହୋଇଆସୁଛି। ଆତ୍ମ ସମ୍ମାନ ବିବାହ ଦ୍ୱାରା ପତି-ପତ୍ନୀ ପରସ୍ପରକୁ ସମଦୃଷ୍ଟିରେ ଦେଖିବେ। ଏହି ବିବାହରେ କନ୍ୟା ତାଙ୍କର ଭାବି ପତିଙ୍କୁ ତାଙ୍କର ସ୍ୱାମୀ ବା ପ୍ରଭୁ ବୋଲି ଭାବିବେ ନାହିଁ ଓ ନିଜକୁ କେବେ ହେଲେ ଦାସୀ ବୋଲି ମନେ କରିବେ ନାହିଁ। ସେ ସର୍ବଦା ସ୍ୱାମୀଙ୍କର ଦାସୀ ହୋଇ ତାଙ୍କର ସବୁ କିଛି ମାନିନେବେ ନାହିଁ। ଆତ୍ମ ସମ୍ମାନ ବିବାହରେ ପତି-ପତ୍ନୀ ପରସ୍ପରର ବନ୍ଧୁ ଭାବେ ପରସ୍ପର ସହ ସହଯୋଗୀ ହୋଇ ପରିବାର ଗଠନ କରିବେ।

### ମଙ୍ଗଲ୍ୟସୂତ୍ର ଦାସତ୍ୱର ପ୍ରତୀକ

ବିବାହରେ କଣ ମଙ୍ଗଲ୍ୟସୂତ୍ର ଆବଶ୍ୟକ? ଏହାର କଣ ଉପଯୋଗିତା ରହିଛି ? କୁହାଯାଏ ଜଣେ ବିବାହିତ ମହିଳାଙ୍କର ଏହା ଅନ୍ୟ ସନ୍ତକ ଭଳି ଏକ

Digitized by srujanika@gmail.com

ସନ୍ତକ। ଏହା ଜଣେ ବିବାହିତ ମହିଳାଙ୍କୁ ଅବିବାହିତ ମହିଳାଙ୍କ ଠାରୁ ପୃଥକ କରିପାରେ ଓ ଏହା ସୌଖିନପ୍ରିୟ ରସିକ ଯୁବକଙ୍କ ଠାରୁ ମହିଳାମାନଙ୍କୁ ହରକତ କରିବା ଠାରୁ ରକ୍ଷାକରେ। ତେବେ ଜଣେ ବିବାହିତ ପୁରୁଷ ପାଇଁ ସେପରି କିଛି ଚିହ୍ନ ପିନ୍ଧିବା ଆବଶ୍ୟକ ହୁଏ କି ? ଯଦି ପୁରୁଷଙ୍କ ପାଖରେ ଆବଶ୍ୟକ ପଡେ ନାହିଁ, ତେବେ ମହିଳାଙ୍କ ପାଖରେ ଏହା ବ୍ୟବହାର କରିବା ହେତୁ ନାରୀ-ପୁରୁଷ ମାନଙ୍କ ପାଖରେ ଦୁଇଟି ପୃଥକ ବିଧି ପ୍ରୟୋଗ ହେଉ ନାହିଁ କି? ପୁନଶ୍ଚ ମୁକ୍ତ ପ୍ରେମ ବିବାହ ଯେହେତୁ ଭାରତରେ ପ୍ରଚଳିତ ହେଉ ନାହିଁ ଓ ବିବାହ ଗୁଡିକ ବାପା ମା ଆୟୋଜନ କରୁଛନ୍ତି, ସେ କ୍ଷେତ୍ରରେ ବିବାହିତ ମହିଳାଙ୍କୁ ଏପରି ଚିହ୍ନାଇବାର କିଛି ଆବଶ୍ୟକତା ନାହିଁ। ଅବଶ୍ୟ କେତେକ ଗାଆଁ ଗହଳରେ ବିବାହିତ ପୁରୁଷମାନେ ବାମ ହାତର ମଝି ଆଙ୍ଗୁଠିରେ ଏକ ରୂପା ମୁଦି ପିନ୍ଧିବାର ପରଂପରା ରହିଛି, ତେବେ ବିବାହିତ ପୁରୁଷମାନେ ସେ ସ୍ଥାନରେ ମଧ୍ୟ ବିବାହ ଜନିତ ଚିହ୍ନ ମୁଦି ନ ପିନ୍ଧିବାର ସାହସ ଦେଖାଇଛନ୍ତି, କିନ୍ତୁ ବିବାହିତ ମହିଳାମାନେ ମଙ୍ଗଳସୂତ୍ର ପରିତ୍ୟାଗ କରିବାର ସାହସ ଦେଖାଇ ନାହାନ୍ତି। ବସ୍ତୁତଃ ଆତ୍ମମର୍ଯ୍ୟାଦା ବ୍ୟକ୍ତିମାନେ ମଙ୍ଗଳସୂତ୍ରକୁ ଏକ ଦାସତ୍ୱର ପ୍ରତୀକ ଭାବେ ଗ୍ରହଣ କରନ୍ତି। ପତ୍ନୀମାନେ ପତିମାନଙ୍କର ଦାସ ନ ହୋଇ ଏକ ସହଭାଗିତାର ବନ୍ଧୁତ୍ୱପୂର୍ଣ୍ଣ ଜୀବନ ବଞ୍ଚିପାରିବେ। ଏଣୁ ଆତ୍ମମର୍ଯ୍ୟାଦା ଆନ୍ଦୋଳନ ମଙ୍ଗଳସୂତ୍ରକୁ ପରିହାର କରିବା ପାଇଁ ନାରୀମାନଙ୍କୁ ନିବେଦନ କରିଥାଏ।

**ପଣ୍ଡିତମାନଙ୍କର ବ୍ୟାଖ୍ୟା**

ଆମର ପଣ୍ଡିତମାନେ ମଙ୍ଗଳସୂତ୍ର ଭାବନା ବହୁ ପ୍ରାଚୀନ କାଳରୁ ଚଳି ଆସୁଥିବା କୁହନ୍ତି। ସେମାନଙ୍କ ମତରେ ଅତୀତରେ ଯେଉଁ ସାହସିକ ଓ ବୀର ଯୁବକମାନେ ବାଘମାରି ପାରୁଥିଲେ ସେମାନେ ତାଙ୍କ ଦୁଃସାହସିକ କାର୍ଯ୍ୟର ସନ୍ତକ ସ୍ୱରୂପ ବାଘର ନଖ ବା ଦାନ୍ତ ଆଣି ସେମାନଙ୍କ ପତ୍ନୀମାନଙ୍କ ବେକରେ ପିନ୍ଧାଉଥିଲେ। ଯଦି ଏହି ପରୀକ୍ଷା ଆଧୁନିକ ଯୁଗରେ ଯୁବକମାନଙ୍କ ମଧ୍ୟରେ କରାଯିବ, ତେବେ ହୁଏତ ଏକ ଲକ୍ଷରେ ଜଣେ ଯୁବକ ଏଥିରେ ଉତ୍ତୀର୍ଣ୍ଣ ହେବେ କି ନାହିଁ ସନ୍ଦେହଜନକ ହେବ। ସେହି ପଣ୍ଡିତମାନଙ୍କ ମତରେ ପରବର୍ତ୍ତୀ ସମୟରେ

Digitized by srujanika@gmail.com

ବାଘର ନଖ ବା ଦାନ୍ତ ପରିବର୍ତ୍ତେ ରୁପା ବା ସୁନାର ଅଳଙ୍କାର ଯୁବକମାନେ ପତ୍ନୀମାନଙ୍କୁ ଦେଲେ। ସଭ୍ୟତାର ବିକାଶ ସହିତ ଏହି ଉପହାରର ସୂତ୍ର ବଦଳିବାରେ ଲାଗିଛି। ମଙ୍ଗଳସୂତ୍ରର ପ୍ରୟୋଗ ଯେବେଠାରୁ ଓ ଯେଉଁ କାରଣ ଯୋଗୁଁ ହେଉ ନା କାହିଁକି ଏହାର ଉଦ୍ଦେଶ୍ୟ ହେଉଛି ଜଣେ ପତ୍ନୀଙ୍କୁ ତାଙ୍କ ପତିଙ୍କର ଅଧସ୍ଥନ ଓ ଦାସ କରି ରଖିବା। ଜଣେ ବ୍ୟକ୍ତି ତାଙ୍କ ପତ୍ନୀକୁ ଯେପରି ଚାହିଁବେ ସେ (ପତ୍ନୀ) ସେପରି କରିବାକୁ ବାଧ୍ୟ। ସାଂପ୍ରତିକ ସ୍ଥିତିରେ ଏହି ସବୁ ପ୍ରଥା, ପରଂପରାର ପରିବର୍ତ୍ତନ ହେବା ଆବଶ୍ୟକ। ମହିଳାମାନେ ଏବେ ସମାନ ଅଧିକାର ପାଇଲେଣି ଓ ସମାଜରେ ବେଶ୍ ସମ୍ମାନର ସହ ସ୍ଥାନ ନେଲେଣି। ଏହି ପରିସ୍ଥିତିରେ ମଙ୍ଗଳସୂତ୍ରର ଭାବନା ଅତ୍ୟନ୍ତ ଅବାନ୍ତର ଓ ଅର୍ଥଶୂନ୍ୟ ମନେ ହେଲାଣି। ତେବେ ଏହି ପ୍ରଥାକୁ ପରିହାର କରିବାକୁ ନାରୀମାନଙ୍କ ଭିତରେ କେତେ ଜାଗରଣ, ସଚେତନତା ଓ ସାହସ ଆସିବ ତା ଉପରେ ଏହାର ପରିବର୍ତ୍ତନ ନିର୍ଭର କରୁଛି।

## କୌଣସି ଶୁଭ ମୁହୂର୍ତ୍ତ ବା ସମୟ ନାହିଁ

ଆତ୍ମ ସମ୍ମାନ ବିବାହ ପାଇଁ କୌଣସି ଶୁଭ ମୁହୂର୍ତ୍ତ ବା ଶୁଭ ଦିନ ନାହିଁ। ଆମ ପାଇଁ ପ୍ରତ୍ୟେକ ଦିନ ଓ ପ୍ରତ୍ୟେକ ମୁହୂର୍ତ୍ତ ଶୁଭ। ବୈଦିକ ବିବାହ କ୍ଷେତ୍ରରେ ଶୁଭ ସମୟ ଓ ଶୁଭ ଲଗ୍ନ ବାହାର କରି ସେହି ସମୟରେ କେବଳ ବିବାହ କରିବାକୁ ଯଥେଷ୍ଟ ସତର୍କତା ଅବଲମ୍ବନ କରାଯାଇଥାଏ। ଏଥିପାଇଁ ପୂଜକ ବା ଜ୍ୟୋତିଷର ଗଣନା ଉପରେ ନିର୍ଭର କରିବାକୁ ହୁଏ। ବିବାହ ପୂର୍ବରୁ ଜାତକର ମେଳ ଦେଖାଯାଏ, ନାମ ରାଶିରେ ଗଣନା ହୁଏ ଓ ଏହାପରେ ଶୁଭ ସମୟ ଓ ଦିନ ବିବାହ ପାଇଁ ଜ୍ୟୋତିଷ-ଜ୍ଞାନ ଦ୍ୱାରା ସ୍ଥିର ହୁଏ। ଏହି ସମସ୍ତ ବ୍ୟବସ୍ଥା ଲୋକମାନଙ୍କୁ ମୂର୍ଖ ରଖି ସେମାନଙ୍କୁ ଶୋଷଣ କରିବାକୁ ଉଦ୍ଦିଷ୍ଟ। ଏତେ ଜାତକ ଗଣନା, ଶୁଭ-ଅଶୁଭ ବେଳ ଦେଖି ବିବାହ ଇତ୍ୟାଦି ହେଉଥିଲେ ମଧ୍ୟ ଭାରତ ବର୍ଷରେ ବିଧବା ମହିଳାଙ୍କ ସଂଖ୍ୟା ଅନ୍ୟ ଯେ କୌଣସି ସ୍ଥାନ ତୁଳନାରେ ଅଧିକ। ଧୂର୍ତ୍ତୀଣ ପୂଜକ ବା ଜ୍ୟୋତିଷ ଯେଉଁମାନେ ଜାତକ-ଗଣନା ଓ ଶୁଭ ମୁହୂର୍ତ୍ତ ଉପରେ ଗୁରୁତ୍ୱ ଦିଅନ୍ତି ସେମାନଙ୍କ ପରିବାରରେ ଅନେକ ଲଣ୍ଡିତ ବିଧବା ଥିବା ସାଧାରଣତଃ ଦେଖାଯାଏ।

Digitized by srujanika@gmail.com

ଦୁଇ ହଜାର ବର୍ଷ ତଳର ତାମିଲ ସାହିତ୍ୟରେ ବ୍ରାହ୍ମଣମାନଙ୍କ ଦ୍ୱାରା ବିବାହ ଅନୁଷ୍ଠିତ ହେଉଥିବାର ବର୍ଣ୍ଣନା ନାହିଁ। ଏପରିକି ସାଂପ୍ରତିକ ସମୟରେ ଯେଉଁ ଅହେତୁକ କର୍ମକାଣ୍ଡ କରାଯାଉଛି ତାହା ଅତୀତର ସମୟ ଠାରୁ ଅଧିକ ଅସଭ୍ୟ ମନେହୁଏ। ଥୋଲକାପିଅମ ପୂର୍ବରୁ ସମସ୍ତ ତାମିଲ ସାହିତ୍ୟ ନଷ୍ଟ ହୋଇଯାଇଛି। ଅନ୍ତତଃ ଏକହଜାର ବର୍ଷର ସାହିତ୍ୟିକ ପରଂପରା ନଥିଲେ ଗୋଟିଏ ଜାତି ଥୋଲକାପିଅମ ପରି ଏକ କୃତି ସୃଷ୍ଟି କରିପାରି ନଥାନ୍ତା। ତେବେ କାଳର ସ୍ରୋତରେ ସେ ସବୁ ଏବେ ଉପଲବ୍ଧ ନୁହେଁ।

**ସହମତିର ସଂପର୍କ**

ଆତ୍ମସମ୍ମାନ ବିବାହକୁ "ସହମତିର ସଂପର୍କ" କୁହାଯାଏ। ଏହି ଶବ୍ଦ ତାମିଲ ମାନଙ୍କର ବାଇବେଲ "କୁରାଲରେ" ଥିବା ଦେଖାଯାଏ ଯାହା ଦୁଇ ହଜାର ବର୍ଷରୁ ଅଧିକ ସମୟରେ ଲେଖା ଯାଇଥିଲା। ବିବାହ ସ-ର୍କିକୁ ବୁଝାଇବାରେ ଏହା ଏକ ସମୁଚିତ ଶବ୍ଦ ବୋଲି ମନେହୁଏ। ବୈଦିକ ବିବାହରେ "ଧାରା ମୁହୁର୍ଥମ" ବା "କନ୍ୟାଦାନ"ଶବ୍ଦ ବ୍ୟବହୃତ ହୁଏ ଯାହାର ଅର୍ଥ ବରର ଦାସୀ ହେବା ପାଇଁ କନ୍ୟାକୁ ଦାନ କରାଯାଏ। ବସ୍ତୁ ବା ସଂପତ୍ତି ଦାନ ପରି କନ୍ୟାଦାନ ହୁଏ ଯେଉଁଠି ଜଣେ ମହିଳାଙ୍କର କୌଣସି ସ୍ୱାଧୀନତା ବା ଅଧିକାର ନଥାଏ। ଏହି ଆର୍ଯ୍ୟ ପ୍ରଥାକୁ ଦ୍ରାବିଡମାନଙ୍କ ଉପରେ ଲଦି ଦିଆଯିବା ଦେଖାଯାଏ।

ଗୋଟିଏ ଝିଅକୁ ସ୍ନେହ ଆଦରରେ ଏତେ ବର୍ଷ ପାଳନ କଲାପରେ ତାହାକୁ ଦାନ କରିବାର ଭାବନା କାହିଁକି ଆସେ? ତାର ଅର୍ଥ ନାରୀମାନଙ୍କୁ କୌଣସି ସ୍ୱାଧୀନତା ନ ଦେବା ବା ସେମାନଙ୍କୁ ଗାଇ, ଗୋରୁ ଭଳି ବ୍ୟକ୍ତିଗତ ସଂପତ୍ତି ବୋଲି ମନେ କରିବା। ଜଣେ ପତି ନିଜର ପତ୍ନୀକୁ ଅନ୍ୟ କେହି ଉପଭୋଗ କରିବାକୁ ବି ଦେଇପାରେ ଓ ସେଥିରେ ପତ୍ନୀ ବିରୋଧ କରିପାରିବେ ନାହିଁ। ଆମର ପୁରାଣ ମାନଙ୍କରେ ଏହିପରି ଅନେକ ବର୍ଣ୍ଣନା ଦେଖିବାକୁ ମିଳେ।

'ତାରା ମୁହୁର୍ତ୍ତମ" ନାମରେ ଏକ ଅଧିକ ନିଷ୍ଠୁର ପ୍ରଥା ବି ବୈଦିକ ବିବାହ କ୍ଷେତ୍ରରେ ରହିଛି। ଏହି ବିବାହ ପ୍ରଥାରେ କନ୍ୟାର ହାତକୁ ବରର ହାତ ଉପରେ

Digitized by srujanika@gmail.com

ରଖାଯାଇ କ୍ରିଷ୍ଣ, କ୍ରିଷ୍ଣ କୁହାଯାଇ ପାଣି ଢଳାଯାଏ । ଏହା ପରେ କନ୍ୟାର ପିତା, ମାତା ଓ ସଂପର୍କୀୟ ମାନେ ଝିଅକୁ ଆଉ ନ ଚାହିଁ କି ବରକୁ ଦେଇଥାନ୍ତି ।

## ଈଶ୍ୱରଙ୍କ ସହିତ କିଛି ସଂପର୍କ ହିଁ ନାହିଁ

ଆତ୍ମସମ୍ମାନର ବିବାହ ଏକ ବୈପ୍ଳବିକ ଧାରଣା ନୁହେଁ । ଆତ୍ମସମ୍ମାନ ବିବାହରେ ଜଣେ ଯୁବକ ଓ ଜଣେ ତରୁଣୀ ପରିବାର ସଂପର୍କୀୟ ଓ ସାଙ୍ଗସାଥୀଙ୍କ ଉପସ୍ଥିତିରେ ବିବାହ କରନ୍ତି । ପରଂପରା ସହ ସଂଶ୍ଲିଷ୍ଟ ସମସ୍ତ କର୍ମକାଣ୍ଡକୁ ଏଥିରେ ବାଦ୍ ଦିଆଯାଏ । ବିବାହ କରିବାକୁ ଯାଉଥିବା ବର-କନ୍ୟା ପରସ୍ପରକୁ ଫୁଲମାଳ ଦେଇ ଶ୍ରଦ୍ଧା ପ୍ରକଟ କରନ୍ତି ଓ ସେମାନେ ଶପଥ ନିଅନ୍ତି ଯେ ସେମାନେ ପରସ୍ପର ପ୍ରତି ପ୍ରେମଭାବ ରଖିବେ, ଜୀବନସାରା ସୁଖ-ଦୁଃଖର ସାଥୀ ହୋଇ ରହିବେ, ଜୀବନର ସମସ୍ତ ଭଲ ମନ୍ଦକୁ ସମଭାଗୀ ହୋଇ ସମ୍ମୁଖୀନ ହେବେ ଓ ସେମାନେ ଏକ ସୁନ୍ଦର ସମାଜ ପାଇଁ ସେମାନଙ୍କର ଶ୍ରେଷ୍ଠ ଅବଦାନ ଦେବେ । ଏହି ବିବାହ ବିଚାରଶୀଳ, ସରଳ, ଧର୍ମନିରପେକ୍ଷ ଓ ମିତବ୍ୟୟୀ । ପରଂପରାବାଦୀମାନେ ଆମ ଦ୍ୱାରା ପ୍ରଚଳିତ ଏହି ବିବାହକୁ ନାସ୍ତିକ ବିବାହ କହିଥାନ୍ତି । ଯଦି ଏକ ବିଚାରଶୀଳ ପ୍ରଥାକୁ ନାସ୍ତିକ ବୋଲି ଚିତ୍ରଣ କରାଯାଏ, ତେବେ ଆମେ ନିଜକୁ ନାସ୍ତିକ କହିବାରେ ଦ୍ୱିଧା କରିବୁ ନାହିଁ । ତେବେ ବିବାହ ସହିତ ଈଶ୍ୱର ଭାବନାର ସଂପର୍କ ହିଁ ନାହିଁ । ବିବାହ କ୍ଷେତ୍ରରେ ଈଶ୍ୱର ଭାବନାକୁ ସଂପୃକ୍ତ କରିବାର କୌଣସି ଅର୍ଥ ହିଁ ନାହିଁ । ଅନେକ ସାମାଜିକ ଓ ରାଜନୈତିକ ବ୍ୟାପାରରେ ଈଶ୍ୱର ଭାବନାକୁ ଆମେ ଯେପରି ସଂପୃକ୍ତ କରୁନାହୁଁ , ବିବାହ କ୍ଷେତ୍ରରେ ମଧ୍ୟ ଈଶ୍ୱରଙ୍କୁ ସଂପୃକ୍ତ କରିବାର ଆବଶ୍ୟକତା ହିଁ ନାହିଁ ।

## ଶାସ୍ତ୍ରର ବାଣୀ ଆମ ପାଇଁ ପ୍ରାମାଣିକ ନୁହେଁ

ଆତ୍ମ ସମ୍ମାନକାରୀଙ୍କ ପାଇଁ ପ୍ରଥମ ସଫଳତା ହେଲା ଯେ ଏହି ବିବାହରେ କୌଣସି ବ୍ରାହ୍ମଣ ପୂଜକକୁ ଡକାଯାଏ ନାହିଁ । ସେପରି ଜଣେ ବ୍ୟକ୍ତିଙ୍କୁ ଡାକି ବିବାହ ସଂପନ୍ନ କରିବାର ଆବଶ୍ୟକତା ନାହିଁ, କାରଣ ସେ ଅନ୍ୟମାନଙ୍କ ଠାରୁ ନିଜକୁ ଉଚ୍ଚ ମନେ କରନ୍ତି ଓ ଏପରିକି ଅନ୍ୟକୁ ଛୁଇଁବା ବା ଅନ୍ୟମାନଙ୍କ ସହ ଏକାଠି

Digitized by srujanika@gmail.com

ଭୋଜନ କରିବାକୁ ପସନ୍ଦ କରନ୍ତି ନାହିଁ । ନିଜକୁ ଉଚ୍ଚ ଓ ଅନ୍ୟମାନଙ୍କୁ ନ୍ୟୂନ ଦୃଷ୍ଟିରେ ଦେଖୁଥିବା ଶକ୍ତିଙ୍କୁ କାହିଁକି ଡ଼କାଯିବ । ଏଣୁ ଆମ ବିବାହକୁ 'ଆତ୍ମସମ୍ମାନ ବିବାହ'' କୁହାଯାଇଛି । ଯେଉଁମାନେ ନିଜକୁ ଉଚ୍ଚ ଜାତିର ଭାବି ଅହମିକା ପ୍ରକାଶ କରନ୍ତି ସେମାନଙ୍କୁ ଡାକି ଆମେ କାହିଁକି ସେମାନଙ୍କ ଦ୍ୱାରା ନ୍ୟୂନ ହେବୁ । ଆତ୍ମ ସମ୍ମାନ ବିବାହ କ୍ଷେତ୍ରରେ ସମସ୍ତେ ସମାନ ବୋଲି ପରିଗଣିତ ହୁଅନ୍ତି ଓ ଏକ ସମତାପୂର୍ଣ୍ଣ ପରିବେଶରେ ଏହା ସଂପାଦିତ ହୁଏ ।

ଏହି ବିବାହର ଦ୍ୱିତୀୟ ସଫଳତା ହେଲା ଯେ ଏହି ବିବାହ ବିଚାରଶୀଳ । ଏଠାରେ ଆମର ପ୍ରାଚୀନ ଶାସ୍ତ୍ର ବାଣୀକୁ ଆମେ ଧ୍ରୁବ ବା ପ୍ରାମାଣିକ ବୋଲି ଗ୍ରହଣ କରୁନାହୁଁ । ଆଗମରେ ଦିଆଯାଇଥିବା ବିଧିବିଧାନ ଓ ନିର୍ଦ୍ଦେଶନାମାକୁ ସମାଲୋଚନା କରିବା ସହ ସେଗୁଡିକ କିପରି କୁସଂସ୍କାର, ଅପାଙ୍କ୍ତେୟ ଓ ଅସଭ୍ୟ ତାହା ଆମେ ଦର୍ଶାଇଥାଉ । ବିବାହ କ୍ଷେତ୍ରରେ ସମସ୍ତ କଦାକାର ପ୍ରଥା ଗୁଡିକୁ ଆମେ ପ୍ରତ୍ୟାଖ୍ୟାନ କରିଥାଉ । ଯେଉଁ ପୁଅ ଝିଅ ବିବାହ କରିବେ ସେମାନେ ପରସ୍ପର ସହ ସମାନ । ଆର୍ଯ୍ୟ ବ୍ୟବସ୍ଥାରେ ଥିବା ଆଠ ପ୍ରକାର ବିବାହ କ୍ଷେତ୍ରରେ କୌଣସିଥିରେ ମଧ୍ୟ ନାରୀ ପୁରୁଷ ମଧ୍ୟରେ ସମାନ ଭାବନା ନାହିଁ । ସବୁ କ୍ଷେତ୍ରରେ ନାରୀକୁ ନ୍ୟୂନ କରାଯାଇଛି ଓ ପୁରୁଷର ନିୟନ୍ତ୍ରଣ ଭିତରେ ରଖାଯାଇଛି ।

ସୁତରାଂ ଜଣେ ବ୍ରାହ୍ମଣଙ୍କୁ ଡାକି ବିବାହ କରିବାର କଣ ଆବଶ୍ୟକତା ରହିଛି ? ପ୍ରଥମତଃ ସେ ନିଜକୁ ଲୋକମାନଙ୍କ ଭିତରୁ ଜଣେ ବୋଲି ବିଚାର କରନ୍ତି ନାହିଁ ବା ନିଜକୁ ଅନ୍ୟମାନଙ୍କ ସହ ସମାନ ଭାବନ୍ତି ନାହିଁ । ସେ ନିଜକୁ ଉଚ୍ଚ ଶ୍ରେଣୀର ମନେକରନ୍ତି ଓ ଲୋକମାନଙ୍କୁ ନିଜଠାରୁ ହୀନ ଦୃଷ୍ଟିରେ ଦେଖନ୍ତି । ପୁରାଣକୁ ପୂଜକଶ୍ରେଣୀ ପ୍ରାୟତଃ ଅନୁସରଣ କରନ୍ତି । ଏହା ପୁରୋହିତବାଦ । ବେଦକୁ ଅନୁକରଣ କରିବା ହେଉଛି ବୈଦିକ । ଏ ଉଭୟ କ୍ଷେତ୍ରରେ ଅଗଣିତ ମଣିଷକୁ ଶୂଦ୍ର ବୋଲି ଚିତ୍ରଣ କରାଯାଇଛି । ସେ କ୍ଷେତ୍ରରେ ପୁରାଣ ବା ବେଦକୁ କାହିଁକି ଅନୁସରଣ କରାଯିବ? ଜଣେ ଏପରି ପନ୍ଥା ଅନୁକରଣ କରିବ କି ଯାହା ତାକୁ ନ୍ୟୂନ ଓ ଅପମାନିତ କରିଛି? ବେଦ, ପୁରାଣ, ଆର୍ଯ୍ୟମାନଙ୍କର ପୂଜିତ ଈଶ୍ୱର, ବ୍ରାହ୍ମଣ୍ୟବାଦକୁ ଗ୍ରହଣ କରିବାର ଅର୍ଥ ହେଲା ଲୋକମାନଙ୍କୁ ଅସମ୍ମାନିତ ଓ

Digitized by srujanika@gmail.com

ଛୋଟକରି ଦେଖିବା । ଧର୍ମ ମଣିଷକୁ ମହାନ ଭାବ ଦେବା କଥା, କିନ୍ତୁ ହିନ୍ଦୁଧର୍ମ ଲୋକମାନଙ୍କୁ ଛୋଟ ଓ ନ୍ୟୂନ କରିଆସିଛି । ବିବାହରେ ବ୍ରାହ୍ମଣ ମାନଙ୍କୁ ଡାକିବାର ଅର୍ଥ ଆମର ନ୍ୟୂନ ସ୍ଥିତିକୁ ସ୍ୱୀକାର କରିବା ଓ ସେମାନଙ୍କର ପ୍ରାଧାନ୍ୟକୁ ଗୁରୁତ୍ୱଦେବା ।

**କନ୍ୟା ଓ ବର ଅଶ୍ରୁ ବୁହାଇବା**

ଲୋକମାନେ ବ୍ରାହ୍ମଣଙ୍କ ଠାରୁ ଛୋଟ ନୁହନ୍ତି । ଏହି ଭାବନା ଆସ୍ତେ ଆସ୍ତେ ସମାଜରେ ବ୍ୟାପକ ହେବାରେ ଲାଗିଛି । ଏପରି କୌଣସି ବୃତ୍ତି ବା କର୍ମପନ୍ଥା ନାହିଁ ଯେଉଁଥିରୁ ଲୋକମାନଙ୍କୁ ବାରଣ କରାଯିବ । ବ୍ରାହ୍ମଣ ଅନ୍ୟ କର୍ମକ୍ଷେତ୍ରରେ ସମସ୍ତଙ୍କ ସହ ସମାନ ଭାବରେ ପ୍ରତିଯୋଗିତା କରୁଛନ୍ତି । ଏହା ଭାରତରେ ପାଶ୍ଚାତ୍ୟ ଗଣତାନ୍ତ୍ରିକ ଆଦର୍ଶର ପ୍ରସାର ଯୋଗୁଁ ହୋଇଛି । ଏପରି କ୍ଷେତ୍ରରେ ବିବାହ ପରି ଏକ ଗୁରୁତ୍ୱପୂର୍ଣ୍ଣ ଉତ୍ସବରେ ବ୍ରାହ୍ମଣ ପୂଜକକୁ ଡାକି ଆମକୁ ନ୍ୟୂନ କରିବାର କଣ ଦରକାର ଅଛି? ତାଙ୍କୁ ଡାକି ସେ ଅପବିତ୍ର ନହେବା ପାଇଁ ତାଙ୍କଠାରୁ ଦୂରେଇ ରହିବାର କିଛି ଅର୍ଥ ରହିଛି କି? ଆମେ କଣ ଛୋଟ ଲୋକ ବୋଲି ସ୍ୱୀକାର କରିବା? ତାଙ୍କୁ ଡାକି ସ୍ୱାମୀ ସମ୍ବୋଧନ କରିବା କାହିଁକି? ସେ କଣ ଈଶ୍ୱର? ସେ ପ୍ରକୃତରେ କଣ କରନ୍ତି, ନିଜର ଦକ୍ଷିଣା ପାଇଁ କେତେ ଅଧିକା ପାଇବେ ତାହା ହିଁ ତାଙ୍କର ନିଷ୍ଠା । ଗୋଟିଏ କୁଣ୍ଡରେ ଅଗ୍ନି ଜାଳି ସେଥିରୁ ବାହାରୁଥିବା ଧୂମରେ ଅନ୍ୟର ଚକ୍ଷୁକୁ ଲୋତକପୂର୍ଣ୍ଣ କରିବାର କଣ ଅର୍ଥ ଅଛି ? ସେହି ଧୂଆଁ ବର କନ୍ୟାଙ୍କ ଆଖିରେ ବାଜି ତାଙ୍କ ଆଖିରୁ ପାଣି ଝରାଇ ଥାଏ, ସତେ ଯେପରି ସେମାନେ ଲୁହ ଗଡାଉଛନ୍ତି । ଅଗ୍ନିରେ ଈଶ୍ୱରଙ୍କୁ ସାକ୍ଷାତ ହେବ କି ? ଈଶ୍ୱର ସର୍ବତ୍ର ଓ ସବୁଥିରେ ନାହାନ୍ତି କି ? ବିଜୁଳି ଆଲୁଅରେ ଈଶ୍ୱର ନାହାନ୍ତି କି?

ଆତ୍ମସମ୍ମାନ ବିବାହରେ ବ୍ରାହ୍ମଣବାଦ, ଭେଦଭାବମୂଳକ ଜାତିପ୍ରଥା ଓ କୁସଂସ୍କାରକୁ ପରିହାର କରାଯାଏ ।

**ଏକ ଶବକୁ ଧରି ରଖିବା କାହିଁକି ?**

ଆମର ଚତୁର୍ଥ ଫଳତା ହେଉଛି ଯେ ସଂସ୍କୃତ ପରି ଏକ ଭାଷାକୁ ଆମେ ପରିହାର କରୁଛେ । ଯେଉଁ ଭାଷା କେହି ବୁଝନ୍ତି ନାହିଁ ଓ ଯାହା ମୃତ ତାହାକୁ

Digitized by srujanika@gmail.com

ଆମେ କାହିଁକି ଧରି ରଖିବା ? ସଂସ୍କୃତ କହିବାର ଅର୍ଥ ଆମର ମାତୃଭାଷା ଓ ଗଣଭାଷାକୁ ଅସମ୍ମାନିତ କରିବା । ପାଶ୍ଚାତ୍ୟ ଦେଶରେ ଏକ ସମୟରେ ବିବାହ ଇତ୍ୟାଦିରେ ଲାଟିନ ଭାଷାକୁ ବ୍ୟବହାର କରାଯାଉଥିଲା, ଯେଉଁ ଭାଷା ବି ଏକ ମୃତଭାଷା । କିନ୍ତୁ ଯେତେବେଳେ ଆତ୍ମସମ୍ମାନର ଭାବନା ସହ ମାତୃଭାଷା ପ୍ରତି ସମ୍ମାନ ଆସିଲା, ସେମାନେ ଲାଟିନକୁ ପରିହାର କଲେ । ଆମେ ସେହିପରି ଏକ ମୃତଭାଷାକୁ କାହିଁକି ଆମର ବିବାହରେ ପ୍ରୟୋଗ କରିବା ? କେତେକଙ୍କ ମତରେ ସଂସ୍କୃତ ଏକ ମୃତ ଭାଷା ନୁହେଁ । ଏବେବି ପୂଜକ ଶ୍ରେଣୀ ତାକୁ ପଠନ ଓ ପ୍ରୟୋଗ କରୁଛନ୍ତି । ସେପରି ସ୍ଥଳେ କୁହାଯିବ ଯେ ଏହା ମୃତ, କିନ୍ତୁ ଏହାକୁ କବର ଦିଆଯାଇ ନାହିଁ । ଯେତେବେଳେ ଦ୍ରାବିଡ ଭାଷା ସମୂହ ବିକଶିତ ହେଲେଣି ଓ ବିଶେଷକରି ତାମିଲ ଭାଷା ସଂସ୍କୃତ ଭାଷାଠାରୁ ଅଧିକ ପୁରାତନ ଓ ଏକ ପ୍ରାଚୀନତମ ଭାଷା ଭାବେ ସ୍ୱୀକୃତ, ସେତେବେଳେ ଆମେ କାହିଁକି ଆମର ମାତୃଭାଷାକୁ ଦୂରରେ ରଖି ସଂସ୍କୃତ ଭାଷାରେ ଗୁରୁତ୍ୱପୂର୍ଣ୍ଣ ଉତ୍ସବମାନଙ୍କୁ ସମାହିତ କରିବା ? ଆତ୍ମ ସମ୍ମାନ ବିବାହରେ ତାମିଲ ଭାଷା ବା ବର-କନ୍ୟାଙ୍କ ଭାଷାରେ ବିବାହ ଉତ୍ସବ ସମାହିତ ହୋଇଥାଏ । ବରକନ୍ୟା ତାମିଲ ଭାଷାରେ ସେମାନଙ୍କର ଶପଥ ନେଇଥାନ୍ତି ଓ ଉତ୍ସବରେ ସଭା ପତିତ୍ୱ କରୁଥିବା ବ୍ୟକ୍ତି ସବୁକଥାକୁ ତାମିଲ ଭାଷାରେ ବୁଝାଇଥାନ୍ତି ।

ପୁନଶ୍ଚ ବିବାହରେ ପୂଜକ ସଂସ୍କୃତରେ ଯେଉଁ ସବୁ ଶ୍ଳୋକ ଉଚ୍ଚାରଣ କରନ୍ତି ସେଥିରେ ନାନା ଅବାସ୍ତବ ଓ ଅର୍ଥହୀନ କଥା ରହିଥାଏ । ଗୋଟିଏ ଶ୍ଳୋକରେ କୁହାଯାଏ ଯେ କନ୍ୟା ଆଜି ଯେଉଁ ପୁରୁଷଙ୍କୁ ବିବାହ କରୁଛି ସେ ପୂର୍ବରୁ ଦେବତା, ଋଷି, କିନ୍ନର ଓ କିମ୍ପୁରୁଷଙ୍କୁ ବିବାହ କରିଆସିଛି । ବିବାହ ବେଦୀରେ ପୂଜକ ଏହିପରି ଗୁଡିଏ ଅର୍ଥହୀନ ଶ୍ଳୋକ ଉଚ୍ଚାରଣ କରିଥାଏ ଯାହାର ଅର୍ଥ ତାମିଲଭାଷାରେ ବ୍ୟକ୍ତ କଲେ ଅତ୍ୟନ୍ତ ଅବାନ୍ତର ଓ ନିରର୍ଥକ ଉକ୍ତି ହେବ ।

ଏକ କୋର୍ଟ ନିଷ୍ପତ୍ତି ଅନୁଯାୟୀ ଏକ ବୈଦିକ ବିବାହର ଗୁରୁତ୍ୱପୂର୍ଣ୍ଣ ପ୍ରଥା ହେଉଛି ଅଗ୍ନି ପୂଜା ଓ ବର କନ୍ୟାଙ୍କୁ ସ୍ୱାମୀ ସ୍ତ୍ରୀ ଭାବେ ଘୋଷଣା କଲାପରେ ସେମାନେ ସାତୋଟି ରୀତି ଅବଲମ୍ବନ କରିବା । ବ୍ରାହ୍ମଣର ଉପସ୍ଥିତି ଓ କନ୍ୟା ବେକରେ ମଙ୍ଗଳସୂତ୍ର ପିନ୍ଧାଇବା ବିବାହର ଗୁରୁତ୍ୱପୂର୍ଣ୍ଣ ରୀତି ନୁହେଁ, ଯଦିବା

Digitized by srujanika@gmail.com

ଏହାକୁ ଅପରିହାର୍ଯ୍ୟ ଭାବେ ବିବାହ କ୍ଷେତ୍ରରେ ପାଳନ କରାଯାଏ। ପୁନଶ୍ଚ ବ୍ରାହ୍ମଣ ପୂଜକର ଉପସ୍ଥିତି ଅତ୍ୟାବଶ୍ୟକ ନୁହେଁ, କାରଣ କେତେକ ଗୋଷ୍ଠୀରେ ବିବାହ ବୟସ୍କ ଲୋକମାନଙ୍କ ଉପସ୍ଥିତିରେ ହିଁ ଅନୁଷ୍ଠିତ ହୋଇଥାଏ। ଆଦିଦ୍ରାବିଡ ବିବାହ-ଉତ୍ସବକୁ ବ୍ରାହ୍ମଣମାନେ ବି ଯାଇନଥାନ୍ତି।

## ଡିଏମ୍‌କେ ସରକାରଙ୍କ ସ୍ୱୀକୃତି

କୋର୍ଟମାନେ ଏକଦା ଆତ୍ମ ସମ୍ମାନ ବିବାହକୁ ସ୍ୱୀକୃତି ଦେଉନଥିଲେ। ସୁତରାଂ ଏହି ଧାରାରେ ବିବାହ କରିଥିବା କେତେକ ବ୍ୟକ୍ତି କେତେକ ପ୍ରତିବନ୍ଧକର ସମ୍ମୁଖୀନ ହୋଇଥିଲେ। ଆଇନ ଗରିବ ଲୋକଙ୍କୁ ଅସୁବିଧାରେ ପକାଇ ନାହିଁ। ଏହା କେବଳ ସଂପତ୍ତି ଉତ୍ତରାଧିକାର ନେଇ ମତ ଦେଇଛି। ତାମିଲନାଡୁର ଡିଏମ୍‌କେ ସରକାର ଏଥିରେ ଧନ୍ୟବାଦାର୍ହ। ବିଶେଷକରି ସ୍ୱର୍ଗତ ଅରିଗନର ଆନା ଆତ୍ମସମ୍ମାନ ବିବାହକୁ ସରକାରୀ ସ୍ତରରେ ସ୍ୱୀକୃତି ଦେବାରେ ନିଷ୍ପତ୍ତି ନେଇଛନ୍ତି। ସବୁ ବିବାହକୁ ସରକାରୀ ସ୍ତରରେ ପଂଜୀକୃତ କରିବାର ବ୍ୟବସ୍ଥା ହେବାକୁ ଯାଉଛି। ସେପରି ହେଲେ ବୈଦିକ ବିବାହର ଭାବନା ଲୋପ ପାଇବ। ଏପରି ଏକ ଦିନ ମୋ ବିଚାରରେ ଆସିପାରେ ଯେତେବେଳେ ଦୁଇ ଜଣ ବ୍ୟକ୍ତି ସ୍ୱାମୀ-ସ୍ତ୍ରୀ ରୂପରେ ଜୀବନ ନିର୍ବାହ କରିବାକୁ ସେମାନଙ୍କର ସମ୍ମତି ସମ୍ବାଦପତ୍ର ମାଧ୍ୟମରେ ଘୋଷଣା କରିବେ। ବର୍ତ୍ତମାନ ସୁଦ୍ଧା ସରକାର କେବଳ ବୈଦିକ ବିବାହକୁ ସ୍ୱୀକୃତି ଦେଇଆସିଛି ଯାହାଦ୍ୱାରା ଭେଦଭାବ ମୂଳକ ଜାତିପ୍ରଥା, ଅର୍ଥହୀନ ରୀତିନୀତି, କୁସଂସ୍କାର ଓ ବ୍ରାହ୍ମଣ ପୂଜକମାନଙ୍କର ଆଧିପତ୍ୟକୁ ସ୍ୱୀକାର କରାଯାଉଛି।

ଆତ୍ମସମ୍ମାନ ବିବାହକୁ ପୂର୍ବତନ ସରକାର ସ୍ୱୀକୃତି ନଦେଇ ନିଜର ଅବିବେକିତାର ପରିଚୟ ଦେଇଛନ୍ତି। ଏହାଦ୍ୱାରା ସରକାର,ଗଣତନ୍ତ୍ର, ସରଳତା, ଧର୍ମନିରପେକ୍ଷତାକୁ ଆଘାତ ଆଣିଛନ୍ତି।

ଅଗଣତାନ୍ତ୍ରିକ ଜାତିବ୍ୟବସ୍ଥା ପ୍ରଚଳନର ଅର୍ଥ ହେଉଛି ଆମର ବିଚାରଶୂନ୍ୟତା। ଆଇନ ଅଧ୍ୟୟନ କରି ସେଥିରେ ପାରଦର୍ଶିତା ଥିବା ଜଣେ ଅବ୍ରାହ୍ମଣ ବ୍ୟକ୍ତି ହାଇକୋର୍ଟରେ ବିଚାରପତି ବା ଓକିଲ ହୋଇ ପାରନ୍ତି। ଜାତି ବ୍ୟବସ୍ଥା ଦ୍ୱାରା ତାଙ୍କୁ ସାମାଜିକ ସ୍ତରରେ କିପରି ନ୍ୟୂନ ଦୃଷ୍ଟିରେ ଦେଖାଯାଇଛି

Digitized by srujanika@gmail.com

ତାହା ସେ ଅନୁଭବରେ ଆଣିପାରିବେ ବୋଲି ଅନୁମାନ କରାଯାଏ । କିନ୍ତୁ ତାଙ୍କର ପୁଅ-ଝିଅ ବିବାହ ସମୟରେ ସେ ପୂଜକଙ୍କୁ ଡାକି ବିବାହ ସଂପନ୍ନ କରାଇବା ଓ ଅନ୍ୟ ଶୂଦ୍ର ଭଳି ବ୍ରାହ୍ମଣର ପାଦତଳେ ପଡିବା ଦେଖାଯାଏ । ତାଙ୍କର ଶିକ୍ଷା ଓ ଯୋଗ୍ୟତା ସେ କ୍ଷେତ୍ରରେ ଅର୍ଥଶୂନ୍ୟ ମନେହୁଏ । ଏହିପରି ସମାଜର ବହୁ ପ୍ରତିଷ୍ଠିତ ଲୋକଙ୍କ ପାଖରେ ଏହା ଦେଖିବାକୁ ମିଳେ । ଏହାର କାରଣ ହେଉଛି ସେମାନେ ସାମାଜିକ ବ୍ୟବସ୍ଥା ଉପରେ କୌଣସି ଚିନ୍ତା ପ୍ରକଟ କରନ୍ତି ନାହିଁ । ସେମାନେ ଅମାନବୀୟ ପରଂପରା ନେଇ ବା ଏହାର ମନ୍ଦ ଦିଗ ଉପରେ କେବେ ଭାବନ୍ତି ନାହିଁ । ତେବେ ପ୍ରଚଳିତ ପରଂପରା କ୍ଷେତ୍ରରେ ପରିବର୍ତ୍ତନଦ୍ୱାରା ସେମାନଙ୍କ ମସ୍ତିଷ୍କରେ ଝଡ ସୃଷ୍ଟି ହୋଇପାରିବ । ସେମାନେ ଯେଉଁ ଅସମ୍ମାନରେ ସମ୍ମୁଖୀନ ହୋଇ ଆସୁଛନ୍ତି ତାହା ତାଙ୍କୁ ସଚେତନ କରାଇବ । ସେମାନଙ୍କ ମାନସିକତାରେ ପରିବର୍ତ୍ତନ ହେଲେ ସେମାନେ ନିଜର ଆତ୍ମ ସମ୍ମାନ ନେଇ ସଚେତନ ହେବେ । ପ୍ରଚଳିତ ପରଂପରା, କୁପ୍ରଥା ଓ ଶୋଷଣ ବିରୁଦ୍ଧରେ ସେମାନେ ଏହାଦ୍ୱାରା ସ୍ୱର ଉତ୍ତୋଳନ କରିପାରିବେ ।

### ସମାନ ପୁରୋହିତ ଓ ପୃଥକ ଭାଷା

ଅନେକ ହୁଏତ ଜାଣି ନଥିବେ ଯେ ବ୍ରାହ୍ମଣମାନଙ୍କ ଘରକୁ ଯାଉଥିବା ପୁରୋହିତ ଓ ଅନ୍ୟମାନଙ୍କ ଘରକୁ ଯାଉଥିବା ପୁରୋହିତ ପୃଥକ ଯଦିବା ଉଭୟ ବ୍ରାହ୍ମଣ । ବ୍ରାହ୍ମଣ ପରିବାରରେ ଓ ଅବ୍ରାହ୍ମଣ ପରିବାରରେ ପୂଜାବେଳେ ପ୍ରୟୋଗ ହେଉଥିବା ଭାଷା ମଧ୍ୟ ଭିନ୍ନ । ବ୍ରାହ୍ମଣ ମାନଙ୍କ ପରିବାରରେ କ୍ରିୟା କର୍ମ କଲାବେଳେ ବେଦମନ୍ତ୍ର ଗାନ କରାଯାଇ କରାଯାଏ, ଅଥଚ ଅବ୍ରାହ୍ମଣ ପରିବାରରେ ସେହି ପୂଜା କର୍ମ ପାଇଁ ପୁରାଣର ଶ୍ଳୋକ ଆବୃତ୍ତି କରାଯାଏ । ଏଥିରୁ ବି ହିନ୍ଦୁ ସାମାଜିକ ବ୍ୟବସ୍ଥାର ଭେଦଭାବ ଜଣାପଡେ ।

ଆତ୍ମମର୍ଯ୍ୟାଦା ଆନ୍ଦୋଳନ ଆନ୍ତର୍ଜାତି ବିବାହ ପାଇଁ ପ୍ରୋତ୍ସାହନ ଦିଏ । ଫଳରେ କେତେକ ସ୍ଥାନରେ ଆନ୍ତର୍ଜାତି ବିବାହ ହେଉଛି । ଆର୍ଯ୍ୟ ରକ୍ଷଣଶୀଳତା ଅନୁଯାୟୀ ବ୍ରାହ୍ମଣ ଓ ଅବ୍ରାହ୍ମଣ ମଧ୍ୟରେ ବିବାହ ହେଉଛି ଆନ୍ତର୍ଜାତି ବିବାହ, ଅଥଚ ଅବ୍ରାହ୍ମଣମାନଙ୍କ ମଧ୍ୟରୁ ଦୁଇଟି ପୃଥକ ଜାତିରେ ବିବାହ ଆନ୍ତର୍ଜାତି ବିବାହ

Digitized by srujanika@gmail.com

ନୁହେଁ । ତେବେ ଜାତିଗତ ବିଭେଦ ଓ ଭିନ୍ନତା ଏତେ ବ୍ୟାପକ ଯେ ଚାରୋଟି ମୁଖ୍ୟ ଜାତି ଭିତରେ ପ୍ରତ୍ୟେକଟିର ଅସଂଖ୍ୟ ଉପଜାତି ରହିଛି । ଗୋଟିଏ ଜାତିର ଲୋକ ଅନ୍ୟ ଜାତିରେ ବିବାହ ନେଇ ଏତେ ସାମାଜିକ କଟକଣା ରହିଛି ଯେ ଦୁଇଟି ଉପଜାତିର ଲୋକଙ୍କ ଭିତରେ ବିବାହ ବି ଏକ ସାମାଜିକ ବିପ୍ଲବର ସୂଚନା ଦିଏ । ଚାରୋଟି ମୁଖ୍ୟ ଜାତି ଭିତରେ ରହିଥିବା ଉପଜାତି ମାନଙ୍କ ମଧ୍ୟରେ ମଧ୍ୟ ଜାତିଗତ ଭିନ୍ନତା ରହିଆସିଛି ।

## ନାରୀ ପୁରୁଷଙ୍କ ପାଇଁ ଭିନ୍ନ ମାନଦଣ୍ଡ

ଆନ୍ତର୍ଜାତି ବିବାହ କରିଥିବା ଲୋକମାନେ ପରବର୍ତ୍ତୀ ସମୟରେ ଏତେ ସମସ୍ୟାର ସମ୍ମୁଖୀନ ହୋଇଛନ୍ତି ଯେ ଆମେ ଯେତେବେଳେ ଜାତିବିହୀନ ସମାଜ ପାଇଁ ଆନ୍ଦୋଳନ କରୁଛୁ ଓ ଆତ୍ମସମ୍ମାନର କଥା କହୁଛୁ ସେତେବେଳେ ଜାତି ପରିତ୍ୟାଗ ନେଇ ନାନା ଆଶଙ୍କା ସୃଷ୍ଟି ହେଉଛି । ତେବେ ଅତୀତରେ ଯେଉଁମାନେ ଜାତି ଛାଡିବା ପାଇଁ ଚାହିଁଛନ୍ତି ବା ଜାତି ଛାଡିଛନ୍ତି ସେମାନେ ଭୟଙ୍କର ପରିସ୍ଥିତିର ସମ୍ମୁଖୀନ ହୋଇଛନ୍ତି । ସେହି କ୍ରାନ୍ତିକାରୀ ବ୍ୟକ୍ତିମାନଙ୍କୁ ଆମେ ଗଭୀର ସମ୍ମାନ ଜଣାଉଛୁ । ଆଜିର ସମାଜରେ ପରିସ୍ଥିତି ବଦଳି ଗଲାଣି ଓ କାଳକ୍ରମେ ଆନ୍ତର୍ଜାତି ବିବାହ ବେଶ୍ ବ୍ୟାପକ ହେବ ।

ଆତ୍ମମର୍ଯ୍ୟାଦା ଆନ୍ଦୋଳନ ବିଧବା ବିବାହକୁ ମଧ୍ୟ ସମର୍ଥନ କରେ । ଏଠାରେ ପୁରୁଷମାନଙ୍କ ପାଇଁ ଓ ନାରୀମାନଙ୍କ ପାଇଁ ପୃଥକ ମାନଦଣ୍ଡ ପ୍ରୟୋଗ ହୁଏ । ବିପତ୍ନୀକ ପୁରୁଷଟିର ବିବାହ କ୍ଷେତ୍ରରେ ପ୍ରତିବଂଧକ ନାହିଁ, କିନ୍ତୁ ବିଧବା ମହିଳାଙ୍କ କ୍ଷେତ୍ରରେ ନାନା ପ୍ରତିବନ୍ଧକ ରହିଛି । ଏହା ଅସାମାଜିକ ଓ ଅଗଣତାନ୍ତ୍ରିକ । ପୁରାଣମାନଙ୍କରେ ବିଧବା ମାନେ ପୁନଶ୍ଚ ବିବାହ କରିଥିବାର କାହାଣୀମାନ ରହିଛି । ସୁତରାଂ ପ୍ରାଚୀନ କାଳରେ ବିଧବା ବିବାହ ନିଷେଧ ନ ଥିଲା । ଏବେ ବି କେତେକ ଅନଗ୍ରସର ଗୋଷ୍ଠୀମାନଙ୍କ ଭିତରେ ବିଧବା ବିବାହ ନେଇ କୌଣସି ପ୍ରତିବଂଧକ ନାହିଁ ।

Digitized by srujanika@gmail.com

## ଆନ୍ତର୍ଜାତି ବିବାହ ଯୁଗର ଆବଶ୍ୟକତା

ସରକାର ହିନ୍ଦୁ ବିବାହ ବ୍ୟବସ୍ଥାରେ ସଂସ୍କାର ଆଣିବା ସ୍ୱାଗତଯୋଗ୍ୟ । ଏହି କ୍ଷେତ୍ରରେ ୧୯୨୫ ମସିହା ଠାରୁ ଆମର ଆତ୍ମ ସମ୍ମାନ ଆନ୍ଦୋଳନ ଏକ ଉଲ୍ଲେଖନୀୟ ଘଟଣା । ଏକ ପତ୍ନୀ ବିବାହକୁ ନିୟମ କରାଯାଇଛି । ବିଧବା ବିବାହ ଓ ବିବାହ-ବିଚ୍ଛେଦକୁ ଆଇନଗତ ସ୍ୱୀକୃତି ଦିଆଯାଇଛି । ନାରୀମାନଙ୍କୁ ସଂପତ୍ତି ଅଧିକାର ମଧ୍ୟ ଦିଆଯାଇଛି ଓ ପୁରୁଷମାନଙ୍କ ସହିତ ନାରୀମାନେ କର୍ମକ୍ଷେତ୍ରରେ ସମାନ ଅଧିକାର ପାଇଛନ୍ତି । ଜଣେ ବ୍ୟକ୍ତି ଦୁଇଜଣ ମହିଳାଙ୍କୁ ବିବାହ କରିପାରିବ ନାହିଁ । ହୁଏତ କେତେକ ବ୍ୟକ୍ତିଙ୍କର କେହି କେହି ରକ୍ଷିତା ରହିଛନ୍ତି, ତେବେ ତାହା ସମାଜରେ ବହୁ ନଗଣ୍ୟ ମନେହୁଏ ।

ତେବେ ଲୋକମାନେ ଶିକ୍ଷିତ ଓ ଆଧୁନିକ ନହେଲେ ଆଇନର କୌଣସି ଗୁରୁତ୍ୱ ରହିବ ନାହିଁ । ନାରୀମାନଙ୍କର ଶିକ୍ଷା ଓ ସ୍ୱାଧୀନତାର ବିକାଶ ହେଲେ ସେମାନେ ନିଜର ସ୍ୱାମୀ ସ୍ଥିର କରିପାରିବେ । ସମାଜରେ ଏହି ପରିସ୍ଥିତି ଆସିଲେ ଆମ ସାମାଜିକ ଜୀବନ ପ୍ରବାହରୁ ଆମର ଅନେକ କୁସଂସ୍କାର ଓ ଅନଗ୍ରସରତା ଦୂର ହୋଇଯିବ । ସେପରି ସ୍ଥଳେ ଆନ୍ତର୍ଜାତି ବିବାହ ସାମାଜିକ ଧାରାରେ ପରିଣତ ହେବ ଓ କୌଣସି ବାପା-ମା କୌଣସି ପୂଜକ ବା ଜ୍ୟୋତିଷଙ୍କର ଦ୍ୱାରସ୍ଥ ହୋଇ ଜାତକ ମେଳ ହେଉଛି କି ନାହିଁ, ନାମରେ ଶୁଝୁଛି କି ନାହିଁ, ଦିନରେ ଲଗ୍ନ ରହିଛି କି ନାହିଁ ତାହା ବୁଝିବାର ଆବଶ୍ୟକତା ରହିବ ନାହିଁ ।

## ପୂଜକମାନଙ୍କର ଲୁଣ୍ଠନ ବନ୍ଦ ହେବ

ପୃଥିବୀରେ ଭାରତ ଗୋଟିଏ ଦେଶ ଯେଉଁଠି ବିବାହମାନ ପଂଜୀକୃତ ହୁଏ ନାହିଁ । ଆଇନରେ ଏହି ଦୁର୍ବଳତା ଯୋଗୁଁ ଅନେକ ବିବାଦ ଓ ସମସ୍ୟା ଏ ବିବାହ କ୍ଷେତ୍ରରେ ଦେଖାଯାଏ । ଜନ୍ମ, ମୃତ୍ୟୁ ପରି ବିବାହ ପଂଜୀକୃତ ହେବା ଆବଶ୍ୟକ । ସ୍ୱତନ୍ତ୍ର ବିବାହ ଆଇନ ଅନୁଯାୟୀ ହେଉଥିବା ବିବାହ କେବଳ ମାତ୍ର ପଂଜୀକୃତ ହୁଏ । ସେପରି ହେଲେ ସରକାରଙ୍କ ଦ୍ୱାରା ନିଯୁକ୍ତ ପଂଜୀକୃତ ଅଧିକାରୀଙ୍କ ପାଖରେ ବିବାହ ପଂଜୀକରଣ ହୋଇପାରିବ । ତାହା ହେଲେ ପୂଜକ ମାନଙ୍କର ଲୁଣ୍ଠନ ବନ୍ଦ ହୋଇଯିବ ।

Digitized by srujanika@gmail.com

## ସନ୍ତାନମାନେ ଈଶ୍ୱରଙ୍କ ଦାନ ନୁହଁନ୍ତି

ବିବାହ ବିଷୟରେ ଆଲୋଚନା କଲାବେଳେ ପରିବାର ନିୟୋଜନ ବିଷୟରେ ପଦେ କହିବା ଅପ୍ରାସଙ୍ଗିକ ହେବ ନାହିଁ। ମୁଁ ୧୯୩୨ ରୁ ପରିବାର ନିୟୋଜନ ବିଷୟରେ କହି ଆସୁଛି। ଏବେ ସରକାର ଏଥିରେ ଆଗ୍ରହ ନେଇ ଦେଶର ବିଭିନ୍ନ ଅଞ୍ଚଳରେ ପରିବାର ନିୟୋଜନ ପାଇଁ ହଜାର ହଜାର କେନ୍ଦ୍ର ସ୍ଥାପନ କରିଛନ୍ତି। ଏହାଦ୍ୱାରା ନବ ବିବାହିତ ଦଂପତିମାନେ ପ୍ରଥମରୁ ସନ୍ତାନ ନ କରିବା ପାଇଁ କିଛି ପ୍ରତିଷେଧକ ବ୍ୟବସ୍ଥା କରିପାରିବେ। ତେବେ ସେମାନେ ଗୋଟିଏ ଦୁଇଟି ପିଲା ଭିତରେ ସୀମିତ ରହିବା ଦରକାର। ପୂର୍ବରୁ ବିବାହର ଗୋଟିଏ ବର୍ଷ ଭିତରେ ସନ୍ତାନ ଜନ୍ମ ହେବା ସାଧରଣ ଘଟଣା ଥିଲା। ସେ କ୍ଷେତ୍ରରେ ସ୍ୱାମୀର କର୍ତ୍ତବ୍ୟ କଣ? ସେ ପତ୍ନୀଙ୍କୁ ପ୍ରେମ ସ୍ପର୍ଶ ଦୋଇପାରିବ ନା ସନ୍ତାନକୁ ! ସେ କେବଳ ଜଂଜାଳ ଓ ଅଭାବ ଭିତରେ କାହାକୁ ନିଜର ସ୍ନେହ ଓ ପ୍ରେମ ଦେଇପାରିବ ନାହିଁ।

ସମୟ ପରିବର୍ତ୍ତନ ହୋଇଗଲାଣି, ଓ ସଂପ୍ରତି ପୂର୍ବପରି ପ୍ରତ୍ୟେକ ସ୍ତରରେ ଧର୍ମର ପ୍ରଭାବ ବ୍ୟକ୍ତିଜୀବନକୁ ଭୟଭୀତ କରୁନାହିଁ। ଲୋକମାନେ ଅନୁଭବ କରିବା ଆରମ୍ଭ କଲେଣି ଯେ ସନ୍ତାନ ଜନ୍ମ ଈଶ୍ୱରଙ୍କ ଦାନ ନୁହେଁ ବା ସନ୍ତାନର ପାଳନ ଈଶ୍ୱରଙ୍କର ଦାୟିତ୍ୱ ନୁହେଁ। ଏହା ବିବାହିତ ଦଂପତିଙ୍କର ନିୟନ୍ତ୍ରଣ ଓ ଇଛାର ବସ୍ତୁ। ସେମାନେ ଚାହିଁଲେ ବିଳମ୍ବରେ ସନ୍ତାନ ଜନ୍ମ କରିପାରିବେ, ଦୁଇଟି ସନ୍ତାନର ଜନ୍ମ ଭିତରେ ବ୍ୟବଧାନ ରଖିପାରିବେ ଓ ଯେବେ ଚାହିଁବେ ସନ୍ତାନ ଜନ୍ମ ବନ୍ଦ କରି ପାରିବେ। ଈଶ୍ୱରଙ୍କର ଏ କ୍ଷେତ୍ରରେ କିଛି ଭୂମିକା ନାହିଁ ଓ ଈଶ୍ୱର ଏହି ଇଲାକାରୁ ଦୂରେଇ ଯାଇଛନ୍ତି।

## ଅର୍ଥ ଧର୍ମକୁ ଅତିକ୍ରମ କରିପାରିଛି

ପୂର୍ବରୁ ବିବାହ ଉତ୍ସବ ଯେପରି କେତେ ଦିନ ଧରି ଚାଲିଥିଲା, ଏବେ ସେପରି ହେଉ ନାହିଁ ଓ ବିବାହ ଉତ୍ସବ ଗୋଟିଏ ଦିନରେ ଶେଷ ହେଉଛି। ଏପରିକି କେତେକ ରକ୍ଷଣଶୀଳ ହିନ୍ଦୁ ଏହା କରିବାକୁ କୁଣ୍ଠାବୋଧ କରୁ ନାହାନ୍ତି। ଆର୍ଥିକ ପରିସ୍ଥିତି ଧାର୍ମିକ ଭାବନାକୁ ପରିବର୍ତ୍ତନ କରିଦେଇଛି। ଏହା ଏକ ଶୁଭଲକ୍ଷଣ।

Digitized by srujanika@gmail.com

ବିବାହ ସମୟରେ ଗୁଡାଏ ରୀତି ନୀତି ପାଳନ କରି ବହୁ ଅର୍ଥ ବ୍ୟୟ କରିବାର ଆବଶ୍ୟକତା ରହିଛି କି? ବରଂ ବିବାହକୁ ନିରାଡମ୍ବର ଭାବେ କରି ସେହି ଅର୍ଥକୁ ସଂଚୟ କଲେ ତାହା ବିବାହ କରୁଥିବା ଦଂପତିଙ୍କର ଭବିଷ୍ୟତରେ ଅନେକ କାର୍ଯ୍ୟରେ ଲାଗିପାରିବ ।

ଶେଷରେ କହିବା ଉଚିତ ଯେ ସ୍ୱାର୍ଥପରତା ବିବାହିତ ଦଂପତିଙ୍କର ଜୀବନର ଧାରା ହେବା ଠିକ୍ ନୁହେଁ । କେବଳ ନିଜର ସ୍ୱାର୍ଥ ଭିତରେ ସୀମିତ ନରହି ସେମାନେ ବୃହତ୍ତର ସମାଜର ହିତକୁ ଗୁରୁତ୍ୱ ଦେବା ଦରକାର । ସମାଜର ହିତ ପାଇଁ ନିଜର ଶକ୍ତି, ଅର୍ଥ ଓ କାର୍ଯ୍ୟ ବି ବିନିଯୋଗ ହେବା ଉଚିତ । ଆମେ ଯେଉଁ ସମାଜ ଯୋଗୁଁ ଆମର ଆବଶ୍ୟକତା ପୂରଣ କରିପାରୁଛେ ସେହି ସମାଜ ବିଷୟରେ ଚିନ୍ତା କରିବା ଆବଶ୍ୟକ । ବୃହତ୍ତର ସାମାଜିକ ପରିବେଶରେ ଶାନ୍ତି ଓ ପ୍ରଗତି ପାଇଁ ବ୍ୟକ୍ତିର ସଚେତନତା, ଅବଦାନ ଓ କର୍ତ୍ତବ୍ୟ ରହିବା ଦରକାର ।

*      *      *      *      *      *      *



Digitized by srujanika@gmail.com

# ୭. ଭୌତିକ ବାଦ

ଦେଶରେ ଆତ୍ମମର୍ଯ୍ୟାଦା ଆନ୍ଦୋଳନ ଆରମ୍ଭ ପରଠାରୁ ଓ ବିଶେଷ କରି ଏହା କିଛିଟା ଲୋକପ୍ରିୟତା ହାସଲ ପରଠୁ ଲୋକମାନଙ୍କ ଭିତରେ କେତେକ ବୌଦ୍ଧିକ ଆଲୋଡନ ଦେଖାଦେଇଛି । ଅପର ପକ୍ଷରେ ଧର୍ମୋତ୍ସାହୀ ବ୍ୟକ୍ତି ବା ଧାର୍ମିକ ବିଶ୍ୱାସ ଦ୍ୱାରା ଉପକୃତ ହେଉଥିବା ବ୍ୟକ୍ତି ପ୍ରତିକ୍ରିୟାଶୀଳ ଭାବେ କେତେକ ବିରୋଧୀ ପ୍ରଚାର ମଧ୍ୟ ଆରମ୍ଭ କରିଛନ୍ତି । ବହୁକାଳରୁ ରହି ଆସିଥିବା ଭକ୍ତିବାଦ ଓ କୁସଂସ୍କାରକୁ ଆଧାର କରି ଯେଉଁ ପ୍ରତିପକ୍ଷ ପ୍ରଚାର କରାଯାଉଛି ତାହା କେତେକ ସମାଜ ସଂସ୍କାରକ ଓ ହେତୁବାଦୀ ମାନଙ୍କୁ ହତୋତ୍ସାହୀ ବା ଭୀତତ୍ରସ୍ତ କରୁଛି । ଏହି ସବୁ କାରଣରୁ ଇଶ୍ୱର, ଧର୍ମ ଇତ୍ୟାଦି ବିଶ୍ୱାସ ସଂପର୍କରେ ଆମର ଦୃଷ୍ଟିଭଙ୍ଗୀକୁ ସ୍ପଷ୍ଟ କରିବା ପାଇଁ ମୁଁ ସ୍ଥିର କଲି । ଏହାଦ୍ୱାରା ବାସ୍ତବ ହେତୁବାଦୀ ମାନେ ସନ୍ଦେହରୁ ମୁକ୍ତ ହେବେ ବା ସମ୍ଭାବ୍ୟ ବିପଦ ସଂପର୍କରେ ଅସଚେତନ ହେବେ ନାହିଁ ।

ପ୍ରଥମରୁ ଏହା କହି ରଖିବା ଆବଶ୍ୟକ ଯେ ଆମେ ଇଶ୍ୱର, ଧର୍ମ ଇତ୍ୟାଦି ବିଷୟରେ ଆଗ୍ରହୀ ନୋହୁଁ । ବରଂ ଯେଉଁ ସବୁ ବ୍ୟବସ୍ଥା ଆମକୁ ସୁଖ, ଜ୍ଞାନ ଓ ସ୍ୱାଧୀନତାଠାରୁ ବଞ୍ଚିତ କରି ରଖିଛି ଆମେ ସେ ସବୁ ଶୃଙ୍ଖଳକୁ ଭାଙ୍ଗିବାକୁ ଚାହୁଁ । ଆତ୍ମସମ୍ମାନକାରୀ ମାନେ ରହସ୍ୟ, ମେଜିକ, ଇଶ୍ୱର ବା ଧର୍ମ ଇତ୍ୟାଦି ବିଷୟରେ ଅନୁସନ୍ଧାନ କରିବାର ଆବଶ୍ୟକତା ନାହିଁ । ବରଂ ଆମକୁ ଆମର ଲକ୍ଷ୍ୟଠାରୁ ଦୂରେଇ ନେବା ପାଇଁ ସେମାନେ ସର୍ବଦା ଏହି ପ୍ରସଙ୍ଗକୁ ଆଣିଥାନ୍ତି । ଆମର ଲକ୍ଷ୍ୟ ସାମାଜିକ ନ୍ୟାୟ, ସମତା ଓ ମାନବିକ ଅଧିକାର ।

**ଅଜ୍ଞତା କାରଣରୁ**

ଏହା ବିଶ୍ୱାସ କରାଯାଏ ଯେ ଯେଉଁମାନେ ପୁରାଣ ବର୍ଣ୍ଣିତ ଚରିତ୍ରମାନଙ୍କୁ ଇଶ୍ୱର କହି ପୂଜା କରୁଛନ୍ତି ସେମାନେ ଆସ୍ତିକ ଓ ଅନ୍ୟମାନେ ଧର୍ମବିରୋଧୀ ବା ନିରୀଶ୍ୱରବାଦୀ । ପ୍ରଥମେ ବୁଝିବା ଆବଶ୍ୟକ ଯେ ଏହି ଇଶ୍ୱର ଓ ଧର୍ମ କ'ଣ,

Digitized by srujanika@gmail.com

ସେସବୁର ସୃଷ୍ଟି କାହିଁକି ହୋଇଛି! ସେଗୁଡିକ ଭୟ, ଭଲ ନା ମନ୍ଦ ଉଦ୍ଦେଶ୍ୟରୁ ନା ଅଜ୍ଞତାରୁ ସୃଷ୍ଟି ହୋଇଛି ଏହା ଜାଣିବା ଦରକାର। ପ୍ରଥମେ ଈଶ୍ୱରଙ୍କ ସ୍ୱରୂପ କଣ, ସେ ନାମ ଓ ରୂପ ନଥିବା ଏକ ବ୍ୟକ୍ତି ସତ୍ତା ବୋଲି ଯାହା କୁହାଯାଇଛି ତାହା ଅର୍ଥପୂର୍ଣ୍ଣ କି ? ସେହିପରି ଧର୍ମ ମଣିଷ ସମାଜ ପାଇଁ କେତେ ଆବଶ୍ୟକ? ଧର୍ମ ମଣିଷ ଜାତିକୁ କିପରି ନାନା ଭାବରେ ବିଭାଜିତ କରି ଦେଇଛି ତାହାର ବିସ୍ତୃତ ବ୍ୟାଖ୍ୟା ଏଠାରେ ଆବଶ୍ୟକ ନାହିଁ। ପ୍ରତ୍ୟେକ ଧର୍ମର ପ୍ରବକ୍ତାମାନେ ଅନେକ ଶକ୍ତି, ସମୟ, ଅର୍ଥ ବ୍ୟୟ କରି କେତେକ ଲୋକଙ୍କୁ ନିଜର ବିଶ୍ୱାସ ଓ ଅଭ୍ୟାସ ବା ଆଚାର ପ୍ରତି ଆକର୍ଷିତ କରିଛନ୍ତି ଓ ପରସ୍ପର ପ୍ରତି ବିରାଗଭାବ ସୃଷ୍ଟି କରିଛନ୍ତି। ପରିଣାମତଃ ସେମାନେ ନିଜର ଈଶ୍ୱର, ଗୋଷ୍ଠୀ, ପ୍ରଫେଟ ବା ଧର୍ମପ୍ରବକ୍ତା ଓ ବିଶ୍ୱାସକୁ ଧରି ରଖିବାକୁ ପ୍ରୟାସୀ ହୋଇଛନ୍ତି। ତେବେ ନିଜର କଳ୍ପିତ ଈଶ୍ୱର, ଗୋଷ୍ଠୀ ଓ ବିଶ୍ୱାସକୁ ପ୍ରଜ୍ଞା, ନ୍ୟାୟ ଓ ସତ୍ୟ ଆଧାରରେ ସେମାନେ କେହି ପ୍ରତିଷ୍ଠା କରିପାରି ନାହାନ୍ତି।

**ଶିଶୁଙ୍କୁ ଈଶ୍ୱର ଶିକ୍ଷା**

ମଣିଷ ମନକୁ ଈଶ୍ୱର ଭାବନା କିପରି ଆସିଲା ଦେଖାଯାଉ। ମଣିଷମାନଙ୍କର ବୃଦ୍ଧି ସହ ଚିନ୍ତା କରିବାର ସାମର୍ଥ୍ୟରୁ ମଣିଷ ଈଶ୍ୱରଙ୍କୁ କଳ୍ପନା କରିଛି। ଏବେ ବି ମଣିଷକୁ ଯେତେବେଳେ ଈଶ୍ୱରଙ୍କ ବିଷୟରେ କୁହାଯାଉଛି ବା ଶିକ୍ଷା ଦିଆଯାଉଛି, ତାପରେ ତାର ଈଶ୍ୱର ଭାବନା ନେଇ କିଛି ଧାରଣା ଉତ୍ପନ୍ନ ହେଉଛି। ଶିଶୁ ଅବସ୍ଥାରୁ ପରିବାରରୁ ବା ସାମାଜିକ ପରିବେଶରୁ ଏହି ଧାରଣା ଜଣେ ପ୍ରାପ୍ତ ହେଉଛି ଓ ଏହା ତାର ମନରୁ ସୃଷ୍ଟି ହେଉନାହିଁ। ଛୋଟ ପିଲାମାନଙ୍କୁ ଯେତେବେଳେ ବିଭିନ୍ନ ଦିଅଁ ଦେବତାର ଫଟୋ ଦେଖାଯାଉଛି ଓ ବୟସ୍କ ଲୋକମାନେ ସେସବୁକୁ ପୂଜା କରୁଛନ୍ତି, ପିଲାମାନେ ତାର ପ୍ରଭାବରେ ଈଶ୍ୱର ଧାରଣା ମନକୁ ଆଣୁଛନ୍ତି ଓ ସେମାନେ ବି ହାତଯୋଡି ପ୍ରାର୍ଥନା କରିବା ଶିଖୁଛନ୍ତି। ପ୍ରାଚୀନ ଯୁଗର ମଣିଷ ମନରେ ଈଶ୍ୱର ଭାବନା କିପରି ସୃଷ୍ଟି ହେଲା ତାହାର ନାନା ମନସ୍ତାତ୍ତ୍ୱିକ ବିଶ୍ଲେଷଣ ହୋଇଛି। ମଣିଷର ଜନ୍ମ ପରେ ତାହାର ବିଚାର ଶକ୍ତିର ଯଥୋଚିତ

Digitized by srujanika@gmail.com

ବିକାଶ ପୂର୍ବରୁ ମଣିଷ ଈଶ୍ୱର ବିଷୟରେ କଳ୍ପନା କରିଛି । ବିଶ୍ୱର ସୃଷ୍ଟି, ସ୍ଥିତି ଓ ପ୍ରଳୟ ଈଶ୍ୱରଙ୍କ ନିର୍ଦ୍ଦେଶରେ ହେଉଥିବା ସେ କଳ୍ପନା କରିଛି ।

**ଶକ୍ତିର କଳ୍ପନା କେବେ ଆସିଲା?**

ଆଦିମ ମଣିଷ ମନରେ କେବେ ଓ କିପରି ଆଦି ଶକ୍ତିର ଭାବନା ଆସିଲା ଯାହାକୁ ସେ ଈଶ୍ୱର ବୋଲି କଳ୍ପନା କଲା, ତାହା ମଧ୍ୟ ପ୍ରଶ୍ନ ଭାବରେ ଆସେ । ଆମ ଦେଶରେ ନାନା ଦେବ-ଦେବୀ ଭାବନାରୁ ଆମେ ଏହାକୁ କଳ୍ପନା କରିପାରିବା । ଆମ ଦେଶରେ ଧରିତ୍ରୀ, ପର୍ବତ, ବାୟୁ, ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ନଦୀ, ତାରା, ବର୍ଷା, ବିଜୁଳି, ମାରାତ୍ମକ ରୋଗ, ବିରାଟକାୟ ପଶୁ ଇତ୍ୟାଦିଙ୍କୁ ଈଶ୍ୱର ବୋଲି ମଣିଷ ଭାବୁଥିଲା । ଯେତେବେଳେ ଏସବୁର ସ୍ୱରୂପ ନେଇ ମଣିଷର ଜ୍ଞାନ ନ ଥିଲା ମଣିଷ ଏ ସବୁକୁ ଭୟ କରି ସେମାନଙ୍କୁ ଈଶ୍ୱରର ରୂପ ଦେଇଥିଲା । ହିମାଳୟ ଈଶ୍ୱରଙ୍କ ବାସସ୍ଥଳୀ ଭାବି ସେ ହିମାଳୟକୁ ପୂଜା କରୁଥିଲା ଓ ଭାବୁଥିଲା ଯେ ହିମାଳୟ ମସ୍ତିଷ୍କରୁ ନଦୀମାନଙ୍କର ଉତ୍ପତ୍ତି ହୋଇଛି । ହିମାଳୟ ପରପାର୍ଶ୍ୱରେ ରହିଥିବା ସ୍ଥାନ ବିଷୟରେ ତାର କିଛି ଧାରଣା ନଥିବାରୁ ସେ ସବୁକୁ ସେ ସ୍ୱର୍ଗଭୂମି ଭାବୁଥିଲା । ଏପରିକି ଦକ୍ଷିଣ ଭାଗକୁ ପାତାଳ ଲୋକ ଓ ପୂର୍ବଭାଗକୁ ନାଗଲୋକ ବୋଲି ସେ କଳ୍ପନା କରିଥିଲା ।

ଏବେ ବି ଯେଉଁ ସବୁ ଘଟଣା ତାର ଭାବନାର ବହିର୍ଭୂତ ବା ଯାହାକୁ ସେ ବ୍ୟାଖ୍ୟା କରିପାରୁ ନାହିଁ ସେ ସବୁକୁ ସେ ଦେବତ୍ୱ ଆରୋପ କରୁଛି । କେତେକ ହାତ ସଫେଇ ଯାଦୁକୁ ଅଜ୍ଞ ଓ ନିରକ୍ଷର ଲୋକମାନେ ଦୈବୀ କାର୍ଯ୍ୟ ବୋଲି କଳ୍ପନା କରନ୍ତି, କାରଣ ସେମାନଙ୍କୁ ଏସବୁ ରହସ୍ୟଜନକ ବା ଆଶ୍ଚର୍ଯ୍ୟଜନକ ମନେହୁଏ । ଆମେମାନେ ଏହାକୁ କୌଶଳପୂର୍ଣ୍ଣ ହାତସଫେଇ ଓ ହସ୍ତଚାଳନା ପୂର୍ଣ୍ଣ ଭେଳିକି ବୋଲି ମନେକରୁଛେ । କିନ୍ତୁ ଆମେ ଏହାକୁ ରହସ୍ୟ ପୂର୍ଣ୍ଣ ଦୈବୀ କାର୍ଯ୍ୟ ବୋଲି ମନେ କରୁନାହେଁ, ଯେଉଁ କାର୍ଯ୍ୟ ଜଣକୁ ରହସ୍ୟମୟ ଚମତ୍କାରିତା ବୋଲି ମନେ ହେଉଥିଲା । ସେ ଯେତେବେଳେ ନିଜେ ନିଜର ବୁଦ୍ଧି ପ୍ରୟୋଗ କରି ଏହାର ସତ୍ୟତା ଜାଣିପାରୁଛି ସେ ଏହାକୁ ସାଧାରଣ ଘଟଣା ବୋଲି ନେଉଛି ।

Digitized by srujanika@gmail.com

ସେହିପରି ଯେଉଁ ଘଟଣା ଜଣେ ସାଧାରଣ ବ୍ୟକ୍ତିକୁ ରହସ୍ୟମୟ ମନେହୁଏ, ସେହି ଘଟଣା ଜଣେ ବୈଜ୍ଞାନିକଙ୍କୁ ସାଧାରଣ ପ୍ରତୀତ ହୁଏ। ସେହିପରି ଯେଉଁ ଘଟଣା ପୂର୍ବଦେଶର ଲୋକମାନଙ୍କୁ ଆଶ୍ଚର୍ଯ୍ୟଜନକ ଈଶ୍ୱରୀୟ କାର୍ଯ୍ୟ ବୋଲି ମନେହୁଏ ତାହା ପାଶ୍ଚାତ୍ୟ ଦେଶର ଲୋକଙ୍କ ପାଇଁ ବୋଧଗମ୍ୟ ସତ୍ୟ ବୋଲି ଜଣାପଡେ।

## ସୂର୍ଯ୍ୟ ଚନ୍ଦ୍ରକୁ ସର୍ପ ଗ୍ରାସ

ଅତୀତରେ ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ ଘଟଣାକୁ ଏକ ଅଦୃଶ୍ୟ ମନ୍ଦଶକ୍ତିର ପ୍ରକାଶ ବୋଲି ଲୋକମାନେ ଭାବୁଥିଲେ। ବିକଟାକାର ସର୍ପ ରାହୁ କେତୁ ମଝିରେ ମଝିରେ ଆବିର୍ଭୂତ ହୋଇ ସୂର୍ଯ୍ୟ ଚନ୍ଦ୍ରକୁ ଗ୍ରାସ କରିବାଦ୍ୱାରା ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ ହେଉଛି ବୋଲି ଲୋକ ଭାବୁଥିଲେ। ଆମ ପୁରାଣ ବର୍ଣ୍ଣନାନୁଯାୟୀ ସୂର୍ଯ୍ୟ ଏକ ଅଭିଶାପ ଯୋଗୁଁ ମଝିରେ ମଝିରେ ରାକ୍ଷସଦ୍ୱାରା ଗ୍ରାସ ହୁଏ ଓ ସୂର୍ଯ୍ୟ ଦେବତାଙ୍କୁ ବିପଦରୁ ରକ୍ଷା କରିବା ପାଇଁ ଲୋକମାନେ ସ୍ନାନକରି ଈଶ୍ୱରଙ୍କୁ ପ୍ରାର୍ଥନା କରିବା ଦରକାର। ଯେତେବେଳେ ଜ୍ୟୋତିର୍ବିଜ୍ଞାନ ବିଷୟରେ କୌଣସି ଧାରଣା ସୃଷ୍ଟି ହୋଇନଥିଲା, ଲୋକମାନେ ଏହି ସବୁ ବିଶ୍ୱାସ ସୃଷ୍ଟି କରିଥିଲେ। ସେହିପରି ବର୍ଷା, ବାଦଲ, ମେଘ ଇତ୍ୟାଦିକୁ ଲୋକମାନେ ଈଶ୍ୱର ଭାବି ପ୍ରାର୍ଥନା କରୁଥିଲେ। ତେବେ ଜଳଚକ୍ର, ବାଦଲ କିପରି ସୃଷ୍ଟି ହୁଏ, ବର୍ଷା କିପରି ହୁଏ ଇତ୍ୟାଦିର କାରଣକୁ ଜାଣିବା ପରେ ଲୋକମାନେ ସେସବୁକୁ ଆଉ ପ୍ରାର୍ଥନା କରୁ ନାହାନ୍ତି।

## ବାରୁଦ ଓ ଈଶ୍ୱର

ଅତୀତରେ ମହାମାରୀ ରୋଗ ସବୁ ହେଉଥିଲା। ମହାମାରୀ ରୋଗମାନଙ୍କର କାରଣ ଜଣା ନଥିବା ବେଳେ ଅଜ୍ଞତାବଶତଃ ଲୋକମାନେ କେତେ ଦେବ-ଦେବୀଙ୍କୁ କଳ୍ପନା କରିଥିଲେ। ହଇଜା, ବସନ୍ତ, ପ୍ଲେଗ ରୋଗରେ ଆଗେ ବହୁ ଲୋକ ମୃତ୍ୟୁବରଣ କରୁଥିବାରୁ ଲୋକମାନେ କେତେ ଦିଅଁ ଦେବତାଙ୍କୁ ପୂଜା କରୁଥିଲେ। ତେବେ ସ୍ୱାସ୍ଥ୍ୟରକ୍ଷା ସଂପର୍କୀୟ ଜ୍ଞାନ ଓ ଔଷଧ ଇତ୍ୟାଦି ବାହାରିବାରୁ ଲୋକମାନେ ଦେବ-ଦେବୀ ପୂଜାର ଭାବନା କ୍ରମେ କ୍ରମେ କମାଇଲେ। ସେହିପରି ଆଗେ ବାଘ, ଭାଲୁର ଭୟରେ ଲୋକମାନେ ଭୀତତ୍ରସ୍ତ ହୋଇ ରହୁଥିଲେ।

Digitized by srujanika@gmail.com

ଯେତେବେଳେ ବାରୁଦ, ବନ୍ଧୁକ ଇତ୍ୟାଦିର ଜ୍ଞାନ ଆସିଲା ଲୋକମାନେ ସେ ଭୟରୁ ମୁକ୍ତ ହେବାକୁ ଲାଗିଲେ। ସେହିପରି ଯାହା ମଣିଷ ବୁଦ୍ଧିର ଅଗୋଚର ତାହା ଦୈବୀ ଶକ୍ତି ବୋଲି ଧାରଣା ସମାଜରେ ରହିଛି। ତେବେ ବିଜ୍ଞାନ ଓ ପ୍ରଯୁକ୍ତିଜ୍ଞାନର ବିକାଶ ସହ ସେସବୁ ଧାରଣା ସମାଜରୁ ଲୋପ ପାଇବ ବୋଲି ଆଶା କରାଯାଏ। ଯାହା ଜଣଙ୍କ ପାଇଁ ଦିବ୍ୟ ଓ ଏକ ଚମତ୍କାରିତା, ତାହା ଅନ୍ୟ ପାଇଁ ଏକ ସାଧାରଣ ଘଟଣା। ତେବେ ବିଚାର ଓ ଜ୍ଞାନର ପରିବ୍ୟାପ୍ତି ଉପରେ ତାଙ୍କର ବିଶ୍ୱାସ ରୂପ ନେଇଥାଏ।

## ଆବେଗପୂର୍ଣ୍ଣ ଶାନ୍ତି

ଯେତେବେଳେ ପାଶ୍ଚାତ୍ୟ ଲୋକମାନେ କୌଣସି ଯନ୍ତ୍ରର ଉଦ୍‌ଭାବନ କରୁଛନ୍ତି ଯାହା ଆମେ ଜାଣି ନାହୁଁ, ଆମେ ପାଶ୍ଚାତ୍ୟ ବୈଜ୍ଞାନିକଙ୍କୁ ଦୈବୀ-ଶକ୍ତି ସଂପନ୍ନ ବୋଲି ଅନୁମାନ କରୁନାହୁଁ। ଜ୍ଞାନର ବିକାଶ ଓ ପ୍ରସାର ଧୀରେ ଧୀରେ ବିଶ୍ୱବ୍ୟାପୀ ହେବାରେ ଲାଗିଛି। ତେବେ ଯେପର୍ଯ୍ୟନ୍ତ ପୃଥିବୀ ସଂପର୍କରେ ପୂର୍ଣ୍ଣ ଓ ବାସ୍ତବ ଜ୍ଞାନ ସମ୍ଭବ ହୋଇ ନାହିଁ, ଈଶ୍ୱର ଭାବନା ସମାଜରେ କେତେକଙ୍କ ପାଖରେ ରହିବ। କଠିନ ପରିଶ୍ରମ ପରେ ନିଜର ଲକ୍ଷ୍ୟ ଦିଗରେ ଯିଏ ବିଫଳ ହେଉଛି ବା ନିଜର କ୍ଷତି ଭରଣା ପାଇଁ ଯେ ସମର୍ଥ ହୋଇପାରୁ ନାହିଁ ସେମାନେ ପରିଣାମକୁ ଭାଗ୍ୟ, ଈଶ୍ୱରଙ୍କ ଇଚ୍ଛା ଇତ୍ୟାଦି କହି କିଛି ଆବେଗପୂର୍ଣ୍ଣ ଶାନ୍ତି ପାଇପାରନ୍ତି।

## ବିଫଳତା ସଫଳତା ପାଇଁ ନିନ୍ଦା ପ୍ରଶଂସା

ଆମ ଦୃଷ୍ଟିର ଅନ୍ତରାଳରେ ଏକ ସତ୍ତା ରହି ସବୁ କିଛିକୁ ନିୟନ୍ତ୍ରଣ କରୁଛି ବୋଲି ଏକ ବିଶ୍ୱାସରୁ କେତେକ ଲୋକ କିଛି ମନସ୍ତାତ୍ତ୍ୱିକ ପ୍ରେରଣା ପାଉଛନ୍ତି। ସେମାନେ ଭାବନ୍ତି ଯେ ସେହି ସତ୍ତା ସେମାନଙ୍କୁ ବିପଦବେଳେ ସହାୟକ ହେବ। କିନ୍ତୁ ଅନ୍ୟ କେତେକ ଅଛନ୍ତି ଯେଉଁମାନେ ପ୍ରକୃତିର ରହସ୍ୟକୁ ବୁଝିବାକୁ ପ୍ରୟାସ କରନ୍ତି, ମଣିଷର ସୀମାକୁ ଅନୁଭବ କରନ୍ତି ଓ କେତେକ ବିଷୟ ବୁଦ୍ଧିର ବହିର୍ଭୂତ ବା ଆମ ନିୟନ୍ତ୍ରଣ ବାହାରେ ବୋଲି ସ୍ପଷ୍ଟ ଧାରଣା କରନ୍ତି। ଈଶ୍ୱର, ଦେବତ୍ୱ ସଂପର୍କୀୟ ଧାରଣା ବୈଜ୍ଞାନିକ ସଚେତନତା ଆଧାରରେ ବିଭିନ୍ନ ଲୋକଙ୍କ ପାଖରେ

Digitized by srujanika@gmail.com

ଭିନ୍ନ ଭିନ୍ନ ହୋଇପାରେ । ସେହିପରି ଜୀବନର ସଫଳତା ବା ବିଫଳତା ନେଇ କୌଣସି ଈଶ୍ୱରଙ୍କୁ ପ୍ରଶଂସା ବା ନିନ୍ଦା କରିବା ବ୍ୟକ୍ତିର ମାନସିକ ସାମର୍ଥ୍ୟ ଓ ବୌଦ୍ଧିକ ବିକାଶ ଉପରେ ନିର୍ଭର କରେ ।

ପ୍ରକୃତିର ବହୁ ରହସ୍ୟକୁ ବିଜ୍ଞାନ ବ୍ୟାଖ୍ୟା କରିବାକୁ ସମର୍ଥ ହୋଇଛି । ଯାହା ଏକଦା ଚମତ୍କାର ବା ରହସ୍ୟମୟ ବୋଧ ହେଉଥିଲା ତାହା ବିଜ୍ଞାନ ପରିସରରେ ବ୍ୟାଖ୍ୟା ହେବା ସମ୍ଭବ ହେଉଛି । ଜ୍ଞାନର ଯେତିକି ବିକାଶ ହେଉଛି ଈଶ୍ୱରଙ୍କ ଉପରେ ଆସ୍ଥା ସେତିକି ହ୍ରାସ ହେବାରେ ଲାଗିଛି । ଯେଉଁଠି ବିଜ୍ଞାନର ବିକାଶ ହୋଇ ନାହିଁ, ସେଠାରେ ଈଶ୍ୱର-ଜନିତ ବିଶ୍ୱାସ ବଦ୍ଧମୂଳ ହୋଇ ରହିଛି । ଯେଉଁ କ୍ଷେତ୍ରରେ ହେତୁବାଦ ବା ବିଚାରଶୀଳ ଦୃଷ୍ଟି ଭିତ୍ତି ନେଇ ନାହିଁ, ସେଠାରେ ସବୁ କିଛି ଈଶ୍ୱର କୈନ୍ଦ୍ରିକ ବୋଲି ଧାରଣା ଦୃଢ ହୋଇ ରହିଛି । ଆମ ପରିବେଶରେ ଲୋକଙ୍କ ପାଖରେ ଈଶ୍ୱରଙ୍କର ଅଭିବ୍ୟକ୍ତି ହେଉଛି ବୋଲି ପ୍ରଚାର କରାଯାଏ । ଏହି ବିଶ୍ୱାସ ଯେ ଆଦିମ ଲୋକଙ୍କ ବିଶ୍ୱାସଠାରୁ ପୃଥକ ନୁହେଁ ଏହା କୁହାଯାଇପାରେ । ଆଦିମ ଲୋକମାନେ ତାଙ୍କର ଅଜ୍ଞତା ଯୋଗୁଁ ଯେପରି କେତେ ଦେବ-ଦେବୀରେ ବିଶ୍ୱାସ କରୁଥିଲେ, ଆଜି ବି ସେହି ଅଜ୍ଞତା ଅତି ବ୍ୟାପକ ଭାବରେ ନୂଆ ରୂପ ନେଇ ସମାଜରେ ତିଷ୍ଠି ରହିଛି । ଦିଅଁ, ଦେବତା, ଈଶ୍ୱର ଇତ୍ୟାଦି ଭାବନାକୁ ନେଇ କେତେ କାଳ୍ପନିକ କାହାଣୀମାନଙ୍କୁ ଜନସମାଜରେ ପ୍ରସାର କରାଯାଉଛି । ଆଧୁନିକ ଯୁଗରେ ବି ଆମର ମାନସିକତା ଆଦିମ ସ୍ତରରେ ରହିଛି ।

## ପୁରାଣରୁ ବିଶ୍ୱାସ ତୁଟିବାରେ ଲାଗିଛି

ଅତୀତରେ ପୁରାଣର କାହାଣୀମାନଙ୍କୁ ପୃଥିବୀରେ ଈଶ୍ୱରଙ୍କ ସତ୍ୟ ଘଟଣା ବୋଲି ଯେଉଁ ବିଶ୍ୱାସ ଥିଲା, ସେଥିରେ ଆସ୍ତେ ଆସ୍ତେ ପରିବର୍ତ୍ତନ ଆସୁଛି । ତେବେ କେତେକ ଲୋକ ନିଜର ଅଜ୍ଞତାକୁ ଘୋଡାଇବାକୁ ଓ ନିଜର ନିହିତ ସ୍ୱାର୍ଥକୁ ଲୁଚାଇବାକୁ ସେମାନେ ପୁରାଣ ଭିତରେ ବିଜ୍ଞାନକୁ ପ୍ରବେଶ କରାଇବାକୁ ବି ଅପଚେଷ୍ଟା କରୁଛନ୍ତି । ବିଜ୍ଞାନ ଯେଉଁ ଘଟଣାକୁ ଅସତ୍ୟ ବୋଲି ପ୍ରତିପାଦିତ କରି ସାରିଲାଣି, ତାହାକୁ ସ୍ୱୀକାର କରିବାକୁ ଲୋକମାନେ ମଧ୍ୟ ଆଉ ପ୍ରସ୍ତୁତ

Digitized by srujanika@gmail.com

ହେଉନାହାନ୍ତି । ସେପରି ସ୍ଥଳେ କିଛି ବ୍ୟକ୍ତି ନିଜର ସ୍ୱାର୍ଥସିଦ୍ଧି ପାଇଁ ଅବୈଜ୍ଞାନିକ କଥା ବି ପ୍ରଚାର କରୁଛନ୍ତି । କୃତ୍ରିମ ବର୍ଷା, ମୃତ୍ୟୁ ସହ ସଂଘର୍ଷ କରୁଥିବା ଲୋକର ଜୀବନ ରକ୍ଷା, ରେଡିଓ, ସିନେମା ଇତ୍ୟାଦି ମଣିଷର ବୌଦ୍ଧିକ ସାମର୍ଥ୍ୟର ଚିତ୍ର ପ୍ରଦାନ କରିଥାଏ । ପ୍ରକୃତି ଉପର ମଣିଷର କ୍ରମବର୍ଦ୍ଧିଷ୍ଣୁ ନିୟନ୍ତ୍ରଣ ଯେ ବଢିଚାଲିଛି ଏହା ଆଜି ସ୍ୱୀକୃତ । ସାଧାରଣ ଲୋକମାନେ ବି ମଣିଷର ଏହି ସାମର୍ଥ୍ୟ ଓ ବୈଜ୍ଞାନିକ ସଫଳତାକୁ ଅନେକାଂଶରେ ଉପଲବ୍ଧି କଲେଣି । ତେବେ ପରଂପରା, କୁସଂସ୍କାର ଉପରେ ସେମାନଙ୍କର ବିଶ୍ୱାସ ବାଧାପ୍ରାପ୍ତ ହୋଇଥିଲେ ବି ସେସବୁ ସଂପୂର୍ଣ୍ଣ ଦୂର ହୋଇପାରି ନାହିଁ ।

ବୁଦ୍ଧିମାନ ଲୋକ କେତେକ ସମୟରେ ନିଜର ଔଦ୍ଧତ୍ୟ ପ୍ରକାଶ କରିଥାଏ । ନିଜକୁ ସର୍ବଜ୍ଞ ମନେକରି ନିଜର ଅଜ୍ଞତାକୁ ସ୍ୱୀକାର କରେ ନାହିଁ । କୌଣସି ବିଷୟ ତାଙ୍କ ଜ୍ଞାନର ବହିର୍ଭୂତ ହେଲେ ସେ ଈଶ୍ୱରଙ୍କର ଆଶ୍ରୟ ନେଇଥାନ୍ତି । ଏହି ମାନସିକତାକୁ ପରିବର୍ତ୍ତନ କରିବା ସହଜ ନୁହେଁ ଯଦି ପ୍ରତିପକ୍ଷ ବେଶ୍ ବୁଦ୍ଧିମାନ ନୁହେଁ । କେତେକ ବ୍ୟକ୍ତି ନିଜର ସ୍ୱାର୍ଥ ପାଇଁ କୁସଂସ୍କାର ତିଷ୍ଠି ରହିବା ଚାହାନ୍ତି । ସେମାନେ ନିଜର ବିଶ୍ୱାସ ଅସତ୍ୟ ଜାଣିଲେ ମଧ୍ୟ ସେମାନଙ୍କର ଶୋଷଣ ପାଇଁ କୁସଂସ୍କାରକୁ ପ୍ରସାର କରିଥାନ୍ତି । ଧାର୍ମିକ ଆବେଗ ଓ କୁସଂସ୍କାର ଯେତେ ଅଧିକ ରହିବ, କିଛି ଲୋକ ତାର ସୁଯୋଗ ନେବେ । ସୁତରାଂ ସେମାନଙ୍କର ବ୍ୟବସାୟ ପାଇଁ ଓ ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି ପାଇଁ ସେମାନେ କୁସଂସ୍କାର ବ୍ୟାପକ ହେବା ଚାହାନ୍ତି ବା ତାହା ପ୍ରସାର କରିବାକୁ ପ୍ରୟାସ କରିଥାନ୍ତି ।

## ମଣିଷର ପ୍ରଥମ ତ୍ରୁଟି

ଏକ ଆଦିମ ଯାଯାବର ଜୀବନରୁ ମଣିଷ ଯେତେବେଳେ କ୍ଷୁଦ୍ର ଗୋଷ୍ଠୀ ଭିତରେ ଗ୍ରାମୀଣ ଜୀବନ ଆରମ୍ଭ କଲା ସେ ଗୋଷ୍ଠୀ ଜୀବନ ପାଇଁ କେତେକ ଶୃଙ୍ଖଳାର ଆବଶ୍ୟକତା ଅନୁଭବ କଲା । ଶୃଙ୍ଖଳା ବ୍ୟତୀତ ସହଯୋଗୀ ପୂର୍ଣ୍ଣ ଗୋଷ୍ଠୀ ଜୀବନ ବା ସଂଘବଦ୍ଧ ଜୀବନ ସମ୍ଭବ ନୁହେଁ ବୋଲି ତାର ଧାରଣା ହେଲା । କେତେକ ଶୃଙ୍ଖଳିତ ଆଚରଣ ଧୀରେ ଧୀରେ ଧାର୍ମିକ ଚେତନାକୁ ବିକାଶ

Digitized by srujanika@gmail.com

କରାଇଲା । ନୈତିକ ଶୃଙ୍ଖଳାର ଉଲଂଘନ ପାଇଁ ସେ ଶାସ୍ତିବିଧାନ ଭାବନା ସୃଷ୍ଟି କଲା । ଯେତେବେଳେ ଦଣ୍ଡ ବ୍ୟବସ୍ଥା ଯଥାର୍ଥ ଭାବେ ଫଳପ୍ରଦ ହେଲା ନାହିଁ ବା କେତେକ ଲୋକ ବ୍ୟକ୍ତିଗତ ସ୍ତରରେ ସେ ନିୟମର ଉଲଂଘନ ବା ତାହାର ବିରୁଦ୍ଧାଚରଣ କଲେ, ମୁଖିଆ ଲୋକମାନେ ସାଧାରଣ ହିତ ପାଇଁ ବା ନିଜର ସ୍ୱାର୍ଥ ପାଇଁ କିମ୍ବା ଉଭୟ ପାଇଁ ଏହି ନିୟମ ଈଶ୍ୱରଦତ୍ତ କହିବାକୁ ଲାଗିଲେ । ଈଶ୍ୱରଙ୍କ ଆଜ୍ଞା ଅବଜ୍ଞା କଲେ ଦୈବୀ ଦଣ୍ଡ ମିଳିବ କହିବାରୁ ସମାଜରେ ଶୃଙ୍ଖଳା ରକ୍ଷା କରିବା ସହଜ ଓ ସରଳ ହେଲା । କାଳକ୍ରମେ ଶାସକ ଗୋଷ୍ଠୀ ଧର୍ମ, ଈଶ୍ୱର ନାମରେ ଲୋକମାନଙ୍କୁ ପ୍ରଭାବିତ ଓ ଅଧସ୍ତନ କରିବା ସହଜ ବୋଲି ଜାଣିଲେ । ସକଳ ନିୟମ ଈଶ୍ୱର ସୃଷ୍ଟ ଓ ନିୟମର ଉଲଂଘନ ଦ୍ୱାରା ବା ଅବମାନନା ଦ୍ୱାରା ଈଶ୍ୱରଙ୍କ ଦଣ୍ଡର ଶିକାର ହେବାକୁ ହେବ, ତାହା ଏବେ ହେଉ, ମୃତ୍ୟୁ ପରେ ହେଉ ବା ଆଗାମୀ ଜୀବନରେ ହେଉ । ଏହି ପ୍ରକାରର ଭାବନା ପୁରାତନ ଯୁଗରେ ଦୃଢ ଭିତ୍ତି ନେବା ସବୁ ସଭ୍ୟତାରୁ ସ୍ପଷ୍ଟ ଜଣାପଡେ । ଏହାହିଁ ମଣିଷ କୃତ ପ୍ରଥମ ତ୍ରୁଟି ଥିବା ମୋର ମନେହୁଏ ।

**ମୋ ଧର୍ମ ସତ୍ୟ ଓ ମହାନ :**

ଗୋଟିଏ ଦେଶର ଭୌଗଳିକ ପରିବେଶ, ଲୋକଚରିତ୍ର, ଯୁଗର ପ୍ରଭାବ ବା ଅନ୍ୟ ଭାବରେ କହିଲେ ସ୍ଥାନ, ପାତ୍ର ଓ କାଳ ସେ ସମୟର ନୈତିକ ଆଦର୍ଶକୁ ପ୍ରଭାବିତ କରିଥାଏ । ସମାଜର ସୁବିଧାବାଦୀ ଓ ଶକ୍ତିଶାଳୀ ଗୋଷ୍ଠୀ ସମାଜର ନୀତି, ନୈତିକତାକୁ ପ୍ରଭାବିତ କରିଥାନ୍ତି । ସାଧାରଣ ଲୋକଙ୍କର ସରଳତା ଓ ଅଜ୍ଞତା ଯୋଗୁଁ ସମାଜର ପ୍ରଭାବଶାଳୀ ଗୋଷ୍ଠୀ କ୍ଷୁଦ୍ର ହେଲେ ମଧ୍ୟ ସାମାଜିକ ଆଦର୍ଶ, ନୀତି ଇତ୍ୟାଦିକୁ ନିର୍ଣ୍ଣୟ କରିବାରେ ମୁଖ୍ୟ ଭୂମିକା ନେଇଥାନ୍ତି । କାଳକ୍ରମେ ଯେତେବେଳେ ସାମାଜିକ ନୀତି ନିୟମ କୌଣସି ଗୋଷ୍ଠୀକୁ ଉପଯୋଗୀ ହୁଏ ନାହିଁ ସେମାନେ ମୁଖ୍ୟ ଗୋଷ୍ଠୀରୁ ଦୂରେଇ ଯାଇ ଅନ୍ୟ ଜାଗାରେ କୌଣସି ଦୁର୍ବଳ ଶ୍ରେଣୀକୁ ହରାଇ ବା ରାଜ୍ୟ ବିସ୍ତାର କରି ସେଠାରେ ବସତି ସ୍ଥାପନ କରିଥାନ୍ତି । ସେଠାରେ କାଳକ୍ରମେ ନୂଆ ନିୟମ ବା ଧାର୍ମିକ ଶୃଙ୍ଖଳାର ଅଭ୍ୟୁଦୟ ହୁଏ, ଯାହା ପୂର୍ବ ଗୋଷ୍ଠୀଠାରୁ ଭିନ୍ନ ଅଟେ । ଏହିପରି ଧର୍ମ, ଆଦର୍ଶମାନ ସୃଷ୍ଟି ହେବା ଦେଖାଯାଏ ।

Digitized by srujanika@gmail.com

ଏହାପରେ ଧର୍ମାନ୍ଧ ଲୋକମାନେ "ମୋ ଧର୍ମ ଯଥାର୍ଥ ଓ ସତ୍ୟ" କହି ଧାର୍ମିକ ଆବେଗ ସୃଷ୍ଟି କରିଥାନ୍ତି । ଧର୍ମ ଗୋଷ୍ଠୀମାନଙ୍କ ମଧ୍ୟରେ କାଳକ୍ରମେ ଘୃଣା ଓ ସଂଘର୍ଷମୟ ପରିବେଶ ସୃଷ୍ଟି ହୁଏ ।

ଧର୍ମୋତ୍ସାହୀ ବ୍ୟକ୍ତିମାନେ ବା ସଂସ୍କାରକମାନେ ବେଳେବେଳେ ନିଜ ଗୋଷ୍ଠୀ ଭିତରେ ପୁରାତନ ନୀତି ବା ପ୍ରଥାକୁ ପ୍ରତ୍ୟାଖ୍ୟାନ କରନ୍ତି ନାହିଁ ବରଂ ସେସବୁକୁ ଏକ ନୂତନ ଧାରାରେ ବ୍ୟାଖ୍ୟା କରିଥାନ୍ତି । ଏହି ପ୍ରକ୍ରିୟାରେ ଧର୍ମଗୋଷ୍ଠୀ ଭିତରେ ନୂଆ ସଂପ୍ରଦାୟ ସୃଷ୍ଟି ହୁଏ । କାଳକ୍ରମେ ଧର୍ମଗୋଷ୍ଠୀ ଭିତରେ ନାନା ବିଭାଜନ ବା ନୂତନ ଗୋଷ୍ଠୀମାନ ସୃଷ୍ଟି ହୋଇ ବହୁ ଅସ୍ପଷ୍ଟତାର ଉଦ୍ଭବ ହୁଏ । ସତ୍ୟ ପ୍ରତିଷ୍ଠା ପରିବର୍ତ୍ତେ ନାନା ବିଶ୍ୱାସ, ନୂଆ ନୂଆ କର୍ମକାଣ୍ଡ ଓ ରୀତିନୀତିର ପରିପ୍ରକାଶ ଘଟେ । ଏହି ଧାରାରେ ପ୍ରତ୍ୟେକ ଧର୍ମ ସହ ନାନା ରୀତି ନୀତି, କର୍ମକାଣ୍ଡ, ପୂଜାପଦ୍ଧତି ମାନ ସଂଶ୍ଳିଷ୍ଟ ହେବା ଦେଖାଯାଏ । ପ୍ରତ୍ୟେକ ଧର୍ମର କେତେକ ସ୍ୱକୀୟ ବୈଶିଷ୍ଟ୍ୟ ଥିବା ଦେଖାଯାଏ ଓ ଏହି ଆଧାରରେ ଲୋକମାନଙ୍କର ଧର୍ମଗତ ଅସ୍ମିତା ପୃଥକ ହୋଇଥାଏ । ପ୍ରତ୍ୟେକ ଧର୍ମ ଗୋଷ୍ଠୀର ଆଦ୍ୟ ମୌଳିକ ବିଶ୍ୱାସ ସକଳ ସଂପୂର୍ଣ୍ଣ ଦୂର ନ ହୋଇ ବରଂ କାଳକ୍ରମେ ନୂଆ ନୂଆ ରୂପରେ ପରିପ୍ରକାଶ କରେ । ଏହି ନୂତନ ପରିପ୍ରକାଶ ହୁଏତ ମୂଳ ଲକ୍ଷ୍ୟ ବା ଆଦର୍ଶକୁ ବିରୋଧ କରିପାରେ, କିନ୍ତୁ ଏହା ସର୍ବଦା ଗୋଟିଏ ନ୍ୟସ୍ତ ସ୍ୱାର୍ଥ ଓ ପ୍ରଭାବଶାଳୀ ଗୋଷ୍ଠୀ ସ୍ୱାର୍ଥର ଅନୁକୂଳ ହୁଏ । ଏହା ହିଁ ସଂପ୍ରତି ଆମେ ପ୍ରତ୍ୟେକ ଧର୍ମଗୋଷ୍ଠୀ ଭିତରେ ଦେଖିବାକୁ ପାଏ । ଧାର୍ମିକ ରୀତି ନୀତିଦ୍ୱାରା ସମାଜର ଏକ କ୍ଷୁଦ୍ର ଗୋଷ୍ଠୀ, ପୂଜକ ଶ୍ରେଣୀ, ସର୍ବଦା ଉପକୃତ ହେବା ଓ ସମାଜର ଅଗଣିତ ମଣିଷ ଶୋଷିତ ହେବା ଦେଖାଯାଏ । ସମାଜର ଅଗଣିତ ମଣିଷ ଧାର୍ମିକ ଆବେଗରେ ସହଜରେ ଶୋଷଣ, ଠକାମି ଓ ଅତ୍ୟାଚାରର ଶିକାର ହୁଅନ୍ତି ଓ ସମାଜର କର୍ମଭୀରୁ ପୂଜକ ଗୋଷ୍ଠୀ ଉପକୃତ ହେବା ଦେଖାଯାଏ । ସମାଜର ପୂଜକ ଗୋଷ୍ଠୀ, ସମ୍ଭ୍ରାନ୍ତ ଓ ଧନୀକ ଗୋଷ୍ଠୀ ଧର୍ମର ଢାଲରେ ସେମାନଙ୍କର ସ୍ଥିତାବସ୍ଥା ସୁଦୃଢ଼ ରଖିବାକୁ ସମର୍ଥ ହୋଇଥାନ୍ତି ।

Digitized by srujanika@gmail.com

## ଧର୍ମ ଯୋଗୁଁ ଦୁଃଖ

ଯେଉଁମାନେ ମୁକ୍ତମନରେ ଚିନ୍ତା କରିବେ ସେମାନେ ଧର୍ମର ମନ୍ଦ ପ୍ରଭାବ ନେଇ ସଚେତନ ହୋଇପାରିବେ। ଏହା ମଣିଷର ବୌଦ୍ଧିକତାକୁ ଗଭୀର ଭାବେ ପ୍ରଭାବିତ କରିଥାଏ। ଧର୍ମାନ୍ଧ ହୋଇ ମଣିଷ ନିଜ ଈଶ୍ୱର ଓ ଧର୍ମ ଉପରେ ଆସ୍ଥା ସ୍ଥାପନ କରିବା ଦ୍ୱାରା ଅନ୍ୟ ଧର୍ମକୁ ସମାନ ଦୃଷ୍ଟିରେ ନିଏ ନାହିଁ କିମ୍ବା ଅନ୍ୟ ଧର୍ମର ଉପୁତ୍ତି ପାଇଁ ଈଶ୍ୱରଙ୍କୁ ଦୁର୍ନାମ କରିଥାଏ। କେହି ଏହି ପ୍ରଶ୍ନ ଉଠାନ୍ତି ନାହିଁ ଯେ ଈଶ୍ୱର କାହିଁକି ଏତେ ଧର୍ମ ସୃଷ୍ଟିକରି ଧର୍ମଗୋଷ୍ଠୀ ଭିତରେ ଏତେ ସଂଘର୍ଷ, ରକ୍ତପାତ ଓ ଅବିଶ୍ୱାସ ସୃଷ୍ଟି କରିଛନ୍ତି। ଏହି ସାଧାରଣ କଥାଟି ବିଶିଷ୍ଟ ଆଚାର୍ଯ୍ୟ, ମହାତ୍ମା ବା ଧର୍ମଗୁରୁ ମାନଙ୍କ ସୂକ୍ଷ୍ମ ବୁଦ୍ଧି ଭିତରେ ଉଠିବା ଦେଖାଯାଏ ନାହିଁ। ଅନ୍ୟ ପକ୍ଷରେ ପ୍ରତ୍ୟେକ ଧର୍ମ ପରଂପରାର ଧର୍ମଗୁରୁମାନେ ନିଜ ଧର୍ମର ବାଣୀକୁ ଅଲଂଘ୍ୟ ମନେ କରି ଈଶ୍ୱରଙ୍କ ସାନିଧ୍ୟ ପାଇଁ ନିଜକୁ ମଧ୍ୟସ୍ଥ କରି ତାଙ୍କ ଜରିଆରେ ଈଶ୍ୱର ପ୍ରାପ୍ତି ପାଇଁ ଲୋକମାନଙ୍କୁ କହିଥାନ୍ତି। ମଣିଷ ସମାଜରେ ଧର୍ମ କିପରି ଜନମାନସକୁ କଳୁଷିତ କରିଛି ତାହା ଧର୍ମକୁ ନେଇ ହୋଇଥିବା ଅସଂଖ୍ୟ ଯୁଦ୍ଧ ଓ ରକ୍ତପାତର ଇତିହାସରୁ ଜଣାପଡେ।

ଦ୍ୱିତୀୟରେ ମଣିଷ ସମାଜକୁ ଏକତ୍ର କରିବା ପରିବର୍ତ୍ତେ ଧର୍ମ ମଣିଷ ମଣିଷ ଭିତରେ ପ୍ରାଚୀର ସୃଷ୍ଟି କରିଛି। ପୁନଶ୍ଚ ଧାର୍ମିକ ଲୋକମାନେ ନୈତିକତା ବା ଉଚ୍ଚ ସାଂସ୍କୃତିକ ମୂଲ୍ୟବୋଧ ଦିଗରେ ଆଗ୍ରହୀ ନ ହୋଇ କେବଳ କର୍ମକାଣ୍ଡ, ପୋଷାକ ଭଳି ବାହ୍ୟ ଔପଚାରିକତାରେ ବେଶୀ ଆଗ୍ରହ ପ୍ରକାଶ କରିବା ଦେଖାଯାଏ। ଧର୍ମ ପରିସରରେ ବିଚାରଶୀଳ ଦୃଷ୍ଟିର ବିକାଶ ପରିବର୍ତ୍ତେ କେବଳ ବିଶ୍ୱାସର ପ୍ରାଧାନ୍ୟ ଉପରେ ଗୁରୁତ୍ୱ ଆରୋପ କରାଯାଏ। ଧର୍ମ କ୍ଷେତ୍ରରେ କେତେକ କଥାକୁ ବିଶ୍ୱାସ କରି ଅନ୍ୟ କଥାକୁ ସନ୍ଦେହ କରିବା ବା ସେସବୁର ତର୍କଶୀଳ ଆଧାର ଖୋଜିବା ସମ୍ଭବ ନୁହେଁ। ପ୍ରତ୍ୟେକ ଧର୍ମରେ କେତେକ ମଧ୍ୟସ୍ଥ ଥାନ୍ତି ଯେଉଁମାନେ ସାଧାରଣ ମଣିଷ ଓ ଈଶ୍ୱର ଭିତରେ ସେତୁ ଭଳି କାର୍ଯ୍ୟ କରନ୍ତି। ସେମାନେ ଦଲାଲଙ୍କ ପରି ସାଧାରଣ ମଣିଷକୁ ଶୋଷଣ କରନ୍ତି। ସେହିମାନେ ସାଧାରଣତଃ ପୂଜକ ଶ୍ରେଣୀର ବ୍ୟକ୍ତି ଯେଉଁମାନେ ସେମାନଙ୍କ ମର୍ଜି ଅନୁଯାୟୀ ଧର୍ମର ବ୍ୟାଖ୍ୟା କରନ୍ତି। ସେମାନେ ଧର୍ମର ଧ୍ୱଜାଧରି ସେହିମାନଙ୍କର ମତକୁ

Digitized by srujanika@gmail.com

ସାଧାରଣ ମଣିଷ ଉପରେ ଲଦି ଦିଅନ୍ତି । ଶେଷରେ ଜଣେ ଯେତେ ଅସାମାଜିକ ବ୍ୟକ୍ତି ହେଉ ନା କାହିଁକି ସେ ଯେଉଁ ପରିମାଣରେ ପୂଜକ ଗୋଷ୍ଠୀକୁ ଦାନ ଦିଏ ବା ମନ୍ଦିରରେ ଖର୍ଚ୍ଚ କରେ ତାର ମୁକ୍ତି ପାଇଁ ସେତିକି ନିର୍ଭର ପ୍ରତିଶ୍ରୁତି ଧର୍ମରୁ ପାଇଥାଏ । ଏହି ମାନସିକତାରୁ ଜଣେ ନାନା ଅସତ୍ ଉପାୟରେ ଧର୍ମ ସଂଚୟ କରେ ଓ ପରେ ଦେଉଳ ମନ୍ଦିର ବା ଧାର୍ମିକ କର୍ମକାଣ୍ଡରେ କିଛି ବ୍ୟୟ କରେ । ଧାର୍ମିକ ପୁଣ୍ୟ ଅର୍ଜନ କରୁଥିବାରୁ ସେ ତାର ଶୋଷଣ, ଅନୈତିକ ଉପାର୍ଜନ ଓ ବିଳାସପୂର୍ଣ୍ଣ ଜୀବନ ନେଇ କୌଣସି ବିବେକର ଦଂଶନ ପାଏ ନାହିଁ ।

ଅଧିକନ୍ତୁ ଧର୍ମ ମଣିଷକୁ ଜୀବନରେ ଭୀରୁ କରିବାରେ ସାହାଯ୍ୟ କରିଥାଏ । ସତ୍ୟ, ସ୍ୱାଧୀନତା ଓ ଆତ୍ମସମ୍ମାନବୋଧ ପ୍ରତି ଧର୍ମୋତ୍ସାହୀ ବ୍ୟକ୍ତିମାନେ ଆଗ୍ରହୀ ନୁହନ୍ତି । କୁସଂସ୍କାର ହିଁ ଧାର୍ମିକ ବିଶ୍ୱାସର ମୂଳକେନ୍ଦ୍ର ହୋଇଥାଏ । ଜଣେ ଯଦି ନିଜ ଶରୀରରେ ଶିବଙ୍କ ମନ୍ଦିରର ପାଉଁଶ ଲଗାଏ ତେବେ ତାର ସମସ୍ତ ପାପ କ୍ଷୟ ହୋଇଯିବ ବୋଲି ଶୈବବାଦୀ ମାନେ ମତ ଦେଇଥାନ୍ତି । ନିଜ କପାଳରେ ଧାର୍ମିକ ଚିହ୍ନକୁ ସୁନ୍ଦର ଭାବେ ରଙ୍ଗରେ ଲଗାଇ ନିଜର ଧର୍ମପ୍ରାଣତାର ପରିଚୟ ଦେବାର ମନୋଭାବକୁ କଣ କୁହାଯିବ? ଅନେକ ଧୂର୍ତ୍ତ ଓ ପ୍ରତାରକ ଧାର୍ମିକ ଚିହ୍ନ ଜରିଆରେ ନିଜର ମନ୍ଦ ଉଦ୍ଦେଶ୍ୟକୁ ପୂରଣ କରିଥାନ୍ତି । ଛଳନା, ପ୍ରତାରଣା, ଠକାମି, କଳାବଜାର ଇତ୍ୟାଦି ଅନୈତିକ କାର୍ଯ୍ୟ ଧାର୍ମିକ ଆବରଣ ତଳେ କେତେକ ବ୍ୟକ୍ତି କରୁଥିବା ଦେଖାଯାଏ । ବୈଷ୍ଣବବାଦୀ ଭକ୍ତମାନେ ବିଶ୍ୱାସ କରନ୍ତି ଯେ ରାମ ନାମ ଥରେ ଉଚ୍ଚାରଣ କଲେ ସମସ୍ତ ପାପ କ୍ଷୟ ହୋଇଯିବ ଓ ଜଣେ ମୁକ୍ତି ପ୍ରାପ୍ତ ହେବ ଯେହେତୁ ରାମ ହେଉଛନ୍ତି ମୁକ୍ତି ପ୍ରଦାନକାରୀ ଈଶ୍ୱର । ଜଣେ ଧର୍ମପ୍ରାଣ ଖ୍ରୀଷ୍ଟିଆନର ବିଶ୍ୱାସାନୁଯାୟୀ ଯୀଶୁ ହିଁ କେବଳ ମଣିଷକୁ ସ୍ୱର୍ଗରାଜ୍ୟକୁ ନେଇପାରିବେ, ଅନ୍ୟ କେହି ନୁହେଁ, ରକ୍ଷଣଶୀଳ ମୁସଲମାନ ମାନଙ୍କର ବିଶ୍ୱାସାନୁଯାୟୀ କୋରାନର ପ୍ରତ୍ୟେକ ଟି ବାକ୍ୟ ବା ଶବ୍ଦ ଈଶ୍ୱର ଉଚ୍ଚାରିତ ସୁତରାଂ କୋରାନର ଗୋଟିଏ ଶବ୍ଦ ବି ପରିବର୍ତ୍ତନ କରି ହେବ ନାହିଁ । ଯଦି ପ୍ରତ୍ୟେକ ଧର୍ମର ଏହାହିଁ ଦୃଷ୍ଟିଭଙ୍ଗୀ ଓ ଆଦର୍ଶ ହୁଏ ତେବେ ସତ୍ୟର ସନ୍ଧାନ କିପରି ସମ୍ଭବ ହେବ ବା ପୃଥିବୀରେ ଶାନ୍ତି ଓ ଭ୍ରାତୃତ୍ୱ କିପରି ପ୍ରତିଷ୍ଠା ହେବ ତାହା ହିଁ ଚିନ୍ତାର ବିଷୟ ।



Digitized by srujanika@gmail.com

## ୮. ଦେବଦେବୀ ଭାବନା ଅବାନ୍ତର

ବିଷ୍ଣୁଙ୍କର ଅବତାର ଅଛି, ବିଷ୍ଣୁ ନାନା ଅବତାର ନିଅନ୍ତି, ଈଶ୍ୱର ବିଷ୍ଣୁଙ୍କର ଅବତାର। ବ୍ରାହ୍ମଣ୍ୟବାଦୀ ଧର୍ମର ବୈଷ୍ଣବବାଦୀମାନଙ୍କର ଏହି ଉକ୍ତି ପ୍ରତାରଣା ପୂର୍ଣ୍ଣ। ସେହିପରି ବ୍ରାହ୍ମଣମାନେ ସଂସ୍କୃତ ଭାଷାକୁ ଏକ ଦେବ ଭାଷା ବୋଲି ଅଭିହିତ କରିବା ଅବାନ୍ତର।

ଯଦି ଈଶ୍ୱରଙ୍କୁ ଏକ ଶକ୍ତି ଭାବେ ନେଇ ତାଙ୍କୁ ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା ଓ ସଂହାରକର୍ତ୍ତା ବୋଲି ଗ୍ରହଣ କରାଯାଏ, ତେବେ ତାଙ୍କର ଆରମ୍ଭ ନାହିଁ କି ପରିସମାପ୍ତି ନାହିଁ। ସେହି ଈଶ୍ୱରଙ୍କୁ ଦେଖି ହେବ ନାହିଁ, ସ୍ପର୍ଶ କରିହେବ ନାହିଁ କି ତାଙ୍କ ଠାରୁ କିଛି ଶୁଣି ହେବ ନାହିଁ। ସେହି ଶକ୍ତି ସର୍ବତ୍ର ଓ ତାଙ୍କର କୌଣସି ନାମ, ରୂପ, ଲକ୍ଷଣ ନାହିଁ। ସେହି ଶକ୍ତି ସତ୍ୟ, ସୌନ୍ଦର୍ଯ୍ୟ, ପ୍ରେମ ଓ ସମତାର ପ୍ରତୀକ ଏଥିରେ କୌଣସି ବିରୋଧ କରିବାର ନାହିଁ। ଏହି ଶକ୍ତିର ଉପସ୍ଥିତି ବା ଅନୁପସ୍ଥିତି ନେଇ କେହି ଚିନ୍ତିତ ହେବାର ଆବଶ୍ୟକତା ନାହିଁ। ଏହି ଲେଖାଟି ଏହି ପ୍ରକାର କୌଣସି ଈଶ୍ୱରଙ୍କର ଅସ୍ତିତ୍ୱକୁ ଅସ୍ୱୀକାର କରିବା ପାଇଁ ଉଦ୍ଦିଷ୍ଟ ନୁହେଁ।

**ପାରଂପରିକ ରୀତି ବା ଗ୍ରହଣଯୋଗ୍ୟ ସତ୍ୟତା?**

କେତେକ ଧର୍ମରେ ଲୋକମାନଙ୍କୁ ଏହି ପ୍ରକାର ଏକ ଈଶ୍ୱର ଭାବନା ଦେବାକୁ ବହୁ ଉଦ୍ୟମ ହୋଇଛି। ସମାଜରେ ପ୍ରାୟ ୯୯ ଶତକଡା ଲୋକ ଈଶ୍ୱର, ସତ୍ୟ ବିଷୟରେ ଅନୁସନ୍ଧିତ୍ସୁ ନ ହୋଇ ମୁଖ୍ୟତଃ ରୀତି, ନୀତି ପୂଜା ଇତ୍ୟାଦିରେ ବିଶ୍ୱାସ କରନ୍ତି। ସେମାନେ ଈଶ୍ୱରଙ୍କ ସ୍ୱରୂପ ବିଷୟରେ ଥିବା ଉକ୍ତିର ପ୍ରକୃତ ମହତ୍ତ୍ୱକୁ ଜୀବନରେ ଗ୍ରହଣ କରନ୍ତି ନାହିଁ। ଏହାର ବିଶେଷ ପ୍ରମାଣ ଏହି ସ୍ତରରେ ଆବଶ୍ୟକ ନାହିଁ।

Digitized by srujanika@gmail.com

ଲୋକମାନଙ୍କୁ ବିଶେଷ କରି ଦ୍ରାବିଡମାନଙ୍କୁ, ଈଶ୍ୱରଙ୍କ ବିଷୟରେ କଣ କୁହାଯାଇଛି ଓ ସେମାନେ ପ୍ରକୃତରେ କ'ଣ ବିଶ୍ୱାସ କରୁଛନ୍ତି ତାହାର ବ୍ୟାଖ୍ୟା ଆବଶ୍ୟକ। ସାଧାରଣ ଲୋକ ଏ ବିଷୟରେ ଜାଣିବା ଦରକାର।

## ଈଶ୍ୱରମାନଙ୍କର ଚରିତ୍ର ଓ ଶୋଷଣ

ସଂପ୍ରତି ଶିବ, ତାଙ୍କ ପତ୍ନୀ, ତାଙ୍କର ପିଲାମାନେ ହେଉଛନ୍ତି ଆମମାନଙ୍କର ଦେବତା। ସେମାନଙ୍କ ପୂଜା ସହିତ ବହୁ ରୀତି, ନୀତି ସଂଶ୍ଳିଷ୍ଟ କରାଯାଇଛି।

ଏହାପରେ ବିଷ୍ଣୁ, ତାଙ୍କ ପତ୍ନୀ, ତାଙ୍କର ପିଲାମାନେ ଓ ବିଷ୍ଣୁଙ୍କର ନାନା ଅବତାରମାନଙ୍କୁ ଈଶ୍ୱର କରାଯାଇଛି ଓ ସେମାନଙ୍କର ପୂଜା ପାଇଁ ନାନା ରୀତି, ନୀତିର ବ୍ୟବସ୍ଥା ହୋଇଛି।

ଏହି ମୁଖ୍ୟ ଈଶ୍ୱରମାନଙ୍କୁ ଛାଡି ଆହୁରି ଅନେକ ଈଶ୍ୱର ଯଥା ଇନ୍ଦ୍ର, ବରୁଣ, ଅଗ୍ନି, ବାୟୁ ସୂର୍ଯ୍ୟ, ଚନ୍ଦ୍ର, କେତେକ ନିର୍ଦ୍ଦିଷ୍ଟ ପଶୁ, କେତେକ ନିର୍ଦ୍ଦିଷ୍ଟ ପକ୍ଷୀ, କେତେକ ବୃକ୍ଷ, କେତେକ ପର୍ବତ ଓ କେତେକ ନଦୀମାନଙ୍କୁ ବି ସୃଷ୍ଟି କରାଯାଇଛି।

ଏହି ବହୁବିଧ ଦେବତା, ଈଶ୍ୱରମାନଙ୍କ ସଂପର୍କରେ କେତେକ ସାଧାରଣ ବିଷୟ ଆଲୋଚନା କରି ଏହି ଦେବତାମାନଙ୍କର ଚରିତ୍ର ତଥା ଶୋଷଣ ବିଷୟରେ କିଛି ଆଲୋକପାତ କରିବା। କେତେକ ପାଶ୍ଚାତ୍ୟ ଓ ଭାରତୀୟ ଗବେଷକ ଏ ବିଷୟରେ ଯେଉଁ ଗବେଷଣା କରିଛନ୍ତି, ତାହା ମଧ୍ୟରୁ ହିନ୍ଦୁଧର୍ମ ସଂପର୍କରେ ସ୍ପଷ୍ଟ ଧାରଣା ମଧ୍ୟ କରିହେବ।

## ମନ୍ଦ ଚରିତ୍ରର ଦେବତା ଓ ଅଶ୍ଳୀଳ ଅଭ୍ୟାସ

ଅନେକ ଦେବତା, ଈଶ୍ୱରମାନଙ୍କର ଚରିତ୍ର ବିଷୟରେ ଜାଣିବା ପାଇଁ ହେଲେ ପ୍ରଥମେ ସେମାନେ କିପରି ସୃଷ୍ଟି ହୋଇଛନ୍ତି ତାହା ବି ଦେଖିବା ଦରକାର। ଏହିମାନେ କିପରି ସୃଷ୍ଟି ହେଲେ, କିଏ ସେମାନଙ୍କୁ ସୃଷ୍ଟି କଲେ, ସେମାନଙ୍କୁ କିପରି ନକଲ କରାଯାଇ ଅନ୍ୟ ଦେଶମାନଙ୍କରେ ପ୍ରସାର କରାଗଲା ସେସବୁର ବିସ୍ତୃତ ଆଲୋଚନା ଆବଶ୍ୟକ।

Digitized by srujanika@gmail.com

ପ୍ରଫେସର କାଲଭିନ୍ନଙ୍କ ମତରେ ଆର୍ଯ୍ୟ ଧର୍ମ ପ୍ରସାର କରିଥିବା ହିନ୍ଦୁମାନେ ଧାର୍ମିକ ବିଶ୍ୱାସ ଆଧାରରେ କେତେକ ମନ୍ଦ ଓ ଅଶିଷ୍ଟ ରୀତି ନୀତି ସୃଷ୍ଟି କରିଛନ୍ତି । ସାର୍ ୱିଲିଅମ ଜୋନସ ଯେ ପ୍ରଥମେ ଇଂରାଜୀରେ ମନୁ ସଂହିତାକୁ ଅନୁବାଦ କରିଥିଲେ ମତ ଦେଇଛନ୍ତି ଯେ ମନୁ ଧର୍ମଶାସ୍ତ୍ର ଏକ ଅନ୍ୟାୟପୂର୍ଣ୍ଣ ଓ ସ୍ୱେଚ୍ଛାଚାରୀ ଆଚାର ସଂହିତା । ଅନେକ ହିନ୍ଦୁ ଦେବା ଦେବୀ ମନ୍ଦ ଚରିତ୍ର ଓ ଅଶ୍ଳୀଳ ସ୍ୱଭାବଯୁକ୍ତ ବୋଲି ଅନେକ ବିଜ୍ଞ ବ୍ୟକ୍ତି ମତ ପୋଷଣ କରିଛନ୍ତି । ଯେଉଁଠି ନାନା ପ୍ରତିମା ପୂଜାର ବ୍ୟବସ୍ଥାମାନ ବ୍ୟାପକ ଭାବେ ରହିଛି, ସେଠାରେ ନାନା ଅପସଂସ୍କୃତିମାନ ସୃଷ୍ଟି ହେବା ଅସମ୍ଭବ ନୁହେଁ ।

## ବିଦେଶୀ ଦେବ-ଦେବୀଙ୍କର ନକଲ

ହିନ୍ଦୁ ଧର୍ମ ଧାରାରେ ପୂଜିତ ହେଉଥିବା କେତେକ ଦେବଦେବୀ କେବଳ ହିନ୍ଦୁଧର୍ମର ବୈଶିଷ୍ଟ୍ୟ ନୁହେଁ । କେତେକ ଦେଶର ଧାର୍ମିକ ଇତିହାସରୁ ସେ ଦେଶରେ ମଧ୍ୟ ଏହିପରି ଦେବ-ଦେବୀ ପୂଜାର ପରଂପରା ଥିବା ଜଣାଯାଏ । ହିନ୍ଦୁମାନେ ଶିବଙ୍କୁ ଈଶ୍ୱର ଭାବେ ନେଇ ଯେପରି ଲିଙ୍ଗ ପୂଜା କରନ୍ତି, ସେହିପରି ପ୍ରାଚୀନ ଗ୍ରୀସରେ ଫାଲୁସ ପୂଜା ବା ପ୍ରାଚୀନ ଇଜିପ୍ଟରେ ପ୍ରିଆପସ ପୂଜାରେ ଲିଙ୍ଗ ପୂଜା କରାଯାଏ । ଗ୍ରୀକମାନେ ଦେବୀ ଡିଆନାଙ୍କର ଯେଉଁ ପୂଜା କରନ୍ତି ତାହା ହିନ୍ଦୁମାନଙ୍କର କାଳୀ ପୂଜା ସହ ସମାନ । ତେବେ ଗ୍ରୀକମାନେ ଭାରତୀୟଙ୍କଠାରୁ ବା ଭାରତୀୟମାନେ ଅନ୍ୟମାନଙ୍କ ଠାରୁ ଏହି ପୂଜା କରିବା ପାଇଁ ପ୍ରଭାବିତ ହୋଇଛନ୍ତି ତାହା କହିବା ସହଜ ନୁହେଁ ଓ ଏ କ୍ଷେତ୍ରରେ ବିବାଦ ରହିପାରେ । ଏହା ବି ହୋଇପାରେ ଗୋଟିଏ ମୂଳ ଉତ୍ସରୁ ଏହି ପ୍ରକାରର ପୂଜା ବିଭିନ୍ନ ସ୍ଥାନରେ ସମୟର ବ୍ୟବଧାନରେ ସୃଷ୍ଟି ହୋଇଛି । ସେ ଯାହା ହେଉ ନା କାହିଁକି ହିନ୍ଦୁମାନେ ପୂଜା କରୁଥିବା ଦେବ-ଦେବୀମାନେ ସଂପୂର୍ଣ୍ଣ ଅନନ୍ୟ ନୁହେଁ ।

## ପ୍ରତିମା ପୂଜାର ସୃଷ୍ଟି

ହିନ୍ଦୁ ଦେବଦେବୀଙ୍କୁ ନେଇ ନାନା କାହାଣୀ, କିମ୍ବଦନ୍ତୀମାନ ରହିଛି । ଅନେକ କାହାଣୀ ପରସ୍ପର-ବିରୋଧୀ ମନେ ହୁଅନ୍ତି । କେତେକଙ୍କ ମତରେ ବହୁ ଦେବ-ଦେବୀ ପୂଜା ଇଜିପ୍ଟୀୟଙ୍କ ପାଖରୁ ଭାରତକୁ ଆସିଛି, ଅନ୍ୟ କେତେକଙ୍କ

Digitized by srujanika@gmail.com

ମତରେ ଭାରତୀୟଙ୍କଠାରୁ ଏହା ଇଜିପ୍‌ଟକୁ ଯାଇଛି । ଅନ୍ୟ କେତେକଙ୍କ ମତରେ ପର୍ସିଆରେ ପ୍ରଥମେ ଧର୍ମବିଶ୍ୱାସ ଓ ପୂଜାର ଭାବନା ଆସିଥିଲା ଯେଉଁଠାରୁ ଏହା ଭାରତ ଓ ଇଜିପ୍‌ଟକୁ ବ୍ୟାପିଲା । ଚଲଦୀୟ ମାନେ ପ୍ରଥମେ ସୂର୍ଯ୍ୟଙ୍କୁ ପୂଜା କରିବା କୁହାଯାଏ ଓ ସେମାନଙ୍କ ପାଖରୁ ସୂର୍ଯ୍ୟ ପୂଜା ପର୍ସିଆ ଓ ଭାରତକୁ ଯିବା ଅନୁମାନ କରାଯାଏ । ସୂର୍ଯ୍ୟ ପୂଜା ପରେ ଅନ୍ୟ ଦେବ-ଦେବୀ ପୂଜା ଆରମ୍ଭ ହୋଇଥିବା ଜଣାଯାଏ । ଲୋକମାନଙ୍କର ଅଜ୍ଞତା ଓ କୁସଂସ୍କାରପୂର୍ଣ୍ଣ ମାନସିକତା ଯୋଗୁଁ ପୂଜକମାନେ ଲୋକମାନଙ୍କ ପାଖରେ ନିଜର ପ୍ରଭୁତ୍ୱ ଓ କର୍ତ୍ତୃତ୍ୱ ବିସ୍ତାର କରିବା ପାଇଁ ଜୀବନର ପ୍ରତ୍ୟେକ କ୍ଷେତ୍ର ପାଇଁ କିଛି ଦେବ ବା ଦେବୀଙ୍କୁ ଉଦ୍‌ଭାବନ କରିଛନ୍ତି । କୁହାଯାଏ ଯେ ପ୍ରତିମା ପୂଜାର ଭାବନା ପ୍ରଥମେ ପର୍ସିଆରେ ଚଲଦୀୟମାନେ ଆରମ୍ଭ କରିଥିଲେ ଓ ତାହା ପରେ ଇଜିପ୍‌ଟ ଓ ଭାରତରେ ନାନା ରଙ୍ଗରେ ବିକଶିତ ହୋଇଛି । ପ୍ରତିମା ପୂଜାର ସୂତ୍ର ଯେଉଁଠୁ ବା ଯେଉଁ ସଭ୍ୟତାରୁ ଆରମ୍ଭ ହେଉ ନା କାହିଁକି, ଏହା ନିଃସନ୍ଦେହ ଯେ ସଂପ୍ରତି ହିନ୍ଦୁମାନେ ସାରା ବିଶ୍ୱରେ ଶ୍ରେଷ୍ଠ ପ୍ରତିମା ପୂଜକ ଭାବେ ପରିଗଣିତ ।

## ପୁରାଣ ଓ ପୌତ୍ତଳିକତା

ହିନ୍ଦୁଧର୍ମରେ ଦେବ-ଦେବୀଙ୍କର ସଂଖ୍ୟା ଅସଂଖ୍ୟ ଓ ଏ ସଂଖ୍ୟା ଏବେ ବି ବଢି ଚାଲିଛି । ମେଜର ମୁର ଯଥାର୍ଥରେ କହିଛନ୍ତି ଯେ ହିନ୍ଦୁଧର୍ମ ପୁରାଣ ଆଧାରିତ ପୌତ୍ତଳିକତାରେ ପରିପୂର୍ଣ୍ଣ । ସାହିତ୍ୟ, କଳା, ଭାସ୍କର୍ଯ୍ୟ, ଚିତ୍ରକଳା, ସ୍ଥାପତ୍ୟ, ପ୍ରଥା, ଅଭ୍ୟାସ ଇତ୍ୟାଦି କ୍ଷେତ୍ରରେ ହିନ୍ଦୁ ପୁରାଣମାନଙ୍କର ଗଭୀର ପ୍ରଭାବ ରହିଛି । ପୁରାଣ ମାନଙ୍କରେ ବର୍ଣ୍ଣିତ କାହାଣୀ ମାନ ହିନ୍ଦୁମାନଙ୍କର ସୃଜନଶୀଳ ଅଭିବ୍ୟକ୍ତିକୁ ଗଭୀର ଭାବେ ପ୍ରଭାବିତ କରିଥିବା ମେଜର ମୁର୍ ବ୍ୟକ୍ତ କରିଛନ୍ତି ।

ହିନ୍ଦୁମାନଙ୍କର ଯୁଗ ଧାରଣା ବେଶ୍ କାଳ୍ପନିକ ଓ ରହସ୍ୟମୟ । ସତ୍ୟ ଯୁଗର ଅବଧି ୧୭୨୮୦୦୦ ବର୍ଷ, ଏହାପରେ ତ୍ରେତୟା ଯୁଗ ଆସିଥିଲା ଯାହାର ସମୟ ଅବଧି ହେଉଛି ୧୨୯୬୦୦୦ ବର୍ଷ । ତୃତୀୟରେ ଆସେ ଦ୍ୱାପର ଯୁଗ ଯାହାର କାଳ ହେଉଛି ୮୬୪୦୦୦ ବର୍ଷ । ଶେଷରେ ଆସେ କଳିଯୁଗ, ଯାହା ବର୍ତ୍ତମାନ ଚାଲିଛି, ତାହାର ଆୟୁଷ ହେଉଛି ୪୩୨୦୦୦ ବର୍ଷ । ପୁରାଣରେ

Digitized by srujanika@gmail.com

ଅନ୍ୟ ଏକ ଯୁଗର ବି କଳ୍ପନା ରହିଛି ଯାହାକୁ ଦେବଯୁଗ ବା ମହାଯୁଗ ବୋଲି କୁହାଯାଇଛି ଯାହା ୩୯,୬୭,୨୦୦୦୦ ବର୍ଷ ଭୋଗ ହୋଇଛି । ଏହି ସବୁ ଯୁଗ-ଭାବନା ସାଧାରଣ ଜ୍ଞାନ ଓ ମଣିଷ ଜାତିର ଇତିହାସର ସଂପୂର୍ଣ୍ଣ ପରିପନ୍ଥୀ । ଏହି ସବୁ କାଳ୍ପନିକ କାହାଣୀ ବା ମିଥ୍ ସୃଷ୍ଟି କରାଯାଇ ହିନ୍ଦୁ ଧର୍ମର ଓ ପୁରାଣମାନଙ୍କର ପ୍ରାଚୀନତା କଥା କହି ସାଧାରଣ ଲୋକଙ୍କୁ ବିଭ୍ରାନ୍ତ କରାଯାଏ । ପ୍ରତିମା ପୂଜା ଭାରତର ସବୁ ଅଞ୍ଚଳରେ ସୃଷ୍ଟି କରାଯାଇଛି ଓ ଦେବ-ଦେବୀଙ୍କୁ ବିଭିନ୍ନ ନାମ ଦିଆଯାଇ ପୂଜା କରାଯାଉଛି ।

ଈଶ୍ୱରଙ୍କୁ କେହି ଦେଖି ନାହିଁ ବା ଜାଣି ନାହିଁ, କିନ୍ତୁ ମଣିଷ ବିଶ୍ୱାସ କରୁଛି ଯେ ଈଶ୍ୱର ବିଶ୍ୱକୁ ସୃଷ୍ଟି କରିଛନ୍ତି । ହିନ୍ଦୁଧର୍ମର ଗବେଷକ ପ୍ରଫେସର ଏର୍ସକାଇନଙ୍କ ମତରେ ବ୍ରାହ୍ମଣ ପୂଜକମାନେ ହିନ୍ଦୁ ଦେବ-ଦେବୀ ବା ଈଶ୍ୱର ଯେ ମିଥ୍ ବା କାଳ୍ପନିକ ଏହା ଜାଣିଥିଲେ, କିନ୍ତୁ ସେମାନେ ସାଧାରଣ ଲୋକଙ୍କୁ ସତ୍ୟ କ'ଣ ନଜଣାଇ ସେମାନଙ୍କ ମନ ଭିତରେ ନାନା ଦେବ-ଦେବୀ ଓ ସେମାନଙ୍କର ଅଲୌକିକ ଶକ୍ତି ନେଇ ଧାରଣା ସୃଷ୍ଟି କଲେ । ଏହା ଦ୍ୱାରା ନାନା ପୂଜା ଓ ରୀତି ନୀତିର ଆରମ୍ଭ କରି ସେଥିରୁ ପୂଜକ ବର୍ଗ ବେଶ୍ ସୁବଧା ପାଇଲେ । ପ୍ରତିମା ପୂଜାକୁ ଆଧାର କରି ନାନା କାଳ୍ପନିକ କାହାଣୀ, ପୂଜକ ବର୍ଗ, କୁସଂସ୍କାର ଓ ଅନେକ ଦୁର୍ବୋଧ୍ୟ ପରଂପରାର ଉଦ୍ଭବ ହେଲା । ପ୍ରତିମା ପୂଜା କେବଳ ମଣିଷ ବା ପଶୁଙ୍କ ଆକାର ଭିତରେ ସୀମିତ ରହିଲା ନାହିଁ । କଳ୍ପନାରେ ସେ ସବୁକୁ ମିଶାଇ ମଣିଷର ଶରୀର ସହ ପଶୁର ମୁଣ୍ଡକୁ ବି ଯୋଡାଗଲା । ଗ୍ରୀସ, ରୋମ, ବେବିଲୋନ, ଇଜିପ୍ଟ ପରି ପ୍ରାଚୀନ ସଭ୍ୟତା ମାନଙ୍କର ଧର୍ମ ଧାରଣାରେ ଏସବୁ କାଳ୍ପନିକ ଦେବ-ଦେବୀ ପୂଜା ଥିବା ଜଣାଯାଏ । ପୂଜକଗୋଷ୍ଠୀ ସାଧାରଣ ମଣିଷର ଦୃଷ୍ଟି ଓ ଉତ୍ସୁକତାକୁ ନୂଆ ନୂଆ କାହାଣୀ ଦ୍ୱାରା ବିଭିନ୍ନ କଳ୍ପିତ ଦେବ-ଦେବୀଙ୍କ ଜରିଆରେ ଆକର୍ଷିତ କଲେ । ପ୍ରକୃତିର ଅନେକ ବସ୍ତୁକୁ ଦେବତ୍ୱ ଆରୋପ କରି ସେ ସବୁକୁ ପୂଜାକଲେ । ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର, ପର୍ବତ, ନଦୀ ବି ଦେବତା ପାଲଟି ଗଲେ ଓ ସେମାନଙ୍କର ପୂଜା ପାଇଁ ରୀତି ନୀତି ସୃଷ୍ଟି ହେଲା । ଯେଉଁ ଈଶ୍ୱରଙ୍କୁ ଦେଖି ହେବ

Digitized by srujanika@gmail.com

ନାହିଁ କି ଅନୁଭବ କରିହେବ ନାହିଁ ଦୃଶ୍ୟମାନ ଏହି ସବୁ ପ୍ରାକୃତିକ ବିସ୍ମୟର ବସ୍ତୁକୁ ଦେବତ୍ୱ ଆରୋପ କରାଯାଇ ସେମାନଙ୍କୁ ପୂଜା ଆରାଧନାର ପରଂପରା ସୃଷ୍ଟି ହେଲା । ଏହି ସବୁ ପ୍ରାକୃତିକ ବସ୍ତୁ ଭିତରେ ପ୍ରକୃତ ଈଶ୍ୱର ଲୁଚିଗଲେ। ସେହିପରି ପ୍ରତିମାକୁ ଈଶ୍ୱରଙ୍କର ପ୍ରତୀକ କରାଯାଇ ତାହାକୁ ବି ପୂଜା କରାଗଲା । ସେପରି ସ୍ଥଳେ କୌଣସି ପ୍ରତିମା ବ୍ୟତୀତ ଈଶ୍ୱର ବା ସର୍ବଶକ୍ତିମାନ ଈଶ୍ୱରଙ୍କର କଳ୍ପନା ଅସମ୍ଭବ ହେଲା । ମଣିଷ-ନିର୍ମିତ ପ୍ରତିମାକୁ ଈଶ୍ୱର ଭାବେ ରଖି ପୂଜା କରିବାକୁ ବିରାଟକାୟ ମନ୍ଦିର ଓ ପୂଜାପୀଠ ମାନ ନିର୍ମାଣ କରାଗଲା । ଅଦୃଶ୍ୟ ବ୍ରହ୍ମ ବା ଈଶ୍ୱରଙ୍କ ପାଇଁ ମନ୍ଦିର ନିର୍ମାଣ ହୋଇ ନାହିଁ । ଅଦୃଶ୍ୟ ଓ ଅଜ୍ଞେୟ ଈଶ୍ୱର ଭାବନା ଭିତରେ କିଛି ସତ୍ୟତା ହୁଏତ ଥାଇପାରେ ଯାହା ପ୍ରାଚୀନ ଧାର୍ମିକ କଳ୍ପନା ଭିତରେ କରାଯାଇଥିଲା । କିନ୍ତୁ କାଳକ୍ରମେ ପ୍ରତିମାମାନଙ୍କୁ ଈଶ୍ୱର କରାଗଲା ଓ ସେହି ପ୍ରତିମା ମାନଙ୍କୁ ନେଇ ନାନା କାହାଣୀ, କିମ୍ବଦନ୍ତୀ ଓ କଳ୍ପନା ସୃଷ୍ଟି ହେଲା ।

ଗୋଟିଏ ପଟେ ବେଦରେ ଏକେଶ୍ୱର ଭାବନା ଥିବା କୁହାଯାଏ ଓ ଆଉ ଗୋଟିଏ ପଟେ ଲୋକମାନଙ୍କୁ ହଜାର ହଜାର ପ୍ରତିମାକୁ ଈଶ୍ୱର କହି ପୂଜା କରିବାକୁ କୁହାଯାଏ । ଅସଂଖ୍ୟ ଦେଉଳ, ମନ୍ଦିର ନିର୍ମାଣ କରାଯାଇ ସେଥିରେ ବିଭିନ୍ନ ନାମରେ ପ୍ରତିମାମାନଙ୍କୁ ସ୍ଥାପନ କରାଗଲା ଓ ସେସବୁ ଈଶ୍ୱର ବୋଲି ବିଶ୍ୱାସ ସୃଷ୍ଟି କରାଗଲା । ବିଭିନ୍ନ ପ୍ରତିମା ମାନଙ୍କର ନାମରେ ନାନା ପୂଜା ପଦ୍ଧତି ସୃଷ୍ଟି କରାଯିବା ସହ ବିଭିନ୍ନ ସମୟରେ ବିଭିନ୍ନ ଉତ୍ସବମାନ ପାଳନ କରାଗଲା । ଏଥିରେ ପୂଜକଗୋଷ୍ଠୀ ବେଶ୍ ଉପକୃତ ହେଲେ ଓ ଏହାକୁ ଉପାର୍ଜନର ମାଧ୍ୟମ କଲେ। ଏହି ଧାର୍ମିକ ସମାରୋହ ଓ ଆଡମ୍ବର ସାଧାରଣ ଲୋକକୁ ବି ବେଶ୍ ଉପଭୋଗ୍ୟ ହେଲା ।

କେତେକ ଦେବ ଦେବୀଙ୍କୁ ଭୟାବହ ଓ ବିଭତ୍ସ ଭାବେ ବି ଚିତ୍ରିତ କରାଗଲା । ଶିବ, ଦୁର୍ଗା ଶକ୍ତି, ଅସ୍ତ୍ର, ହତ୍ୟାଦ୍ୱାରା ନିଜର ଶତ୍ରୁ ପକ୍ଷକୁ ଦମନ କରିବାର ରୋଚକ କାହାଣୀମାନ ସୃଷ୍ଟି ହେଲା । କୁର୍ମ ପୁରାଣରେ ପ୍ରତିମା ପୂଜା କରିବାକୁ ଶିବ ନିର୍ଦ୍ଦେଶ ଦେଇଥିବା ଉଲ୍ଲେଖ ରହିବା ଦେଖାଯାଏ ।

Digitized by srujanika@gmail.com

## ମାତା ପୁତ୍ର ବିବାହ

କୁହାଯାଏ ଯେ ବ୍ରହ୍ମ ଏ ପୃଥିବୀକୁ ସୃଷ୍ଟି କଲେ। ସୃଷ୍ଟି କିପରି କଲେ ସେ ନେଇ ନାନା କାହାଣୀମାନ ରଚିତ ହୋଇଛି। ତେବେ କୌଣସି ଦୁଇଟି କାହାଣୀ ଭିତରେ କୌଣସି ମେଳ ନାହିଁ। ଗୋଟିଏ କାହାଣୀ ଅନୁଯାୟୀ ପରମବ୍ରହ୍ମ ପ୍ରଥମେ ନାରୀ ଭବାନୀଙ୍କୁ ସୃଷ୍ଟି କଲେ। (ଭବାନୀଙ୍କ ବିଷୟରେ କୁହାଯାଏ ଯେ ସେ ହେଉଛନ୍ତି ପ୍ରକୃତିର ଶକ୍ତି ) ଭବାନୀ ତିନୋଟି ପୁତ୍ରଙ୍କୁ ଜନ୍ମ ଦେଲେ ସେମାନେ ହେଲେ ବ୍ରହ୍ମା, ବିଷ୍ଣୁ ଓ ଶିବ। ପରେ ମା' ଭବାନୀ ନିଜକୁ ତିନି ଜଣ ଯୁବତୀରେ ପରିଣତ କରିଦେଲେ ଓ ତିନି ସନ୍ତାନଙ୍କୁ ବିବାହ କଲେ। ଅର୍ଥାତ ମାତା ପୁତ୍ରମାନଙ୍କୁ ବିବାହ କରି ତାଙ୍କର ପତ୍ନୀ ହେଲେ।

## ସୃଷ୍ଟି କଳ୍ପନା

ସୃଷ୍ଟି ସଂପର୍କରେ ଆଉ ଏକ କାହାଣୀ ଅନୁଯାୟୀ ସମସ୍ତ ପ୍ରାକୃତିକ ଶକ୍ତି ଏକ ଡିମ୍ବ ଭିତରେ ନିହିତ ରହିଥିଲା। ସେହି ଡିମ୍ବଟି ଫାଟି ଚଉଦ ଖଣ୍ଡ ହେଲା, ସପ୍ତ ଊର୍ଦ୍ଧ୍ୱ ପୃଥିବୀ ଓ ସପ୍ତ ନିମ୍ନ ପୃଥିବୀ। ଏହାପରେ ଈଶ୍ୱର ମାରୁ ପର୍ବତରେ ଆବିର୍ଭୂତ ହେଲେ ଓ ବ୍ରହ୍ମାଙ୍କୁ ସୃଷ୍ଟି ଦାୟିତ୍ୱ, ବିଷ୍ଣୁଙ୍କୁ ପାଳନ ଦାୟିତ୍ୱ ଓ ଶିବଙ୍କୁ ସଂହାର ଦାୟିତ୍ୱ ଦେଲେ।

ଏକ ତୃତୀୟ କାହାଣୀ ଅନୁଯାୟୀ ଯେତେବେଳେ ପ୍ରଥମ ପୃଥିବୀ ଧ୍ୱଂସ ହେଲା, ବିଷ୍ଣୁ ଯେତେବେଳେ ଅନନ୍ତ ସର୍ପ ଉପରେ ବିଶ୍ରାମ ନେଉଥିଲେ। ତାଙ୍କ ନାଭିରୁ ଏକ ପଦ୍ମ ଜାତ ହେଲା ଓ ପଦ୍ମରୁ ବ୍ରହ୍ମାଙ୍କର ଆବିର୍ଭାବ ହେଲା ଯେ କି ସୃଷ୍ଟି ସର୍ଜନା କଲେ। ପୁନଶ୍ଚ ସୃଷ୍ଟିକୁ ଧ୍ୱଂସ କରିବା ପାଇଁ ଶିବ ସୃଷ୍ଟି ହେଲେ। ବ୍ରହ୍ମା ଏହାପରେ ମଣିଷ ଜାତିକୁ ସୃଷ୍ଟି କଲେ ଓ ଏଥିରେ ସେ ବିଭେଦ ରଖିଲେ। ସେ ତାଙ୍କ ମୁଣ୍ଡରୁ ବ୍ରାହ୍ମଣମାନଙ୍କୁ, ବାହୁରୁ କ୍ଷତ୍ରିୟମାନଙ୍କୁ, ଜଂଘରୁ ବୈଶ୍ୟମାନଙ୍କୁ ଓ ପାଦରୁ ଶୂଦ୍ରମାନଙ୍କୁ ସୃଷ୍ଟି କଲେ। ତେବେ ଜଣେ ପୁରୁଷ ହୋଇ ବ୍ରହ୍ମା ସୃଷ୍ଟି କଲେ। ଏହି ଜନ୍ମ ଅସ୍ୱାଭାବିକ ଧାରାରେ ହୋଇଥିବାରୁ ସ୍ରଷ୍ଟାଙ୍କର ଲିଙ୍ଗ କଣ ଥିଲା ତାହାର ଆବଶ୍ୟକତା ନାହିଁ।

Digitized by srujanika@gmail.com

ଗ୍ରୀକ ଦେବତା ସଟର୍ଣ୍ଣଙ୍କର କାହାଣୀ ବ୍ରହ୍ମାଙ୍କ କାହାଣୀ ସହ ସାମଂଜସ୍ୟ ରକ୍ଷା କରେ। ବ୍ରହ୍ମାଙ୍କର ଚାରୋଟି ମସ୍ତକ ଥିଲା ଯାହା ଗୋଟିଏ ବେକ ଉପରେ ରହିଥିଲା। ପ୍ରକୃତରେ ବ୍ରହ୍ମା ପାଞ୍ଚ ମସ୍ତକ-ବିଶିଷ୍ଟ ଥିଲେ, ତେବେ ଶିବ କ୍ରୋଧରେ ତାଙ୍କର ଗୋଟିଏ ମସ୍ତକ କାଟିଦେଲେ, କାରଣ ବ୍ରହ୍ମା ଶିବଙ୍କୁ ତାଙ୍କ ଠାରୁ ଉଚ୍ଚ ବୋଲି ସ୍ୱୀକାର କଲେ ନାହିଁ। ଅନ୍ୟ ଏକ କାହାଣୀ ଅନୁଯାୟୀ ଶିବ ଓ ବ୍ରହ୍ମା ପ୍ରତ୍ୟେକଙ୍କର ପାଞ୍ଚୋଟି ଲେଖାଏଁ ମସ୍ତକ ରହିଥିଲା ଫଳରେ ଶିବଙ୍କ ପତ୍ନୀ ଅନେକ ବାର ଶିବଙ୍କୁ ଚିହ୍ନିବାରେ ଭ୍ରମରେ ପଡୁଥିଲେ। ସେଥିପାଇଁ ଶିବ ବ୍ରହ୍ମାଙ୍କର ଗୋଟିଏ ମସ୍ତକ କମ୍ କରିଦେଲେ। ବ୍ରହ୍ମାଙ୍କର ବାହନକୁ କେତେବେଳେ ବତକ, କେତେବେଳେ ହଂସ କରିବା ମଧ୍ୟ ଦେଖାଯାଏ। ବିଷ୍ଣୁ ଓ ଶିବ ଏକତ୍ର ହୋଇ ବ୍ରହ୍ମାଙ୍କ ମନ୍ଦିର ନଷ୍ଟ କରିବା ଦ୍ୱାରା ବ୍ରହ୍ମାଙ୍କର ସ୍ଥାନକୁ ନ୍ୟୂନ କରିବାର ବର୍ଣ୍ଣନା ମଧ୍ୟ ଦେଖାଯାଏ।

## ଛେଳି ମୁଣ୍ଡରେ ବ୍ରହ୍ମା

ଦକ୍ଷ ବ୍ରହ୍ମାଙ୍କର ଏକ ଅବତାର। ତାଙ୍କ କନ୍ୟା ଶକ୍ତି ହେଉଛନ୍ତି ଶିବଙ୍କର ପତ୍ନୀ। ଶକ୍ତିଙ୍କର ପୁତ୍ର ବୀରଭଦ୍ର ମାତାଙ୍କ ଠାରୁ ଜନ୍ମ ନହୋଇ ପିତାଙ୍କର ଜଟରୁ ଜନ୍ମ ହୋଇଥିଲେ। ତାଙ୍କ ପିତାଙ୍କୁ ଅସମ୍ମାନ କରିବା ହେତୁ ତାଙ୍କର ମାଆ ଅଗ୍ନିରେ ଆତ୍ମାହୂତି ଦେଲେ। ଏଥିରେ ବିରଭଦ୍ର କ୍ଷୁବ୍ଧ ହୋଇ ଦକ୍ଷଙ୍କର ମୁଣ୍ଡ କାଟିଦେଲେ। ତେବେ ଦକ୍ଷ ଯେ ପ୍ରକୃତରେ ବ୍ରହ୍ମା ଥିଲେ ଦେବତାଙ୍କର ଅନୁରୋଧରେ ପୁନର୍ଜୀବନ ଲାଭକଲେ। ଅଗ୍ନିରେ ଦକ୍ଷଙ୍କର ବହୁ ମସ୍ତକ ପୋଡି ଯାଇଥିଲା। ସୁତରାଂ ଏକ ଛେଳିର ମସ୍ତକ ଆଣି ତାଙ୍କ ଠାରେ ରୋପଣ କରାଗଲା। ସେହି ବ୍ରହ୍ମା ମାନବ ଦେହ ଓ ଛେଳି ମସ୍ତକ ନେଇ ଭ୍ରମଣ କଲେ।

## ପ୍ରତ୍ୟେକ ନାରୀଙ୍କ ସହ କୃଷ୍ଣ

ବିଶ୍ୱକର୍ମା ହେଉଛନ୍ତି ନିର୍ମାଣର ଦେବତା। ସେ ଈଶ୍ୱରଙ୍କର ହାତ ଓ ବ୍ରହ୍ମାଙ୍କର ପୁତ୍ର ବୋଲି ବର୍ଣ୍ଣନା ହୋଇଛି। ପୁନଶ୍ଚ ତିନି ଚକ୍ଷୁ ବିଶିଷ୍ଟ ସେ ଶୁଭ୍ର ବର୍ଣ୍ଣର ବୋଲି ତାଙ୍କର ବର୍ଣ୍ଣନା କରାଯାଇଛି।

Digitized by srujanika@gmail.com

ନାରଦ ହେଉଛନ୍ତି ବ୍ରହ୍ମା ଓ ସରସ୍ୱତୀଙ୍କର ପୁତ୍ର । ତାଙ୍କର କାର୍ଯ୍ୟ ହେଉଛି ପ୍ରଚାର ଓ ଈଶ୍ୱରଙ୍କର ଆଜ୍ଞା ପାଳନ । ସେ ପ୍ରଥମେ ବୀଣାର ଉଦ୍‌ଭାବନ କରିଥିଲେ । ନାରଦଙ୍କର କୌଣସି ପତ୍ନୀ ନଥିଲେ । ଥରେ ସେ କୃଷ୍ଣଙ୍କୁ ତାଙ୍କ ପତ୍ନୀମାନଙ୍କ ମଧ୍ୟରୁ ଜଣଙ୍କୁ ଦେବାକୁ ଅନୁରୋଧ କଲେ । କୃଷ୍ଣ ତାଙ୍କୁ ସେ ପାଇଁ ସମ୍ମତି ଦେଲେ ଓ ଯେ ଏକା ଥିବେ ତାଙ୍କୁ ନେବାକୁ କହିଲେ । ନାରଦ ଯେଉଁ ଘରକୁ ଗଲେ ସେଠାରେ କୃଷ୍ଣ ଥିବା ଦେଖିଲେ । ସେ ଏଥିରେ ନିରାଶ ହୋଇ ଶେଷରେ ବ୍ରହ୍ମଚର୍ଯ୍ୟକୁ ଆଦରି ନେଲେ ।

**ବନ୍ଧ୍ୟା ରାଣୀଙ୍କର ଷାଠିଏ ହଜାର ସନ୍ତାନ**

ଭୃଗୁ ହେଉଛନ୍ତି ବ୍ରହ୍ମାଙ୍କର ପୁତ୍ର ଓ ଜଣେ ବିଶିଷ୍ଟ ଋଷି । ଏକଦା ତିନି ଈଶ୍ୱର ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ଭିତରେ କିଏ ସବୁଠାରୁ ବଡ ଏ ନେଇ ଏକ ବିବାଦ ସୃଷ୍ଟି ହେଲା । ଏହା ସ୍ଥିର କରିବା ପାଇଁ ଭୃଗୁଙ୍କୁ ଦାୟିତ୍ୱ ଦିଆଗଲା । ସେ ଏକ ଅଦ୍‌ଭୁତ ପ୍ରକ୍ରିୟାରେ ଈଶ୍ୱରମାନଙ୍କୁ ପରୀକ୍ଷା କଲେ । ସେ ବ୍ରହ୍ମା ଓ ଶିବଙ୍କୁ ଖରାପ ଭାଷାରେ ଗାଳି ଗୁଲଜ କଲେ ଓ ଏଥିରେ ବ୍ରହ୍ମା ଓ ଶିବ ରାଗିବାର ଦେଖିଲେ । ଏହାପରେ ସେ ବିଷ୍ଣୁଙ୍କୁ ପରୀକ୍ଷା କରିବାକୁ ଗଲେ । ସେ ବିଷ୍ଣୁଙ୍କ ପାଖରେ ପହଞ୍ଚିବା ବେଳକୁ ବିଷ୍ଣୁ ଲକ୍ଷ୍ମୀଙ୍କ ସହ ଶୟନ କରିଥିଲେ । ଏହାପରେ ଭୃଗୁ ବିଷ୍ଣୁଙ୍କ ଛାତିକୁ ଏକ ଗୋଇଠା ଦେଲେ । ବିଷ୍ଣୁ ଉଠିପଡି ଭୃଗୁଙ୍କ ପାଦରେ କଷ୍ଟ ହେଲା କି ବୋଲି ପଚାରିଲେ । ଏପରିକି ଯେଉଁ ପାଦ ତାଙ୍କୁ ଆଘାତ ଦେଇଥିଲା, ସେ ସେହି ପାଦକୁ ଆଦରରେ ଆଲିଙ୍ଗନ କଲେ । ଭୃଗୁଙ୍କ ବିଷୟରେ ଅତି ଅବାସ୍ତବ ଘଟଣାମାନ ବି ଲେଖା ଯାଇଛି । ସେହିପରି ଗୋଟିଏ ଘଟଣା ହେଲା ସଗର ରାଜାଙ୍କ ରାଣୀଙ୍କ ବିଷୟ । ରାଣୀ ବନ୍ଧ୍ୟା ଥିଲେ । ଭୃଗୁଙ୍କ ଆଶୀର୍ବାଦରୁ ରାଣୀ ୬୦୦୦୦ ସନ୍ତାନ ଜନ୍ମଦେଲେ । ଏହିପରି ନାନା ଅବାନ୍ତର ଘଟଣା ପୁରାଣ ଭିତରେ ଦେଖିବାକୁ ମିଳେ ।

**ଦେବୀ ସରସ୍ୱତୀ**

ବ୍ରହ୍ମାଙ୍କର ପୁତ୍ର ମନୁ ସାତଜଣ ଋଷିଙ୍କର ଜନକ ଥିଲେ । ଏହି ସାତ ଜଣ ଋଷି ଛ'ଜଣ ନାରୀଙ୍କୁ ବିବାହ କରିଥିଲେ । ସାତଜଣ ଋଷି କିପରି ଛଅ ଜଣଙ୍କ ବିବାହ କଲେ ତାହା ପୁରାଣରେ ଅସ୍ପଷ୍ଟ ରହିଛି । ଦେବୀ, ଦେବତା,

Digitized by srujanika@gmail.com

ଋଷିମାନଙ୍କ ନାମରେ ଏପରି ସବୁ ମନଗଢା ଅବାନ୍ତର କାହାଣୀମାନ ଯୋଡି ଦିଆଯାଇଛି ।

ସରସ୍ୱତୀଙ୍କର ବର୍ଣ୍ଣନା ପୁରାଣରେ ବିଭିନ୍ନ ଭାବରେ କରାଯାଇଛି । ତାଙ୍କୁ ବ୍ରହ୍ମାଙ୍କର କନ୍ୟା, ବିଷ୍ଣୁଙ୍କର ପତ୍ନୀ ଓ ବ୍ରହ୍ମାଙ୍କର ପତ୍ନୀ ବୋଲି ବି ଚିତ୍ରଣ କରାଯାଇଛି । ସରସ୍ୱତୀଙ୍କ ସହ ସଂପର୍କ ନେଇ ନାନା ଅନାଚାର କଥା ପୁରାଣରେ ରହିଛି । ହିନ୍ଦୁମାନେ ସରସ୍ୱତୀଙ୍କୁ ବିଦ୍ୟା-ଦାତ୍ରୀ ବୋଲି ଆରାଧନା କରିଥାନ୍ତି । ହିନ୍ଦୁମାନଙ୍କର ବିଶ୍ୱାସ ଯେ ସରସ୍ୱତୀଙ୍କର କୃପାରୁ ବିଦ୍ୟା ହାସଲ ହୋଇଥାଏ । ମିଥ୍ୟାର ଆଶ୍ରୟ ନେଇଥିଲେ ସେଥିରୁ ପ୍ରାୟଶ୍ଚିତ ପାଇଁ ସରସ୍ୱତୀଙ୍କର ଆରାଧନା କରିବା ଦରକାର । ତାଙ୍କର କରୁଣା ପାଇବା ପାଇଁ ତାଙ୍କୁ ବାରମ୍ବାର ଆରାଧନା କରିବାକୁ ହେବ । ମନେହୁଏ ପୁରାଣରେ ଅନେକ ମିଥ୍ୟା କଥା କୁହାଯାଇଛି । ପୁରାଣର ଆଖ୍ୟାନ ଗୁଡିକ ସତ୍ୟ ବୋଲି ଅନେକ ଲୋକ ବିଶ୍ୱାସ କରନ୍ତି । ପୁରାଣର କାହାଣୀ ଗୁଡିକ କିପରି ମିଥ୍ୟା ଓ ସେହି ମିଥ୍ୟାକୁ କିପରି ହିନ୍ଦୁମାନେ ବିଶ୍ୱାସ କରନ୍ତି ତାହାର ସୁନ୍ଦର ବ୍ୟାଖ୍ୟା ପ୍ରଫେସର ଚାର୍ଲସ କୋଲମାନ କରିଛନ୍ତି । ଗ୍ରୀକ ଓ ରୋମାନମାନଙ୍କର ବିଦ୍ୟାଦେବୀ ମିନର୍ଭା ଓ ହିନ୍ଦୁଙ୍କର ସରସ୍ୱତୀଙ୍କ ଭିତରେ ଅନେକ ସାମଂଜସ୍ୟ ରହିଛି ।

## ମ୍ୟୁଜିଅମରେ ରହିବା ଯୋଗ୍ୟ

ପାଶ୍ଚାତ୍ୟ ଦେଶମାନଙ୍କରେ ଅତୀତରେ କେତେକ ଦେବ-ଦେବୀଙ୍କୁ ବି ପୂଜା କରାଯାଉଥିଲା ଯାହା ସହିତ ହିନ୍ଦୁ ଦେବ-ଦେବୀଙ୍କର ସମ୍ବନ୍ଧ ରହିଛି । ତେବେ ପାଶ୍ଚାତ୍ୟ ଲୋକମାନେ ତାଙ୍କର ପ୍ରାଚୀନ ଦେବ-ଦେବୀମାନଙ୍କୁ ମ୍ୟୁଜିଅମରେ ରଖିଛନ୍ତି, କିନ୍ତୁ ହିନ୍ଦୁମାନେ ଏପର୍ଯ୍ୟନ୍ତ ବି ସେମାନଙ୍କୁ ଧରି ପୂଜା କରୁଛନ୍ତି । ଗ୍ରୀକ୍ ରୋମାନ ସଭ୍ୟତାର ଦେବ-ଦେବୀଙ୍କ ସହିତ ଯେଉଁ ହିନ୍ଦୁ ଦେବ ଦେବୀମାନଙ୍କର ସଂପର୍କ ରହିଛି ତାହାର ଏକ ତାଲିକା ନିମ୍ନରେ ପ୍ରଦାନ କରୁଛୁ । ତେବେ କେହି କାହାଦ୍ୱାରା ପ୍ରଭାବିତ ହେବା ଏଠାରେ ମୁଁ କହୁନାହିଁ, ମୁଁ କେବଳ ଗ୍ରୀକ-ରୋମାନ ସଭ୍ୟତାର ଦେବ —— ହିନ୍ଦୁ ଦେବ-ଦେବୀଙ୍କ ଭିତରେ କିପରି ସମ୍ବନ୍ଧ ରହିଛି ତାହା ଉଲ୍ଲେଖ କରୁଛି ।

Digitized by srujanika@gmail.com

| | |
|---|---|
| ଶିବ ଓ ଇନ୍ଦ୍ର | ଜୁପିଟର |
| ବ୍ରହ୍ମା | ସଟର୍ଣ୍ଣ |
| ଯମ | ମିନାସ |
| ବରୁଣ | ନେପଚ୍ୟୁନ |
| ସୂର୍ଯ୍ୟ | ସୋଲ |
| ଚନ୍ଦ୍ର | ଲୁନୁସ |
| ବାୟୁ | ଏୟୋଭାଜ |
| ବିଶ୍ୱକର୍ମା | କାଷ୍ଟର ଓ ପୋଲୁକ୍ସ |
| ଗଣେଶ | ଜାନୁସ |
| ବ୍ରଜନ୍ତି ବା ବୈତରାଣୀ | ଷ୍ଟିକସ୍ଥାଧି |
| କୁବେର୍ | ପ୍ଲୁଟୋ |
| କୃଷ୍ଣ | ଆପୋଲୋ |
| ନାରଦ | ମର୍କୁରି |
| ରାମ | ବାକ୍କୁସ |
| କଣ୍ଡ | ମାର୍ସ |
| ଦୁର୍ଗା | ଯୁନୋ |
| ସରସ୍ୱତୀ | ମିନର୍ଭା |
| ରମ୍ଭା | ଭେନସ |
| ଉଷା | ଅରୋରା |
| ସାଗା | ଭେଷ୍ଟ |
| ବ୍ରନିଭି | ଶୈବାଳୀ |
| ଶ୍ରୀ | ଆଇରିସ |

ଏହାପରେ ଆର୍ଯ୍ୟମାନଙ୍କର କେତେକ ଗୌଣ ଦେବ-ଦେବୀଙ୍କର ରୂପ ବିଷୟରେ ଆଲୋଚନା କରିବା ।

Digitized by srujanika@gmail.com

## ବରୁଣ ଓ ଗ୍ରୀକ ଓରାନସ

ଗ୍ରୀକମାନେ ଆକାଶକୁ ଏକ ମାରଣା ଷଣ୍ଢ ଭାବେ ନେଇ ପୂଜା କରୁଥିଲେ ଓ ଏହାକୁ ଡିଆସ କହୁଥିଲେ। ଗ୍ରୀକ ଭାଷାରେ ଓରାନସର ଅର୍ଥ ଆକାଶ। ଆର୍ଯ୍ୟମାନଙ୍କର ବରୁଣ ଓ ଗ୍ରୀକମାନଙ୍କର ଓରାନସ ଏକା ଭଳି ଦେବତା। ବରୁଣ ଆକାଶରେ ଏକ ସ୍ୱର୍ଣ୍ଣଖଚିତ ବିରାଟ ଅଟାଳିକା ମଧ୍ୟରେ ବାସ କରିବାର ବର୍ଣ୍ଣନା ରହିଛି। ଏହି ଅଟ୍ଟାଳିକାରେ ହଜାରେଟି ଦ୍ୱାର ଓ ବହୁ କୋଠରୀ ରହିଥିଲା। ବରୁଣ ଝଲମଲ କରୁଥିବା ପୋଷାକରେ ସଜ୍ଜିତ ହୋଇ ରହୁଥିଲେ। ତାଙ୍କ ପାଖରେ ଅନେକ ଦୂତ ଓ ଗୁପ୍ତଚର ରହିଥିଲେ। ବରୁଣଙ୍କୁ ଏହିପରି ପ୍ରଶଂସା କରିବା ପରେ ଋଗବେଦରେ ତାଙ୍କର ଜନ୍ମ ଓ ବଂଶକୁ ନ୍ୟୂନ କରାଯାଇଛି। ତାଙ୍କୁ ଅସୁର କହି ଅବଜ୍ଞା କରାଯିବା ସହ ସେ କୌଶଳ ପ୍ରୟୋଗ କରି ଶାସନ କରୁଥିବା କଥା କୁହାଯାଇଛି। ସଂସ୍କୃତ ପଣ୍ଡିତମାନେ ଏହି କୌଶଳର ଭିନ୍ନ ଭିନ୍ନ ଅର୍ଥ କରିଥାନ୍ତି।

## ଆର୍ଯ୍ୟମାନଙ୍କର ଜାତି ପାର୍ଥକ୍ୟ

ଈଶ୍ୱର ବା ଦେବତାମାନଙ୍କର କୌଣସି କୌଶଳକୁ ପ୍ରଶଂସା କରାଯାଇ ତାହାକୁ ମାୟା ବା ଲୀଳା ବୋଲି ଅଭିହିତ କରାଯାଇଛି। ଅପର ପକ୍ଷରେ ଅସୁର ମାନଙ୍କର କୌଶଳକୁ ନିନ୍ଦା କରାଯାଇ ତାହାକୁ ମଣିଷ ଜାତି ପାଇଁ କ୍ଷତିକାରକ ବୋଲି ନିଆଯାଇଛି। ଏପରିକି ଶବ୍ଦ ପ୍ରୟୋଗ ବା ବର୍ଣ୍ଣନା କ୍ଷେତ୍ରରେ ବି ଆର୍ଯ୍ୟମାନେ ଜାତିଗତ ବିଭେଦ କରିଥାନ୍ତି।

ବରୁଣଙ୍କର କେତେକ କୌଶଳ ପ୍ରୟୋଗ ଯୋଗୁଁ ସୂର୍ଯ୍ୟ ଶୂନ୍ୟରେ ଗତିଶୀଳ ହୋଇଥାନ୍ତି। ସୂର୍ଯ୍ୟ ବରୁଣଙ୍କର ଚକ୍ଷୁ ବୋଲି କୁହାଯାଇଛି। ବରୁଣଙ୍କୁ ମଧ୍ୟ ବର୍ଷାର ଈଶ୍ୱର ତଥା ସାଗର, ନଦୀର ଦେବତା ବୋଲି ଚିତ୍ରଣ କରାଯାଇଛି। ଆକାଶକୁ ବରୁଣଙ୍କର ଚିହ୍ନ ବୋଲି ଲୋକମାନେ ଗ୍ରହଣ କରି ଆସିଛନ୍ତି। ବରୁଣଙ୍କର ଏହି ସ୍ୱରୂପ ବିଷୟ ପ୍ରାଚୀନ ଗ୍ରନ୍ଥମାନଙ୍କରେ ଉଲ୍ଲେଖ ରହିଛି।

ଋଗବେଦରେ ବିଷ୍ଣୁଙ୍କୁ ଏକ ଗୌଣ ଦେବତା ଭାବେ ଚିତ୍ରଣ କରାଯାଇଛି। ସେ ଜଣେ ମନଇଛାରେ ଭ୍ରମଣ କରୁଥିବା ଦେବତା ଯେ ଧରିତ୍ରୀ, ସ୍ୱର୍ଗ ଓ ଆକାଶରେ ମୁକ୍ତ ଭାବରେ ଭ୍ରମଣ କରିପାରନ୍ତି। ପୁରାଣରେ ବାମନ ଅବତାର

Digitized by srujanika@gmail.com

କ୍ଷେତ୍ରରେ ଏହି କାହାଣୀର ବର୍ଣ୍ଣନା ରହିଛି । ସୂର୍ଯ୍ୟଙ୍କୁ ବିଷ୍ଣୁଙ୍କର ପ୍ରତିନିଧି ଭାବେ ବି ପୁରାଣରେ ନିଆଯାଇଛି ।

## ପ୍ରେମିକ ମାତା-ଭଉଣୀ

ଆକାଶ-ଦେବତା ବରୁଣ ଓ ତାଙ୍କ ପତ୍ନୀ ଅଦିତୀଙ୍କ ଔରସରୁ ସୂର୍ଯ୍ୟ ଦେବତାଙ୍କର ଜନ୍ମହୁଏ । ସକାଳର ପ୍ରାତକାଳକୁ ଜଣେ ଦେବୀ "ଉଷା" ବୋଲି ନିଆଯାଇଛି ଯେ ସୂର୍ଯ୍ୟଙ୍କ ସହ ପ୍ରେମରେ ପଡିଛନ୍ତି । ତେବେ ସୂର୍ଯ୍ୟଙ୍କ ସହ ଉଷାଙ୍କର ସଂପର୍କକୁ ବିଚିତ୍ର କରାଯାଇଛି । ସକାଳରେ ସେ ସୂର୍ଯ୍ୟଙ୍କର ପ୍ରେମିକା, ମଧ୍ୟାହ୍ନ ପରେ ସେ ସୂର୍ଯ୍ୟଙ୍କର ମାଆ ଓ ରାତ୍ରି ଆଗମନରେ ସେ ସୂର୍ଯ୍ୟଙ୍କର ଭଉଣୀ । ପୁନଶ୍ଚ ଦେବୀ ଉଷା ଓ ଅଗ୍ନି ଦେବଙ୍କ ମଧ୍ୟରେ ନିବିଡ ସଂପର୍କ ଥିବା କୁହାଯାଇଛି ।

ନିଶାଗ୍ରସ୍ତ ହେବାକୁ ଦୈବ-ସ୍ଥାନ (ଡିଭାଇନ ଷ୍ଟାଟସ) ଦିଆଯାଇଛି । ସୋମଦେବ ହେଉଛନ୍ତି ନିଶାସକ୍ତଙ୍କର ଦେବତା । ଗ୍ରୀକ୍ ରୋମାନମାନଙ୍କର ମଦ୍ୟର ମଧ୍ୟ ଏକ ଦେବତା ରହିଛନ୍ତି ଯେ ହେଲେ ବାକ୍କୁସ ।

## ଅଶ୍ୱିନୀ ଦେବ

ଅଶ୍ୱିନୀମାନେ ହେଲେ ଦୁଇ ଅଭିନ୍ନ ଦେବତା, ଯେଉଁମାନେ ସେମାନଙ୍କର ନିଶାଗ୍ରସ୍ତ ସ୍ୱରୂପ ପାଇଁ ବେଶ୍ ପରିଚିତ । ଋଗବେଦର ବର୍ଣ୍ଣନାନୁଯାୟୀ ସେମାନେ ସର୍ବଦା ନିଜର ରଥରେ ମଦପାତ୍ର ନେଇ ଭ୍ରମଣ କରନ୍ତି । ସେମାନେ ନିଜେ ପିଅନ୍ତି ଓ ଅନ୍ୟକୁ ଯୋଗାନ୍ତି । ତାଙ୍କ ରଥକୁ ବଳଦ ବା ଗଧମାନେ ଟାଣନ୍ତି । ଉଷା ସେମାନଙ୍କର ଭଉଣୀ, ଏହି ଦୃଷ୍ଟିରୁ ସେମାନଙ୍କର ସୂର୍ଯ୍ୟଦେବଙ୍କ ସହ ସୁସଂପର୍କ, ତେବେ ଏହି କଥାକୁ କଦର୍ଥ କରାଯାଇ ବିକୃତ କରାଯାଇଛି । ସୂର୍ଯ୍ୟ ଏକ ତରୁଣୀ ରୂପ ନେଇ ସେହି ଦୁଇଜଣଙ୍କ ସହ ଯୌନ ସଂପର୍କ ରଖିଛନ୍ତି । ଅନ୍ୟ ଏକ କାହାଣୀ ଅନୁଯାୟୀ ସୂର୍ଯ୍ୟଙ୍କର କନ୍ୟା ଅଶ୍ୱିନୀ ଦ୍ୱୟଙ୍କର ପତ୍ନୀ ହୋଇଛନ୍ତି । ଏହି କାହାଣୀଟି ପୂର୍ବ କାହାଣୀ ସୂର୍ଯ୍ୟ ତରୁଣୀ ହୋଇ ଅଶ୍ୱିନୀ ଦ୍ୱୟଙ୍କୁ ଉପଭୋଗ କରିବା କଥାକୁ ମିଥ୍ୟା ପ୍ରମାଣିତ କରୁଛି । ଉଭୟ କାହାଣୀର ବର୍ଣ୍ଣନା ଶାସ୍ତ୍ରରେ ରହିଛି ।

Digitized by srujanika@gmail.com

ଅନ୍ୟ ବର୍ଣ୍ଣନାନୁଯାୟୀ ଅଶ୍ୱିନୀ ଦ୍ୱୟ ହେଉଛନ୍ତି ଦେବତାମାନଙ୍କର ଚିକିତ୍ସକ। ଅଶ୍ୱିନୀ ଦ୍ୱୟ ଯେତେବେଳେ ଚିକିତ୍ସା ପାଇଁ ଯୁଆଡେ ଯାନ୍ତି, ସେମାନେ ନିଜ ରଥରେ ସେମାନଙ୍କର ଏକ ପତ୍ନୀ ସୂର୍ଯ୍ୟଙ୍କ କନ୍ୟାକୁ ନେଇକରି ଯାଆନ୍ତି।

ପ୍ରାତଃକାଳକୁ ଏକ ବ୍ୟକ୍ତିସତ୍ତାର ରୂପ ଦିଆଯାଇଛି ଯାହାଙ୍କୁ ସାବିତ୍ରୀ କୁହାଯାଉଛି। ସକାଳ ସମୟରେ ଗାୟତ୍ରୀ ଜପଦ୍ୱାରା ସାବିତ୍ରୀଙ୍କୁ ବରଦାନ ଉଦ୍ଦେଶ୍ୟରେ ପ୍ରାର୍ଥନା କରାଯାଏ। ଏଠାରେ ଜଣେ ନାରୀ ଦେବୀଙ୍କୁ ପ୍ରାର୍ଥନା କରାଯାଉଥିଲେ ବି, କେତେକ ଶ୍ଳୋକ ମହିଳାମାନଙ୍କର ସ୍ୱାଭିମାନର ପରିପନ୍ଥୀ ମନେହୁଏ।

ଦେବତାମାନେ ରୋଗ, ବାର୍ଦ୍ଧକ୍ୟ ଓ ମୃତ୍ୟୁରୁ ମୁକ୍ତ ଥିବାର ବର୍ଣ୍ଣନା ଥିବା ବେଳେ, ପୁଣି ଅଶ୍ୱିନୀ ଦ୍ୱୟଙ୍କୁ ଦେବତାମାନଙ୍କର ଚିକିତ୍ସକ କରାଯିବା କେତେ ଦୂର ଯୁକ୍ତିସଂଗତ? ଯେଉଁ ଦେବତାମାନେ ଚିର ସ୍ୱାସ୍ଥ୍ୟବାନ ଓ ଯୁବକ ତଥା ମୃତ୍ୟୁରହିତ ସେମାନଙ୍କର ଚିକିତ୍ସାର କଣ ଆବଶ୍ୟକ ରହିଛି? ଏହା ସହିତ ଏକ ପ୍ରତାରଣା ଥିବା ମନେହୁଏ। ଅଶ୍ୱିନୀ ଦ୍ୱୟ ସେମାନଙ୍କର ଚିକିତ୍ସା ଦକ୍ଷତା ପାଇଁ ପ୍ରଶଂସିତ , ତେବେ ସେମାନେ କିପରି ଓ କେଉଁ ଔଷଧ ପ୍ରୟୋଗ କରି ଚିକିତ୍ସା କରନ୍ତି, ତାହାର ବର୍ଣ୍ଣନା କେଉଁଠି ନାହିଁ। ପୁନଶ୍ଚ ଅଶ୍ୱିନୀ ତାଙ୍କର ଚିକିତ୍ସା ଜ୍ଞାନ କାହାକୁ ନଦେଇ ନିଜ ପାଖରେ ଗୁପ୍ତ କରି ରଖିବା ଦେଖାଯାଏ।

ଅଶ୍ୱିନୀ କାହାଣୀର ଅନ୍ୟ ଏକ ବିବରଣ ଦେଖିବାକୁ ମିଳେ। ଅଶ୍ୱିନୀ ଦ୍ୱୟ ସୂର୍ଯ୍ୟଙ୍କ ସହ ପ୍ରେମ କରିବା ପାଇଁ ଉଦ୍ୟତ, କିନ୍ତୁ ସୂର୍ଯ୍ୟ ସେମାନଙ୍କୁ ପ୍ରତିରୋଧ କରି ଆସିଛନ୍ତି। ପ୍ରତିଦିନ ପ୍ରାତଃ କାଳରେ ଅଶ୍ୱିନୀ ଦ୍ୱୟ ରୂପ ପରିବର୍ତ୍ତନ କରୁଥିବା ସୂର୍ଯ୍ୟଙ୍କ ସହ ପ୍ରେମ ପାଇଁ ବ୍ୟସ୍ତତା ପ୍ରକାଶ କରନ୍ତି। ଅନ୍ୟ ଏକ କାହାଣୀ ଅନୁଯାୟୀ ଅଶ୍ୱିନୀ ଦ୍ୱୟ ସୂର୍ଯ୍ୟଙ୍କୁ ବିବାହ କରିବାକୁ ତାଙ୍କୁ ଅନୁଧାବନ କରନ୍ତି ନାହିଁ, ବରଂ ତାଙ୍କୁ ଚନ୍ଦ୍ରଙ୍କ ସହ ବିବାହ କରାଇବାକୁ ଅନୁଧାବନ କରିଥାନ୍ତି।

ଗ୍ରୀକମାନଙ୍କର କିମ୍ବଦନ୍ତୀ ଭିତରେ ଏହିପରି ଅନେକ କାହାଣୀ ରହିଥିବା ଦେଖାଯାଏ। ଲେଟିସ ଦେବଙ୍କର ଦୁଇ ପୁତ୍ର, ଯେଉଁମାନେ ସୂର୍ଯ୍ୟଙ୍କର

Digitized by srujanika@gmail.com

କନ୍ୟା କିମ୍ବା ସୂର୍ଯ୍ୟଦେବ କିପରି ସମୁଦ୍ରରେ ବୁଡି ନ ଯିବେ ସେପାଇଁ ତାଙ୍କୁ ସୁରକ୍ଷା ଦେବାକୁ ପ୍ରୟାସ କରି ଆସୁଛନ୍ତି ।

କେତେକ ଗବେଷକଙ୍କ ମତରେ ଅଶ୍ୱିନୀ ଦ୍ୱୟ ପ୍ରାତଃ କାଳ ଓ ସନ୍ଧ୍ୟାକାଳର ପ୍ରତୀକ ବା ଉଦ୍‌ଭାଷିତ ସକାଳ ଓ ସନ୍ଧ୍ୟାତାରା ଭେନସର ପ୍ରତିନିଧିତ୍ୱ କରନ୍ତି । ସକାଳ ତାରା ଓ ସନ୍ଧ୍ୟା ତାରାକୁ କାଷ୍ଟର ଓ ପୋଲୁକ୍ସ କୁହାଯାଏ, ଯାହା ଅଶ୍ୱିନୀ ଦ୍ୱୟ ବୋଲି ପ୍ରଫେସର ୱେବର ମତ ଦେଇଛନ୍ତି ।

**ଇନ୍ଦ୍ର**

ବୈଦିକ ଆର୍ଯ୍ୟମାନଙ୍କର ମୁଖ୍ୟ ଦେବତା ହେଉଛନ୍ତି ଇନ୍ଦ୍ର । ଋଗବେଦର ଏକ ଚତୁର୍ଥାଂଶରେ ଇନ୍ଦ୍ରଙ୍କର ବର୍ଣ୍ଣନା ରହିଛି । ଆର୍ଯ୍ୟମାନେ ନିଜର ସଫଳତା ପାଇଁ ଇନ୍ଦ୍ରଙ୍କୁ ଅନେକ ସ୍ତୁତି କରିଛନ୍ତି । ଇନ୍ଦ୍ରଙ୍କୁ ନେଇ ପୁରାଣମାନଙ୍କରେ ଅନେକ କାହାଣୀ ଓ କିମ୍ବଦନ୍ତୀ ମାନ ରହିଛି । ଇନ୍ଦ୍ରଙ୍କର ପ୍ରେମ ବ୍ୟାପାରରେ ଆର୍ଯ୍ୟମାନେ ବହୁତ ଆନନ୍ଦ ପ୍ରକାଶ କରିଛନ୍ତି । ଇନ୍ଦ୍ରଙ୍କର ସ୍ୱଭାବରେ ମାନବିକ ସ୍ୱରୂପ ଯେକୌଣସି ଦେବତାଙ୍କ ଅପେକ୍ଷା ଅଧିକ ଦେଖାଯାଏ । ପ୍ରେମ ବ୍ୟାପାରରେ ତାଙ୍କର ଦୁଃସାହସିକ କାର୍ଯ୍ୟ, ଯୋଦ୍ଧୃଭାବ ଓ ଯଥେଚ୍ଛାଚାରୀ ମନୋଭାବ ଉଲ୍ଲେଖନୀୟ ।

ଇନ୍ଦ୍ର, ଭାରତୀୟ ଆର୍ଯ୍ୟମାନଙ୍କର ଅଭିନବ ସୃଷ୍ଟି ନୁହେଁ । ପର୍ସିଆ ଆର୍ଯ୍ୟମାନଙ୍କର ଜେନ୍ଦ ଆଭେସ୍ତାରେ ଇନ୍ଦ୍ରଙ୍କୁ ଜଣେ ରାକ୍ଷାସ ଭାବେ ଚିତ୍ରଣ କରାଯାଇଛି, ଯେ ବହୁ ସୋମପାନ ଜନିତ ମଦ ପାନକରନ୍ତି । ସେ ଯେତେବେଳେ ଅଧିକ ମଦ୍ୟପାନ କରନ୍ତି ସେ ସେତେବେଳେ ଅତ୍ୟନ୍ତ ଦୁଃସାହସିକ ପ୍ରଣୟମତ୍ତ କାର୍ଯ୍ୟରେ ସଂପୃକ୍ତ ରୁହନ୍ତି, ଯାହା ଅନ୍ୟ ଆର୍ଯ୍ୟ ଦେବତାଙ୍କ ଠାରୁ ବହୁ ଅଧିକ ।

ମଦ୍ୟପାନରେ ଅତ୍ୟନ୍ତ ଆଗ୍ରହ ଯୋଗୁ ଇନ୍ଦ୍ରଙ୍କୁ ସୋମପା ବୋଲି ବର୍ଣ୍ଣନା କରାଯାଇଛି । ଇନ୍ଦ୍ରଙ୍କର ଜନ୍ମ ଓ ପିତା-ମାତାଙ୍କ ବିଷୟରେ ଆର୍ଯ୍ୟ ପଣ୍ଡିତ ମାନଙ୍କ ଭିତରେ ମତପାର୍ଥକ୍ୟ ରହିଛି । କେତେକ ବେଦମନ୍ତ୍ରରେ ଇନ୍ଦ୍ର, ବର୍ଷାର ଦେବତା ବରୁଣ ବ୍ୟତୀତ ଆଉ କେହି ନୁହନ୍ତି ବୋଲି ସୂଚନା ରହିଛି । ଅନ୍ୟ କେତେକଙ୍କ ମତରେ ଇନ୍ଦ୍ର ହେଉଛନ୍ତି ବିସ୍ତରୀଙ୍କର ପୁତ୍ର ଓ ଅଗ୍ନିଙ୍କର ଯମଜ- ଭାଇ । ଏହା

Digitized by srujanika@gmail.com

ଅସଂହତିପୂର୍ଣ୍ଣ ମନେହୁଏ। ବର୍ଷା ଓ ଅଗ୍ନି ଏକତ୍ର ରହିବା ସମ୍ଭବ ନୁହେଁ। ତେବେ ଈଶ୍ୱର ବା ଦେବତାଙ୍କ ସଂପର୍କରେ ବର୍ଣ୍ଣନା ଦେବାବେଳେ କୌଣସି ଅସଂହତିପୂର୍ଣ୍ଣ ବର୍ଣ୍ଣନା ପ୍ରତି ଦୃଷ୍ଟି ଦିଆଯାଏ ନାହିଁ।

ବର୍ଷାଦେବଙ୍କର କାହାଣୀ ବେଶ୍ କୌତୂହଳପୂର୍ଣ୍ଣ। ଭ୍ରିତରଣ ନାମକ ଏକ ବିରାଟ ସର୍ପ ବାଦଲମାନଙ୍କୁ ବନ୍ଦୀ କରି ରଖିଲା। ଇନ୍ଦ୍ର ତାଙ୍କର ବଜ୍ର ବାଣ ଦ୍ୱାରା ଭ୍ରିତରଣକୁ ଆକ୍ରମଣ କରି ବାଦଲ ମାନଙ୍କୁ ମୁକ୍ତ କଲେ ଯାହାଦ୍ୱାରା ବର୍ଷା ସମ୍ଭବ ହେଲା। ଆର୍ଯ୍ୟମାନେ ଏହିପରି ବହୁ କାଳ୍ପନିକ କିମ୍ବଦନ୍ତୀମାନ ସୃଷ୍ଟି କରିଛନ୍ତି। ବର୍ଷା ସମୟରେ ଘଡ଼ଘଡ଼ି ପୂର୍ବରୁ ବିଜୁଳି ସୃଷ୍ଟି ହେବା ଘଟଣାକୁ ସେମାନେ ଏହିପରି କିମ୍ବଦନ୍ତୀ ସାହାଯ୍ୟରେ ବ୍ୟାଖ୍ୟା କରିଛନ୍ତି। ବର୍ଷାର ବୈଜ୍ଞାନିକ କାରଣ ଆର୍ଯ୍ୟମାନେ ଜାଣି ନଥିଲେ, ଫଳରେ ପ୍ରାକୃତିକ ଘଟଣା ମାନଙ୍କୁ ବୁଝାଇବା ପାଇଁ ସେମାନେ ନାନା ପ୍ରକାର କାଳ୍ପନିକ କାହାଣୀମାନ ସୃଷ୍ଟି କରିଥିଲେ। ପ୍ରତ୍ୟେକ ପ୍ରାକୃତିକ ଘଟଣାକୁ ବୁଝାଇବା ପାଇଁ ନାନା ଦୈବୀ କାରଣକୁ ସେମାନେ ଅନୁମାନ କରୁଥିଲେ। ବର୍ଷା ପାଇଁ ସେମାନେ ଯଜ୍ଞକୁଣ୍ଡ ନିର୍ମାଣ କରି ଯଜ୍ଞ କୁଣ୍ଡରେ ଘୃତ ଜାଳି ନିର୍ଗତ ଧୂମକୁ ଇନ୍ଦ୍ରଙ୍କ ପାଖକୁ ଦୂତ ଭାବରେ ବର୍ଷା ପାଇଁ ପଠାଉଥିଲେ। ବର୍ଷା ପାଇଁ ଯଜ୍ଞର ଆବଶ୍ୟକତା ରହିଛି କହି ଯଜ୍ଞଦ୍ୱାରା ଅର୍ଥ ଉପାର୍ଜନ କରିବାକୁ କୌଶଳୀ ପୂଜକମାନେ ପ୍ରୟାସ କରୁଥିଲେ।

ଭାରତର ମୂଳ ଅଧିବାସୀ ଯେଉଁମାନଙ୍କୁ ଆର୍ଯ୍ୟମାନେ ଦସ୍ୟୁ କହୁଥିଲେ ସେମାନଙ୍କ ବିରୁଦ୍ଧରେ ଯାଯାବର ଆର୍ଯ୍ୟମାନେ ଲଢ଼ିବା ପାଇଁ ଇନ୍ଦ୍ରଙ୍କୁ ତାଙ୍କ ସେନାର ମୁଖ୍ୟ ଭାବେ ପୂଜା କରୁଥିଲେ। ବେଦର ଅନେକ ଶ୍ଲୋକରେ ଦସ୍ୟୁମାନଙ୍କୁ ଧ୍ୱଂସ କରି ସେମାନଙ୍କର ଜମିକୁ ଦଖଲ କରିବାକୁ ଇନ୍ଦ୍ରଙ୍କୁ ଆବାହନ କରାଯିବା ଦେଖାଯାଏ। ଗୋରା ଆର୍ଯ୍ୟମାନଙ୍କର କଳା ଦସ୍ୟୁମାନଙ୍କ ବିରୁଦ୍ଧରେ ସଂଗ୍ରାମ କ୍ଷେତ୍ରରେ ଇନ୍ଦ୍ର ଥିଲେ ଆର୍ଯ୍ୟମାନଙ୍କର ରକ୍ଷାକର୍ତ୍ତା। ଦସ୍ୟୁମାନଙ୍କୁ କେବଳ ପରାସ୍ତରେ ସନ୍ତୁଷ୍ଟ ନ ରହି ଇନ୍ଦ୍ର ଯୃଷ୍ଟରୀ ତାଙ୍କ ପିତାଙ୍କୁ ନିଧନ କରିଥିବାର ବର୍ଣ୍ଣନା ଏକ ପୁରାଣରେ ରହିଛି। ଏ ଦୃଷ୍ଟିରୁ ଇନ୍ଦ୍ରଙ୍କୁ ପିତୃହନ୍ତା ବୋଲି କୁହାଯାଇଛି।

Digitized by srujanika@gmail.com

ଉଷାଙ୍କର ରଥକୁ ଧ୍ୱଂସ କରିବା ଓ ସୂର୍ଯ୍ୟଙ୍କର ଘୋଡାମାନଙ୍କର ପଥରୋଧ କରିବାର କାହାଣୀ ଇନ୍ଦ୍ରଙ୍କ ନିଶାସକ୍ତ ଦୁଃସାହସର ଚିତ୍ର ଦେଇଥାଏ । କିନ୍ତୁ ବାସ୍ତବରେ ବାଦଲ ଓ ବର୍ଷା ସୂର୍ଯ୍ୟଙ୍କୁ ଢାଙ୍କି ଦେଲେ ତାଙ୍କର ରଶ୍ମି ଭୂପୃଷ୍ଠକୁ ଆସିପାରେ ନାହିଁ ଓ ସୂର୍ଯ୍ୟ ରଶ୍ମିର ଉତ୍ତାପ କମିଯାଏ । ଏହି ପ୍ରାକୃତିକ ଘଟଣାକୁ ବୁଝାଇବାକୁ ସେମାନେ ସୂର୍ଯ୍ୟଙ୍କୁ ନେଇ ବିଭିନ୍ନ କାଳ୍ପନିକ କାହାଣୀମାନ ସୃଷ୍ଟି କରିଛନ୍ତି. ଉଚ୍ଚ ପର୍ବତଶିଖରେ ବାଦଲମାନଙ୍କୁ ବନ୍ଦୀ କରି ରଖିବା ପାଇଁ ଇନ୍ଦ୍ରଙ୍କୁ କଳ୍ପନା କରାଯାଇଛି ଓ ପୂର୍ବରୁ ପ୍ରଚଳିତ କାହାଣୀମାନଙ୍କୁ ଇନ୍ଦ୍ର କାହାଣୀଦ୍ୱାରା ଅଧିକ ଜୀବନ୍ତ କରିବାକୁ ପ୍ରୟାସ ହୋଇଛି ।

ଇନ୍ଦ୍ର-ବୃହତ୍ତାସୁର ଉପାଖ୍ୟାନରେ ଘଡଘଡି ବା ବର୍ଷାର ଉଲ୍ଲେଖ ନାହିଁ । ବୈଦିକ ଶ୍ଳୋକ ଅନୁଯାୟୀ ଇନ୍ଦ୍ର ଯେଉଁ ଜଳ ଛାଡିଛନ୍ତି ତାହା ଘୋଡା ଦୌଡ ଗତିରେ ପ୍ରବାହିତ ହୋଇଛି । ଶୂନ୍ୟରେ ତଳକୁ ମୁହଁ କରି ଦୌଡୁଥିବା ଘୋଡାର ଉପମା ଅତ୍ୟନ୍ତ ଅବାନ୍ତର ମନେହୁଏ । ବଜ୍ରଯୁଦ୍ଧ ଅସ୍ତ୍ର ସ୍ୱର୍ଗରେ ବି ନିର୍ମିତ ହୁଏ ଓ ଏହା ସାହାଯ୍ୟରେ ଦେବତାମାନେ ଯୁଦ୍ଧ କରନ୍ତି ପରି କଳ୍ପନାମାନ ଅତୀତରେ କରାଯାଇଛି । ଆର୍ଯ୍ୟମାନେ ପର୍ଯ୍ୟନ୍ୟ ନାମରେ ବର୍ଷାର ଅନ୍ୟ ଏକ ଦେବତା କଳ୍ପନା କରିଛନ୍ତି । ଏହିପରି ନାନା କଳ୍ପନା, ଉପମା, କାହାଣୀମାନ ଅତୀତରେ ସୃଷ୍ଟି ହୋଇଛି । ସେଗୁଡିକ ପରସ୍ପର ବିରୋଧୀ ଓ ବିଚାରଶୀଳତାର ପ୍ରତିକୂଳ ମନେହୁଏ ।

ଇନ୍ଦ୍ରର କାହାଣୀ ସହିତ ପ୍ରାଚୀନ ରୁଷର ଏକ କିମ୍ବଦନ୍ତୀର ବହୁ ସାମଂଜସ୍ୟ ରହିଛି । ଉତ୍ତର ରୁଷର ବରଫାଞ୍ଚଳରେ ଉଦ୍ଭବ ହୋଇଥିବା ଏହି କାହାଣୀ ଦକ୍ଷିଣକୁ ଆସିଛି ଓ ହୁଏତ ଆର୍ଯ୍ୟମାନଙ୍କ ଦ୍ୱାରା ଭାରତକୁ ଆସିଛି ବୋଲି କଳ୍ପନା କରାଯାଏ ।

## ରୁଦ୍ର

ରୁଦ୍ରଙ୍କୁ ଏକ ଦେବତା ଭାବେ କଳ୍ପନା କରାଯାଇଛି ଯିଏ ହେଉଛନ୍ତି ଏକ ଭୂତ ବା ପାଗଳ ହୋଇଥିବା ଏକ ବ୍ୟକ୍ତି ସଦୃଶ । ସେ ଦେଖିବାକୁ କଳା ଓ ତାଙ୍କର କେଶଗୁଚ୍ଛ ବିଶାଳ । ଏକ ବଣୁଆ ଭୟଙ୍କର ଜୀବ ଭଳି ସେ ଅତ୍ୟନ୍ତ ନିଷ୍ଠୁର । ତାଙ୍କୁ ଆକାଶର ଭାଲୁ ବା ଏକ ଭୟଙ୍କର ଜନ୍ତୁ ଭାବେ ଚିତ୍ରଣ କରାଯାଇଛି । ସେ

Digitized by srujanika@gmail.com

ଶୀଘ୍ର ଉତ୍ତେଜିତ ହୋଇଥାନ୍ତି ଓ ଅତି ଛୋଟ ଛୋଟ ଘଟଣା ବି ତାଙ୍କୁ କ୍ରୋଧାନ୍ୱିତ କରିଥାଏ । ସେ ଯେଉଁ ବଜ୍ରପାତ କରାନ୍ତି ଆର୍ଯ୍ୟମାନଙ୍କୁ ଓ ସେମାନଙ୍କର ଗୋସଂପଦକୁ ନଷ୍ଟ କରିଥାଏ । ଆର୍ଯ୍ୟମାନଙ୍କ ପ୍ରତି କ୍ରୋଧ ପ୍ରକାଶ ନ କରିବାକୁ ବେଦରେ ବହୁ ଶ୍ଳୋକ ତାଙ୍କ ଉଦ୍ଦେଶ୍ୟରେ ରଚିତ ହୋଇଛ୍ । ପୁନଶ୍ଚ ତାଙ୍କୁ ଦେବତାମାନଙ୍କର ଚିକିତ୍ସକ ବୋଲି ବି କେତେକ କ୍ଷେତ୍ରରେ ବର୍ଣ୍ଣନା ରହିଛି । ଯେଉଁ ଦେବତା ଶୀଘ୍ର କ୍ରୋଧିତ ହୁଅନ୍ତି ସେ ପୁଣି ଥଣ୍ଡା ଜଳ ପ୍ରଦାନ କରନ୍ତି, ସମ୍ଭବତଃ ଆକାଶର ଏକ କଳା ବାଦଲକୁ ରୁଦ୍ର ବୋଲି କଳ୍ପନା କରାଯାଇଛି । ଏକ କଳା ବାଦଲକୁ ବର୍ଣ୍ଣନା କରିବା ପାଇଁ ରୁଦ୍ର କାହାଣୀକୁ ଆର୍ଯ୍ୟମାନେ ସୃଷ୍ଟି କରିଛନ୍ତି ।

ଆର୍ଯ୍ୟମାନଙ୍କର କଳ୍ପନା ନାନା ଦିଗକୁ ପ୍ରସାରିତ ହୋଇଛି । ଧଳା ବାଦଲକୁ ଗାଇ ବୋଲି ନେଇଛନ୍ତି । କଳା ବାଦଲକୁ ରୁଦ୍ର ରୂପରେ ନେଇ ଧଳା ବାଦଲ ପ୍ରିସିନି ସହିତ ମିଶାଇ ସେମାନଙ୍କର ୧୮୦ ସନ୍ତାନ ମରୁଦାର ଭାବେ କଳ୍ପନା କରିଛନ୍ତି । ଅନ୍ୟ ଏକ ବର୍ଣ୍ଣନାରେ ସେମାନଙ୍କର ୨୧ଟି ସନ୍ତାନର ବର୍ଣ୍ଣନା ବି ରହିଛି । ମରୁଦାରଙ୍କ ଜନକ ଭାବେ ବାୟୁକୁ ନିଆଯାଇଛି । ପ୍ରିସିନିଙ୍କର ଦୁଇ ସ୍ୱାମୀ, ଜଣେ ବାୟୁ ଓ ଜଣେ ରୁଦ୍ର । ସବୁ ସନ୍ତାନ ମାନଙ୍କର ବୟସ ସମାନ, କାରଣ ସେମାନେ ଏକ ସମୟରେ ଜନ୍ମ ହୋଇଛନ୍ତି । ଅନ୍ୟ ଏକ ବୈଦିକ ବିଶ୍ୱାସାନୁଯାୟୀ ମରୁଦାରମାନଙ୍କର ଜନ୍ମ ବିନା ପିତାମାତାରେ ହୋଇଛି । ସେମାନେ ସ୍ୱୟଂସମ୍ଭୂତ । ଏହି କାହାଣୀ ଗୁଡିକ ମଝିରେ ମଝିରେ ପରିବର୍ତ୍ତିତ ହୋଇଛନ୍ତି । ଶୀତଳ ପବନ ପୂର୍ବରୁ ବର୍ଷାର ସ୍ପର୍ଶ ଆସିଥାଏ କିମ୍ବା ଧୂଳି ଝଡ ପରେ ବର୍ଷା ହୋଇଥାଏ । ଏହି ଘଟଣାକୁ ବୁଝାଇବାକୁ ଆର୍ଯ୍ୟମାନେ ମରୁଦାର କଳ୍ପନାକୁ ଉଦ୍‌ଭାବନ କରିଛନ୍ତି । ସଣ୍ଡ-ମରୁଦମ୍ ଅର୍ଥ ଝଡ, ମନ୍ଦ-ମରୁଦମ୍ ଅର୍ଥ ଶୀତଳ ବାୟୁ । ଏହି କଥାକୁ ବୁଝାଇବାକୁ ଆର୍ଯ୍ୟମାନେ କାଳ୍ପନିକ କାହାଣୀମାନ ସୃଷ୍ଟି କରିଛନ୍ତି ।

## ଅଗ୍ନି

ଆର୍ଯ୍ୟମାନେ ଅଗ୍ନିକୁ ଏକ ଦେବତା ଭାବେ ଗ୍ରହଣ କରିଛନ୍ତି । ତାମିଲରେ 'ବେଦିଆର' ଅର୍ଥ ଯେ ଅଗ୍ନି ସୃଷ୍ଟି କରନ୍ତି ଓ ଅଗ୍ନିର ସାହାଯ୍ୟ ନିଅନ୍ତି । ତାମିଲରେ ବେଦୁ ଅର୍ଥ ଉତ୍ତାପ । ବେଦୁ ଦେବା ଅର୍ଥ ଶରୀରରେ ଗରମ ପାଣି ବା ଗରମ ସେକ

Digitized by srujanika@gmail.com

ଦେବା । ବୈଦିକ ପୂଜକମାନେ ଅଗ୍ନିକୁ ଏକ ଦେବତା ଭାବି ତାହାକୁ ନିଜର ସାଥୀ କରିବାକୁ ପ୍ରୟାସ କରିଛନ୍ତି । ବର୍ଷା-ଦେବତା ଇନ୍ଦ୍ରଙ୍କୁ ସେମାନଙ୍କର ଇଚ୍ଛା ଜଣାଇବାକୁ ଆର୍ଯ୍ୟମାନେ ଅଗ୍ନି-ଦେବତାର ସାହାଯ୍ୟ ନେଇଛନ୍ତି । ସେମାନେ ଅଗ୍ନିକୁଣ୍ଡରେ ହୋମ କରି ସେଥିରୁ ନିର୍ଗତ ହେଉଥିବା ଧୂମ ସାହାଯ୍ୟରେ ବାଦଲକୁ ତାଙ୍କର ଇଚ୍ଛା ଜଣାଇବା ଭାବିଛନ୍ତି ।

ଅଗ୍ନିଦେବଙ୍କର ଶାରୀରିକ ଭାବେ ଆବିର୍ଭାବ ହୁଏ ବୋଲି ସେମାନେ କଳ୍ପନା କରିଛନ୍ତି । ତାଙ୍କର ପଶ୍ଚାତପଟ ହେଉଛି ଧଳା (ପୋଡି ସାରିବା ପରର ପାଉଁଶ) ତାଙ୍କର କେଶ ହେଉଛି ଅଗ୍ନିରୁ ଉଠୁଥିବା ଶିଖା, ସେ ତାଙ୍କର ପାଟିରେ ଖାଆନ୍ତି ନାହିଁ ବରଂ ତାଙ୍କର ଜିଭରେ ଚାଟି ଦିଅନ୍ତି- ଯାହାର ତାତ୍ପର୍ଯ୍ୟ ହେଉଛି କୌଣସି ଜଳିବା ବସ୍ତୁ ଅଗ୍ନି ଶିଖାରେ ଜଳିଯାଏ । ତାଙ୍କର ଖାଦ୍ୟ ହେଉଛି ଘିଅ, ଯାହା କ୍ଷୀର ଓ ଲହୁଣିରୁ ପ୍ରସ୍ତୁତ ହୋଇଥାଏ । ପୂଜକମାନେ ଲହୁଣି ଓ ଘିଅକୁ ଶ୍ରଦ୍ଧା ରଖନ୍ତି, ଅନ୍ୟ ଦେବତାମାନେ ସୋମ-ପାନ କରିବାକୁ ବହୁତ ଭଲ ପାଆନ୍ତି । ଦେବତାମାନେ ଏହି ଖାଦ୍ୟ ବା ପାନୀୟ ନେବାର କଣ ଉଦେଶ୍ୟ ତାହା ବୈଦିକ ଶ୍ଳୋକରେ ଉଲ୍ଲେଖ ନାହିଁ । ଅଗ୍ନି ବା ଦେବତାମାନେ ଏହି ଖାଦ୍ୟ ନିଅନ୍ତି ବା ତାଙ୍କର ପୂଜକ **ଭକ୍ତ**ମାନେ **ଏହା** ଗ୍ରହଣ କରନ୍ତି? ପୁଣି ଅଗ୍ନି ଦେବତା ଦିନକୁ ତିନିଥର ଖାଦ୍ୟ ଆବଶ୍ୟକ କରନ୍ତି ସକାଳେ ମଧ୍ୟାହ୍ନରେ ଓ ସନ୍ଧ୍ୟାରେ ।

## ଧୂମର ଆବରଣ ହାସ୍ୟଜନକ

ବିଭିନ୍ନ ପୂଜା ଓ କ୍ରିୟା କର୍ମରେ ପୂଜକମାନେ ଯେତିକି ଉପହାର ଓ ଦକ୍ଷିଣା ପାଆନ୍ତି ତାହା ଦେଖି ହେତୁବାଦୀ ମନରେ ସ୍ୱାଭାବିକ ପ୍ରଶ୍ନ ଆସେ ଯେ ପ୍ରକୃତରେ ପୂଜକମାନେ ଆର୍ଯ୍ୟ ଦେବତାମାନଙ୍କର ପ୍ରତିନିଧି ବା ପୋଷ୍ଟଅଫିସ ? ସବୁ ଦେବ-ଦେବୀଙ୍କର ମୁଖ ଭାବେ ଅଗ୍ନିକୁ ଗ୍ରହଣ କରାଯାଏ ଓ ସେହି ଅଗ୍ନିର ପ୍ରତିନିଧି ହେଉଛନ୍ତି ପୂଜକଶ୍ରେଣୀ । ଅଗ୍ନିକୁ ପୂଜକ ମାଧ୍ୟମରେ ଦାନ ଦିଆଯାଏ । ଅଗ୍ନି କୁଣ୍ଡରେ ନିର୍ଦ୍ଦିଷ୍ଟ ବୃକ୍ଷର କଅଁଳ ପତ୍ର, ଘିଅ, ଶଷ୍ୟ ଆହୂତି ଦେବାପରେ ଅଗ୍ନିକୁଣ୍ଡରୁ ସମ୍ମାନର ସହ ପାଉଁଶ ଉତ୍ତୋଳନ କରାଯାଏ । ସେହି ପାଉଁଶ କପାଳ, ବକ୍ଷ ଓ ବାହୁରେ ଲେପନ କରିବା ଏକ ସମ୍ମାନର ଚିହ୍ନ ଅଟେ । ଯଜ୍ଞ ରୀତି ନୀତିର ଏସବୁର ବ୍ୟବସ୍ଥା

Digitized by srujanika@gmail.com

ଓ ପାଉଁଶ ଲେପନ ଏହି ବ୍ୟବସ୍ଥାର ବଡ ତାମସା ଅଟେ । ପୁରୋହିତର କପାଳ ଓ ଉଦର ଅଗ୍ନିଦେବଙ୍କ ପାଇଁ କିପରି ମାଧ୍ୟମ ହୁଏ ତାହା ଜଣଙ୍କ ପାଇଁ ବୁଝିବା ସହଜ ନୁହେଁ । ଶାସ୍ତ୍ରର ଦ୍ୱାହି ଦେଇ ପୂଜକ ଗୋଷ୍ଠୀ ଯଜ୍ଞ ନାମରେ ଯେଉଁ ସବୁ କର୍ମକାଣ୍ଡ ସୃଷ୍ଟି କରିଛନ୍ତି ତାହା ସେମାନଙ୍କୁ ହିଁ ଲାଭବାନ କରିଆସିଛି ।

ଧୂମ ପଛରେ ଥିବା ରହସ୍ୟକୁ ଭେଦ କରିବାକୁ ବୈଜ୍ଞାନିକମାନେ ଏବେ ବି ଗବେଷଣା ଜାରି ରଖିଛନ୍ତି । କିନ୍ତୁ ଆମର ଶାସ୍ତ୍ର ସବୁ ରହସ୍ୟକୁ ଭେଦ କରିଯାଇଛି । ଅଗ୍ନିଦେବ ଧୂମକୁ ଆକାଶର ପିଲର ବା ଖମ୍ବ ପାଇଁ ସୃଷ୍ଟି କରିଛନ୍ତି । ଏହି ଖମ୍ବ ଆକାଶକୁ ଧରି ରଖୁ ନଥିଲେ ଏହା ଆର୍ଯ୍ୟମାନଙ୍କ ଉପରେ ଖସି ପଡନ୍ତା । ଧୂମରୁ ଖମ୍ବ ନିର୍ମାଣର କଳା ଯଦି ବୈଜ୍ଞାନିକ ଓ ଇଂଜିନିୟରମାନେ ପୁରୋହିତମାନଙ୍କ ଠାରୁ ଜାଣିପାରନ୍ତେ, ସେମାନେ ଯେଉଁ ଲୁହାଛଡ, ସିମେଣ୍ଟ ଓ କଂକ୍ରିଟ ଆବଶ୍ୟକ କରୁଛନ୍ତି ତାହା ଦରକାର କରନ୍ତେ ନାହିଁ । ଧୂମରୁ ଖମ୍ବ ନିର୍ମାଣ କରି ସେମାନେ ଆକାଶରେ ବି ନିର୍ମାଣ କରିପାରନ୍ତେ ।

ଜଣେ ପାଶ୍ଚାତ୍ୟ ଗବେଷକଙ୍କ ମତରେ ଏସବୁ କାହାଣୀଦ୍ୱାରା ଜନମାନସକୁ ସହଜରେ ବିଭ୍ରାନ୍ତ କରାଯାଇପାରେ । ବୈଦିକ ଆର୍ଯ୍ୟମାନେ ସାଧାରଣ ଜନଗଣଙ୍କୁ ଏହିପରି ନାନା କାହାଣୀ ଜରିଆରେ ବିଭ୍ରାନ୍ତ କରିବାର ଯେ ସଫଳ ହୋଇଛନ୍ତି ତାହା କୁହାଯାଇପାରେ ।

## ପ୍ରତ୍ୟହଃ ଜନ୍ମ ପ୍ରତ୍ୟହଃ ମୃତ୍ୟୁ

ବୈଦିକ ବିଶ୍ୱାସରେ ଅଗ୍ନି ଦେବଙ୍କର ଜନ୍ମ ଯେପରି ରହସ୍ୟମୟ, ତାଙ୍କର ଚରିତ୍ର ମଧ୍ୟ ସେହିପରି ରହସ୍ୟମୟ । ଗୋଟିଏ ସ୍ଥାନରେ ତାଙ୍କର ବର୍ଣ୍ଣନା ହେଉଛି ଯେ ସେ "ପ୍ରଥମ ଇଶ୍ୱର" ଙ୍କର ସନ୍ତାନ । ଅନ୍ୟ ଏକ ବର୍ଣ୍ଣନାରେ ସେ ଆକାଶର ଓ ଧରିତ୍ରୀର ସନ୍ତାନ । ଇନ୍ଦ୍ରଙ୍କର ଜନ୍ମ ଯେପରି ରହସ୍ୟମୟ ଅଗ୍ନିଙ୍କର ଜନ୍ମ ମଧ୍ୟ ସେହିପରି ରହସ୍ୟମୟ । ମଣିଷମାନେ ଯେପରି ଜନ୍ମ ହୁଅନ୍ତି, କିମ୍ବା ଜୀବ ଯନ୍ତୁମାନେ ଯେପରି ଜନ୍ମ ହୁଅନ୍ତି, ଏପରିକି ପକ୍ଷୀ-ଶାବକଟିଏ ଯେପରି ଜନ୍ମ ହୁଏ ଏପରି କୌଣସି ଧାରାରେ ଅଗ୍ନି ଦେବଙ୍କର ଜନ୍ମ ହୋଇନାହିଁ । ଅଗ୍ନି ଦେବଙ୍କର ପିତା ମାତା କେହି ନାହାନ୍ତି । ଆର୍ଯ୍ୟ ପୁରୋହିତଙ୍କ ହାତରେ ଦୁଇ ଖଣ୍ଡ କାଠିରୁ ଅଗ୍ନିର

Digitized by srujanika@gmail.com

ଜନ୍ମ। ପ୍ରାଚୀନ କାଳରେ ଅଗ୍ନି ଉତ୍ପନ୍ନକାରୀ କାଠର ଘର୍ଷଣରୁ ଅଗ୍ନିର ଉତ୍ପନ୍ନ ହୋଇଛି। ପୁରୋହିତ କାଠର ଘର୍ଷଣରୁ ଯେଉଁ ଦିନ ଓ ଯେଉଁ ସମୟରେ ଚାହିଁବେ ଅଗ୍ନି ଉତ୍ପନ୍ନ କରିପାରିବେ ଓ ଏହା ଏକ ଶକ୍ତିଶାଳୀ ଶକ୍ତିରେ ପରିଣତ ହୋଇପାରିବ। ତେବେ ଏକ ଭୟାବହ ଅଗ୍ନିକୁ ଏବେ ଅକ୍ଲେଶରେ ପ୍ରଶମିତ କରିହେବ। ଅର୍ଥାତ ଯେତେବେଳେ ଚାହିଁଲେ ଅଗ୍ନିର ମୃତ୍ୟୁ ସମ୍ଭବ। ଅଗ୍ନି ପ୍ରତିଦିନ ସୃଷ୍ଟି ହୁଏ, କାର୍ଯ୍ୟ ସଂପାଦନ କରି ମୃତ୍ୟୁ ମୁଖରେ ପଡେ। ତେବେ ଯଜ୍ଞକୁଣ୍ଡର ଅଗ୍ନିକୁ ନେଇ ନାନା କାଳ୍ପନିକ କାହାଣୀ ରଚନା କରାଯାଇଛି। ଅଗ୍ନିର ଅନ୍ୟ ଏକ ନାମ ହେଉଛି ଧୂମକେତୁ ଯାହାର ଆବିର୍ଭାବ ମନ୍ଦ ଫଳ ଆଣିଥାଏ। ଅଗ୍ନି ମଧ୍ୟ ଧ୍ୱଂସର ପ୍ରତୀକ। ଶକ୍ତିଶାଳୀର ଏହା ସନ୍ତାନ। ବୈଦିକ ଶ୍ଳୋକରେ ବର୍ଣ୍ଣନା ଅଛି ଯେ ଅଗ୍ନିର ଜନ୍ମ ପାଇଁ ଦଶ ଜଣ ନାରୀ ସାହାଯ୍ୟ କରିଛନ୍ତି। ଏହି ଦଶ ଜଣଙ୍କୁ ଦଶ ଆଙ୍ଗୁଳି ଭାବରେ ନିଆଯାଏ ଯାହା ସାହାଯ୍ୟରେ କାଠିରୁ ଅଗ୍ନି ସଂଯୋଗ ସମ୍ଭବ ହୁଏ।

### ପବିତ୍ର ତ୍ରୟୀ ଓ ଅପବିତ୍ର ସଙ୍କେତ

ଅଗ୍ନି ଆର୍ଯ୍ୟମାନଙ୍କ ପାଇଁ ତିନି ଗୁଣ ଆଧାରିତ ଏକ ଦେବତା। ତାଙ୍କର ତିନି ମସ୍ତକ, ତିନୋଟି ଶରୀର ଓ ତିନୋଟି ଦୀପ୍ତି ରହିଛି। ତିନି ନାମ, ତିନୋଟି ବିଭୁତିର ଚିହ୍ନ ଅଗ୍ନି ଦେବଙ୍କର ସଙ୍କେତ ବହନ କରେ। ସୁତରାଂ ଦିନରେ ତିନି ଥର ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଅଗ୍ନିରେ ଆହୂତି କରିବା ଓ ଜଳ ତର୍ପଣ କରିବା ଆବଶ୍ୟକ। ଏହା ଅଗ୍ନି ଦେବଙ୍କ ସାଦୃଶ୍ୟ ଆଧାରରେ କରାଯାଏ। ଏ ସତ୍ତ୍ୱେ ତିନି ସଂଖ୍ୟାଟି ଏକ ଅଶୁଭର ଚିହ୍ନ ବହନ କରେ। ତିନି ଜଣ ମିଶି କୌଣସି କାର୍ଯ୍ୟ କରିବାକୁ ଅଶୁଭ ମନେ କରାଯାଏ। କେତେକ ବ୍ୟକ୍ତି ତିନି ସଂଖ୍ୟାକୁ ଅତି ଖରାପ ଦୃଷ୍ଟିରେ ଦେଖନ୍ତି। ଆର୍ଯ୍ୟମାନଙ୍କର ଈଶ୍ୱର ତ୍ରୟୀ ବୋଲି କଳ୍ପନା ରହିଛି ଓ ପ୍ରତ୍ୟେକଙ୍କୁ ପୁଣି ତିନୋଟି ଗୁଣରେ ଭୂଷିତ କରାଯାଇଛି। ଏହି ତିନି ଈଶ୍ୱରଙ୍କୁ ଭକ୍ତି ସ୍ୱରୂପ ହିନ୍ଦୁମାନେ କପାଳରେ ତିନି ଗାର ବିଶିଷ୍ଟ (ଉଭୟ ଲମ୍ବରେ ଓ ଓସାରରେ) ଚିତା ଲଗାନ୍ତି। ଏସବୁ ସତ୍ତ୍ୱେ ତିନି ସଂଖ୍ୟା ଅଶୁଭ ନେଇ କୁସଂସ୍କାର ଜନମାନସରେ ରହିଛି।

Digitized by srujanika@gmail.com

ବ୍ରାହ୍ମଣମାନେ ଭାବନ୍ତି ଯେ ସେମାନେ ଦୁଇଥର ଜନ୍ମ ନିଅନ୍ତି । ଥରେ ନିଜ ମାଆଙ୍କ ଠାରୁ ଆଉ ଥରେ ବ୍ରତ ହୋଇ ପଇତା ଧାରଣ କରିବା ଦ୍ୱାରା, ଏହି କୁସଂସ୍କାର ଭାବନାକୁ ସେମାନେ ଅଗ୍ନି ପାଖକୁ ମଧ୍ୟ ପ୍ରସାରିତ କରିଛନ୍ତି । ଅଗ୍ନିକୁ ଦେବତାର ମାନ୍ୟତା ଦେବା ସହ ପୁଣି ଅଗ୍ନିକୁ ସବୁ ଦେବତାଙ୍କ ଭିତରେ ଶ୍ରେଷ୍ଠ ସ୍ଥାନ ଓ ବ୍ରାହ୍ମଣର ଭୂମିକା ଦେଇଛନ୍ତି ।

ଅଗ୍ନିକୁ ଦେବତା ଭାବିବା ଓ ଅଗ୍ନିରେ ଆହୂତି ଦେବା ସଂସ୍କୃତ ଜାଣିଥିବା ବ୍ରାହ୍ମଣଙ୍କର ଏକାଧିପତ୍ୟ ବ୍ୟାପାର ନୁହେଁ । ବିଭିନ୍ନ ପ୍ରାଚୀନ ସଭ୍ୟତାରେ ଓ ବିଶେଷ କରି ପ୍ରାଚୀନ ଗ୍ରୀକ୍ ଓ ରୋମ ସଭ୍ୟତାରେ ଅଗ୍ନିକୁ ଦେବତା ଭାବି ପୂଜା କରିବାର ପରଂପରା ବି ରହିଥିଲା । ତେବେ ପାଶ୍ଚାତ୍ୟରେ ଏହି ପ୍ରଥାକୁ ପ୍ରାଚୀନ ଓ ଅସଭ୍ୟ ପ୍ରଥା ଭାବେ ନେଇ ସେମାନେ ପରିହାର କରି ସାରିଥିବା ବେଳେ ହିନ୍ଦୁମାନେ ଏପର୍ଯ୍ୟନ୍ତ ଏହାକୁ ଧରି ରଖିଛନ୍ତି । ଏହା ସେମାନଙ୍କର ପରିବର୍ତ୍ତନ ବିରୋଧୀ, ସ୍ଥିତିଶୀଳ ଓ ବିଚାରହୀନ ମାନସିକତାର ପରିଚୟ ଦିଏ ।

## ବେଦରେ ବ୍ରହ୍ମାଙ୍କର ସ୍ଥାନ ନାହିଁ

ବ୍ରାହ୍ମଣବାଦରେ ବ୍ରହ୍ମା ଏକ ମୁଖ୍ୟ ସ୍ଥାନ ନେବା ଦେଖାଯାଏ, ଯାହାଦ୍ୱାରା ବ୍ରାହ୍ମଣମାନେ ସାମାଜିକ ଜୀବନରେ ନିଜର ପ୍ରାଧାନ୍ୟ ବିସ୍ତାର କରିପାରିବେ । ବ୍ରହ୍ମା ଓ ବ୍ରାହ୍ମଣ ଭିତରେ ଶବ୍ଦ ଗତ ସାମଂଜସ୍ୟତା ଯୋଗୁଁ ପୃଥିବୀରେ ବ୍ରାହ୍ମଣମାନେ ବ୍ରହ୍ମାଙ୍କର ପ୍ରତିନିଧି ବୋଲି ନିଜକୁ ବ୍ୟକ୍ତ କରିଥାନ୍ତି ।

ପ୍ରଜାପତି ଆଉ ଏକ ଦେବତା ଯାହାଙ୍କୁ କି ଉଚ୍ଚ ସ୍ଥାନ ଦିଆଯାଇଛି । ପ୍ରଜାପତି ବିଶ୍ୱକୁ ସୃଷ୍ଟି କରିଛନ୍ତି ବୋଲି ବର୍ଣ୍ଣନା ରହିଛି ଓ କେତେକ ପୁରାଣରେ ଆର୍ଯ୍ୟ ପରଂପରାର ଈଶ୍ୱର ତ୍ରୟୀ ପରେ ଚତୁର୍ଥ ସ୍ଥାନ ପ୍ରଜାପତିଙ୍କୁ ଦିଆଯାଇଛି । ତ୍ରିଭୁବନର ସ୍ରଷ୍ଟା ଭାବେ ତାଙ୍କୁ ହିଁ ଗୌରବାନ୍ୱିତ କରାଯାଇଛି । ତେବେ ପ୍ରଜାପତିଙ୍କୁ ଆଧାର କରି ରହିଥିବା କାହାଣୀମାନଙ୍କ ଭିତରେ ସହମତି ନାହିଁ । ଏପରିକି ପ୍ରଜାପତିଙ୍କୁ ନେଇ ଅନେକ କାହାଣୀ ଅତ୍ୟନ୍ତ ଅରୁଚିକର ଓ ଘୃଣାଜନକ ।

Digitized by srujanika@gmail.com

ନିଜକୁ ଲୋକମାନଙ୍କ ଚକ୍ଷୁରେ ସର୍ବଦା ଉଚ୍ଚରେ ରଖିବା ପାଇଁ ତଥା ବ୍ରହ୍ମାଙ୍କର ପ୍ରତିନିଧି ବୋଲି ନିଜକୁ ପରିଚିତ କରାଇବା ପାଇଁ ବ୍ରାହ୍ମଣମାନେ ପୁରାଣ ମାନଙ୍କରେ ନୂଆ ନୂଆ କାହାଣୀ ଓ ଉପାଖ୍ୟାନ ମାନ ଚତୁରତାର ସହ ସଂଶ୍ଳିଷ୍ଟ କରିଆସିଛନ୍ତି । ଏଥିରେ ଦୁଇଟି ଉଦ୍ଦେଶ୍ୟ ନିହିତ ରହିଛି । ପ୍ରଥମଟି ହେଲା ସମାଜକୁ ସର୍ବଦା ଉଚ୍ଚ ନୀଚ ଜାତି ଆଧାରରେ ବିଭାଜିତ କରି ରଖିବା ଓ ଦ୍ୱିତୀୟଟି ହେଲା ସବୁ ଜାତିମାନଙ୍କ ଭିତରେ ବ୍ରାହ୍ମଣମାନଙ୍କୁ ଶ୍ରେଷ୍ଠ ସ୍ଥାନ ଦେବା । ବୌଦ୍ଧଧର୍ମର ପ୍ରଭାବରେ ହିନ୍ଦୁଧର୍ମର ଜାତି ବ୍ୟବସ୍ଥା ଯେତେବେଳେ ନଷ୍ଟ ହେବାକୁ ବସିଛି ସେତେବେଳେ ଜାତି ବ୍ୟବସ୍ଥାକୁ ସୁଦୃଢ ରଖିବାକୁ ନୂଆ ନୂଆ କୌଶଳ ଦ୍ୱାରା ପ୍ରୟାସ ହୋଇଛି । ସେହି ପରିପ୍ରେକ୍ଷୀରେ ବ୍ରହ୍ମା ଚରିତ୍ରକୁ ସୃଷ୍ଟି କରାଯାଇ ଓ ବ୍ରାହ୍ମଣମାନଙ୍କୁ ବ୍ରହ୍ମାଙ୍କର ପ୍ରତିନିଧି କରାଯାଇଛି । ତେବେ ପରବର୍ତ୍ତୀ ବୈଦିକ ସାହିତ୍ୟରେ ବ୍ରହ୍ମାଙ୍କ ବିଷୟରେ ବିଶେଷ କିଛି କୁହାଯାଇ ନାହିଁ ।

### ଆଡମ୍ବରପୂର୍ଣ୍ଣ ସମାରୋହ

ମନୁଙ୍କ ସମୟରେ ବ୍ରହ୍ମାଙ୍କୁ ଗୁରୁତ୍ୱ ଦିଆଯାଇ ଉପସ୍ଥାପନ କରାଗଲା । ବ୍ରାହ୍ମଣ୍ୟବାଦୀ ଜଘନ୍ୟ ଜାତି ବ୍ୟବସ୍ଥାକୁ ସୁଦୃଢ କରିବାକୁ ବ୍ରହ୍ମାଙ୍କୁ ସୃଷ୍ଟି କରାଗଲା । ବ୍ରହ୍ମା ବିଶ୍ୱ ସର୍ଜନା କରିଛନ୍ତି ଓ ବିଭିନ୍ନ ବର୍ଣ୍ଣର ଲୋକମାନେ ତାଙ୍କ ଶରୀରରୁ ଉତ୍ପନ୍ନ ହୋଇଛନ୍ତି ବୋଲି ପ୍ରଚାର କରାଗଲା । ଜାତିମାନେ ଓ ଚାରି ବର୍ଣ୍ଣର ଲୋକମାନେ ବ୍ରହ୍ମାଙ୍କ ଶରୀରରୁ ଉଦ୍‌ଭବ ହୋଇଥିବା କୁହାଯାଇ ଏହି ବ୍ୟବସ୍ଥାକୁ ଏକ ଧର୍ମୀୟ ଓ ଦୈବୀ ସ୍ୱୀକୃତି ପ୍ରଦାନ କରାଗଲା ।

ଏକ ସ୍ୱର୍ଣ୍ଣ ଡିମ୍ବରୁ ବ୍ରହ୍ମାଙ୍କର ଜନ୍ମ ହୋଇଥିବା ମଧ୍ୟ କୁହଗଲା । ତେବେ ବ୍ରହ୍ମା ଆଉ ପୂଜା ବା ସମ୍ମାନର ପାତ୍ର ହୋଇ ରହିଲେ ନାହିଁ । ଜ୍ଞାନର ବିକାଶ ଓ ଅନୁଭୂତିର ପ୍ରସାର ଫଳରେ ବିଶ୍ୱ ସଂପର୍କରେ ଧାର୍ମିକ ଧାରଣା ଗୁଡିକ କାଳକ୍ରମେ ଆଧାରହୀନ ମନେହେଲା । ମୁକ୍ତ ଭାବରେ ଯେଉଁମାନେ ଚିନ୍ତାକଲେ ସେମାନେ ପୂଜକ ଶ୍ରେଣୀର ହାସ୍ୟଜନକ କଥା ଗୁଡିକରେ ଆଦୌ ବିଶ୍ୱାସ କଲେ ନାହିଁ । ତେବେ ଗୋଷ୍ଠୀ ଜୀବନରେ କିଛି ସ୍ୱାଧୀନତା ଯୋଗୁଁ ନୂଆ ନୂଆ ଦେବ ଦେବୀର କଳ୍ପନା କରାଯାଇ ସ୍ୱତନ୍ତ୍ର ପୂଜାମାନ ଅନୁଷ୍ଠିତ ହେଲା । ପ୍ରାଚୀନ ପୂଜା ଆରାଧନା

Digitized by srujanika@gmail.com

ଜନିତ ବିଶ୍ୱାସ କାଳକ୍ରମେ ଲୋକମାନଙ୍କ ପାଖରୁ ଅପସରି ଯାଇଥାନ୍ତା । ତେବେ ବୈଦିକ ଦେବଦେବୀ ସ୍ଥାନରେ ନୂଆ ନୂଆ ଦେବ-ଦେବୀଙ୍କୁ ସୃଷ୍ଟି କରାଗଲା । ପୂଜକ ଶ୍ରେଣୀ ନୂଆ ଦେବ ଦେବୀଙ୍କ ପାଇଁ ନୂଆ ନୂଆ ରୀତି ନୀତି, ପୂଜା ପଦ୍ଧତି, ମନ୍ତ୍ର, କର୍ମକାଣ୍ଡ ସୃଷ୍ଟି କଲେ । ବିରାଟକାୟ ଦେଉଳ ମନ୍ଦିର ଓ ଆଡମ୍ବରପୂର୍ଣ୍ଣ ସମାରୋହ ମାନ କରାଯାଇ ଲୋକମାନଙ୍କୁ ଆକର୍ଷିତ କରାଗଲା । ବ୍ରାହ୍ମଣ୍ୟବାଦ ନୂଆ ରୂପରେ ନିଜର କର୍ତ୍ତୃତ୍ୱ ପୁଣି ବଜାଏ ରଖିଲା । ବୈଦିକ ଦେବ-ଦେବୀଙ୍କ ସ୍ଥାନରେ ବହୁ ପରେ ଶିବ ବିଷ୍ଣୁଙ୍କୁ ଆର୍ଯ୍ୟ ଦେବତା ଭାବେ ଗ୍ରହଣ କରି ନିଆଗଲା ।

ବେଦରେ ଶିବଙ୍କ ବିଷୟ ଉଲ୍ଲେଖ ନାହିଁ । ଶିବ' ଶବ୍ଦର ଅର୍ଥହେଲା ଯେ ପ୍ରେମମୟ କିମ୍ବା ଯେ ପବିତ୍ର । ମହାଭାରତରେ ଅଗ୍ନିଙ୍କୁ ଶିବ ବୋଲି ବର୍ଣ୍ଣନା କରାଯାଇଛି ।

ବୈଷ୍ଣବ ସଂପ୍ରଦାୟରେ ବୈଦିକ ବିଷ୍ଣୁ ଓ ପରବର୍ତ୍ତୀ ସମୟରେ ବିଷ୍ଣୁଙ୍କ ମଧ୍ୟରେ ଜଣେ ପାର୍ଥକ୍ୟ ଦେଖିପାରିବ । ବ୍ରାହ୍ମଣବାଦ ଏହାଦ୍ୱାରା ଅଧିକ ଦୃଢ ହୋଇଛି । ବିଷ୍ଣୁ ଧରାପୃଷ୍ଠରେ ଦଶ ଥର ଅବତାର ନେଇଥିବା କୁହାଯାଇଛି । ତେବେ ଏହି ଅବତାରର ସମୟ କେବେ ତାହା କୌଣସି ସ୍ଥାନରେ ନିରୂପିତ ହୋଇନାହିଁ । ଏହି ଅବତାରବାଦ ଭାବନା ଓ କାହାଣୀ ଦ୍ୱାରା ବ୍ରାହ୍ମଣବାଦୀ ଜାତି ବ୍ୟବସ୍ଥା ସୁଦୃଢ ହୋଇଛି । ଯେଉଁ ରାଜାମାନେ ବ୍ରାହ୍ମଣବାଦର ପ୍ରସାରକୁ ପ୍ରତିରୋଧ କରିଛନ୍ତି ସେହିମାନଙ୍କର ପତନ ପାଇଁ ଅବତାରବାଦ କାହାଣୀ ସହାୟ ହୋଇଛି । ପ୍ରତ୍ୟେକ ଅବତାରର ଉଦ୍ଦେଶ୍ୟ ହେଉଛି ଏକ ନିଷ୍ଠୁର ଶାସକଙ୍କୁ ଧ୍ୱଂସ କରି ବ୍ରାହ୍ମଣବାଦକୁ ଲୋକଙ୍କ ଭିତରେ ପ୍ରସାର କରାଇବା ।

### ସଂସ୍କୃତ ଭାଷା ମନା

ବ୍ରାହ୍ମଣବାଦର ଆଧିପତ୍ୟକୁ ପ୍ରତିଷ୍ଠା କରିବାକୁ ଏକ ଐତିହାସିକ ପୃଷ୍ଠଭୂମିରେ ଦୁଇ ମହାକାବ୍ୟ ରାମାୟଣ ଓ ମହାଭାରତ ସହାୟକ ହୋଇଛି । ଭାରତୀୟ ଶାସକମାନଙ୍କର ପରାଜୟ ବା ପତନର ବହୁ ପୂର୍ବରୁ ରାମ ଓ କୃଷ୍ଣଙ୍କ ବିଷୟରେ କେତେକ କାହାଣୀ ଭାରତୀୟ ସମାଜରେ ପ୍ରଚଳିତ ରହିଥିଲା । ଏହି ପୃଷ୍ଠଭୂମିରେ ବ୍ରାହ୍ମଣବାଦର ପ୍ରତିଷ୍ଠା ପାଇଁ ରାମ, କୃଷ୍ଣଙ୍କ ବିଷୟରେ ଥିବା କାହାଣୀ

Digitized by srujanika@gmail.com

ଗୁଡିକରେ ଆର୍ଯ୍ୟ କବିମାନେ ବ୍ରାହ୍ମଣବାଦୀ ଭାବନା ଦେଇ ସେମାନଙ୍କୁ ଅବତାର କରିଦେଲେ ।

ସାଧାରଣ ମଣିଷର ବୋଧଗମ୍ୟତା କ୍ଷେତ୍ରରେ ବେଦ ଜଟିଳ ଥିବାରୁ ପୂଜକ ଗୋଷ୍ଠୀ ବିଭିନ୍ନ କର୍ମକାଣ୍ଡ ସୃଷ୍ଟି କଲେ । ଧାର୍ମିକ ରୀତି, ନୀତି ଓ କର୍ମକାଣ୍ଡକୁ ପାଳନ କରିବା ପାଇଁ ପୂଜକଗୋଷ୍ଠୀ ନିଜକୁ ଅପରିହାର୍ଯ୍ୟ କରାଇଲେ । ପୂଜା କର୍ମକୁ ନିଜର ଏକଚାଟିଆ କର୍ତ୍ତୃତ୍ୱ ଭିତରେ ରଖିବା ପାଇଁ ବ୍ରାହ୍ମଣ ମାନଙ୍କ ବ୍ୟତୀତ ଅନ୍ୟ କେହି ସଂସ୍କୃତ ଭାଷା ଶିକ୍ଷା କରିପାରିବେ ନାହିଁ ବୋଲି ସାମାଜିକ ସ୍ତରରେ କଟକଣା କଲେ । ସଂସ୍କୃତ ଭାଷା ଶିକ୍ଷା କରିବା, ଉଚ୍ଚାରଣ କରିବାକୁ ବ୍ରାହ୍ମଣ ମାନଙ୍କର ଏକଚାଟିଆ ଦାୟିତ୍ୱ କ୍ଷେତ୍ରରେ ବି ପ୍ରତିବଂଧକ ରଖାଗଲା । ଅବ୍ରାହ୍ମଣ ବ୍ୟକ୍ତି ସଂସ୍କୃତ ଭାଷା ପଢିବା ବା ଶିକ୍ଷା କରିବାକୁ ଚାହିଁଲେ ସେଥିପାଇଁ କଠୋର୍ ଦଣ୍ଡ ବ୍ୟବସ୍ଥା କରାଗଲା ।

## ସ୍ୱର୍ଗ ନରକ ପୂଜକଙ୍କ ଉଦ୍ଭାବନ

ନିଜର କର୍ମକାଣ୍ଡକୁ ପବିତ୍ରତା ଦେବା ପାଇଁ ପୂଜକମାନେ ସ୍ୱର୍ଗ ଓ ନରକ ବିଷୟକ କାହାଣୀମାନ ସୃଷ୍ଟି କଲେ । ଜନଗଣଙ୍କୁ ଉଚ୍ଚ ନୀଚ ଶ୍ରେଣୀରେ ବିଭାଜିତ କରିସାରିବା ପରେ ଏହି ଧାରଣା ସମାଜରେ ପୂଜକ ଗୋଷ୍ଠୀ ସୃଷ୍ଟି କଲେ ଯେ ଜଣେ ନିମ୍ନ ଜାତିର ଲୋକ ନିଷ୍ଠାର ସହ ନିଜ ଜାତିର କର୍ତ୍ତବ୍ୟ ପାଳନ କଲେ ପର ଜନ୍ମରେ ଉଚ୍ଚ ଜାତିରେ ଜନ୍ମ ହୋଇପାରିବ । ସମସ୍ତ ଧାର୍ମିକ ଓ ସାମାଜିକ କାର୍ଯ୍ୟରେ କରାଯାଉଥିବା ପୂଜା ଇତ୍ୟାଦି ପାଇଁ ପୂଜକ ଗୋଷ୍ଠୀକୁ ଡାକିବା ସର୍ବସାଧାରଣଙ୍କ ପାଇଁ ଏକ ସାମାଜିକ କର୍ତ୍ତବ୍ୟ ହେଲା । ଏପରିକି ପୂର୍ବ ପୁରୁଷଙ୍କୁ ପିଣ୍ଡ ବା ଶ୍ରାଦ୍ଧ ଦେବାକୁ ପୂଜକ ଗୋଷ୍ଠୀକୁ ଆମନ୍ତ୍ରଣ କରିବା ବାଧ୍ୟତାମୂଳକ ହେଲା । ଏହାଦ୍ୱାରା ପୂଜକ ଗୋଷ୍ଠୀର ଆର୍ଥିକ ସ୍ଥିତି ସମସ୍ତଙ୍କ ଅପେକ୍ଷା ଯେ ସୁଦୃଢ ହେଲା ତାହା ନୁହେଁ, ସେମାନଙ୍କୁ ସାମାଜିକ ସ୍ତରରେ ଉଚ୍ଚ ସ୍ଥାନର ସ୍ୱୀକୃତି ମିଳିଲା । ଏହା ସହିତ ମୃତ୍ୟୁର ଦେବତା ଯମ' ଭାବନା ସୃଷ୍ଟି କରାଯାଇ ଲୋକଙ୍କ ଭିତରେ ଭୟର ମାନସିକତା ସୃଷ୍ଟି କରାଗଲା, ଯେପରି କି ଲୋକମାନେ ଦୁର୍ଦ୍ଦଶାଗ୍ରସ୍ତ ନ

Digitized by srujanika@gmail.com

ହେବା ପାଇଁ ପୂଜକ ଗୋଷ୍ଠୀର ପରାମର୍ଶ ନେବେ। ଶାସ୍ତ୍ରରେ କୁହାଗଲା ଯେ ପୃଥିବୀରେ ପ୍ରଥମେ ମୃତ୍ୟୁବରଣ କରିଥିବା ଲୋକ ଧର୍ମରାଜ ଯମ ହୋଇଛନ୍ତି।

ମୁକ୍ତି ବା ମୋକ୍ଷ ପାଇବା ପାଇଁ ତପସ୍ୟା ଦ୍ୱାରା ସାଧନା କରିବାକୁ କୁହାଗଲା। କିନ୍ତୁ ପ୍ରତ୍ୟେକ ବ୍ୟକ୍ତି ପାଖରେ କୃଚ୍ଛ୍ର ସାଧନା କରିବା ସମ୍ଭବ ନୁହେଁ। ପ୍ରାଚୀନ ଯୁଗର କେତେକ ଋଷି କବି ସେମାନଙ୍କର କଳ୍ପନା ଭିତରେ ବିଭିନ୍ନ କାହାଣୀ ମାନ ରଚନା କରି ସେଥିରେ କୃଚ୍ଛ୍ର ସାଧନାର ବା ତପସ୍ୟାର ଫଳ ଉଲ୍ଲେଖ କଲେ। ତେବେ ତପସ୍ୟାର ଅସତ୍ୟ କାହାଣୀକୁ ଘୋଡାଇବାକୁ ଯାଇ ପରବର୍ତ୍ତୀ ସମୟରେ ଭକ୍ତିବାଦର ପ୍ରସାର କରାଗଲା।

## ଶଙ୍କରାଚାର୍ଯ୍ୟ ଓ ଜାତିଗତ ଅନମନିୟତା

ବ୍ରାହ୍ମଣବାଦର ବିରାଟ ପ୍ରତାରଣାକୁ ବିରୋଧ କରିବା ପାଇଁ ପ୍ରାଚୀନ କାଳରେ କପିଳ କିଛି ପ୍ରୟାସ କରିଥିଲେ। ବ୍ରାହ୍ମଣ ବାଦର ଅନ୍ତର୍ନିହିତ ମନ୍ଦ ଉଦ୍ଦେଶ୍ୟକୁ ଅନାବୃତ କରିବା ସହ ତାହା କିପରି ଈଶ୍ୱର ନାମରେ ସାଧାରଣ ଲୋକଙ୍କୁ ଶୋଷଣ କରୁଛି ତାହା କପିଳ ବ୍ୟକ୍ତ କଲେ। ବୌଦ୍ଧଦର୍ଶନ ବି ବ୍ରାହ୍ମଣବାଦକୁ ସଂପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରିଥିଲା। ବ୍ରାହ୍ମଣବାଦର ନାନା ମିଥ୍ୟା ବ୍ୟୂହ ଓ ସ୍ୱର୍ଗ, ନରକ ପରି କାଳ୍ପନିକ ଧାରଣାରୁ ଜନଗଣଙ୍କୁ ମୁକ୍ତ କରିବାକୁ ବୁଦ୍ଧ ପ୍ରୟାସ କରିଥିଲେ। ଭାରତରେ ବୌଦ୍ଧଧର୍ମର ପ୍ରଭାବକୁ ନ୍ୟୂନ କରିବା ପାଇଁ ବ୍ରାହ୍ମଣମାନେ ନୂଆ କୌଶଳ ପ୍ରୟୋଗ କଲେ। କୃଷ୍ଣଙ୍କର କାହାଣୀ ଓ ସେଥିରେ ପ୍ରେମର ରସ ଦେଇ ଲୋକମାନଙ୍କୁ ଆକର୍ଷିତ କରିବାକୁ ସେମାନେ ନାନା ପ୍ରଚାର ଆରମ୍ଭ କଲେ। ଜାତିଗତ ବିଭେଦକୁ ଅଧିକ ସୁଦୃଢ କରିବା ସହ ବୌଦ୍ଧ ସନ୍ନ୍ୟାସୀଙ୍କ ସହ ନିଜକୁ ସମାନ କରିବା ପାଇଁ ନିରାମିଶ ଖାଦ୍ୟ ଗ୍ରହଣ କଲେ। ଶଙ୍କରାଚାର୍ଯ୍ୟ ବ୍ରାହ୍ମଣବାଦକୁ ନୂଆ ଜୀବନ୍ୟାସ ଦେଇ· ଏହାକୁ ସୁଦୃଢ ଭିତ୍ତି ଦେବାରେ ଏକ ପ୍ରମୁଖ ଭୂମିକା ନେଲେ। ବୌଦ୍ଧ ବିହାରକୁ ପ୍ରତିହତ କରିବା ପାଇଁ ଶୈବ ଓ ବୈଷ୍ଣବ ମଠ ଓ ପୀଠକୁ ବ୍ୟାପକ କରିବାକୁ ପ୍ରୟାସ କରାଗଲା।

ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବ ପରେ ଜାତିଗତ ଅନମନିୟତା ସୁଦୃଢ ଭିତ୍ତି ନେଲା। ହିନ୍ଦୁମାନେ ବୁଝିବା ଆବଶ୍ୟକ ଯେ ଜାତିଚତ ଭେଦଭାବ ଏକ

Digitized by srujanika@gmail.com

ଆତ୍ମସମ୍ମାନର ବିରୋଧୀ ଓ ଅସମ୍ମାନଜନକ ବ୍ୟବସ୍ଥା । ଏହି ବ୍ୟବସ୍ଥାରେ କେବଳ ବ୍ରାହ୍ମଣମାନେ ଉପକୃତ ହେବା ସହ ସେମାନେ ନିଜର ଆଧିପତ୍ୟ ଜାହିର କରି ପାରିବାର ସୁଯୋଗ ପାଇଛନ୍ତି । ବ୍ୟବସ୍ଥାରେ ଆସ୍ତେ ଆସ୍ତେ ପରିବର୍ତ୍ତନ ହେବା ସହର ମାନଙ୍କରେ ଆରମ୍ଭ ହୋଇଛି । ଗାଆଁ ଗହଳରେ ଜାତିଆଣ ଭେଦଭାବ ଏବେ ଉତ୍କଟ ହୋଇ ରହିଛି । ସହରମାନଙ୍କରେ ଜାତିଆଣ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନର ସୂତ୍ରପାତ ହୋଇଥିଲେ ମଧ୍ୟ ଧାର୍ମିକ ଓ ସାମାଜିକ ଉତ୍ସବମାନଙ୍କରେ ଲୋକମାନେ ବ୍ରାହ୍ମଣମାନଙ୍କୁ ପାରିଶ୍ରମିକ ଦେଇ କାର୍ଯ୍ୟ ନିର୍ବାହ କରୁଛନ୍ତି ।

ଏଠାରେ ଯେଉଁ ସବୁ ପ୍ରସଙ୍ଗର ଅବତାରଣା କରାଯାଇଛି ସେ ସବୁର ବିସ୍ତୃତ ବିବରଣୀ ପାଠକମାନେ ଏନସାଇକ୍ଲୋପେଡିଆ ବ୍ରିଟାନିକାରୁ ଦେଖିପାରନ୍ତି ।

ବିଷ୍ଣୁଙ୍କର ଅବତାରଗଣଙ୍କର ମହତ୍ତ୍ୱ ହେଉଛି ରାଜା ମାନଙ୍କୁ ହତ୍ୟା କରି ସେମାନଙ୍କର ରାଜ୍ୟ ଅଧିକାର କରିବା । ଅଧିକୃତ ରାଜ୍ୟକୁ ଦାନ ସୂତ୍ରରେ ବ୍ରାହ୍ମଣମାନଙ୍କୁ ଦେବା ତଥା ସେହି ରାଜ୍ୟରେ ଜାତିଗତ ନିୟମକୁ କଡାକଡି ଭାବେ ପାଳନ କରିବା । ପର୍ଶୁରାମଙ୍କ ଜନ୍ମର ଉଦ୍ଦେଶ୍ୟ ହେଉଛି ବ୍ରାହ୍ମଣମାନଙ୍କୁ ବିରୋଧ କରୁଥିବା ସମସ୍ତ କ୍ଷତ୍ରିୟ ମାନଙ୍କୁ ନିପାତ କରିବା ଓ ସେମାନଙ୍କର ସମସ୍ତ ରାଜ୍ୟକୁ ବ୍ରାହ୍ମଣ ମାନଙ୍କୁ ବାଣ୍ଟି ଦେବା । ତେବେ କାହାଣୀରେ ପର୍ଶୁରାମ ତାଙ୍କର ବାର୍ଦ୍ଧକ୍ୟରେ ତାଙ୍କୁ ଖଣ୍ଡିଏ ଜାଗା ଦେବା ପାଇଁ ନିବେଦନ କରିଛନ୍ତି । ପର୍ଶୁରାମ ଶେଷରେ ପ୍ରତିଶୋଧ ନେବାକୁ ବରୁଣ ଦେବତାଙ୍କୁ ନିବେଦନ କରିଛନ୍ତି । ବରୁଣ ତାଙ୍କର ଅନୁରୋଧକୁ ରକ୍ଷା କରି ବ୍ରାହ୍ମଣ ଶାସିତ ରାଜ୍ୟମାନଙ୍କର ବର୍ଷା ନକରିବାକୁ ରାଜି ହୋଇଛନ୍ତି । ଏହା ସହିତ ପର୍ଶୁରାମ ଯେତେ ଦୂର ତାଙ୍କର ଶରକୁ ପ୍ରସାରିତ କରିପାରିବେ, ସେହି ସ୍ଥାନ ସମୁଦ୍ର ଦ୍ୱାରା ଜଳମଗ୍ନ ହୋଇଯିବ । ପର୍ଶୁରାମ ପୂର୍ବ ରାତିରେ ତାଙ୍କର ଧନୁକୁ ସୁବିନ୍ୟସ୍ତ କରି ରଖିଲେ ଓ ସକାଳେ ଯେତେବେଳେ ତାଙ୍କ ଧନୁରେ ଶର ରଖି ନିକ୍ଷେପ କଲେ, ଏହା ବର୍ତ୍ତମାନର କେରଳର ଦକ୍ଷିଣ ଭାଗର କନ୍ୟାକୁମାରୀ ପର୍ଯ୍ୟନ୍ତ ପ୍ରସାରିତ ହେଲା । ଫଳରେ ସମୁଦ୍ରର ଜୁଆର ଆସି କନ୍ୟାକୁମାରୀ ପର୍ଯ୍ୟନ୍ତ ସବୁକୁ ଜଳମଗ୍ନ କରିଦେଲା । ଏହାହିଁ ପର୍ଶୁରାମଙ୍କ ସଂପର୍କରେ ପୁରାଣରେ ବର୍ଣ୍ଣିତ ହୋଇଛି । ଏହାକୁ ପ୍ରଫେସର କାଲଭିନ ସୁନ୍ଦର ଭାବେ ତାଙ୍କ ରଚନାରେ ଦର୍ଶାଇଛନ୍ତି ।

Digitized by srujanika@gmail.com

## ସମୁଦ୍ରରେ କିଏ ବନ୍ଧ ବାନ୍ଧିଛି ?

ରାମାୟଣର ଅନ୍ୟ ଏକ ଚରିତ୍ର ହେଉଛି କୁମ୍ଭକର୍ଣ୍ଣ ଯାହାଙ୍କ ବିଷୟରେ କାଲଭିନ ଉଲ୍ଲେଖ କରିଛନ୍ତି । କୁମ୍ଭକର୍ଣ୍ଣ ଯେତେବେଳେ ଶିଶୁ ଅବସ୍ଥାରେ ଗୁରୁଣ୍ଡୁ ଥିଲେ, ଯାହା ସେ ହାତ ପାଖରେ ପାଉଥିଲେ ତାକୁ ଧରି ଖାଇ ଦେଉଥିଲେ । ଏକଦା ତାଙ୍କର ହାତ ଇନ୍ଦ୍ରଙ୍କ ଅନ୍ତଃପୁର ପର୍ଯ୍ୟନ୍ତ ପ୍ରସାରିତ ହୋଇ ଯାଇଥିଲା ଓ ସେ ଇନ୍ଦ୍ରଙ୍କର ପାଞ୍ଚ ହଜାର ନାରୀଙ୍କୁ ହାତ ମୁଠାରେ ଜବତ କରି ନେଇଥିଲେ । ଅନ୍ୟ ଏକ ଥରରେ ଋଷିମାନଙ୍କର ସାତ ହଜାର ପତ୍ନୀ ଓ ବ୍ରାହ୍ମଣମାନଙ୍କୁ ଓ ସେମାନଙ୍କର ଗାଈମାନଙ୍କୁ ଧରି ଗିଳି ଦେଇଥିଲେ ।

ରାମାୟଣର ବର୍ଣ୍ଣନାନୁଯାୟୀ ଶ୍ରୀଲଙ୍କା ଓ ଭାରତବର୍ଷ ଭିତରେ ସମୁଦ୍ରରେ ଏକ ସେତୁ ହନୁମାନ ଓ ତାଙ୍କର ସୈନିକ ଦଳ ନିର୍ମାଣ କରିଥିଲେ । ଭାରତ ଓ ଶ୍ରୀଲଙ୍କା ଭିତରେ ବନ୍ଧ ବନ୍ଧା ଯାଇଥିବାର କେତେକ ଐତିହାସିକ ଭିତ୍ତି ହୁଏତ ରହିଛି । ତେବେ ମାରବର ରାଜା ମାଦୁରାଇର ପାଣ୍ଡ୍ୟ ରାଜାଙ୍କ ଦ୍ୱାରା ପରାଜିତ ହେବାପରେ ଶ୍ରୀଲଙ୍କାକୁ ଚାଲି ଯିବା ପାଇଁ ଏକ ବନ୍ଧ ନିର୍ମାଣ କରିଥିବା କେତେକ ଗବେଷଣାରୁ ଜଣା ପଡିଛି ।

ସାର୍ ୱିଲିୟମ ଜୋନସଙ୍କ ମତରେ ଧରିତ୍ରୀରେ ଯାହା କିଛି ଭଲ ଜିନିଷ ଅଛି ସେ ସବୁ ସ୍ୱର୍ଗରୁ ଆସିଛି ବୋଲି ବ୍ରାହ୍ମଣମାନେ କହି ଆସିଛନ୍ତି । କଳାକୃତି, ସାହିତ୍ୟ ଇତ୍ୟାଦି ଈଶ୍ୱରଙ୍କର ବରଦାନରୁ ହୋଇଛି ବା ସ୍ୱର୍ଗଧାମରୁ ମର୍ତ୍ତ୍ୟକୁ ଆସିଛି ବୋଲି ସେମାନେ ପ୍ରଚାର କରିଥାନ୍ତି ।

## ରାମାୟଣର ଗ୍ରୀକ୍ ଭିତ୍ତି

ବୈଷ୍ଣବମାନଙ୍କର କୂର୍ମ ଅବତାର କାହାଣୀ ସହିତ ଆମେରିକୀୟ ଲୋହିତ ଭାରତୀୟ ଇରୋକୁଇସି ଜନଜାତିର ଏକ କିମ୍ବଦନ୍ତୀର ବହୁ ସାମଂଜସ୍ୟ ରହିଛି । ଏକଦା ଆକାଶଲୋକ (ସ୍କାଏ-ୱାର୍ଲଡ) ରେ ଛ'ଜଣ ପୁରୁଷ ରହିଥିଲେ, କୌଣସି ମହିଳା ନ ଥିଲେ । ସେମାନଙ୍କର ବଂଶ ବିଷୟରେ ପ୍ରଚାର କରିବାକୁ ସେମାନେ ଜଣେ ମହିଳା ଆବଶ୍ୟକ କଲେ । ଯେତେବେଳେ ସେମାନେ ଜାଣିଲେ ଯେ ଦେବଲୋକରେ ଜଣେ ନାରୀ ଅଛନ୍ତି ସେମାନେ ସେଠାକୁ ଜଣଙ୍କୁ ପଠାଇବାକୁ

Digitized by srujanika@gmail.com

ସ୍ଥିର କଲେ । କିନ୍ତୁ ଏହି ଦୀର୍ଘ ପଥ ଯେହେତୁ ଜଣେ ଉଡ଼ିକରି ଯାଇପାରିବ ନାହିଁ, ସେମାନେ ଗୋଟିଏ ଇଗଲର ସାହାଯ୍ୟ ନେଲେ, ଯିଏ ସେଠାକୁ ସହଜରେ ଯାଇପାରିବ । ଇଗଲ ସାହାଯ୍ୟରେ ଜଣେ ଲୋକ ଦେବଲୋକକୁ ଗଲେ । ସେ ସେଠାରେ ପହଞ୍ଚି ସେହି ମହିଳାଙ୍କୁ ପ୍ରଲୁବ୍‌ଧ କଲେ, କିନ୍ତୁ ଏହି ଘଟଣା ଈଶ୍ୱରଙ୍କୁ କ୍ରୋଧାନ୍ୱିତ କରାଇଥିଲା । ସେ ସେହି ଲୋକ ଓ ସ୍ୱର୍ଗର ମହିଳାଙ୍କୁ ମର୍ତ୍ତ୍ୟକୁ ନିକ୍ଷେପ କରିଦେଲେ । ଏକ କଇଁଛ ସେହି ଦଂପତି ଆକାଶକୁ ତଳକୁ ଖସୁଥିବା ଦେଖି ସେମାନଙ୍କୁ ସାହାଯ୍ୟ କରିବାକୁ ଆଗଭର ହେଲେ । ସମୁଦ୍ରର ମାଛମାନେ କଇଁଛ ଚତୁର୍ପାର୍ଶ୍ୱରେ ମାଟିକାଦୁଅ ଜମା କରିବାକୁ ଲାଗିଲେ ଯାହା ପରେ ପୃଥିବୀ ହେଲା । ସେହି ମହିଳାଙ୍କର ସନ୍ତାନ-ସନ୍ତତିଗଣ ହେଉଛନ୍ତି ପୃଥିବୀର ଅଧିବାସୀ । ଏହି କାହାଣୀକୁ ଲୋକକଥାରୁ କାଲଭିନ ସଂଗ୍ରହ କରିଛନ୍ତି ।

ବରାହ ଅବତାରର ଏକ ମୂର୍ତ୍ତି କାଲଭିନ ପାଇଛନ୍ତି । ଏହି ମୂର୍ତ୍ତିରେ ବି ବିଷ୍ଣୁ ଓ ଲକ୍ଷ୍ମୀଙ୍କର ଛବି ରହିଛି । ଲକ୍ଷ୍ମୀଙ୍କର ସେଥିରେ ଚାରୋଟି ମୁଣ୍ଡ ରହିଛି, ଯେଉଁଥିରୁ ଗୋଟିଏ ହେଉଛି ବରାହ ମୁଣ୍ଡ । ଲକ୍ଷ୍ମୀ ତାଙ୍କର ଆଠ ହାତରେ ଅସ୍ତ୍ର ଶସ୍ତ୍ର ଧାରଣ କରିଛନ୍ତି । ଲକ୍ଷ୍ମୀଙ୍କ ଚତୁର୍ପାର୍ଶ୍ୱରେ ପ୍ରତ୍ୟେକ କିଛି ଅସ୍ତ୍ର ଧରିଥିବା ଅନେକ ବରାହ ମୂର୍ତ୍ତି ରହିଛି ।

ସାର୍ ୱିଲିୟମ ଜୋନସଙ୍କ ମତରେ ପଞ୍ଚୁରଙ୍ଗଙ୍କ ସମୟରେ ଗ୍ରୀକମାନଙ୍କର ଭାରତ ଆକ୍ରମଣର କାହାଣୀକୁ ନେଇ ରାମାୟଣ ରଚିତ ହୋଇଛି ।



Digitized by srujanika@gmail.com

## ୯. ପର୍ବପର୍ବାଣୀ ଓ ଆମେ

ଭୋଜିଭାତର ଉଦ୍ଦେଶ୍ୟ ହେଉଛି ଅନେକ ଲୋକ ଏକତ୍ର ହେବା, ମତର ଆଦାନ ପ୍ରଦାନ କରିବା ଓ ଉପଭୋଗ କରିବା । ଏଥିରେ ଯେହେତୁ ବିଭିନ୍ନ ମତର ଲୋକମାନେ ଏକାଠି ହୁଅନ୍ତି, ଏଠାରେ ପରସ୍ପର ଭିତରେ ମତ ଆଦାନ ପ୍ରଦାନର ସୁଯୋଗ ଥାଏ ।

**ଅର୍ଥହୀନ କର୍ମକାଣ୍ଡ**

ପରିତାପର ବିଷୟ, ନାନା କାଳ୍ପନିକ, ଆଧାରହୀନ କିମ୍ବଦନ୍ତୀକୁ ନେଇ ଆମର ଅନେକ ପର୍ବପର୍ବାଣୀ ପାଳିତ ହୁଏ, ଯେଉଁଥିରେ ନାନା ଅର୍ଥହୀନ କର୍ମକାଣ୍ଡ କରାଯାଏ । ଏହି ପର୍ବପର୍ବାଣୀ ଶହ ଶହ ବର୍ଷ ତଳେ କେତେକ ଲୋକ କିଛି ଉଦ୍ଦେଶ୍ୟ ରଖି ନିଜ ଶ୍ରେଣୀର ଲାଭ ପାଇଁ ଆରମ୍ଭ କରିଥିଲେ । ଏଗୁଡିକ ଜନଗଣଙ୍କର ଜ୍ଞାନ ବା ସଚେତନତାର ବିକାଶ ପାଇଁ ଉଦ୍ଦିଷ୍ଟ ନଥିଲା । ପ୍ରାୟ ପ୍ରତ୍ୟେକ ପର୍ବ ପର୍ବାଣୀରେ ଏବେ ବ୍ରାହ୍ମଣ ପୂଜକଙ୍କୁ ସନ୍ତୁଷ୍ଟ କରିବା ବା ଭୋଜନ ଦେବା ଆମେ ଦେଖେ । ସାମାଜିକ ଓ ରାଜନୈତିକ ଜୀବନ ପ୍ରବାହରେ ଯାହା କିଛି ପରିବର୍ତ୍ତନମାନ ହେଉଥିଲେ ବି ପର୍ବପର୍ବାଣୀ ମାନଙ୍କରେ ଅନୁସୃତ ହେଉଥିବା ରୀତି, ନୀତି ବା କର୍ମକାଣ୍ଡରେ କିଛି ପରିବର୍ତ୍ତନ ହୁଏ ନାହିଁ । ପର୍ବପର୍ବାଣୀ ମାନଙ୍କରେ ଅନୁସୃତ ହେଉଥିବା କର୍ମକାଣ୍ଡ, ରୀତି ନୀତି ସହ ସଭ୍ୟ ଦୃଷ୍ଟିଭଙ୍ଗୀର କିଛି ସଂପର୍କ ନଥାଏ । ଏବେ ପର୍ବ ପର୍ବାଣୀ ସହ ନାନା ଆଲୋକ ସଜା ହେଉଥିବା ଦେଖାଯାଏ । ପୂର୍ବରୁ ଦୀପ ଶିଖା ବା ପେଟ୍ରୋମାକ୍ସ ପରିବର୍ତ୍ତେ ଏବେ ଯାହା ଇଲେକ୍‌ଟ୍ରିକ ଆଲୁଅ ଜଳାଯାଉଛି । ଯେଉଁ ଧାର୍ମିକ ପର୍ବପର୍ବାଣୀ ପାଳିତ ହେଉଛି ତାହା ଦ୍ୱାରା ସମାଜର କ'ଣ ଉପକାର ହେଉଛି? ଏଥିରେ ଯୋଗ ଦେଉଥିବା ଲୋକମାନେ ଏଥିରୁ କିଛି ସୁଫଳ ପାଉଛନ୍ତି କି- ଏହା ଉପରେ କେହି ଚିନ୍ତା କରୁଛନ୍ତି କି? ଯେତେବେଳେ ଲୋକମାନେ କୌଣସି ସ୍ଥାନରେ ବହୁ ସଂଖ୍ୟାରେ ଯୋଗ ଦେଉଛନ୍ତି, ସେ ସମୟରେ ଆମର ବୁଦ୍ଧିଜୀବୀ ମାନେ ସେମାନଙ୍କୁ ସଚେତନ କରାଇବା ଆବଶ୍ୟକ ।

Digitized by srujanika@gmail.com

ଲୋକମାନଙ୍କ ଭିତରେ ଥିବା ଭେଦଭାବ ଓ ଅହେତୁକ ଭାବନାକୁ ଦୂର କରିବାକୁ ପ୍ରୟାସ ହେବା ଦରକାର । ସମାଜ ଓ ଦୁନିଆ ବିଷୟରେ ଲୋକମାନଙ୍କୁ ସଚେତନ କରିବା ପାଇଁ ଉଦ୍ୟମ ହେବା ଉଚିତ ।

**ପାଶ୍ଚାତ୍ୟର ପର୍ବପର୍ବାଣୀ**

ପାଶ୍ଚାତ୍ୟ ଦେଶମାନଙ୍କରେ ପର୍ବପର୍ବାଣୀ କିପରି ପାଳିତ ହୁଏ ଏହା ଦେଖିବାକୁ ମୁଁ କେତେକ କଷ୍ଟ ସହିଛି । ପାଶ୍ଚାତ୍ୟ ଦେଶମାନଙ୍କରେ ଭ୍ରମଣ କରିବା ବେଳେ ମୁଁ ସେମାନଙ୍କର ପର୍ବ ପର୍ବାଣୀକୁ ଆଗ୍ରହର ସହ ଲକ୍ଷ୍ୟ କରିଛି ।

ସେମାନଙ୍କର ପର୍ବପର୍ବାଣୀରେ ଲୋକମାନଙ୍କର ଜ୍ଞାନରେ ବିକାଶ ଆଣିବାକୁ ନିଷ୍ଠାପର ଉଦ୍ୟମ ହୋଇଥାଏ । ସେ ସମୟରେ ଯେଉଁ ପ୍ରଦର୍ଶନୀ ମାନ ହୁଏ ତାହାଦ୍ୱାରା ବିକାଶ ସଂପର୍କରେ ଲୋକମାନେ ନୂଆ ନୂଆ ବିଷୟ ଜାଣିବାର ଅବକାଶ ପାଆନ୍ତି । ଆମ ଦେଶରେ ସେପରି କିଛି ପ୍ରୟାସ ହୁଏ ନାହିଁ । ଲୋକମାନଙ୍କୁ କୌଣସି ବୌଦ୍ଧିକ ପ୍ରେରଣା ଏଥିରେ ମିଳେ ନାହିଁ । ଆମ ଦେଶରେ ପର୍ବପର୍ବାଣୀରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ ହୁଏ, ଯେଉଁଥିରେ କୌଣସି ପ୍ରତିମାକୁ ନେଇ ବିରାଟ ପଟୁଆର ମାନ ହୁଏ । ଲୋକମାନେ ଅଜ୍ଞତା, ବିଶ୍ୱାସପ୍ରବଣତା ଓ ଧାର୍ମିକ ଭାବପ୍ରବଣତା ଦ୍ୱାରା ପ୍ରଭାବିତ ହୋଇ ନାନା ପର୍ବପର୍ବାଣୀ ପାଳନ କରିଥାନ୍ତି ।

ୟୁରୋପରେ ଯଦିବା ପ୍ରାଚୀନ ଧାର୍ମିକ ବିଶ୍ୱାସକୁ ନେଇ କେତେକ ପର୍ବପର୍ବାଣୀ ପାଳିତ ହୁଏ, ତେବେ ଏଥିରେ ବିଭିନ୍ନ ପ୍ରଦର୍ଶନୀମାନ ଅନୁଷ୍ଠିତ ହୋଇଥାଏ ଯେଉଁଥିରୁ ଲୋକମାନେ କିଛି ନୂଆ ନୂଆ କଥା ଶିଖିଥାନ୍ତି । କୃଷିକ୍ଷେତ୍ରରେ, ଶିଳ୍ପ କ୍ଷେତ୍ରରେ ଯେଉଁ ସବୁ ନୂତନ ପ୍ରଗତିମାନ ହୋଇଛି ସେ ସବୁ ସଂପର୍କରେ ଲୋକମାନଙ୍କୁ ସଚେତନ କରାଯାଇଥାଏ । ସୂକ୍ଷ୍ମ ଓ ଅତ୍ୟାଧୁନିକ ଯନ୍ତ୍ରପାତି ବିଭିନ୍ନ ଦେଶରୁ ଆଣି ଲୋକମାନଙ୍କୁ ଦେଖାଇ ସେସବୁ ବିଷୟରେ ବୁଝା ଯାଇଥାଏ । ଚାରୁକଳା ବିଷୟରେ ପ୍ରଦର୍ଶନୀ ମାନ ହୋଇ ଲୋକମାନଙ୍କୁ ଏ ବିଷୟରେ ସଚେତନ କରାଯାଏ । ଏକ ପର୍ବପର୍ବାଣୀ ସମୟରେ ଏସବୁ ପ୍ରଦର୍ଶନୀ ମାନ ଦେଖିବାବେଳେ ସତେ ଯେପରି ଜଣେ ଏକ ବିଶ୍ୱବିଦ୍ୟାଳୟ ବୁଲି ଦେଖିବାର

Digitized by srujanika@gmail.com

ଅନୁଭବ ଆସେ । ଜଣେ ବିଶ୍ୱବିଦ୍ୟାଳୟ ଛାତ୍ର ଶିକ୍ଷାନୁଷ୍ଠାନରେ କଣ ସବୁ ଉନ୍ନତ ବିଷୟ ପୁଂଖାନୁପୁଂଖ ପଢ଼େ ତାହାର ଚିତ୍ର ଏଠାରେ ମିଳିଥାଏ । ପ୍ରଦର୍ଶନୀ ମାନ ଯେହେତୁ ଲୋକମାନଙ୍କୁ ଶିକ୍ଷା ଦେବା ଉଦ୍ଦେଶ୍ୟରେ ଆୟୋଜିତ ହୋଇଥାଏ ଶିଳ୍ପପତି,ଶିକ୍ଷାବିତ୍ ଓ ବୈଜ୍ଞାନିକମାନେ ମଧ୍ୟ ଏଥିରେ ଅନେକ ଆଗ୍ରହ ପ୍ରକାଶ କରିଥାନ୍ତି । ସରକାର ଏ କ୍ଷେତ୍ରରେ ବିଶେଷ ଆଗ୍ରହ ନେଇଥାନ୍ତି । ଉତ୍ପାଦନକାରୀ ସଂସ୍ଥାମାନ ସେମାନଙ୍କର ସାମଗ୍ରୀମାନ ସର୍ବନିମ୍ନ ଲାଭ ରଖି ଲୋକମାନଙ୍କୁ ବିକ୍ରୟ କରିଥାନ୍ତି । ଲୋକମାନେ କିପରି ଖୁବ୍ କମ୍ ଶ୍ରମରେ ଘର ପାଇଁ ବିଳାସ ସାମଗ୍ରୀମାନ ପ୍ରସ୍ତୁତ କରିପାରିବେ, ସେଥିପାଇଁ ସେମାନଙ୍କୁ ଶିକ୍ଷା ଓ ପ୍ରୋତ୍ସାହନ ମିଳିଥାଏ ।

## ଆମ ପର୍ବପର୍ବାଣୀରୁ କଣ ମିଳେ?

ଆମର ପର୍ବପର୍ବାଣୀରେ କୌଣସି ପ୍ରଦର୍ଶନୀ ହୁଏ ନାହିଁ । ସେହି ପୁରୁଣା ଦୋକାନ ବଜାର, ପୁରୁଣା ହାସ୍ୟ, ଗୀତ, ନାଚ, ମୂର୍ତ୍ତି ପଟୁଆର ବ୍ୟତୀତ ଏଥିରେ ଆଉ କୌଣସି ନୂତନତ୍ୱ ନ ଥାଏ । ଯେତେବେଳେ କୌଣସି ବ୍ୟକ୍ତି କୌଣସି ତୀର୍ଥ ବା ଦର୍ଶନ କରି ଫେରେ ସେ କେବଳ ସେହି ପୁରୁଣା ଅନୁଭୂତିର କଥା କହିଥାଏ । ଜନଗହଳି, ଦିଅଁର ସାଜସଜା, ଠେଲା ପେଲା, ପକେଟମାର ଏ ବିଷୟରେ ହିଁ କହିଥାଏ । ସେ ଏହାବ୍ୟତୀତ ବାହାର ଦେଶ ଜ୍ଞାନ ବିଜ୍ଞାନ ବିଷୟରେ କିଛି ନୂଆ ତଥ୍ୟ ଦେଇ ନ ଥାଏ । ତେବେ ଆମର ଭକ୍ତମାନେ ତିରୁପତି, ତିରୁଭାନାମଲାଇ ଠାରେ ପ୍ରତି ବର୍ଷ ହେଉଥିବା ନିର୍ଦ୍ଦିଷ୍ଟ ମେଳା, ଉତ୍ସବକୁ ଦେଖିବାକୁ ବହୁ ଆଗ୍ରହ ପ୍ରକାଶ କରିଥାନ୍ତି । ରେଳ ବା ବସ୍‌ରେ ଯିବା, ଅସ୍ୱାସ୍ଥ୍ୟକର ଧର୍ମଶାଳା ବା ହୋଟେଲରେ ରହିବା, ପଣ୍ଡାମାନଙ୍କୁ ଦକ୍ଷିଣା, ଦାନ ଦେବା ଇତ୍ୟାଦିରେ ଶତାଧିକ ଖର୍ଚ୍ଚ କରି ସାଧାରଣ ଲୋକଟି ନିଜ ପରିବାର ସହିତ ଘରକୁ ଫେରିଥାଏ । ଆର୍ଥିକ ଖର୍ଚ୍ଚ ସହ ବେଳେବେଳେ କେତେକ ରୋଗରେ ଆକ୍ରାନ୍ତ ହେବା ବା ଏପରିକି ମୃତ୍ୟୁବରଣ କରିବାର ଦୃଷ୍ଟାନ୍ତ ମଧ୍ୟ ଦେଖିବାକୁ ମିଳେ । ମୋଟ ଉପରେ ତୀର୍ଥ, ପର୍ବପର୍ବାଣୀ ଲୋକମାନଙ୍କୁ ଶାରୀରିକ ବା ମାନସିକ ସ୍ତରରେ ଲାଭପ୍ରଦ ହେଇନଥାଏ ।

Digitized by srujanika@gmail.com

## ମଣିଷ ଓ ପଶୁ

ମଣିଷ ପଶୁଠାରୁ ପୃଥକ୍, କାରଣ ତାହାର ଚିନ୍ତା କରିବାର ସାମର୍ଥ୍ୟ ରହିଛି । ତାହାର ଏହି ସାମର୍ଥ୍ୟ ଯୋଗୁଁ ସେ କଥାରେ, ବିଚାରରେ ଓ କାର୍ଯ୍ୟରେ ପ୍ରଗତିର ସୂଚନା ଦେବା ଆବଶ୍ୟକ । କେବଳ ଖାଇବା ପିଇବା, ସନ୍ତାନ ଜନ୍ମ କରିବା ପରି କାର୍ଯ୍ୟରେ ସଂପୃକ୍ତ ରହି କୌଣସି ପ୍ରଗତିଶୀଳ ଲକ୍ଷଣ ବ୍ୟକ୍ତ ନ କଲେ ମଣିଷ ପଶୁଠାରୁ କିପରି ପୃଥକ୍ ହେବ ?

ପାଶ୍ଚାତ୍ୟ ଲୋକମାନଙ୍କ ସହିତ ଆମକୁ ତୁଳନା କଲେ ଆମେ କାହିଁକି ଏତେ ପଛରେ ପଡିଛେ? ପ୍ରତିବର୍ଷ ସେମାନେ ବିଭିନ୍ନ କ୍ଷେତ୍ରରେ ନୂଆ ନୂଆ ଜିନିଷ ଏଇ ଯେପରି ଗାଡି, କାର୍ ଇତ୍ୟାଦି- ବାହାର କରୁଥିବା ବେଳେ ଆମେ କାହିଁକି କରିପାରୁ ନାହେଁ? ସେଠାରେ ସେମାନେ ନୂଆ ନୂଆ ଜିନିଷ ବାହାର କରିବାକୁ, ଜୀବନ-ଯାତ୍ରାକୁ ଅଧିକ ସୁଖପ୍ରଦ କରିବାକୁ, ଅଳ୍ପ ମୂଲ୍ୟରେ ଜିନିଷ ପ୍ରସ୍ତୁତ କରିବାକୁ ନାନା ଗବେଷଣାମାନ କରୁଛନ୍ତି । ଅତୀତରେ ନିର୍ମାଣକାରୀ ମାନେ ପାଞ୍ଚ ବର୍ଷରେ ସେମାନଙ୍କ ପ୍ରସ୍ତୁତ ଜିନିଷରେ କିଛି ନୂତନ ପରିବର୍ତ୍ତନ ଆଣୁଥିଲେ, ଏବେ ପ୍ରତିବର୍ଷ ସେମାନଙ୍କ ପ୍ରସ୍ତୁତ ଜିନିଷରେ ସେମାନେ ଗୁଣାତ୍ମକ ପରିବର୍ତ୍ତନ ଆଣିବାକୁ ପ୍ରୟାସ କରୁଛନ୍ତି । ନୂତନ ଜ୍ଞାନ, କୌଶଳ, ପ୍ରଯୁକ୍ତି ପାଇଁ ସେମାନେ ଅବିରତ ଚେଷ୍ଟା କରୁଛନ୍ତି । ମଣିଷର ସୃଜନଶୀଳ ସାମର୍ଥ୍ୟ ଯୋଗୁଁ ଏହି ବିକାଶର ଧାରା ଅପ୍ରତିହତ ଭାବେ ଚାଲିଛି ।

ରାଜନୈତିକ ଦୃଶ୍ୟପଟରେ ଆମର ସ୍ଥିତି ବିଶେଷ ଖରାପ ନୁହେଁ । କଙ୍ଗ୍ରେସର ଯେଉଁ ଆଦର୍ଶ ୧୮୮୬ରେ ଥିଲା, ସେଥିରେ ସଂପ୍ରତି ଅନେକ ପରିବର୍ତ୍ତନର ସୂତ୍ରପାତ ହୋଇଛି । ପରିବର୍ତ୍ତିତ ରାଜନୈତିକ ପରିସ୍ଥିତି ସହ ଏହା ନିଜର ଆଦର୍ଶରେ ପରିବର୍ତ୍ତନ ଆଣିଛି । ପ୍ରଥମରେ କଂଗ୍ରେସ ରାଜା ସମ୍ରାଟଙ୍କ ପ୍ରତି ନିଜର ଆନୁଗତ୍ୟ ପ୍ରକାଶ କରିବା ସହ ତାଙ୍କର ଦୀର୍ଘ ଜୀବନ କାମନା କରୁଥିଲା । ପରେ ଏହା ଶାସନରେ ଅଂଶିଦାର ହେବାକୁ ଓ ଭାରତରେ ଉଚ୍ଚ ସରକାରୀ ପଦପଦବୀରେ କିଛି ନିଯୁକ୍ତି ପାଇଁ ସରକାରଙ୍କୁ ନିବେଦନ କଲା । ସେତେବେଳେ ଯେ କଂଗ୍ରେସ ଏକ ଦାସତ୍ୱ ମନୋଭାବ ରଖିଥିଲା ମୁଁ ଏହା କହିବା ଉଚିତ ମନେକରୁ

Digitized by srujanika@gmail.com

ନାହିଁ। ସମୟର ପରିସ୍ଥିତିରେ ଯାହା ସମ୍ଭବ ଥିଲା, ତାହା ସେମାନେ କରୁଥିଲେ। ଧୀରେ ଧୀରେ ସେମାନେ ନିଜର ଆଭିମୁଖ୍ୟରେ ପରିବର୍ତ୍ତନ ଆଣିଲେ। ଭାରତୀୟ ମାନେ ଯେତେବେଳେ ଚାକିରି ପାଇଲେ, ସେମାନେ ଦରମା କ୍ଷେତ୍ରରେ ସମତା ପାଇଁ ଦାବି କଲେ ଓ ପରେ ଭାରତରେ ଇଂରେଜ ଲୋକଙ୍କ ନିଯୁକ୍ତି ପାଇଁ ପ୍ରତିବାଦର ସ୍ୱର ଉଠାଇଲେ। ଶେଷରେ କଂଗ୍ରେସ 'ସ୍ୱ-ଶାସନ'ର କଥା ଉଠାଇଲା ଓ ଏହାରି ଦ୍ୱାରା ସ୍ୱାଧୀନତା ହାସଲ କଲା। ରାଜନୈତିକ ଦୃଶ୍ୟ ପଟରେ ଏହିପରି ପରିବର୍ତ୍ତନମାନ ସଂଘଟିତ ହୋଇଥିବା ଦେଖାଯାଏ।

ପ୍ରଗତିର ତାତ୍ପର୍ଯ୍ୟ ହେଉଛି ବିକାଶ। ସଭ୍ୟତା ଯେତିକି ଆଗୋଉଛି ମଣିଷର ଆବଶ୍ୟକତା ସେତିକି ବଢିଚାଲିଛି। ବିଚାରଶୀଳ ମନୋଭାବ ଓ ଗବେଷଣା ଦ୍ୱାରା ଅତୀତର ବହୁ ବସ୍ତୁକୁ ଏବେ ଆମେ ଅଦରକାରୀ ଓ ଅନୁପଯୋଗୀ ମନେ କରୁଛେ ଓ ଅଧିକ ସୁଖକର ବସ୍ତୁ ପ୍ରତି ଆଗ୍ରହୀ ହେଉଛେ। ବସ୍ତୁଗତ ପ୍ରଗତି ପାଇଁ ଆମେ ଯେତେ ପ୍ରୟାସ କରୁଛେ, ତାହାଦ୍ୱାରା ବଞ୍ଚିବାର ମାନ ଉନ୍ନତ ହୋଇ ଚାଲିଛି। ଜୀବନର ଗୁଣାତ୍ମକ ମାନ ବୃଦ୍ଧି ଅର୍ଥ କମ୍ ଶାରୀରିକ ଶ୍ରମ ଓ ଅଧିକ ଅବସର ଓ ସୁଖକର ଅନୁଭୂତି। ପାଶ୍ଚାତ୍ୟ ଦେଶମାନଙ୍କରେ ସେମାନେ ଏହି ଧାରାରେ ବିକଶିତ ହୋଇଛନ୍ତି। ସେମାନଙ୍କର ସ୍ତର ସହିତ ଭାରତୀୟମାନଙ୍କୁ ତୁଳନା କଲେ ଭାରତୀୟ ମାନେ ବହୁ ପଛରେ ଥିବା ମନେହୁଏ। କେତେକ କ୍ଷେତ୍ରରେ ଆମେ ପଶୁ ସ୍ତରରେ ରହିଛେ ଓ ପ୍ରଗତି ପାଇଁ କୌଣସି ଆଗ୍ରହ ରଖୁନାହେଁ। ଆମେ ଏପରି କାହିଁକି ପଛୁଆ ହୋଇ ରହିଛେ ? ଆମେ କ'ଣ ପାପୀ? ମୁଁ ସେପରି ଭାବୁ ନାହିଁ। ଆମର ନେତୃବୃନ୍ଦ ଓ ଦାର୍ଶନିକମାନେ ସଠିକ ଭାବରେ ଚିନ୍ତା କରିନାହାନ୍ତି। ଆମର ବିକାଶ, ପ୍ରଗତିକୁ ସେମାନେ ଈଶ୍ୱର, ଭାଗ୍ୟ କର୍ମଫଳ ଇତ୍ୟାଦି ଉପରେ ଛାଡିଛନ୍ତି। ଏହା ମଧ୍ୟ ନୁହେଁ ଯେ ଆମେ ବିଚାରଶୀଳ ଭାବେ ଚିନ୍ତା କରିବାକୁ ସମର୍ଥ ନୁହେଁ। ବରଂ ...ମକୁ ଦିଆଯାଇଥିବା ଭାବନା ଓ ସୁଯୋଗକୁ ଆମେ ନାନା କୁସଂସ୍କାର ବୃଦ୍ଧି କରିବାରେ ତଥା ସାଧାରଣ ଲୋକଙ୍କୁ ଠକିବାରେ ପ୍ରୟୋଗ କରୁଛେ। ଆମର ପର୍ବପର୍ବାଣୀ, ବିବାହ ଉତ୍ସବ ଓ ସାମାଜିକ କାର୍ଯ୍ୟକ୍ରମ ଆମ ପାଇଁ ବୌଦ୍ଧିକ ବିକାଶ, ବିଚାରଶୀଳ ଦୃଷ୍ଟିର ଉନ୍ନତି ପରିବର୍ତ୍ତେ ଆମ ପାଇଁ ହାସ୍ୟ ଉଦ୍ଦୀପକ ପରିସ୍ଥିତି ସୃଷ୍ଟି କରୁଛି।

Digitized by srujanika@gmail.com

## ଅନ୍ଧାନୁକରଣ

ଭାରତୀୟ ଚିନ୍ତାମାନସ ଅତୀତକୁ ପ୍ରଶ୍ନ କରିବାରେ, ବର୍ତ୍ତମାନକୁ ସନ୍ଦେହ କରିବାରେ କିମ୍ବା ଭବିଷ୍ୟତ ପାଇଁ ଯୋଜନା କରିବାରେ ନିଷ୍ଠା ପ୍ରଦର୍ଶନ କରିନାହିଁ। ପରଂପରାକୁ ଅନ୍ଧଭାବେ ଅନୁକରଣ କରିବାକୁ ଓ କର୍ମଫଳ ପ୍ରତି ସମର୍ପିତ ରହିବାକୁ ସର୍ବଦା ପ୍ରୟାସ ହୋଇଆସିଛି। ଈଶ୍ୱର, ଧର୍ମ, କର୍ମକାଣ୍ଡ, ପରଂପରା, ଶାସ୍ତ୍ର ଇତ୍ୟାଦି କ୍ଷେତ୍ରରେ ଆମେ କୌଣସି ଅନୁଶୀଳନାତ୍ମକ ମନୋଭାବ ପୋଷଣ କରିନାହୁଁ। ଆମ ପୁରାଣରେ ବର୍ଣ୍ଣିତ ଗୁଡିଏ କପୋଳକଳ୍ପିତ କାହାଣୀକୁ ବିଶ୍ୱାସ କରିବାକୁ ଆମକୁ ପରଂପରାରେ କୁହାଯାଇଛି। ସେଥିରେ ବର୍ଣ୍ଣିତ ଅନେକ ଦେବ ଦେବୀଙ୍କୁ ଈଶ୍ୱର ଭାବରେ ଉପସ୍ଥାପନ କରାଯାଇ ଶିଶୁ ସୁଲଭ ଭଙ୍ଗୀରେ ସେସବୁକୁ ବିଶ୍ୱାସ କରିବାକୁ ଆମକୁ କୁହାଯାଉଛି। ବେଦ, ଶାସ୍ତ୍ର, ପୁରାଣର କଥାକୁ ଯିଏ ଅବିଶ୍ୱାସ କରେ ସିଏ ନର୍କଗାମୀ ହେବ ବା ଅନନ୍ତକାଳ ଦୁଃଖ ଭୋଗ କରିବ ବୋଲି ଆମକୁ ଭୟ ଦେଖାଯାଇଛି। ଏପରି ମଧ୍ୟ କୁହାଯାଇଛି ଯେ ଅବିଶ୍ୱାସ କଲେ ପରଜନ୍ମରେ କୀଟ ବା ଘାସ ହୋଇ ଜନ୍ମହେବ। ଏହି ସବୁ ଧାରଣାର ପ୍ରଭାବ ଏବେବି ଲୋକଙ୍କର ମାନସିକତାରେ ପ୍ରଭାବ ବିସ୍ତାର କରି ରହିଛି। ଆମର ତାନ୍ତ୍ରିକ, ପୂଜକମାନେ ଏବେ ବି ଆତ୍ମା, ଭୂତ, ପ୍ରେତରେ ବିଶ୍ୱାସ ଦେଇ ସେପାଇଁ କେତେ ଉପଚାର ନୀତି କରୁଛନ୍ତି। ଏବେ ବି ଲୋକ ପ୍ରାର୍ଥନା କରନ୍ତି- "ପ୍ରଭୁ, ମୋତେ ସଂସାର-ନର୍କରୁ ଉଦ୍ଧାର କର।" ମୁଁ ମୋର ପରିତ୍ରାଣ ପାଇଁ ଗୋ-ମୂତ ପିଇବାକୁ ବା ଗୋବର ଖାଇବାକୁ ପ୍ରସ୍ତୁତ ରହିଛି।

ଯେତେବେଳେ କିଛି ମୁକ୍ତ ଚିନ୍ତକ ଆମର ଶାସ୍ତ୍ର, ପୁରାଣର କଥାକୁ ସନ୍ଦେହ ଦୃଷ୍ଟିରେ ଦେଖିଛନ୍ତି ସେମାନଙ୍କୁ ନାସ୍ତିକ, ନିରୀଶ୍ୱରବାଦୀ ବୋଲି ଚିତ୍ରଣ କରାଯାଇଛି ଓ ସେମାନଙ୍କ ପ୍ରତି ସମାଜରେ ବିଦ୍ୱେଷ ପ୍ରକାଶ ପାଇଛି। ଏଣୁ ଆମେ କେତେ ଶତାବ୍ଦୀ ପଛରେ ରହିଛେ ଓ ଭବିଷ୍ୟତ ପାଇଁ ଆଶା ରଖିନାହେଁ।

## ଚିନ୍ତା କରିବା ଆବଶ୍ୟକ

ଆମ ଜୀବନର ପ୍ରତ୍ୟେକ ବ୍ୟାପାରରେ ସୀମାହୀନ ଭାବେ ଧର୍ମ, ଈଶ୍ୱରର ପ୍ରଭାବ ରହିଛି। ଆମର ଜୀବନର ମାନକୁ ଉନ୍ନତ କରିବା ପାଇଁ ଆମେ କୌଣସି

Digitized by srujanika@gmail.com

ଜିନିଷ ଉଦ୍ଭାବନ କରିବାକୁ ପ୍ରୟାସ କରିନାହେଁ, ବରଂ ପାଶ୍ଚାତ୍ୟରେ ଯାହି କିଛି ନୂଆ ପଦାର୍ଥ ବାହାରିଛି ଆମେ ତାକୁ ବ୍ୟବହାର କରିବାକୁ ଲାଳାୟିତ ହୋଇଛେ। ଏପରିକି ପାଶ୍ଚାତ୍ୟ ଉଦ୍‌ଭାବନ ଗୁଡିକୁ ଆମେ ଆମ ଦେବ-ଦେବୀଙ୍କ ପାଖକୁ ମଧ୍ୟ ପ୍ରସାର କରିଛେ। ଇଲେକ୍‌ଟ୍ରିକ ଆଲୁଅ, ପଂଖା, ଇତ୍ୟାଦିର ସୁବିଧା ଆମେ ଆମ ପଥର ଓ ଧାତୁ ନିର୍ମିତ ଦେବ-ଦେବୀଙ୍କୁ ପ୍ରଦାନ କରିଛେ। ହାତରେ ମାରଣାସ୍ତ୍ର ଧରିଥିବା ଆମର ଦେବ-ଦେବୀ ପ୍ରତିମା ଗୁଡିକ ଇଲେକଟ୍ରିକ୍ ଆଲୁଅ ସହିତ ସମତାଳ କି ନୁହଁ ତାହା ଆମେ ପ୍ରଶ୍ନ କରୁନାହେଁ। ପାଶ୍ଚାତ୍ୟ ଦେଶର ସୁଖ ସୁବିଧାକୁ ଆମେ ଯଥାଶୀଘ୍ର ଆମର ବ୍ୟବହାରରେ ଗ୍ରହଣ କରିଛେ, ସେତେବେଳେ ଏସବୁ କ୍ଷେତ୍ରରେ ଆମ ଦେବ-ଦେବୀଙ୍କର ଭୂମିକା ନେଇ ଚିନ୍ତା କରେନାହିଁ। ଆଗେ ଲୋକମାନେ ବନାରସ କିମ୍ବା ରାମେଶ୍ୱରମ ଇତ୍ୟାଦି ସ୍ଥାନକୁ ତୀର୍ଥ ପାଇଁ ପାଦରେ ଯାଉଥିଲେ କିମ୍ବା ପାରଂପରିକ ଗାଡିରେ ଯାଉଥିଲେ। ଏବେ ଦିଅଁ ଦେବତାରେ ବିଶ୍ୱାସ ତାଙ୍କୁ ରେଳଗାଡିରେ ସେଠାକୁ ଯିବାକୁ ଅନୁମତି ଦେବ କି ନାହିଁ, ବର୍ତ୍ତମାନର ବିଶ୍ୱାସୀ ମାନେ ଏ ପ୍ରଶ୍ନ ଉଠାନ୍ତି ନାହିଁ। ଲୋକମାନଙ୍କର ଜୀବନ ଧାରାରେ କିପରି ପରିବର୍ତ୍ତନ ହେବ ସେ ପାଇଁ ଆମେ ବିଶେଷ ଆଗ୍ରହୀ ନୁହେଁ। ବରଂ ପାଶ୍ଚାତ୍ୟ ଦେଶର ସମସ୍ତ ନୂଆ ଜିନିଷ ବ୍ୟବହାର କରିବା ବା ଆମ ଦେବ-ଦେବୀଙ୍କ ପାଖକୁ ପ୍ରସାରିତ କରିବାରେ ଆମେ କୁଣ୍ଠା ପ୍ରକାଶ କରେ ନାହିଁ। ଇଲେକ୍‌ଟ୍ରିକ ଆଲୁଅର ଉଦାହରଣ ନିଅନ୍ତୁ। ଏହାର ଉଦ୍ଭାବନର ଇତିହାସ କଥା ଭାବନ୍ତୁ। ତା ପୂର୍ବରୁ କିରୋସିନି ବ୍ୟବହୃତ ଲ୍ୟାଂପ ଓ ପେଟ୍ରୋମାକ୍ସ ଲାଇଟର ବ୍ୟବହାର ଥିଲା। ଏବେ ବିଶିଷ୍ଟ ଭକ୍ତମାନେ ଇଲେକଟ୍ରିକ ଲାଇଟରେ ସବୁ ପୂଜା, କର୍ମକାଣ୍ଡ ଓ ପ୍ରାର୍ଥନା କରୁଛନ୍ତି। ଆମର ଦେବ-ଦେବୀ, ଋଷି, ମହାତ୍ମା, ଦେବତା, ସୁରମାନେ ଏହି କ୍ଷୁଦ୍ର ଜିନିଷକୁ ଉଦ୍‌ଭାବନ କରିନାହାନ୍ତି କିମ୍ବା ସେମାନଙ୍କର କୌଣସି ଭକ୍ତକୁ ଏହା ଉଦ୍‌ଭାବନ କରିବାକୁ ଆଶୀର୍ବାଦ କରିନାହାନ୍ତି। ଯେଉଁମାନେ ବିଚାରବୁଦ୍ଧି ପ୍ରୟୋଗ କରି ଏହା ଚିନ୍ତା କରିବେ ସେମାନେ ଆମ ବିଶ୍ୱାସ ଓ ବାସ୍ତବ ଜୀବନ ଭିତରେ ଥିବା ଅସଂହତିକୁ ଦେଖି ପାରିବେ।

Digitized by srujanika@gmail.com

## ଜାତି ରହିବା ଉଚିତ କି ?

ଭାରତରେ ଘୃଣିତ ବର୍ଣ୍ଣ ବ୍ୟବସ୍ଥା ଏବେବି ପ୍ରଭାବ ବିସ୍ତାର କରି ରହିଛି। ଦୁଇ ହାଜର ବର୍ଷ ତଳେ ଯେଉଁମାନଙ୍କୁ ଶୂଦ୍ର କୁହାଯାଉଥିଲା, ଏବେ ବି ସେମାନେ ଶୂଦ୍ରଭାବେ ପରିଚିତ ହେଉଛନ୍ତି। ସେହିପରି ଦୁଇ ହାଜର ବର୍ଷ ତଳେ ଯେଉଁମାନେ ବ୍ରାହ୍ମଣ ଥିଲେ ଏବେବି ସେମାନେ ବ୍ରାହ୍ମଣ ରହିଛନ୍ତି। ଯେଉଁମାନେ ଅସ୍ପୃଶ୍ୟ ହୋଇ ରହିଥିଲେ ଏବେ ବି ଅସ୍ପୃଶ୍ୟର ପରିଚୟ ନେଇ ଜୀବନ ବଞ୍ଚୁଛନ୍ତି। ସମୟର ବ୍ୟବଧାନ ଭିତରେ ରଙ୍ଗ, ଅଭ୍ୟାସ, ରୁଚି, ଅରୁଚି, ଜାତିର ନିୟମ, ପରଂପରା କ୍ଷେତ୍ରରେ ଅନେକ ପରିବର୍ତ୍ତନ ହେଲାଣି, ହେଲେ ଜନ୍ମଭିତ୍ତିକ ଜାତିବ୍ୟବସ୍ଥା ଏବେ ବି ସମାଜରେ ତିଷ୍ଠି ରହିଛି। ଏହା କେତେ ଦୂର ଠିକ୍? ବାରନାରୀ ସନ୍ତାନ, ଯେଉଁମାନଙ୍କୁ ଏକଦା ଶୂଦ୍ର କୁହାଯାଉଥିଲା, ସେମାନେ ବିଂଶ ଶତାବ୍ଦୀରେ ସେହି ନାମରେ ପରିଚିତ ହେବା ଆବଶ୍ୟକ କି? ସେହି ମିଛ ଶାସ୍ତ୍ର ଓ ଅର୍ଥହୀନ ପରଂପରା ଦ୍ୱାରା ଆମେ ଏବେବି ପରିଚାଳିତ ହେବା କି? ଜନ୍ମ ଭିତ୍ତିକ ଭେଦଭାବ ଯାହା ସେମାନଙ୍କ ଉପରେ ଲଦି ଦିଆଯାଇଛି ସେଥିରୁ ସେମାନେ କିପରି ମୁକ୍ତ ହେବେ? ଆମେ କାହିଁକି ମର୍ଯ୍ୟାଦାବାନ ବ୍ୟକ୍ତି ଭାବେ ସମାଜରେ ପରିଗଣିତ ହେବା ନାହିଁ?

## ଏହାକୁ ସହ୍ୟ କରାଯିବ କି ?

ଆମକୁ ନ୍ୟୂନ କରି ରଖିବାର ଆଧାର ହେଉଛି ହିନ୍ଦୁଧର୍ମର ଦେବ-ଦେବୀ, ଶାସ୍ତ୍ର, ପୁରାଣ। ଯଦି ସେସବୁକୁ ଦୂର କରାନଯାଏ ସାମାଜିକ ପରିବର୍ତ୍ତନ ସମ୍ଭବ ହେବ ନାହିଁ। ଅନ୍ତତଃ ଆଧୁନିକ ଗଣତାନ୍ତ୍ରିକ ଜୀବନଶୈଳୀର ବିକାଶ ପାଇଁ ସେସବୁର ପରିବର୍ତ୍ତନ ଆବଶ୍ୟକ। ଆମେ କୌଣସି ନରକର ଭୟ ରଖିବା ଠିକ୍ ନୁହେଁ। ଲୋକମାନେ ସାହସର ସହ ଏହି ପ୍ରଶ୍ନ ପଚାରିବା ଆବଶ୍ୟକ ଯେ- ଈଶ୍ୱର କାହିଁକି ଶ୍ରମଜୀବୀ ଜନଗଣଙ୍କୁ ଏତେ ଦୟନୀୟ କରି ରଖିଛନ୍ତି ଅଥଚ କର୍ମଭୀରୁ ଲୋକମାନଙ୍କୁ ଯେଉଁମାନେ ଶରୀର ଶ୍ରମକୁ ନ୍ୟୂନ ଦୃଷ୍ଟିରେ ଦେଖନ୍ତି, ସୁଖ ସ୍ୱାଛନ୍ଦ୍ୟରେ ରଖିଛନ୍ତି? ଯେଉଁ ଧର୍ମ ଶ୍ରମଜୀବୀ, କୃଷକମାନଙ୍କୁ ଶୂଦ୍ର କହି ସେମାନଙ୍କୁ ହୀନ କରିଆସିଛି ଅଥଚ କର୍ମକୁଣ୍ଠ ଆଳସ୍ୟରେ ମଉଜ କରୁଥିବା

Digitized by srujanika@gmail.com

ଲୋକମାନଙ୍କୁ ବ୍ରାହ୍ମଣ ବା ବୈଶ୍ୟ କରିଛି, ସେହି ଭାବଧାରାକୁ ସହ୍ୟ କରାଯିବା ଉଚିତ କି ?

**ଈଶ୍ୱର ଅପସରି ଯାଉଛନ୍ତି**

କୁସଂସ୍କାର ଓ ଶୋଷଣର ଦିନ ସରି ଆସୁଛି। ଲୋକମାନେ ଏବେ ଧର୍ମ, ଈଶ୍ୱର ନାମ ଶୁଣି ଏତେ ଭୟଭିତ ନୁହନ୍ତି। ଅନେକ ବିଦେଶ ରାଷ୍ଟ୍ରମାନଙ୍କରେ ଈଶ୍ୱର ଧାରଣା ଲୋପ ପାଇନଥିଲେ ମଧ୍ୟ ଏହା ହ୍ରାସ ପାଇବାରେ ଲାଗିଛି। ଯେଉଁମାନେ ଈଶ୍ୱର ଧାରଣାରୁ ମୁକ୍ତ ହେଉଛନ୍ତି ବା ଈଶ୍ୱର ଭାବନାକୁ ପରିହାର କରୁଛନ୍ତି ସେମାନେ କେବଳ ନିଜ ବୁଦ୍ଧିର ପ୍ରୟୋଗ କରୁଛନ୍ତି। ସେମାନଙ୍କୁ କେଉଁ ଈଶ୍ୱର ଏଥିପାଇଁ ଦଣ୍ଡ ଦେଇନାହାନ୍ତି। ସେମାନେ ନିଜର ଦୃଷ୍ଟିଶକ୍ତି ବା ଶ୍ରବଣ ଶକ୍ତି ହରାଇ ନାହାନ୍ତି। ସଂଶୟବାଦୀ ବା ନିରୀଶ୍ୱରବାଦୀ ମାନଙ୍କୁ ଈଶ୍ୱର କୋପ କରିବେ କହି ଯେଉଁ ଭୟ ସୃଷ୍ଟି କରାଯାଉଛି ତାହା ମିଥ୍ୟା ପ୍ରମାଣିତ ହୋଇଛି। ନିରୀଶ୍ୱରବାଦୀ ରୁଷ ବା ଚାଇନାରେ ବର୍ଷା, ସୂର୍ଯ୍ୟ କିରଣ ଯାହା ମିଳୁଥିଲା ତାହା ମିଳୁଛି ଓ ଯଥେଷ୍ଟ ପ୍ରଗତି ହାସଲ ହୋଇପାରିଛି।

**ଲୋକଙ୍କ ଅପେକ୍ଷା ଈଶ୍ୱର ଅଧିକ।**

ପୋଂଗଲ, ଅମଳ ସମୟର ପର୍ବ ଜନିତ ଭୋଜିଭାତ ଓ ଅନ୍ୟାନ୍ୟ ପର୍ବପର୍ବାଣୀକୁ ଲୋକମାନଙ୍କ ଭିତରେ ବିଚାରଶୀଳ ଦୃଷ୍ଟି ପ୍ରସାର କରିବା ପାଇଁ ବିନିଯୋଗ କରାଯିବା ଉଚିତ। ଈଶ୍ୱର, ଧର୍ମରେ ଅବିଶ୍ୱାସ ଯୋଗୁଁ ଏଠିକାର ଭୂମିପୁତ୍ରମାନେ ଆଜି ଏତେ ତଳ ସ୍ତରରେ ରହିଛନ୍ତି ବୋଲି କେହି କହିପାରିବ ନାହିଁ। ଭାରତରେ ଦେବ-ଦେବୀଙ୍କର ସଂଖ୍ୟା ଏଠିକାର ଲୋକଙ୍କର ସଂଖ୍ୟାଠାରୁ ହୁଏତ ଅଧିକ। ଦେବ ଦେବୀମାନଙ୍କର ପୂଜା, ଆରାଧନା ଓ ବିଭିନ୍ନ ଧର୍ମର ଉପାସନା ଏଠାରେ ବେଶ୍ ସନ୍ତୋଷଜନକ ମନେହୁଏ। ଏସବୁ ସତ୍ତ୍ୱେ ଆମର ଲୋକମାନେ କାହିଁକି ଏତେ ଦୟନୀୟ ସ୍ଥିତିରେ ରହିଛନ୍ତି?

ଆମ ସହର ବା ଗ୍ରାମରେ ଯେତେବେଳେ ହଇଜା ବା ପ୍ଲେଗ ପରି ମହାମାରୀ ବ୍ୟାପେ ଆମେ ସେତେବେଳେ କଣ କରେ ? ପଦାଧିକାରୀମାନେ ଦେବୀ ମେରିଆମା

Digitized by srujanika@gmail.com

ଓ ମଣୀଶ୍ୱରମଙ୍କୁ ପ୍ରାର୍ଥନା କରିବାକୁ ଲୋକଙ୍କୁ କୁହନ୍ତି ନାହିଁ । ସେମାନେ ଦୂଷିତ ଜଳକୁ ଶୋଧନ କରନ୍ତି, ପିଇବା ପାଣିକୁ ବିଶୋଧନ କରି ଲୋକଙ୍କୁ ଯୋଗାନ୍ତି ଓ ଲୋକମାନଙ୍କୁ ପ୍ରତିଷେଧକ ଟିକାମାନ ଦିଅନ୍ତି । ଏହା ଫଳରେ ରୋଗ ନିୟନ୍ତ୍ରଣ ହୁଏ ଓ ସେଥିରେ କେଉଁ ଦେବୀ ସେମାନଙ୍କୁ କୋପ କରନ୍ତି ନାହିଁ । ଲୋକମାନେ ସେହିପରି ଅନୁଭବ କରିବା ଆବଶ୍ୟକ ଯେ ସାମାଜିକ ଜୀବନରେ ସେମାନଙ୍କର ଦୁଃଖ, ଦୁର୍ଦ୍ଦଶା ସେମାନଙ୍କର ଧାର୍ମିକ ବିଶ୍ୱାସର ପରିଣାମ । ସେହି ପୁରୁଣା ଦେବ-ଦେବୀଙ୍କୁ ଏତେ ବର୍ଷ ଧରି ଯେଉଁମାନେ ବିଶ୍ୱାସ କରି ଭକ୍ତି କରିଛନ୍ତି ସେମାନଙ୍କର ସ୍ଥିତିରେ କିଛି ପରିବର୍ତ୍ତନ ହୋଇଛି କି ? କେଉଁ ଈଶ୍ୱର ବା ଦେବତା ତାଙ୍କ କଥା ଶୁଣିଛି ନା ତାଙ୍କ ଦୁଃଖ ଦୂରକରିଛି ! ଈଶ୍ୱର ସେମାନଙ୍କ ପାଇଁ ମୂକ, ବଧିର, ଦୃଷ୍ଟିହୀନ ପାଲଟି ଯାଇଛନ୍ତି । ସେହି ଦେବ-ଦେବୀମାନଙ୍କୁ ପ୍ରାର୍ଥନା କରିବା ପରିବର୍ତ୍ତେ ସେମାନଙ୍କୁ ଧ୍ୱଂସ କରିବା ଦରକାର ।

**ଈଶ୍ୱର ସର୍ବଦା ନୀରବ କାହିଁକି ?**

ପକେଟମାରୁ କରୁଥିବା ଜଣେ ବ୍ୟକ୍ତି ଯଦି କୁହେ ଯେ ଈଶ୍ୱରଙ୍କର ବିନା ଆଶୀର୍ବାଦରେ ସେ ପକେଟମାର କରିପାରିବ ନାହିଁ ବା ଈଶ୍ୱର ନ ଚାହିଁଲେ କିଛି ବି ସମ୍ଭବ ନୁହେଁ, ଆମେ ତାଙ୍କର କଥା ଗ୍ରହଣ କରିବା କି ? ଈଶ୍ୱରଙ୍କ ଆଦେଶ ଯୋଗୁଁ ସେ ଏହା କରୁଛି କହି ତାକୁ ଛାଡିଦେବା ନା ତାକୁ ପୋଲିସରେ ଦେବା ? କୌଣସି ଭକ୍ତ ନିଜର ବାକ୍ସକୁ ଈଶ୍ୱର ଯତ୍ନ ନେବେ କହି ଏଥିରେ ଚାବି ନଦେଇ ଛାଡିକରି ଯିବେ କି ? ପ୍ରତ୍ୟେକ ବ୍ୟକ୍ତି ନିଜ ଜୀବନର ଆବଶ୍ୟକତା ପୂରଣ ପାଇଁ ଉଦ୍ୟମ କରେନାହିଁ କି? ନିଜ ପାଟିରେ ଈଶ୍ୱର ଖାଦ୍ୟ ଦେବେ କହି କୌଣସି ବ୍ୟକ୍ତି ନୀରବରେ ବସିରହେ କି ? ସେହିପରି ଜାତିପ୍ରଥା ପରି ଏକ କୁତ୍ସିତ ବ୍ୟବସ୍ଥାକୁ ଈଶ୍ୱର ଦୂର କରିଦେବେ କହି ନୀରବ ରହିବା ଯଥାର୍ଥ ମନେହୁଏ ନାହିଁ । ଲୋକମାନେ ସଚେତନ ହୋଇ ଏହି ବ୍ୟବସ୍ଥାର ପରିବର୍ତ୍ତନ କରିବା ଆବଶ୍ୟକ । କେଉଁ ଈଶ୍ୱର ବା ପୂଜକ ଗୋଷ୍ଠୀ ଏଥିରେ ଲୋକମାନଙ୍କୁ ସାହାଯ୍ୟ କରିବେ ନାହିଁ । ଈଶ୍ୱର ସର୍ବଦା ନୀରବ ହୋଇ ରହିଛନ୍ତି ଓ ପୂଜକ ଶୋଷଣ କରୁଛନ୍ତି । ଲୋକମାନେ

Digitized by srujanika@gmail.com

ତାଙ୍କ ପାଦରୁ ଧର୍ମର-ଶିକୁଳି ପରିହାର କରି ସଚେତନ ହେବାକୁ ସେମାନଙ୍କୁ ବୁଝାଇବା ଦରକାର।

## ଈଶ୍ୱରଙ୍କୁ ନୋଟିସ୍

କେତେକ ଲୋକ କାହିଁକି ଶୂଦ୍ର ଭାବେ ପରିଚିତ ହେବା ଦରକାର ? ଯେଉଁମାନେ ମନ୍ଦିର ନିର୍ମାଣ କରିଛନ୍ତି, ଏହାର ରକ୍ଷଣାବେକ୍ଷଣ ପାଇଁ ଅର୍ଥ ଦେଉଛନ୍ତି ସେମାନଙ୍କୁ ଶୂଦ୍ର ବା ଛୋଟ ଜାତି କୁହାଯିବା ଯଥାର୍ଥ କି ? ଯେଉଁ ପୂଜକ ପ୍ରତିମା ପାଖରେ ଦୀପ ଜାଳି ଲୋକମାନଙ୍କୁ ବୋକା କରି ଆସିଛନ୍ତି ସେମାନେ କାହିଁକି ଉଚ୍ଚ ଜାତିର ପରିଚୟ ପାଇବେ? ଏହି ଅନ୍ୟାୟ ଓ ଭେଦଭାବ ମୂଳକ ବ୍ୟବସ୍ଥା ଯେଉଁ ଇଶ୍ୱରଙ୍କ ପାଇଁ ରହିଛି, ସେହି ଇଶ୍ୱର ତାଙ୍କ ପାଖରେ ସାନ-ବଡ ଭେଦଭାବ ନାହିଁ ବୋଲି ଘୋଷଣା କରିବା ଠିକ୍ ନୁହେଁ କି? ଈଶ୍ୱରଙ୍କୁ ଏହି ଘୋଷଣା କରିବା ପାଇଁ ବା ସେ ଏହି ଭେଦଭାବ ପାଇଁ ଦାୟୀ ନୁହଁନ୍ତି ବୋଲି କହିବା ପାଇଁ ତାଙ୍କୁ ନୋଟିସ ଦେବା ଦରକାର। ଯଦି ସେ ନିର୍ଦ୍ଦିଷ୍ଟ ସମୟ ସୀମା ଭିତରେ ଏହା ଘୋଷଣା ନକରନ୍ତି, ତେବେ ସେହି ପୂଜାସ୍ଥଳକୁ ଧ୍ୱଂସ କରାଯିବା ଆବଶ୍ୟକ।

ଯଦି ଈଶ୍ୱର ପଥର ପ୍ରତିମା ଭିତରେ ରହିଛନ୍ତି ସେ ଏହା କୁହନ୍ତୁ। ଯଦି ସେ କିଛି କହୁ ନାହାନ୍ତି ତେବେ ସେହି ପଥର ପ୍ରତିମାକୁ ଖତଗଦାକୁ ଫିଙ୍ଗିବା ଦରକାର। ଆତ୍ମମର୍ଯ୍ୟାଦାକାରୀ ମାନେ ସତ କଥା କହୁଥିବାରୁ ସେମାନଙ୍କୁ ବନ୍ଦୀ କରାଯାଉଛି, ଦଣ୍ଡ ଦିଆଯାଉଛି। ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀ ଶାନ୍ତି ଓ ଧର୍ମବିଶ୍ୱାସ ନାମରେ ଶୋଷଣ କରି ଆସିଛନ୍ତି। ଆତ୍ମ ମର୍ଯ୍ୟାଦାକାରୀ ମାନେ ସାହସର ସହିତ ସମାଜରେ ଗଣତାନ୍ତ୍ରିକ ମୂଲ୍ୟବୋଧ, ହେତୁବାଦୀ ବିଚାରଶୀଳତାର ପ୍ରସାର ପାଇଁ ସକଳ ପ୍ରତିବନ୍ଧକକୁ ସମ୍ମୁଖୀନ ହେବାକୁ ଅଗ୍ରସର ହେବା ଉଚିତ।

## ଈଶ୍ୱର ଓ ନର୍ତ୍ତକୀ

ଯଦି ଈଶ୍ୱରଙ୍କର କିଛି କଳ୍ପନା କରାଯାଏ, ତେବେ ତାହା ହେବ ସତ୍ୟ ଓ ଜ୍ଞାନ। ଈଶ୍ୱରଙ୍କ ନାମରେ ଯାହା କୁହାଯାଉଛି ବା କରାଯାଉଛି ତାହା ଏହାରି ଆଧାରରେ ମୂଲ୍ୟାୟନ ହେବା ଆବଶ୍ୟକ। ଏକ ପଥର ମୂର୍ତ୍ତିକୁ ଈଶ୍ୱର କହି

Digitized by srujanika@gmail.com

ସ୍ଥାପନ କରିବା ଓ ପ୍ରତ୍ୟେକ ବର୍ଷ ତାହାର ବାହାଘର କରିବାର କିଛି ଅର୍ଥ ଅଛି କି? ଏପର୍ଯ୍ୟନ୍ତ ମନ୍ଦିର ମାନଙ୍କରେ ଏହି ଈଶ୍ୱରମାନଙ୍କ ସମ୍ମୁଖରେ ସଂଗୀତ ଜରିଆରେ ନର୍ତ୍ତକୀମାନଙ୍କର ନାଚ ପରିବେଷଣ କରାଯାଉଛି । ବିଶ୍ୱାସ ଯେ ଏହି ନର୍ତ୍ତକୀଙ୍କର ନୃତ୍ୟ ଈଶ୍ୱର ଉପଭୋଗ କରିବେ । ପିତଳ ମୂର୍ତ୍ତିମାନଙ୍କୁ ଈଶ୍ୱର କହି ବିରାଟ ବିମାନରେ ବସାଇ ଶୂଦ୍ରମାନଙ୍କ ବେକରେ ବୁହାଇ ପ୍ରସେସନ କରାଯାଉଛି । ଏହି ରାଜକୀୟ ସମ୍ମାନ ପରେ ମୂର୍ତ୍ତିମାନଙ୍କୁ କ୍ଷୁଦ୍ର କୋଠରୀ ଭିତରେ ବନ୍ଦ କରି ତାଲା ଦିଆଯାଉଛି । ଏହି ତାମସାର କିଛି ଅର୍ଥ ଅଛି କି? ଆମେ ଈଶ୍ୱରଙ୍କୁ ସମ୍ମାନ କରୁଛେ ନା ଏହି ତାମସା କରି ଅସମ୍ମାନିତ କରୁଛେ?

**ଗୋବରକୁ କାହିଁକି ପୂଜା କରୁଛେ?**

ଆମ ଲୋକଙ୍କର ଶିକ୍ଷାର କିଛି ମୂଲ୍ୟ ରହିଛି କି ? ଜ୍ଞାନୀ ପଣ୍ଡିତଗଣ, ସ୍ନାତକ ବିଦ୍ୟାର୍ଥୀ, ଉପାଧିପ୍ରାପ୍ତ ଧନୀକ ବର୍ଗ ସେମାନଙ୍କର ଶିକ୍ଷାଦ୍ୱାରା କିଛି ପ୍ରକୃତରେ ଲାଭ କରିଛନ୍ତି କି? ଯେକୌଣସି ନିରକ୍ଷର ଚାଷୀଟିଏ ଭଳି ଏହି ଲୋକମାନେ ଗୋବରକୁ ପୂଜା କରିବା ଓ ଗୋମୂତକୁ ମୁଣ୍ଡରେ ଛିଞ୍ଚିବା ଦେଖାଯାଏ । ସେମାନଙ୍କର ପାପ କ୍ଷୟ ପାଇଁ ସେମାନେ ଅପରିଷ୍କାର ତୀର୍ଥମ (ଗଂଗାଜଳ) ରେ ବୁଡ ପକାଇଥାନ୍ତି । ସେମାନେ ଶବ ଭଳି ଛିଡା ହୋଇ ରହନ୍ତି ଯେତେବେଳେ ପୂଜକ ସଂସ୍କୃତରେ ଶ୍ଲୋକ ପଢୁଥାଏ । ବହୁ ଅର୍ଥ ବ୍ୟୟ କରି ଓ କଷ୍ଟ ସ୍ୱୀକାର କରି କେତେକ ଲୋକ ମୁଣ୍ଡ ଲଣ୍ଡା ହେବା ପାଇଁ ତିରୁପତି ଯାଆନ୍ତି । ଏସବୁର କଣ ଉପଯୋଗିତା ରହିଛି ?

**ରାଜନୀତିଜ୍ଞ ଓ କୁସଂସ୍କାର**

ଆମ ଜନ ସମୁଦାୟର ୯୦ ଶତକଡା ଲୋକ ନିରକ୍ଷର । ସ୍ଥିତିରେ ପରିବର୍ତ୍ତନ ପାଇଁ ସରକାର କେତେକ ପଦକ୍ଷେପ ନେଉଛନ୍ତି । ତେବେ ରାଜନୈତିକ ଲୋକମାନେ ଏହି ଲକ୍ଷ୍ୟ ଉଦ୍ଦେଶ୍ୟରେ କୁସଂସ୍କାର ପ୍ରସାର ଓ ସୁଦୃଢ କରୁଛନ୍ତି । ପୁରାଣକୁ କୌଣସି ବିଦ୍ରୂପ କରିବା, ଧାର୍ମିକ ବିଶ୍ୱାସକୁ ଅବଜ୍ଞା କରିବା ନେଇ

Digitized by srujanika@gmail.com

ଶିକ୍ଷକମାନଙ୍କୁ ସତର୍କ କରାଯାଇଛି । କେହି ଏହା କଲେ ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାକୁ ଧମକ ଦିଆଯାଇଛି । ସେପରି ହେଲେ ଜାତିପ୍ରଥାର ବିଲୋପ କିପରି ହେବ ଓ କୁସଂସ୍କାର କିପରି ଲୋପ ପାଇବ ? ଯୁବକମାନେ କିପରି ସତ୍ୟ ଜାଣିବାକୁ ସମର୍ଥ ହେବେ ? ପ୍ରାଚୀନ ଧାର୍ମିକ ବିଶ୍ୱାସ ଦ୍ୱାରା ଅଗଣିତ ମଣିଷକୁ ଯେ ଶୂଦ୍ର କରାଯାଇଛି, ଏହା ଆମର ରାଜନୈତିକ ବ୍ୟକ୍ତିମାନେ ବୁଝିନପାରିବା ମୋତେ ଆଶ୍ଚର୍ଯ୍ୟ ଲାଗେ । ସେମାନେ ମନ୍ତ୍ରୀ ହେଲେ ମଧ୍ୟ ଶୂଦ୍ରର ପରିଚୟ ବହନ କରନ୍ତି । ସେମାନଙ୍କର ଅଜ୍ଞତା ଓ ପରଂପରା ପାଖରେ ଦାସତ୍ୱ ଯୋଗୁଁ ସେମାନଙ୍କୁ ହିନ୍ଦୁ ସମାଜ ବ୍ୟବସ୍ଥାରେ କିପରି ନ୍ୟୂନ କରାଯାଇଛି ସେମାନେ ତାହା ନେଇ ସଚେତନ ନୁହଁନ୍ତି । କେତେକ ଧାର୍ମିକ ବିଶ୍ୱାସ ଯୋଗୁଁ ସେମାନେ ଯୁଗ ଯୁଗ ଧରି ଅସମ୍ମାନିତ ହୋଇ ରହିଛନ୍ତି ।

**ଶିକ୍ଷାବିତ୍‌ମାନଙ୍କର ବିଫଳତା**

ସ୍ୱାଧୀନତା ପରେ ବି ଆମର ଶିକ୍ଷାବିତ୍‌ମାନେ ଆମର ଶିକ୍ଷା ପ୍ରଣାଳୀରେ ପରିବର୍ତ୍ତନ ଆଣିବାକୁ କୌଣସି ଚିନ୍ତା ପ୍ରକଟ କରୁନାହାନ୍ତି । ପୁରାଣର ଅନେକ ଅଯୌକ୍ତିକ କାହାଣୀମାନଙ୍କୁ ପଢାଯାଉଛି । ରାମାୟଣ ଓ ମହାଭାରତର କାହାଣୀମାନଙ୍କୁ ଇତିହାସ ବହିରେ ସ୍ଥାନ ଦିଆଯାଇ ସେ ସବୁକୁ ଐତିହାସିକ ସତ୍ୟ ଭାବେ ବର୍ଣ୍ଣନା କରାଯାଇଛି । ରାମାୟଣ ଓ ମହାଭାରତ କାହାଣୀ ସବୁ ହଜାର ହଜାର ବର୍ଷ ତଳେ ତ୍ରେତୟା ଓ ଦ୍ୱାପର ଯୁଗରେ ଘଟିଥିବା କଥା କୁହାଯାଉଛି । ଏହି ପୁରାଣମାନଙ୍କର ସତ୍ୟତାକୁ ପ୍ରତିପାଦନ କରିବାକୁ କୌଣସି ବସ୍ତୁନିଷ୍ଠ ସତ୍ୟତା ବା ଐତିହାସିକ ଆଧାର ନାହିଁ । ଏସବୁ ସତ୍ତ୍ୱେ ଇତିହାସ ପୁସ୍ତକରେ ଏସବୁକୁ ଶିକ୍ଷାବିତ୍‌ମାନେ ସ୍ଥାନ ଦେଇଛନ୍ତି । ଆମର କୋମଳମତି ଛାତ୍ର ଛାତ୍ରୀଙ୍କୁ ଯଦି କାଳ୍ପନିକ ଓ ପରୀକାହାଣୀ ଭଳି ବିଷୟକୁ ଇତିହାସ ବୋଲି ପଢାଯାଏ, ତେବେ ଆମର ପିଲାମାନେ କିପରି ନିଜର ଚିନ୍ତା ଓ ବିଚାରଶକ୍ତି ପ୍ରୟୋଗ କରିବେ ବୋଲି ଆମେ ଭାବିବା ? ସେମାନେ ସତ୍ୟସନ୍ଧାନୀ ହେବେ କି ! ସରକାର ଓ ଶିକ୍ଷାବିତ୍‌ମାନେ ଯଦି ବିଚାରଶୀଳତା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀକୁ ଗୁରୁତ୍ୱ ନ ଦେବେ, ଶିକ୍ଷାର ପରିଣତି କଣ ହେବ ?

Digitized by srujanika@gmail.com

## ମୋ ଦୃଷ୍ଟିର ଇଶ୍ୱର

ମୋ ଦୃଷ୍ଟିରେ ଇଶ୍ୱର ନାମହୀନ ଓ ରୂପହୀନ। ମୋ ବିଚାରର ଇଶ୍ୱର ସବୁ ମଣିଷକୁ ସମାନ କରେ ଓ ସମସ୍ତଙ୍କୁ ମୁକ୍ତ ଚିନ୍ତା ଦେଇଥାଏ। କୌଣସି ଅନୁସନ୍ଧିତ୍ସା, ଗବେଷଣାକୁ ଦବାଇ ଦିଏ ନାହିଁ। ମୋର ଇଶ୍ୱର କୌଣସି ଭୋଗ, ଅର୍ଥ, ଖୋସାମଦ ଆବଶ୍ୟକ କରେ ନାହି । ଯାହା ନ୍ୟାୟ, ସତ୍ୟ, ସମତା ଓ ପ୍ରଜ୍ଞା ଆଧାରିତ ତାହା ହିଁ ମୋର ଧର୍ମ। ମୋର ଏହି ଇଶ୍ୱର ଓ ଧର୍ମ ପାଇଁ ମୋତେ କେତେକ ନିରୀଶ୍ୱରବାଦୀ ବୋଲି ଚିତ୍ରଣ କରିଥାନ୍ତି । ମୋର ଏହି ନିରୀଶ୍ୱରବାଦ ମୋତେ ଭୟ ଦେଖାଏ ନାହିଁ ବା କାହା ପ୍ରତି ଭୟର କାରଣ ନୁହେଁ ।



Digitized by srujanika@gmail.com

## ୧୦. ଜାତି ଓ ଚରିତ୍ର

ଆମ ଭାବନାରେ ମଣିଷ ଚରିତ୍ରକୁ ଜାତିପ୍ରଥା କଳୁଷିତ କରିଦେଇଛି। ଜନ୍ମଭିତ୍ତିକ ଜାତିବ୍ୟବସ୍ଥା ଓ ପ୍ରତ୍ୟେକ ଜାତିର ଆଚରଣ ବିଧି ଯୋଗୁଁ ଶହ ଶହ ବର୍ଷ ଧରି ନୈତିକ ଆଦର୍ଶମାନ ଜାତି-କୈନ୍ଦ୍ରିକ ହୋଇ ରହିଛି। ଏହି ଜାତି କୈନ୍ଦ୍ରିକ ନୈତିକତା ହିନ୍ଦୁ ମାନସିକତାକୁ ଏପରି ବିଭାଜିତ ଓ କଳୁଷିତ କରି ରଖିଛି ଯେ ଏଥିରେ ପରିବର୍ତ୍ତନ ଅସମ୍ଭବ ମନେ ହେଉଛି। ଅଧିକନ୍ତୁ ଏକ ସାର୍ବଜନୀନ ନୈତିକ ଦୃଷ୍ଟି ବା କର୍ତ୍ତବ୍ୟବୋଧ ଭାରତୀୟ ସମାଜରେ ସମ୍ଭବ ହୋଇ ନାହିଁ। ଜାତିମାନଙ୍କ ଭିତରେ ବୈଷମ୍ୟର ସ୍ତର ଏପରି ଦୃଢ ହୋଇ ରହିଛି ଓ ଭାରତୀୟ ହିନ୍ଦୁ ସମାଜରେ ଏପରି ରକ୍ତ ମଜ୍ଜାଗତ ହୋଇଯାଇଛି ଯେ ଇଂରାଜୀ ଶିକ୍ଷା, ବଞ୍ଚିବାର ମାନରେ ଉନ୍ନତି ଇତ୍ୟାଦି ଏଥିରେ ପରିବର୍ତ୍ତନ ଆଣିପାରୁ ନାହିଁ। ଆମର ସାଧାରଣ ବୁଦ୍ଧି ଓ ସ୍ୱଭାବ ଜାତିର ଆବରଣ ତଳେ କଳୁଷିତ ହୋଇ ରହିଛି।

### ପରଂପରାର ଦ୍ୱାହି

କଲେଜ ଅଧ୍ୟାପକ, ଇଂଲଣ୍ଡରୁ ଶିକ୍ଷା ପ୍ରାପ୍ତ କେତେକ ବିଦ୍ୟାର୍ଥୀ, ବହୁ ଉଚ୍ଚ ପଦବୀର ବ୍ୟକ୍ତି, ଓକିଲ, ରାଜନୀତିଜ୍ଞ ଇତ୍ୟାଦି ସମାଜର ଶିକ୍ଷିତ ବର୍ଗ ନିଜର ପାରିବାରିକ ଜୀବନରେ ଅଜ୍ଞ ପୁରୋହିତ ବା ନିରକ୍ଷର ଗାଆଁର ଚାଷୀମାନଙ୍କ ପରି ଆଚରଣ ଦେଖାଇଥାନ୍ତି। ସେମାନେ ଶିକ୍ଷା ପ୍ରାପ୍ତ ହୋଇ ସୁଦ୍ଧା ଅର୍ଥହୀନ ପରଂପରା ପାଳନ କରନ୍ତି। ସେମାନଙ୍କର ଯୁକ୍ତି ହେଉଛି ଯେ ଘରର ବୟସ୍କ ମହିଳାମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେମାନେ ଏହି କର୍ମକାଣ୍ଡ କରୁଛନ୍ତି। ସେମାନେ ଯାହା ଯଥାର୍ଥ ବୋଲି ମନେ କରନ୍ତି ତାକୁ ପାଳନ କରିବାକୁ କୌଣସି ସତ୍ ସାହସ ଦେଖାନ୍ତି ନାହିଁ। କୁସଂସ୍କାରଗ୍ରସ୍ତ ପରଂପରା ଓ ଜାତିଆଣ ଦାସତ୍ୱରୁ ସେମାନେ ମୁକ୍ତ ହୋଇପାରନ୍ତି ନାହିଁ। ପାରିବାରିକ ଶାନ୍ତି ଆଳରେ ସେମାନେ କୁସଂସ୍କାର

Digitized by srujanika@gmail.com

ପାଖରେ ନିଜକୁ ସମର୍ପଣ କରିଦିଅନ୍ତି । ସେମାନଙ୍କର ଶିକ୍ଷାର କୌଣସି ପ୍ରଭାବ ରହେ ନାହିଁ ।

ଯେଉଁ ଶିକ୍ଷା ଏକ ଭଲ କର୍ମସଂସ୍ଥାନ ଓ ସହଜ ଅର୍ଥ ପ୍ରାପ୍ତି ପାଇଁ ଉଦ୍ଦିଷ୍ଟ ତାହା ଯଥାର୍ଥ ଶିକ୍ଷା ନୁହଁ । ଏଥିପାଇଁ ସମସ୍ତ ଶିକ୍ଷିତ ବ୍ୟକ୍ତି ପ୍ରାଜ୍ଞ ନୁହନ୍ତି । ଆନୁଷ୍ଠାନିକ ଶିକ୍ଷା ବାହାରେ ବିଚାରଶୀଳତା ଓ ସଂସ୍କୃତି ହାସଲ କରାଯାଇପାରେ । ଶିକ୍ଷା ଯଦି ଜୀବନ ସହିତ ସଂପୃକ୍ତ ହୁଏ ତେବେ ଏହା ବ୍ୟକ୍ତି ଭିତରେ ବିଚାରଶୀଳ ଓ ସଂସ୍କୃତିସଂପନ୍ନ ମନୋଭାବ ସୃଷ୍ଟି କରିଥାଏ । ଭାରତବର୍ଷରେ ଜାତି, ଧର୍ମ ଶିକ୍ଷିତ ଲୋକମାନଙ୍କ ପାଖରେ ସଂସ୍କୃତି ସଂପନ୍ନ ଓ ବିଚାରଶୀଳ ଚରିତ୍ର ସୃଷ୍ଟି କ୍ଷେତ୍ରରେ ପ୍ରତିବନ୍ଧକ ହୋଇଥାଏ ।

**ମହିଳାମାନେ କାହିଁକି ଅଧସ୍ତନ ହୋଇଛନ୍ତି ?**

ସାରା ପୃଥିବୀରେ ଚାରିତ୍ରିକ ଶୁଦ୍ଧତା ଓ ପ୍ରେମ ଆଧାରରେ ମହିଳାମାନଙ୍କୁ ଅଧସ୍ତନ କରାଯାଇ ପୁରୁଷମାନଙ୍କ ନିୟନ୍ତ୍ରଣ ଭିତରେ ରଖାଯାଇଛି । ସେହିପରି ସମାଜର ଗରିବ ଓ ଉତ୍ପୀଡିତ ଲୋକମାନଙ୍କୁ କେତେକ ଆଦର୍ଶ ନାମରେ ଶୋଷଣ କରାଯାଇଛି । ଚାରିତ୍ରିକ ଶୁଦ୍ଧତା, ପ୍ରେମ, ଧର୍ମ, ନ୍ୟାୟ, ଆଦର୍ଶ ଇତ୍ୟାଦି ଭାବନାକୁ ନେଇ ସମାଜର ମୁଷ୍ଟିମେୟ ଲୋକ ଅଗଣିତ ଲୋକମାନଙ୍କୁ ପଦଦଳିତ କରି ରଖି ଆସିଛନ୍ତି । ଏହି ଆଦର୍ଶମାନଙ୍କୁ ନିଜର ସ୍ୱାର୍ଥ ଉଦ୍ଦେଶ୍ୟରେ ସେମାନେ ନାନା ଭାବରେ ବଦଳାଇ ଅର୍ଥ କରିଛନ୍ତି । କେତେକ ବୁଦ୍ଧିମାନ ଧୂର୍ତ୍ତ ବ୍ୟକ୍ତି ନିଜର ସ୍ୱାର୍ଥ ସାଧନ ପାଇଁ ଏସବୁ ଆଦର୍ଶ ନାମରେ ସାଧାରଣ ଜନତାକୁ ଶୋଷଣ କରି ଆସିଛନ୍ତି ।

ସମସ୍ତ ନୀତି ନିୟମ ମଣିଷକୃତ । ମହିଳାମାନଙ୍କୁ ଅଧସ୍ତନ କରି ରଖିବାକୁ ସମାଜରେ ସେ ପ୍ରକାର ନୀତି, ପ୍ରଥା ସୃଷ୍ଟି କରାଯାଇଛି । ବାସ୍ତବରେ ସାଧାରଣ ଓ ଦୁର୍ବଳ ଲୋକକୁ ଅଧସ୍ତନ କରି ରଖିବାକୁ ସମାଜର ପ୍ରଭାବଶାଳୀ ଓ ଶକ୍ତିଶାଳୀ ଲୋକମାନେ ନୀତି, ପ୍ରଥାମାନଙ୍କୁ ସୃଷ୍ଟି କରିଛନ୍ତି ।

**ଶିଶୁ ଭୟ**

ଶିଶୁମାନଙ୍କୁ ନିୟନ୍ତ୍ରଣରେ ରଖିବା ପାଇଁ ସେମାନଙ୍କ ମନରେ କେତେକ ଭୟ ସୃଷ୍ଟି କରାଯାଏ । ସେହିପରି ଶୋଷଣକାରୀଙ୍କ ପ୍ରତି ବିପଦ ସୃଷ୍ଟି ନକରିବା

Digitized by srujanika@gmail.com

ପାଇଁ ସାଧାରଣ ମଣିଷ ମନରେ ନୀତି, ଆଦର୍ଶ, ଧର୍ମର ଭାବନା ଦିଆଯାଏ । ଏପରିକି ପ୍ରଭାବଶାଳୀ ଲୋକଙ୍କୁ ଅର୍ଦ୍ଧେଶ୍ୱର (ସେମି-ଗଡ) କରି ସେମାନଙ୍କୁପୂଜା କରାଯାଏ । ପିଲାଙ୍କର ବୁଦ୍ଧି, ଭାବନା ବିକଶିତ ନ ହୋଇଥିବା ପର୍ଯ୍ୟନ୍ତ ସେମାନେ ଭୟ ଯୋଗୁଁ ଅନେକ କଥା ବିଶ୍ୱାସ କରି ନିଅନ୍ତି । ସେହିପରି ଶୋଷଣକାରୀ ବ୍ୟକ୍ତିମାନେ ସେମାନଙ୍କର ସୁବିଧା ସୁଯୋଗ ପାଇଁ ସାଧାରଣ ଲୋକଙ୍କୁ ଅନ୍ଧକାର ଭିତରେ ରଖିବାକୁ ଚାହାନ୍ତି । ସାଧାରଣ ଲୋକମାନେ ସେମାନଙ୍କର ଅଧିକାର ଓ ଶୋଷଣ ବିଷୟରେ ସଚେତନ ହେବାଦ୍ୱାରା ସେମାନେ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିପାରିବେ ।

## ଅତୀତକୁ ଦେଖିଲେ

ଉତ୍ତମ ଚରିତ୍ର ଓ ମନ୍ଦ ଚରିତ୍ର ଭିତରେ ପାର୍ଥକ୍ୟ କେଉଁଠି ? ଯେଉଁମାନେ ଶକ୍ତିଶାଳୀ ସେମାନେ ସମାଜରେ ଭଲ-ମନ୍ଦର ପାର୍ଥକ୍ୟ ସୃଷ୍ଟି କରିଛନ୍ତି । କୌଣସି ବିଷୟ ଅନ୍ତର୍ନିହିତ ଭାବେ ଉତ୍ତମ ନ ହୋଇ ପ୍ରଭାବଶାଳୀ ଲୋକମାନେ କେତେକ ବ୍ୟବସ୍ଥାକୁ ଉତ୍ତମ କରିଛନ୍ତି ।

ସାଧାରଣତଃ ବେଶ୍ୟାବୃତ୍ତି, ଅସତ୍ୟ, ଚୋରି, ଠକାମି କୁ ମନ୍ଦ କାର୍ଯ୍ୟ ବୋଲି କୁହାଯାଏ । ତେବେ ଯେକୌଣସି ବ୍ୟକ୍ତି ଏଥିରୁ କିଛି ନା କିଛି ହୁଏତ ଜୀବନରେ କରିଥାଏ । ହୁଏତ ଏହା ଅନ୍ୟର ଜ୍ଞାତ ସାରରେ ହୋଇନଥାଏ ବା ସହଜରେ ଜଣାପଡି ନଥାଏ । ଜଣେ ଯଦି ନିଜେ ଆତ୍ମସମୀକ୍ଷା କରେ, ତେବେ ସେ ନିଜର ମନ୍ଦ ଆଚରଣ ନେଇ ସଚେତନ ହୋଇଥାଏ ଓ କେଉଁ କ୍ଷେତ୍ରରେ ସେ ନୈତିକତା ଠାରୁ ଦୂରେଇ ଯାଇଛି ତାହା ଜାଣିଥାଏ । ଆମର ସଂପର୍କୀୟ, ବନ୍ଧୁ, ପରିଚିତ ସାଥୀମାନଙ୍କର ସ୍ୱଭାବ ବିଷୟରେ ଆମେ ଜାଣିବାର ସୁଯୋଗ ପାଏ । ସେମାନେ କେଉଁ କ୍ଷେତ୍ରରେ ଭଲ ବା ମନ୍ଦ ତାହା ଜଣା ପଡିଥାଏ ।

## ଅନ୍ୟ ପାଇଁ ଉତ୍ତମ ବ୍ୟବହାର

ନିଜର ଆବଶ୍ୟକତା ପୂରଣ ପାଇଁ ସମାଜରେ ଲୋକମାନେ ବିଭିନ୍ନ ବୃତ୍ତି ଅବଲମ୍ବନ କରନ୍ତି । ବ୍ୟବସାୟ, କୃଷି, ଚାକିରି, ଉତ୍ପାଦନ ବା ଅନ୍ୟ କିଛି ବୃତ୍ତି

Digitized by srujanika@gmail.com

କରି ଲୋକମାନେ ନିଜର ଗୁକୁରାଣ ମେଣ୍ଟାଇଥାନ୍ତି । ଏଠାରେ ବୃତ୍ତିଗତ ସାଧୁତା ବା ଉତ୍ତମ ଚରିତ୍ର ବିଷୟରେ ଆମେ ବ୍ୟାଖ୍ୟା କରିବାକୁ ଯାଉନାହୁଁ । ତେବେ ଯେଉଁମାନେ କ୍ଷମତା ବା ପଦପଦବୀରେ ରହିଛନ୍ତି ସେମାନେ ସାଧାରଣ ମଣିଷ ପାଇଁ ଯେଉଁ ନୀତି, ନିୟମ ନିର୍ଦ୍ଧାରଣ କରୁଛନ୍ତି ତାହାର ସୂଚନା ଦେବାକୁ ଚାହୁଁଛି । ସେମାନେ ନିଜ ଚରିତ୍ର ବିଷୟରେ ନ କହି ଅନ୍ୟକୁ ଅଙ୍ଗୁଳି ନିର୍ଦ୍ଦେଶ କରିଥାନ୍ତି ।

ଜଣେ ପୁଂଜିପତି ଜଣେ ଶ୍ରମିକର ତ୍ରୁଟିରେ ତାକୁ ଧିକ୍କାର କରିଥାଏ, କିନ୍ତୁ ନିଜ ତ୍ରୁଟି କଥା ଭାବେ ନାହିଁ । ଜଣେ ପଦସ୍ଥ ଅଫିସର ଜଣେ କିରାନି ପାଖରେ ଯେଉଁ ତ୍ରୁଟି ଦେଖନ୍ତି, ସେହି ତ୍ରୁଟିରୁ ସେ ନିଜେ ବି ମୁକ୍ତ ନୁହନ୍ତି । ତେବେ କିରାନିଟି ଅଫିସର ସମ୍ମୁଖରେ ଅଫିସରଙ୍କ ତ୍ରୁଟି ଦେଖାଇବାକୁ ସାହସ କରନ୍ତି ନାହିଁ । ଜଣେ ବାପା ଯେଉଁ ତ୍ରୁଟି ପାଇଁ ପୁତ୍ରକୁ ଗାଳି ଦିଅନ୍ତି ସେ ନିଜେ ସେହି ତ୍ରୁଟି ବି କରନ୍ତି । ନିଜର ମନ୍ଦ ଅଭ୍ୟାସ ଥାଇ ବି ଅନ୍ୟର ମନ୍ଦ ଅଭ୍ୟାସକୁ ସମାଲୋଚନା କରିବାର ବହୁ ଦୃଷ୍ଟାନ୍ତ ସମାଜରେ ଦେଖିବାକୁ ମିଳେ ।

**ଜାତିପ୍ରଥା**

ଏହି ଚରିତ୍ର ଯେ କେତେକଙ୍କ ପାଖରେ ଦେଖାଯାଏ, ତାହା ନୁହେଁ, ଏହା ଅଳ୍ପ ବହୁତ ସମସ୍ତଙ୍କ ପାଖରେ ରହିଥାଏ । ମୋର କହିବାର ତାତ୍ପର୍ଯ୍ୟ ହେଉଛି ଆମେ ଅନ୍ୟଠାରୁ ଉତ୍ତମ ଚରିତ୍ର ଓ ସାଧୁତା ଆଶାକରୁ, କିନ୍ତୁ ଆମେ ନିଜ ପାଖରେ ଏହା ସର୍ବଦା ଆଶା କରେ ନାହିଁ । ଯେଉଁମାନେ ସମାଜରେ ତଳେ ରହିଛନ୍ତି ବା ଆର୍ଥିକ ଦୃଷ୍ଟିରୁ ଦରିଦ୍ର ହୋଇଛନ୍ତି, ସେମାନଙ୍କ ପାଇଁ ଆମେ କେତେ ନୀତି ନିୟମର କଥା କହି ସେମାନଙ୍କୁ ଠକିଥାଉ । କିନ୍ତୁ ଏକ ସମତାଭିତ୍ତିକ ସମାଜବାଦୀ ରାଷ୍ଟ୍ର ପ୍ରତିଷ୍ଠା ପାଇଁ ଆମେ କୌଣସି ଆନ୍ତରିକତା ଦେଖାଏ ନାହିଁ ।

ଆମ ଚରିତ୍ରରେ ଏହି ବିଭେଦ ପାଇଁ ଜାତି ବ୍ୟବସ୍ଥା ଅନେକାଂଶରେ ଦାୟୀ । ଯେଉଁ କାର୍ଯ୍ୟ କେତେକ ଜାତିଙ୍କ ପାଇଁ ଉତ୍ତମ ଓ ମହତ୍ ସେହି କାର୍ଯ୍ୟ ଅନ୍ୟ ଜାତି ପାଇଁ ମନ୍ଦ ଓ ଅନୈତିକ । ମନ୍ଦ ଆଚରଣ କେତେକ ଜାତିଙ୍କ ପାଇଁ ମୁକ୍ତ ଅଥଚ ଅନ୍ୟ ଜାତିଙ୍କ ପାଇଁ ନିଷିଦ୍ଧ । "ତୁମ ପ୍ରତି ଯେଉଁ ଆଚରଣ ତୁମେ ଚାହଁ ନାହିଁ, ତୁମେ ସେହି ବ୍ୟବହାର ଅନ୍ୟ କାହାକୁ ଦେଖାଅ ନାହିଁ" - ଏହା ହିଁ ନୈତିକତାର

Digitized by srujanika@gmail.com

ଏକ ମୁଖ୍ୟ ଆଦର୍ଶ । କିନ୍ତୁ ଏହି ଭାବନା ହିନ୍ଦୁ ଜାତି ବ୍ୟବସ୍ଥା ସହିତ ଆଦୌ ସଂହତିପୂର୍ଣ୍ଣ ନୁହେଁ । ନୈତିକତାର ଏହି ଆଦର୍ଶ ଜାତିପ୍ରଥାରେ କେବେ ଗ୍ରହଣଯୋଗ୍ୟ ନୁହେଁ ।

**ରକ୍ତ ମଜ୍ଜାଗତ**

ସମାଜରେ ମନ୍ଦ ଚରିତ୍ରର ଅଭିବ୍ୟକ୍ତି ରହିଛି । ଚୋରି, ମିଥ୍ୟାଚାର, ଠକାମିକୁ ଯଦି ମନ୍ଦ ଚରିତ୍ର ଭାବେ ନିଆଯାଏ, ତେବେ ଏହି ଚରିତ୍ର ଅନେକାଂଶରେ ରାଜା, ଜମିଦାର, ପୂଜକ, ବଡ ବେପାରୀ, ଓକିଲ ଓ ରାଜନୀତିଜ୍ଞ ମାନଙ୍କ ପାଖରେ ରହିଛି, ନିରକ୍ଷର କୃଷକ, ଗରିବ ଲୋକ ଓ ଶ୍ରମଜୀବୀଙ୍କ ପାଖରେ ନାହିଁ । ଜନଗଣଙ୍କୁ ଯେଉଁମାନେ ଠକି ସେମାନଙ୍କୁ ଦୁଃଖ, ଦୁର୍ଦ୍ଦଶା ଦେଇଛନ୍ତି, ନ୍ୟୂନ କରି ରଖିଛନ୍ତି ସେମାନେ ହେଲେ ଏହି ଶୋଷକ ଗୋଷ୍ଠୀ ।

ମନ୍ଦ ଚରିତ୍ର ଯେ ଏହି ଶୋଷକ ଗୋଷ୍ଠୀର ରକ୍ତ ମଜ୍ଜାଗତ ହୋଇ ରହିଛି ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଡମ୍ବନାର ବିଷୟ ସାଧାରଣ ଲୋକମାନେ ଏହି ଶୋଷକ ଗୋଷ୍ଠୀ ପ୍ରତି ବିଦ୍ୱେଷ ପ୍ରକାଶ କରନ୍ତି ନାହିଁ । ବରଂ ସେମାନଙ୍କୁ ସମ୍ମାନ କରନ୍ତି ଓ ପୂଜା କରନ୍ତି । ଏହାର କାରଣ ହେଉଛି ସମାଜର ସାଧାରଣ ଲୋକମାନେ ଶିକ୍ଷିତ ବା ସଚେତନ ନୁହନ୍ତି ।

**ସଂସ୍କାର ଦ୍ୱାରା ନୁହେଁ ବିପ୍ଳବ ଦ୍ୱାରା**

ତାହା ହିଁ ହେଉଛି ଉତ୍ତମ ଚରିତ୍ର ଯାହା ଆମେ ବ୍ୟକ୍ତିଗତ ଆଚରଣରେ ପ୍ରତିଫଳିତ କରେ ଓ ଯାହା ଆମେ ଅନ୍ୟକୁ ଶିକ୍ଷା ଦିଏ । ଜଣେ ନିଜେ ଯେପରି ସମ୍ମାନ ଆଶାକରେ, ସେ ସେପରି ସମ୍ମାନ ଅନ୍ୟକୁ ଦେଖାଇବା ଦରକାର । ଏହା ହିନ୍ଦୁମାନଙ୍କ ପାଇଁ ଏକ ବୈପ୍ଳବିକ ନୀତି । ଏହାର ପ୍ରୟୋଗ ସଂସ୍କାରଦ୍ୱାରା ନୁହେଁ, ବରଂ ବିପ୍ଳବ ଦ୍ୱାରା ସମ୍ଭବ । ଏପରି କେତେକ କଥା ଅଛି ଯାହାର ପରିବର୍ତ୍ତନ ନୁହେଁ ପରିସମାପ୍ତି ଦରକାର ।



Digitized by srujanika@gmail.com

# ପେରିୟାର ଇ.ଭି.ରାମସ୍ୱାମୀ
## (ଜୀବନ ଆଲେଖ୍ୟ)

**୧୮୭୯-ସେପ୍‌ଟେମ୍ବର ୧୭ :** ତାମିଲନାଡୁର ଏରୋଡ ସହରରେ ଜନ୍ମ।

**ବାପା-** ଭେଙ୍କଟ ନାଇକର, ବାପା ଥିଲେ ଜଣେ ଧନୀ ବ୍ୟବସାୟୀ, ବୈଷ୍ଣବବାଦୀ ହିନ୍ଦୁ, ହିନ୍ଦୁଧର୍ମରେ ପ୍ରଗାଢ ବିଶ୍ୱାସୀ ଓ ଭକ୍ତି ଭାବନାର ପ୍ରବକ୍ତା।

**ମା-** ଚିନ୍ନା ଆୟମ୍ମା, ଡାକ ନାମ ମୁଥାମ୍ମଲ

**ପେରିୟାରଙ୍କ ବଡ ଭାଇ-** ଇ.ଭି.କୃଷ୍ଣସ୍ୱାମୀ

**ସାନ ଭଉଣୀ -** କାନ୍ନାମ୍ମଲ

**୧୮୮୫ :** ପେରିୟାରଙ୍କୁ ୬ ବର୍ଷରେ ଏକ ପ୍ରାଥମିକ ବିଦ୍ୟାଳୟରେ ତାଙ୍କ ନାମ ଲେଖାଗଲା। ସ୍କୁଲଟି ତାଙ୍କ ଘରଠାରୁ ଅଳ୍ପ ଦୂରରେ ଥିଲା।

**୧୮୮୯ :** ଦଶବର୍ଷ ବୟସରେ ତାଙ୍କର ଶିକ୍ଷା ସମାପ୍ତ ହେଲା।

**୧୮୯୧ :** ବାରବର୍ଷ ବୟସରେ ସେ ବାପାଙ୍କ ବ୍ୟବସାୟରେ ସଂପୃକ୍ତ ହେଲେ ।

**୧୮୮୯-୯୫ :** ତାଙ୍କ ଗୃହକୁ ଆସୁଥିବା ତାମିଲ ବୈଷ୍ଣବମାନଙ୍କର ଧାର୍ମିକ ପ୍ରବଚନ ଶୁଣୁଥିଲେ। ସେମାନେ ପୁରାଣର ଯେଉଁ ସବୁ କାହାଣୀ ଶୁଣାଉଥିଲେ ପେରିୟାର ମନଯୋଗ ଦେଇ ଶୁଣୁଥିଲେ। ନାନା ବିରୋଧାଭାସ ନେଇ ପ୍ରଶ୍ନ କରୁଥିଲେ। ଦ୍ରାବିଡମାନଙ୍କୁ ଅଧସ୍ତନ କରି ରଖିବାରେ ହିନ୍ଦୁ ଦେବ-ଦେବୀ ଓ ବ୍ରାହ୍ମଣବାଦର ଭୂମିକା ବିଷୟରେ ସନ୍ଦେହ ପୋଷଣ କରି ପ୍ରଶ୍ନ ପଚାରୁଥିଲେ।

ଏହି ସବୁ ଆଲୋଚନା ଭିତରେ ତାଙ୍କ ଭିତରେ ଏକ ହେତୁବାଦୀ ଦୃଷ୍ଟିଭଙ୍ଗୀ ସୃଷ୍ଟି ହେଉଥିଲା।

Digitized by srujanika@gmail.com

**୧୮୯୮ :** ୧୩ ବର୍ଷର ନାଗମ୍ମଲଙ୍କ ସହ ପେରିୟାରଙ୍କର ବିବାହ । ତାଙ୍କର ରକ୍ଷଣଶୀଳ ପତ୍ନୀଙ୍କ ସ୍ୱଭାବରେ ପରିବର୍ତ୍ତନ ଆଣି ତାଙ୍କ ଭିତରେ ଏକ ହେତୁବାଦୀ ମନୋଭାବ ସୃଷ୍ଟି କରିବାରେ ପ୍ରୟାସ କରିଥିଲେ ।

**୧୯୦୦:** ତାଙ୍କର ଏକ କନ୍ୟା ସନ୍ତାନ ଜନ୍ମ ହେଲା । ତେବେ ଝିଅଟି ପାଞ୍ଚ ମାସରେ ମରିଗଲା । ତାପରେ ସେମାନଙ୍କର ଆଉ ସନ୍ତାନ-ସନ୍ତତି ହୋଇ ନାହିଁ ।

**୧୯୦୪:** ବାପାଙ୍କର ତିରଷ୍କାରପୂର୍ଣ୍ଣ ବକ୍ତବ୍ୟରେ ମ୍ରିୟମାଣ ହୋଇ ସେ ଘର ଛାଡି ଚାଲିଗଲେ । ପ୍ରଥମେ ସେ ଆନ୍ଧ୍ରର ବିଜୟୱାଡା ଗଲେ । ଏହାପରେ ହାଇଦ୍ରାବାଦ ଓ ତାପରେ କଲିକତା ଗଲେ । ଶେଷରେ ସେ ବାରାଣାସୀ ବା କାଶିରେ ପହଞ୍ଚିଲେ । କାଶିରେ ଅସମ୍ମାନ ତାଙ୍କ ହେତୁବାଦୀ ଦୃଷ୍ଟିଭଙ୍ଗୀକୁ ଦୃଢ କରିଥିଲା ।

- ଗଙ୍ଗାନଦୀ କୂଳରେ ଥିବା ଏକ ତୀର୍ଥସ୍ଥଳୀ କାଶିରେ (ବନାରସ) ସେ ପହଞ୍ଚିଲେ । ବନାରସରେ ଥିବା ଦାତବ୍ୟ ଭୋଜନାଳୟରେ ତାଙ୍କୁ ଖାଦ୍ୟ ଦିଆଗଲା ନାହିଁ । ସେହି ଭୋଜନାଳୟରେ କେବଳ ବ୍ରାହ୍ମଣମାନଙ୍କୁ ମାଗଣାରେ ଖାଦ୍ୟ ଦିଆଯାଏ, ଅନ୍ୟ କୌଣସି ଜାତିର ଲୋକଙ୍କୁ ଖାଦ୍ୟ ଦିଆଯାଏ ନାହିଁ ।

- କେତେକ ଦିନ ବିନା ଖାଦ୍ୟରେ ଭୋକରେ ରହିବା ପରେ ସେ ଏକ ଉପାୟ ବାହାର କରି ଏକ ପଇତା ପକାଇ ଖାଲି ଦେହରେ ସେଠାକୁ ଗଲେ । ସେ ଭାବିଥିଲେ ଯେ ସେପରି ଗଲେ ତାଙ୍କୁ କିଛି ଖାଦ୍ୟ ମିଳିବ । କିନ୍ତୁ ଗେଟର ଦରୱାନ ତାଙ୍କର ନିଶ ଥିବା ଦେଖି ତାଙ୍କୁ ପ୍ରବେଶ କରିବାର ସୁଯୋଗ ଦେଇ ନ ଥିଲେ, ବରଂ ଧକା ଦେଇ ରାସ୍ତାକୁ ପେଲି ଦେଇଥିଲେ ।

- ଭୋଜନାଳୟରେ ବ୍ରାହ୍ମଣମାନେ ଖାଦ୍ୟ ଖାଇ ସାରିବା ପରେ ସେମାନଙ୍କର ଖଲିପତ୍ର ବାହାରେ ଫିଙ୍ଗି ଦିଆ ଯାଉଥିଲା । ଭୋକରେ ଆଉଟ ପାଉଟ ହେଉଥିବା ପେରିୟାର ସେହି ଖଲିରୁ ଖାଦ୍ୟ ସଂଗ୍ରହ କରି ଖାଇଥିଲେ ।

Digitized by srujanika@gmail.com

◆ ସେହି ଖାଦ୍ୟ ଖାଇବା ବେଳେ ସେହି ଗୃହର ପ୍ରବେଶ କାଛରେ ଏକ ଲେଖା ତାଙ୍କର ଦୃଷ୍ଟିରେ ପଡିଲା । ବ୍ରାହ୍ମଣମାନେ ରହୁଥିବା ଓ ଖାଉଥିବା ସେହି ଦାତବ୍ୟ ଧର୍ମଶାଳାଟିକୁ ତାମିଲନାଡୁର ଜଣେ ଦ୍ରାବିଡ ଧନୀ ବ୍ୟବସାୟୀ ନିର୍ମାଣ କରିଛନ୍ତି ।

◆ ସେହି ଫଳକଟି ଦେଖି ଯୁବକ ପେରିୟାରଙ୍କ ମନରେ କିଛି ପ୍ରଶ୍ନ ଉଦ୍ରେକ ହେଲା -

ଜଣେ ଦ୍ରାବିଡ ପରୋପକାରୀ ବ୍ୟକ୍ତି ସେବା ଉଦ୍ଦେଶ୍ୟରେ ନିର୍ମାଣ କରିଥିବା ଏହି ଦାତବ୍ୟ ଭୋଜନାଳୟରେ ବ୍ରାହ୍ମଣମାନେ କାହିଁକି ଜଣେ ଦ୍ରାବିଡ ଯୁବକର ପ୍ରବେଶ ଅଧିକାରକୁ ବାରଣ କରିବେ? ଜଣେ ଦ୍ରାବିଡ ବ୍ୟକ୍ତିଙ୍କର ଦାନରେ ଭୋଜନାଳୟ ଚାଲୁଥିବା ବେଳେ ଅନ୍ୟ ଜଣେ ଦ୍ରାବିଡ ସେଠାରେ ପ୍ରବେଶ କରିବାର ଅଧିକାର ନ ପାଇବା କେତେ ଦୂର ଯଥାର୍ଥ ? ବ୍ରାହ୍ମଣମାନେ ଯେଉଁମାନଙ୍କ ଦାନରେ ଭୋଜନ ଖାଉଛନ୍ତି, ସେହି ଜାତିର ବ୍ୟକ୍ତିମାନଙ୍କ ପ୍ରତି ଏପରି ନିର୍ଦ୍ଦୟ ଓ ଅନ୍ୟାୟ ବ୍ୟବହାର ଦେଖାଇବା ଠିକ୍ କି ? ସେମାନେ କାହିଁକି ଜାତିଗତ ଭେଦଭାବ ନେଇ ଅନ୍ୟମାନଙ୍କୁ ହୀନ ଦୃଷ୍ଟିରେ ଦେଖୁଛନ୍ତି?

◆ ଏହି ପ୍ରଶ୍ନ ତାଙ୍କୁ ବେଶ୍ ଆନ୍ଦୋଳିତ କରିବାକୁ ଲାଗିଲା ଓ ସେ ଏହାର କୌଣସି ସନ୍ତୋଷଜନକ ଉତ୍ତର ପାଇଲେ ନାହିଁ ।

◆ ତାଙ୍କ ପ୍ରତି କାଶିରେ ଏହି ନିଷ୍କରୁଣ ବ୍ୟବହାର ତାଙ୍କ ହୃଦୟରେ ଗଭୀର ରେଖାପାତ କରିଥିଲା । ଏହି ଆଘାତ ତାଙ୍କ ମନରେ ବ୍ରାହ୍ମଣବାଦ ଓ ଅସଂଖ୍ୟ ଦେବାଦେବୀଙ୍କ ପ୍ରତି ଘୃଣାଭାବ ସୃଷ୍ଟି କରିଥିଲା ।

◆ କାଶି (ବାରାଣାସୀ) କୁ ଯଦିବି ବ୍ରାହ୍ମଣମାନେ ଏକ ହିନ୍ଦୁ ତୀର୍ଥସ୍ଥଳୀ ବୋଲି କହନ୍ତି, ତେବେ ପେରିୟାର ସେଠାରେ ଯେଉଁସବୁ ଅନ୍ୟାୟର ପ୍ରତ୍ୟକ୍ଷ କଲେ ତାହା ତାଙ୍କ ମନରେ ନାନା ସନ୍ଦେହ ସୃଷ୍ଟି କଲା । ବେଶ୍ୟାବୃତ୍ତି, ଠକାମି, ଚୌର୍ଯ୍ୟବୃତ୍ତି, ଗଙ୍ଗା ନଦୀରେ ଶବକୁ ଫିଙ୍ଗିବା ଇତ୍ୟାଦି ଘଟଣା ଦେଖି ସେ ଏହି

Digitized by srujanika@gmail.com

ଧର୍ମପୀଠ କୁହାଯାଉଥିବା କାଶିକୁ ଘୃଣା ଦୃଷ୍ଟିରେ ଦେଖିଲେ। ସେ ଗୃହତ୍ୟାଗୀ ହୋଇ ସନ୍ନ୍ୟାସ ନେବାକୁ ଯାହା ଭାବିଥିଲେ ଏଠିକାର ପରିବେଶ ତାଙ୍କ ଭିତରେ ଭାବାନ୍ତର ସୃଷ୍ଟି କଲା । ଶେଷରେ ପୁନଶ୍ଚ ପରିବାରକୁ ଫେରି ଆସିବାକୁ ଚାହିଁଲେ ।

◆ ଶେଷରେ ସେ ଏରୋଡ ଫେରିଆସିଲେ। ଗୃହକୁ ଫେରି ଆସିବା ପରେ ତାଙ୍କ ବାପା ତାଙ୍କର ବ୍ୟବସାୟ ପ୍ରତିଷ୍ଠାନର ମୁଖ୍ୟ ଭାଗକୁ ପୁଅଙ୍କ ନାମରେ କରିଦେଲେ । ତାହାର ନାମ ଦେଲେ- "ଇ.ଭି.ରାମସ୍ୱାମୀ ନାଇକର ମଣ୍ଡି" ।

**୧୯୦୫ : ନିଃସ୍ୱାର୍ଥପର ସେବା -**

ଏରୋଡରେ ଜଣେ ଧନୀ ବ୍ୟବସାୟୀ ଭାବରେ ପରିଚିତ ଥିବା ରାମସ୍ୱାମୀ ନାଇକର ସାଧାରଣ ଜୀବନକୁ ଆସି ସମାଜ ସେବାରେ ନିଜକୁ ସଂପୃକ୍ତ କରାଇଲେ।

ଏହି ସମୟରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଲା ଯେ ଏରୋଡରେ ପ୍ଲେଗ ରୋଗ ସୃଷ୍ଟି ହେଲା। ଶହ ଶହ ଲୋକ ମୃତ୍ୟୁ ମୁଖରେ ପଡିଲେ ଓ ହଜାର ହଜାର ଲୋକ ଜୀବନ ରକ୍ଷା ପାଇଁ ଏରୋଡ ଛାଡି ଚାଲିଗଲେ। ତେବେ ଅନ୍ୟ ଧନୀ ବ୍ୟବସାୟୀଙ୍କ ପରି ରାମସ୍ୱାମୀ କୁଆଡେ ଗଲେ ନାହିଁ। ଯେତେବେଳେ ଲୋକମାନେ ମୃତ୍ୟୁ ମୁଖରେ ପଡୁଥିଲେ, ରୋଗରେ ଆକ୍ରାନ୍ତ ହେବା ଭୟରେ ପରିବାର ଲୋକମାନେ ବି ମଡାକୁ ସ୍ପର୍ଶ କରୁନଥିଲେ। ଏହି ସ୍ଥିତିରେ ରାମସ୍ୱାମୀ ମଡାମାନଙ୍କୁ ପିଠିରେ ବୋହି ଶ୍ମଶାନକୁ ନେଉଥିଲେ।

◆ ଏରୋଡ ସହରର ବ୍ୟବସାୟୀ ମାନଙ୍କ ଉପରେ ତାଙ୍କର ସୁପ୍ରଭାବ ରହିଥିଲା ଓ ସେ ବ୍ୟବସାୟୀମାନଙ୍କର ଯେକୌଣସି ମନୋମାଳିନ୍ୟ ଓ ବାଦବିବାଦକୁ ନିରପେକ୍ଷ ଭାବେ ସମାଧାନ କରି ଦେଉଥିଲେ। ସୁତରାଂ ଏରୋଡରେ ଓ ବ୍ୟବସାୟୀ ମାନଙ୍କ ଭିତରେ ସେ ବେଶ୍ ଜଣାଶୁଣା ଥିଲେ।

**୧୯୦୫-୦୬ :** ତାମିଲ୍ ବିଦ୍ୱାନ ମାନଙ୍କସହ ବନ୍ଧୁତା। ତାଙ୍କ ଯୁବକ ଅବସ୍ଥାରେ ତାମିଲ ବିଦ୍ୱାନ ପଣ୍ଡିତମଣି ଅଯୋଥିଧାସାରଙ୍କ ବିଚାରଦ୍ୱାରା ସେ ଆକୃଷ୍ଟ ହୋଇଥିଲେ। ଆୟୋଥିଧାସାର ହେତୁବାଦୀ ଓ ବୌଦ୍ଧଧର୍ମର ବିଦ୍ୱାନ ଥିଲେ, ସେ

Digitized by srujanika@gmail.com

ହିନ୍ଦୁମାନଙ୍କର ବ୍ରାହ୍ମଣବାଦ ଓ ଜାତିପ୍ରଥାକୁ ଭୟଙ୍କର ଭାବେ ସମାଲୋଚନା କରୁଥିଲେ ।

◆ କରୁରଠାରେ ପୁଲଭର ମାରୁଦୟ୍ ପିଲାଇ ନାମରେ ଅନ୍ୟ ଜଣେ ବିଦ୍ୱାନ ବ୍ୟକ୍ତି ଥିଲେ । ତାଙ୍କର ଯୁକ୍ତିଶୀଳ ଭାବନା ଦ୍ୱାରା ସେ ହିନ୍ଦୁଧର୍ମର ଜାତିପ୍ରଥା ଓ ପୁରାଣମାନଙ୍କର ସମାଲୋଚନା କରୁଥିଲେ । ବ୍ରାହ୍ମଣବାଦୀ ଶାସ୍ତ୍ରମାନଙ୍କର ମନଗଢା କଳ୍ପନା ଗୁଡିକୁ ସେ ଏତେ ସୁନ୍ଦର ଭାବେ ବୁଝାଇ ଲୋକମାନଙ୍କୁ ସଚେତନ କରାଉଥିଲେ ଯାହାଦ୍ୱାରା ସେ ଏରୋଡ ଓ କରୁର ଆଖ ପାଖରେ ବେଶ୍ ପରିଚିତ ହୋଇ ଯାଇଥିଲେ ।

ରାମସ୍ୱାମୀଙ୍କର ଏମାନଙ୍କ ସହ ଆନ୍ତରିକ ବନ୍ଧୁତା ଯୋଗୁଁ ସେ ପରବର୍ତ୍ତୀ ପର୍ଯ୍ୟାୟରେ ଜଣେ ହେତୁବାଦୀ ଚିନ୍ତକ ହୋଇପାରିଲେ ।

ସେହିପରି ଜଣେ ତାମିଲ ସନ୍ଥ ଓ ବିଦ୍ୱାନ କୈବଲ୍ୟମଙ୍କ ସହ ରାମସ୍ୱାମୀଙ୍କ ସଂପର୍କ ତାଙ୍କୁ ହେତୁବାଦୀ ଅନୁଶୀଳନ ପାଇଁ ବ୍ରତୀ କରାଇଥିଲା ।

ଏରୋଡର ବହୁ ବିଶିଷ୍ଟ ସରକାରୀ କର୍ମଚାରୀ ଓ ଇଂ. ମଣିକର ନାଇକରଙ୍କ ପରି ଜ୍ଞାନୀ ଲୋକମାନେ ପେରିୟାରଙ୍କ ମାନବବାଦୀ ଓ ପ୍ରଗତିଶୀଳ ବିଚାର ଯୋଗୁଁ ତାଙ୍କର ବନ୍ଧୁ ହୋଇ ଯାଇଥିଲେ ।

**୧୯୦୯:** ସଂପର୍କୀୟ ରକ୍ଷଣଶୀଳ ଲୋକମାନଙ୍କର ବିରୋଧ ସତ୍ତ୍ୱେ ନଅ ବର୍ଷରେ ବିଧବା ହୋଇଥିବା ତାଙ୍କ ଭାଣିଜୀଙ୍କର ବିବାହ ଗୋଟିଏ ସ୍ଥାନରେ କରାଇଥିଲେ ।

**ସ୍ୱାଧୀନତା ଆନ୍ଦୋଳନରେ ତ୍ୟାଗ**

**୧୯୧୮ :** ସେ ଏରୋଡ ମ୍ୟୁନିସପାଲିଟିର ଚେୟାରମ୍ୟାନ ହେଲେ ।

◆ ବ୍ରାହ୍ମଣମାନଙ୍କର ରକ୍ଷଣଶୀଳତା ଓ ସେମାନେ ଧରି ରଖିଥିବା ଜାତିପ୍ରଥା ଓ ନିଷ୍ଠୁର ଅସ୍ପୃଶ୍ୟତାଦ୍ୱାରା ସେମାନେ ସାଧାରଣ ଦ୍ରାବିଡମାନଙ୍କୁ ଯେପରି ନିକ୍ଷେପିତ

Digitized by srujanika@gmail.com

କରି ରଖିଥିଲେ ପେରିୟାର ସେହି ବ୍ୟବସ୍ଥା ଓ ହିନ୍ଦୁଧର୍ମର ଜଣେ ବଡ ସମାଲୋଚକ ଥିଲେ ବି ସେ ତାଙ୍କର କାର୍ଯ୍ୟଦକ୍ଷତା ଓ ସାଧୁତା ପାଇଁ ବିଭିନ୍ନ ଅନୁଷ୍ଠାନର ନାନା ପଦବୀ ପାଇଥିଲେ ।

◆ ବ୍ରିଟିଶ ସରକାରଙ୍କ ଦ୍ୱାରା ଅବୈତନିକ ମାଜିଷ୍ଟ୍ରେଟ ପଦ ତାଙ୍କୁ ଦିଆଯାଇଥିଲା । ୨୯ ଟି ଅନୁଷ୍ଠାନରେ ସେ ବିଭିନ୍ନ ଅବୈତନିକ ପଦ ଗ୍ରହଣ କରିଥିଲେ । ସେଗୁଡିକ ମଧ୍ୟରେ ଜିଲ୍ଲା ବୋର୍ଡ, ତାଲୁକ ବୋର୍ଡ, ଅର୍ବାନ ବ୍ୟାଂକ, ଧାର୍ମିକ ଦେବସ୍ଥାନ ଟ୍ରଷ୍ଟ, ସର୍ବସାଧାରଣ ପାଠାଗାର, ଯୁଦ୍ଧ ପାଇଁ ନିଯୁକ୍ତି କମିଟି, କୃଷକ ସଂଗଠନ, ବଣିକ ସଂଗଠନ, ମହାଜନ ସ୍କୁଲ କମିଟି ଆଦି ଅନ୍ୟତମ ।

◆ ସେ ବିଭିନ୍ନ ଅନୁଷ୍ଠାନରେ ଅନେକ ଉନ୍ନତି ଓ ବିକାଶମୂଳକ କାର୍ଯ୍ୟର ସୂତ୍ରପାତ କରିଥିଲେ । ବିଶେଷ କରି ଏରୋଡରେ ପାନୀୟ ଜଳ ଯୋଗାଣରେ ତାଙ୍କର ଉଲ୍ଲେଖନୀୟ ଅବଦାନ ଥିଲା ।

**୧୯୧୮:** ଏରୋଡ ମୁନିସପାଲିଟର ଚେୟାରମାନ ଥିବା ବେଳେ ତାଙ୍କ ଭିତରେ ଓ ରାଜଗୋପାଳଚାରୀଙ୍କ (ରାଜାଜୀ) ମଧ୍ୟରେ ବନ୍ଧୁତା ଗଢି ଉଠିଥିଲା । ରାଜାଜୀ ପରେ ଭାରତର ଗଭର୍ଣ୍ଣର ଜେନେରାଲ ହୋଇଥିଲେ ।

**୧୯୧୯ :** ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ପରିଚାଳିତ ଜାତୀୟ କଂଗ୍ରେସରେ ଯୋଗ ଦେବାକୁ ପି. ବର୍ଦ୍ଧ, ରାଜୁଲୁ ନାଇଡୁ ଓ ସି. ରାଜଗୋପାଳଚାରୀ ପେରିୟାରଙ୍କୁ ଉତ୍ସାହିତ କରିଥିଲେ ।

ଏରୋଡ ମ୍ୟୁନିସପାଲିଟିରୁ ଇସ୍ତଫା ଦେଇ ପେରିୟାର କଂଗ୍ରେସ ଦଳରେ ଯୋଗଦେଲେ ।

**୧୯୨୦:** ମହାତ୍ମା ଗାନ୍ଧୀଙ୍କ ଡାକରାରେ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ହୋଇଥିବା ଅସହଯୋଗ ଆନ୍ଦୋଳନରେ ପେରିୟାର ଅଂଶଗ୍ରହଣ କଲେ । ଗାନ୍ଧୀଙ୍କର ଡାକରାରେ ପ୍ରଭାବିତ ହୋଇ ପେରିୟାର ସଂପୃକ୍ତ ଥିବା ୨୯ ଟି

Digitized by srujanika@gmail.com

ସଂଗଠନରୁ ଇସ୍ତଫା ଦେଇ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଲେ। ତାଙ୍କର ପାରିବାରିକ ବ୍ୟବସାୟ ପ୍ରତିଷ୍ଠାନ ଯାହା ବର୍ଷକୁ କୋଡିଏ ହଜାର ଟଙ୍କା ସେ ସମୟରେ ଲାଭ ଦେଉଥିଲା ତାହାକୁ ବନ୍ଦ କରିଦେଲେ। ସେତେବେଳେ ଭରିଟିଏ ସୁନା ମୁଦ୍ରାର ଦାମ ୧୦ ଟଙ୍କା ଥିବା ବେଳେ ସେ ବର୍ଷକୁ କୋଡିଏ ହଜାର ଟଙ୍କା ଲାଭ ପାଉଥିବା ବ୍ୟବସାୟ ପ୍ରତିଷ୍ଠାନକୁ ବନ୍ଦ କରିଦେଲେ।

ସେ ସ୍ୱାଧୀନତା ଆନ୍ଦୋଳନରେ ଅଂଶ ଗ୍ରହଣ କରି ସରକାରଙ୍କର ୧୪୪ ଧାରା ଲଂଘନ କରି ଗିରଫ ହେଲେ।

- ପେରିୟାର ମହାତ୍ମା ଗାନ୍ଧୀଙ୍କୁ ବିଶ୍ୱାସ କରି ତାଙ୍କୁ ନେତା ଭାବରେ ସ୍ୱୀକାର କଲେ। ଗାନ୍ଧୀଙ୍କର ଜଣେ ସଚ୍ଚା ଅନୁଗାମୀ ଭାବେ ଗାନ୍ଧୀଙ୍କର ପ୍ରତ୍ୟେକଟି କଥାକୁ ସେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ।

ଏଥିରୁ ଗୋଟିଏ କଥା ହେଲା ସୂତା କାଟିବା ଓ ଖଦି ପିନ୍ଧିବା, ପେରିୟାର ତାଙ୍କର ସମସ୍ତ ଦାମି ପୋଷାକ ପରିତ୍ୟାଗ କରି ସାଧାରଣ ଖଦି ବସ୍ତ୍ର ପରିଧାନ କରିବାକୁ ଲାଗିଲେ। ଏପରିକି ନିଜର ପତ୍ନୀ, ୮୦ ବର୍ଷର ବୃଦ୍ଧ ମା ସମସ୍ତେ ଖଦି ପିନ୍ଧିବାକୁ ସମସ୍ତଙ୍କୁ ନିବେଦନ କଲେ।

ନିଜର ସମସ୍ତ ବିଳାସ ବ୍ୟସନକୁ ପରିହାର କରି ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଏକ ସରଳ ଜୀବନ ଯାପନକୁ ନିଜର ବ୍ରତ କରିନେଲେ।

## ୧୯୨୧ : ନିଶା ନିବାରଣକୁ ସମର୍ଥନ

ପେରିୟାରଙ୍କ ପରିବାରରେ ହିଁ ନିଶା ନିବାରଣ ଭାବନାର ସୂତ୍ରପାତ ହୋଇଥିଲା। ଗାନ୍ଧୀ ଯେତେବେଳେ ଏରୋଡ ଆସିଥିଲେ ସେ ପେରିୟାରଙ୍କ ପରିବାରରେ ରହିଥିଲେ। ପେରିୟାରଙ୍କ ପତ୍ନୀ ନାଗମ୍ମଲ ଓ ଭଉଣୀ କାନାମ୍ମଲ କେତେକ ବ୍ୟକ୍ତି କିପରି ମଦ ପି' ପାରିବାରିକ ଜୀବନରେ ନାନା ଦୁଃଖର କାରଣ ହେଉଛନ୍ତି ଓ ପତ୍ନୀମାନଙ୍କ ଉପରେ ଅତ୍ୟାଚାର କରୁଛନ୍ତି, ତାହା ଗାନ୍ଧୀଙ୍କୁ

Digitized by srujanika@gmail.com

କହିଥିଲେ । ନିଶା ନିବାରଣ ଉପରେ କିଛି ନିୟମ କରିବାକୁ ଗାନ୍ଧୀଙ୍କ ସହ ସେମାନେ ଆଲୋଚନା କରିଥିଲେ ।

◆ ସେମାନଙ୍କର ସେହି ପରାମର୍ଶରେ ଗାନ୍ଧୀ ତତ୍‌କ୍ଷଣାତ୍ ସମ୍ମତ ହୋଇଥିଲେ । ସବୁ ମଦ ଦୋକାନ ଆଗରେ ଧାରଣା ଦେବାକୁ ସାରା ଦେଶରେ କାର୍ଯ୍ୟକ୍ରମ କଂଗ୍ରେସ ଗ୍ରହଣ କରିବ ବୋଲି ଗାନ୍ଧୀ ପ୍ରତିଶ୍ରୁତି ଦେଇଥିଲେ । ମଦ ପିଇବା କ୍ଷେତ୍ରରେ କଟକଣା ଲଗାଇବାକୁ ଓ ନିଶା ନିବାରଣ ନୀତି ପ୍ରଣୟନ କରିବାକୁ ବ୍ରିଟିଶ ସରକାରଙ୍କ ଉପରେ ଚାପ ପକାଇବା ପାଇଁ ଗାନ୍ଧୀ ସମ୍ମତ ହୋଇଥିଲେ ।

ଗାନ୍ଧୀଙ୍କ ସହ ଏହି ଆଲୋଚନା ପରେ ପେରିୟାରଙ୍କ ବଗିଚାରେ ଥିବା ପାଞ୍ଚ ଶହରୁ ଅଧିକ ନଡିଆ ଖଜୁରି ଗଛକୁ ସେ କାଟି ଦେଇଥିଲେ । କାରଣ ଏଥିରୁ ମଦ ଜାତୀୟ ପାନୀୟ ପ୍ରସ୍ତୁତ କରାଯାଉଥିଲା । ଏଥିରୁ ପେରିୟାରଙ୍କ ନଷ୍ଠାପରତା ସଂପର୍କରେ ସୂଚନା ମିଳେ ।

**୧୯୨୨:** ପେରିୟାରଙ୍କର ପତ୍ନୀ ନାଗମ୍ମଲ ଓ ଭଉଣୀ କାନାମ୍ମଲ ମଦ ଦୋକାନ ଆଗରେ ଧାରଣା ଦେବାକୁ ମହିଳାମାନଙ୍କୁ ସଂଗଠିତ କରିଥିଲେ । ସେମାନେ ଏରୋଡ ସହରର ମଦ ଦୋକାନ ସମ୍ମୁଖରେ ମହିଳାମାନଙ୍କୁ ନେଇ ଧାରଣା ଦେଉଥିଲେ ।

ଯେତେବେଳେ କଂଗ୍ରେସର କେତେକ ଆଗଧାଡିର ନେତା ମଦ ଦୋକାନ ସମ୍ମୁଖରେ ଧାରଣା ବନ୍ଦ କରିବାକୁ ଗାନ୍ଧୀଙ୍କୁ ଅନୁରୋଧ କଲେ, ଗାନ୍ଧୀ ଏରୋଡର ଦୁଇ ଜଣ ମହିଳାଙ୍କ ନିଷ୍ପତ୍ତି ଉପରେ ଏହା ନିର୍ଭର କରେ ବୋଲି କହିଥିଲେ । ସେହି ଦୁଇ ମହିଳା ମାନେ ସେ ପେରିୟାରଙ୍କ ପତ୍ନୀ ଓ ଭଉଣୀଙ୍କୁ ହିଁ ସୂଚନା ଦେଇଥିଲେ ।

ଏହାପରେ ପେରିୟାର ତାମିଲନାଡୁ କଂଗ୍ରେସ କମିଟିର ସଭାପତି ମନୋନୀତ ହେଲେ ।

Digitized by srujanika@gmail.com

ତିରୁପୁରଠାରେ ତାମିଲନାଡୁ କଂଗ୍ରେସ କମିଟିର ଅଧିବେଶନ ସମୟରେ ପେରିୟାର ଏକ ପ୍ରସ୍ତାବ ଆଗତ କଲେ ଯେ ସମସ୍ତ ଅସ୍ପୃଶ୍ୟ ଲୋକମାନେ ମନ୍ଦିର ଭିତରେ ଦିଅଁ ଦର୍ଶନ ପାଇଁ ପ୍ରବେଶ କରିପାରିବେ । କିନ୍ତୁ ଏହି ପ୍ରସ୍ତାବକୁ ସମସ୍ତ ବ୍ରାହ୍ମଣ ସଭ୍ୟ ବିରୋଧ କରିଥିଲେ ଓ ଏହାକୁ ଗୃହୀତ କରି ଦେଇନଥିଲେ ।

ଏହି ଜାତିଆଣ ମନୋଭାବ, ବର୍ଣ୍ଣଧର୍ମ ବିରୁଦ୍ଧରେ ପେରିୟାର ଘୋଷଣା କଲେ ଯେ ମନୁସ୍ମୃତି, ରାମାୟଣ ପରି ଗ୍ରନ୍ଥମାନଙ୍କୁ ସେ ସାଧାରଣରେ ନିଆଁ ଲଗାଇ ପୋଡିବେ । କାରଣ ଏହି ସବୁ ଧର୍ମ ପୁସ୍ତକକୁ ଅସ୍ତ୍ର କରି ଦ୍ରାବିଡମାନଙ୍କୁ ଉଚ୍ଚ ଜାତିର ଲୋକମାନେ ସର୍ବଦା ନିମ୍ନ ସ୍ତରରେ ରଖିବାକୁ ଚେଷ୍ଟା କରିଛନ୍ତି । ମନ୍ଦ ବର୍ଣ୍ଣବ୍ୟବସ୍ଥା ଓ କୁସଂସ୍କାରକୁ ଆଳ କରି ଅନ୍ୟମାନଙ୍କୁ ନ୍ୟୂନ କରାଯାଉଛି ।

**୧୯୨୩-** ରାଜା ପାନାଗଲଙ୍କ ନେତୃତ୍ୱରେ ଶାସନରେ ଥିବା ଜଷ୍ଟିସ ପାର୍ଟି ମାଡ୍ରାସ ଲେଜିସ ଲେଟିଭ କାଉନସିଲରେ ଏକ ଆଇନ ପାସ କଲେ । ହିନ୍ଦୁ ଧର୍ମ ଏଣ୍ଡୋମେଣ୍ଟ ବୋର୍ଡ ଗଠନ କରି ହିନ୍ଦୁ ମନ୍ଦିର ମାନଙ୍କରେ ବ୍ରାହ୍ମଣମାନଙ୍କ ଶୋଷଣ ବନ୍ଦ କରିବାକୁ ନିୟମ କଲେ ।

ପେରିୟାର ଯଦିବି କଂଗ୍ରେସ ଦଳରେ ଥିଲେ, ତେବେ ଜଷ୍ଟିସ ପାର୍ଟିର ଏହି ଆଇନକୁ ସମର୍ଥନ ଦେଲେ । ସାମାଜିକ ନ୍ୟାୟ, ଶିକ୍ଷାର ଅଧିକାର, କର୍ମସଂସ୍ଥାନ, ଆର୍ଥିକ ବିକାଶ କ୍ଷେତ୍ରରେ ଦ୍ରାବିଡମାନଙ୍କ ଅଧିକାର ପାଇଁ ପେରିୟାର ସର୍ବଦା ନିଜର ସଂପୃକ୍ତି ପ୍ରକାଶ କରିଆସିଛନ୍ତି । ଉଚ୍ଚ ଜାତିର ହିନ୍ଦୁ ଆର୍ଯ୍ୟମାନେ ଦ୍ରାବିଡ ଜନଗୋଷ୍ଠୀକୁ ଯେଉଁ ଶୋଷଣ କରୁଛନ୍ତି ତାହାକୁ ସେ ବନ୍ଦ କରିବାକୁ ଚାହିଁଛନ୍ତି ।

**୧୯୨୪ - ସାମାଜିକ ନ୍ୟାୟ ପାଇଁ ସଂଗ୍ରାମ**

ଜଷ୍ଟିସ ପାର୍ଟିର ସରକାରଙ୍କ ଦ୍ୱାରା ଶିକ୍ଷା କ୍ଷେତ୍ରରେ ସଂରକ୍ଷଣ ନୀତିକୁ ପେରିୟାର ପୂର୍ଣ୍ଣ ସମର୍ଥନ ଦେଇଛନ୍ତି ।

ଅତି ଦ୍ରାବିଡ (ହିନ୍ଦୁଧର୍ମର ନୀଚ ଜାତିର ଲୋକମାନ)ମାନଙ୍କୁ ଯେପରି ବ୍ରାହ୍ମଣମାନେ ଅସ୍ପୃଶ୍ୟ କରି ରଖିଛନ୍ତି, ସେହି ଅସ୍ପୃଶ୍ୟତା ବିରୁଦ୍ଧରେ ସଂଗ୍ରାମ ପାଇଁ

Digitized by srujanika@gmail.com

ପେରିୟାର କେରଳର ଭାଇକମ ସହରରେ ସତ୍ୟାଗ୍ରହରେ ସଂପୃକ୍ତ ହୋଇଛନ୍ତି । ସମସ୍ତ ନିଷେଧ ଆଦେଶକୁ ଲଂଘନ କରି ପେରିୟାର ଅସ୍ପୃଶ୍ୟତା ପରି ସାମାଜିକ କଳଙ୍କକୁ ଦୂର କରିବାକୁ ଅଗ୍ରସର ହୋଇଛନ୍ତି ।

ମନ୍ଦିର ସହର ଭାଇକମଠାରେ ନୀଚ ଜାତିର (ଏଜଭା) ଲୋକମାନଙ୍କୁ ମନ୍ଦିର ରାସ୍ତାରେ ଚାଲିବାକୁ ବି ଅନୁମତି ନଥିଲା । ସେଠାରେ ଏହା ବିରୁଦ୍ଧରେ ସ୍ଥାନୀୟ କଂଗ୍ରେସ ଲୋକମାନେ ଆନ୍ଦୋଳନ ଆରମ୍ଭ କରିଥିଲେ ।

ପେରିୟାର ଆସି ସେହି ସତ୍ୟାଗ୍ରହର ନେତୃତ୍ୱ ନେବାକୁ ସେମାନେ ତାଙ୍କୁ ଅନୁରୋଧ କଲେ । ପେରିୟାର ସେଠାରେ ଆନ୍ଦୋଳନର ନେତୃତ୍ୱ ନେଲେ । ଏହାପରେ ସେ ସେଠାରେ ଗିରଫ ହୋଇ ଜେଲରେ ରହିଲେ । ସେ ସେଠାରେ ଦୁଇଥର ଗିରଫ ହୋଇ ଛ' ମାସ ଲେଖାଏଁ ଜେଲଦଣ୍ଡ ପାଇଥିଲେ । ସତ୍ୟାଗ୍ରହ ଏକ ବର୍ଷ ଧରି ଚାଲି ଥିଲା ।

ଏହାପରେ ରାଜରାସ୍ତାରେ ଅସ୍ପୃଶ୍ୟ ମାନଙ୍କର ଚାଲିବାର ଅଧିକାର ମିଳିଲା । ସାମାଜିକ ସଂଗ୍ରାମରେ ପେରିୟାରଙ୍କ ନେତୃତ୍ୱ ଓ ମାନବିକ ଅଧିକାର ପାଇଁ ତାଙ୍କର ନିଷ୍ଠା ଯୋଗୁ ସେହି ଆନ୍ଦୋଳନ ସଫଳ ହେଲା । "ଭାଇକମ ସତ୍ୟାଗ୍ରହର ନାୟକ" (ହିରୋ) ଭାବରେ ତାଙ୍କୁ ସମ୍ମାନିତ କରାଗଲା ।

**୧୯୨୪ ସେପ୍‌ଟେମ୍ବର - ୧୧**

ବିଦେଶୀ ବସ୍ତ୍ର ବର୍ଜନ ଓ ଖଦି ପରିଧାନ ପାଇଁ ପେରିୟାରଙ୍କର ପୂର୍ବର ପ୍ରଚାର ପାଇଁ ତାଙ୍କୁ ପୁନର୍ବାର ଜେଲ ଦଣ୍ଡ ହୋଇଥିଲା ।

**୧୯୨୪-** ତିରୁନେଲଭେଲିସ୍ଥିତ ଚେରନମାଧେବୀଠାରେ ପରିଚାଳିତ ଗୁରୁକୁଳର ଜାତୀୟ ଟ୍ରେନିଂ ସ୍କୁଲ ଛାତ୍ରାବାସର ତତ୍ତ୍ୱାବଧାରକ ଭି.ଭି. ଏସ୍. ଆୟେର ବ୍ରାହ୍ମଣ ଛାତ୍ର ଓ ଅବ୍ରାହ୍ମଣ ଛାତ୍ରମାନଙ୍କ ମଧ୍ୟରେ ଖାଦ୍ୟରେ ଓ ଅନ୍ୟ କ୍ଷେତ୍ରରେ ପାତର ଅନ୍ତର କରୁଥିଲେ । ସେହି ଛାତ୍ରାବାସ ତାମିଲନାଡୁ କଂଗ୍ରେସ ଓ କେତେକ

Digitized by srujanika@gmail.com

ଦ୍ରାବିଡ ପରୋପକାରୀଙ୍କ ସାହଯ୍ୟରେ ପରିଚାଳିତ ହେଉଥିଲା । ତଥାପି ଭି.ଭି.ଏସ୍. ଆୟେର ନିଜର ଜାତିଆଣ ମନୋଭାବ ଯୋଗୁଁ ବ୍ରାହ୍ମଣ ଓ ଅବ୍ରାହ୍ମଣ ଦ୍ରାବିଡ ଛାତ୍ରମାନଙ୍କ ମଧ୍ୟରେ ଯେପରି ଭେଦଭାବ କରୁଥିଲେ, ତାହା ପେରିୟାରଙ୍କୁ କ୍ଷୁବ୍ଧ କରିଥିଲା । ଏଥିରେ କ୍ଷୁବ୍ଧ ହୋଇ ପେରିୟାର ତାମିଲନାଡୁ କଂଗ୍ରେସ କମିଟିର ସଂପାଦକ ପଦରୁ ଇସ୍ତଫା ଦେଇଥିଲେ ।ଏହାପରେ ପେରିୟାରଙ୍କୁ ତାମିଲନାଡୁ କଂଗ୍ରେସ ପାର୍ଟିର ସଭାପତି ଭାବେ ନିର୍ବାଚିତ କରାଗଲା ।

ଥିରୁଭନମଲ୍ଲାଇଠାରେ ନଭେମ୍ବର ୧୯୨୪ ରେ ବସିଥିବା ପ୍ରାଦେଶିକ କଂଗ୍ରେସ ସଭାରେ ସେ ସଭାପତିତ୍ୱ କରିଥିଲେ ।

୧୯୨୦ ପରଠାରୁ ଅବ୍ରାହ୍ମଣ (ଦ୍ରାବିଡମାନେ) ମାନଙ୍କର ସାମାଜିକ ବିକାଶ ଓ ବ୍ରାହ୍ମଣମାନଙ୍କ ସହ ସମକକ୍ଷ ହେବାକୁ ଶିକ୍ଷା ଓ ସରକାରୀ କର୍ମସଂସ୍ଥାନ କ୍ଷେତ୍ରରେ ସେମାନଙ୍କୁ ସଂରକ୍ଷଣ ଦେବାକୁ ପେରିୟାର ଦାବି କରି ଆସୁଥିଲେ । ତିରୁଭନମଲ୍ଲାଇ କଂଗ୍ରେସର ପ୍ରାଦେଶିକ ସମ୍ମିଳନୀରେ ସେ ସେହି ପ୍ରସ୍ତାବ ମଧ୍ୟ ଆଗତ କଲେ ।

ତେବେ ପୂର୍ବରୁ ତିରୁନେଲଭେଲି (୧୯୨୦), ଥାଂଜାବୁର (୧୯୨୧), ତିରୁପୁର (୧୯୨୨) ସମ୍ମିଳନୀରେ ବ୍ରାହ୍ମଣମାନେ ଯେପରି ଚକ୍ରାନ୍ତ କରି ଏହି ପ୍ରସ୍ତାବକୁ ବିରୋଧ କରୁଥିଲେ, ଏହି ସମ୍ମିଳନୀରେ ମଧ୍ୟ ସେପରି ଏହାକୁ ବିରୋଧ କରିଥିଲେ ।

ସୈଲମଠାରେ ଏକ ସାଧାରଣ ସଭାରେ ସେ କହିଥିଲେ ଯେ ବ୍ରିଟିଶ ଶାସନ କାଳରେ ଯଦି ଉଚ୍ଚ ଜାତିର ଲୋକଙ୍କର ଆଧିପତ୍ୟ ଓ ଶୋଷଣର ବିଲୋପ ନହୁଏ ତେବେ ଅବ୍ରାହ୍ମଣ ଦ୍ରାବିଡମାନଙ୍କର ପ୍ରଗତି ବ୍ରାହ୍ମଣବାଦୀ ଶାସନରେ ସମ୍ଭବ ହେବ ନାହିଁ । ଦ୍ରାବିଡମାନଙ୍କର ସାମାଜିକ ସ୍ଥିତିରେ ବିକାଶ ଘଟାଇବାକୁ ଶିକ୍ଷା ଓ କର୍ମ ସଂସ୍ଥାନ କ୍ଷେତ୍ରରେ ସେମାନଙ୍କ ପାଇଁ ସଂରକ୍ଷଣ କରିବାକୁ ହେବ । ବ୍ରାହ୍ମଣବାଦୀ ସ୍ୱେଚ୍ଛାଚାରିତାରୁ ଦ୍ରାବିଡମାନେ ମୁକ୍ତ ହେବା ଆବଶ୍ୟକ ।

Digitized by srujanika@gmail.com

**୧୯୨୫ ମେ ୨:-**

ପେରିୟାର ତାମିଲଭାଷାରେ ଏକ ସାପ୍ତାହିକୀ ଆରମ୍ଭ କଲେ। ତାହାର ନାମ ଦେଲେ "କୁଡି ଆରାସୁ" ଯାହାର ତାତ୍ପର୍ଯ୍ୟ ହେଲା ଆତ୍ମମର୍ଯ୍ୟାଦା। ବ୍ରାହ୍ମଣମାନଙ୍କର ନିଷ୍ଠୁର ଜାତିବ୍ୟବସ୍ଥା ଓ ହିନ୍ଦୁ ଧର୍ମର କୁସଂସ୍କାରରୁ ମୁକ୍ତ ହେବାକୁ ହେଲେ ଦ୍ରାବିଡମାନଙ୍କୁ ଆତ୍ମ-ମର୍ଯ୍ୟାଦା ନେଇ ସଚେତନ ହେବାକୁ ହେବ। ବିଶିଷ୍ଟ ତାମିଲ ବିଦ୍ୱାନ, ଧର୍ମପ୍ରାଣ, ସୁବକ୍ତା ଥିରୁପତି ରିପୁଲିୟାର ଜ୍ଞାନୀୟାର ସ୍ୱାମୀଗଲଙ୍କଦ୍ୱାରା ପତ୍ରିକାର ପ୍ରଥମ ସଂଖ୍ୟାଟି ଉନ୍ମୋଚିତ ହୋଇଥିଲା।

**୧୯୨୫ ନଭେମ୍ବର -**

ବିଶିଷ୍ଟ ତାମିଲ ଲେଖକ, ସଂପାଦକ, ବକ୍ତା ଓ ଶ୍ରମିକ ନେତା ଥିରୁଭି କଲ୍ୟାଣ ସୁନ୍ଦରମ୍ (ଭି କା) ଙ୍କ ସଭାପତିତ୍ୱରେ କଂଗ୍ରେସ ଅଧିବେଶନ କାଞ୍ଚିପୁରମଠାରେ ଅନୁଷ୍ଠିତ ହୋଇଥିଲା। ସେହି ସମ୍ମିଳନୀରେ ପେରିୟାର ଅଣବ୍ରାହ୍ମଣମାନଙ୍କ ପାଇଁ ଶିକ୍ଷା କ୍ଷେତ୍ରରେ ଶତକଡା ୫୦ ସଂରକ୍ଷଣ କରିବାକୁ ପ୍ରସ୍ତାବ କରିଥିଲେ।

ପୂର୍ବଥରମାନଙ୍କ ଭଳି ବ୍ରାହ୍ମଣମାନେ କୌଶଳ କରି ପ୍ରସ୍ତାବ ଟି ଆଗତ କରାଇଦେଲେ ନାହିଁ। ଏହି ଘଟଣାରେ ପେରିୟାର ମ୍ରିୟମାଣ ହୋଇ ରାଗ ଓ ଘୃଣାରେ କଙ୍ଗ୍ରେସ ପାଟି ଛାଡିଦେବାକୁ ସ୍ଥିର କଲେ। ସେ ଦଳ ଛାଡିଦେଲାପରେ ଦଳର ସମସ୍ତ ପଦବୀ ବ୍ରାହ୍ମଣମାନେ ଅକ୍ତିଆର କରିନେଲେ।

କଙ୍ଗ୍ରେସ ଛାଡି ଆସିବାବେଳେ ସେ ସଂକଳ୍ପ କରିଥିଲେ ଯେ ସେ ଦଳ ଭିତରେ ବ୍ରାହ୍ମଣ ଆଧିପତ୍ୟକୁ ହଟାଇବେ। ସେ ସମ୍ମିଳନୀ ଛାଡିବା ବେଳେ ତାଙ୍କ ସହ ଆଗ ଧାଡିର ବହୁ ତୁଙ୍ଗ ନେତା ଓ ବହୁ ସ୍ୱେଚ୍ଛାସେବୀ ସମ୍ମିଳନୀ ଛାଡି ଚାଲି ଯାଇଥିଲେ।

**୧୯୨୫ ଡିସେମ୍ବର- ଆତ୍ମମର୍ଯ୍ୟାଦା ଆନ୍ଦୋଳନର ପ୍ରତିଷ୍ଠା**

କାଞ୍ଚିପୁରମ ସହରରେ ପେରିୟାର ଅଳ୍ପ ଦିନ ଭିତରେ ଅବ୍ରାହ୍ମଣମାନଙ୍କୁ ନେଇ ଏକ ସମାନ୍ତରାଳ ସମ୍ମିଳନୀ ଆରମ୍ଭ କଲେ।

Digitized by srujanika@gmail.com

ପେରିୟାର ଭାଷଣରେ କହିଲେ ଯେ ବହୁ ଅତୀତରୁ ଆର୍ଯ୍ୟ (ବ୍ରାହ୍ମଣ) ଓ ଦ୍ରାବିଡମାନଙ୍କ ଭିତରେ ଜାତିଗତ ପାର୍ଥକ୍ୟ ରହି ଆସିଛି । ଏହି ପାର୍ଥକ୍ୟ କଂଗ୍ରେସ ଦଳ ଭିତରେ ଯେ ପ୍ରତିଫଳିତ ହେଉଛି ତାହା ଅସ୍ୱୀକାର କରିହେବ ନାହିଁ । ସୁତରାଂ ବ୍ରାହ୍ମଣମାନଙ୍କର ଜାତିଆଣ ଭେଦଭାବ ଓ ହିନ୍ଦୁଧର୍ମର କୁସଂସ୍କାରମୂଳକ ପ୍ରଥା ବିରୁଦ୍ଧରେ ଆମକୁ ଛିଡା ହେବାକୁ ହେବ । ସେମାନେ ଯେପରି ଦ୍ରାବିଡମାନଙ୍କର ସ୍ୱାତନ୍ତ୍ରତା, ଭାଷା, ସଂସ୍କୃତିକୁ ନ୍ୟୂନ କରିବାକୁ ଚେଷ୍ଟା କରୁଛନ୍ତି ତାହାକୁ ଦୂର କରିବାକୁ ହେଲେ ଆମକୁ ଆମର ମର୍ଯ୍ୟାଦା ପାଇଁ ସଂଗ୍ରାମ କରିବାକୁ ପଡିବ ।

କଂଗ୍ରେସ ଦଳ ଛାଡିଦେଲା ପରେ ପେରିୟାର ଆତ୍ମମର୍ଯ୍ୟାଦା ଆନ୍ଦୋଳନ ୧୯୨୫ ମସିହାରୁ ଆରମ୍ଭ କଲେ ।

**୧୯୨୬-** ତାମିଲନାଡୁର ବିଭିନ୍ନ ଅଞ୍ଚଳରେ ଅବ୍ରାହ୍ମଣ ମାନଙ୍କର ସମ୍ମିଳନୀମାନଙ୍କରେ ପେରିୟାର ଯୋଗଦେଇ ଆତ୍ମମର୍ଯ୍ୟାଦା ଆନ୍ଦୋଳନର ବାର୍ତ୍ତା ଲୋକଙ୍କ ପାଖକୁ ନେଲେ । ବ୍ରାହ୍ମଣବାଦୀ ଦାସତ୍ୱରୁ ମୁକ୍ତ ହୋଇ ସ୍ୱାଭିମାନର ସହ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ପାଇଁ ତାମିଲମାନଙ୍କ ଭିତରେ ଏକ ଜାଗରଣ ସୃଷ୍ଟି କରିବାକୁ ଲାଗିଲେ ।

**୧୯୨୭-** ମହାତ୍ମା ଗାନ୍ଧୀଙ୍କୁ ବାଙ୍ଗାଲୋରଠାରେ ସାକ୍ଷାତ କରି ପେରିୟାର ତାଙ୍କୁ କହିଲେ ଯେ ବ୍ରାହ୍ମଣମାନେ ସମର୍ଥନ କରୁଥିବା ବର୍ଣ୍ଣାଶ୍ରମ ଧର୍ମ ଜନିତ ଜାତି ବ୍ୟବସ୍ଥାର ମୂଳୋତ୍ପାଟନ ନହେଲେ ସମାଜରୁ ଅସ୍ପୃଶ୍ୟତା ଲୋପ ପାଇବ ନାହିଁ ।

ସେ ଗାନ୍ଧୀଙ୍କୁ ମଧ୍ୟ କହିଲେ ଯେ ଭାରତର ରାଜନୈତିକ ସ୍ୱାଧୀନତା ହାସଲ ପାଇଁ ସଂଗ୍ରାମ ସହିତ ତିନୋଟି ସାମାଜିକ ମନ୍ଦ ବ୍ୟବସ୍ଥାର ବିଲୋପ ହେବା ଆବଶ୍ୟକ । ଯଥା ( ୧ ) କଂଗ୍ରେସ ଦଳରେ ସମସ୍ତ ପଦପଦବୀରେ ବ୍ରାହ୍ମଣ ଆଧିପତ୍ୟ ( ୨ ) ହିନ୍ଦୁଧର୍ମର ଜାତିପ୍ରଥା (୩) ସାମାଜିକ ଜୀବନ ପ୍ରବାହରୁ ବ୍ରାହ୍ମଣମାନଙ୍କର ପ୍ରଭୁତ୍ୱ ।

Digitized by srujanika@gmail.com

◆ ନାଗପଟ୍ଟିନମଠାରେ ରେଲ ବିଭାଗର ଶ୍ରମିକମାନଙ୍କର ଆନ୍ଦୋଳନ ଆରମ୍ଭ ହେଲା ଓ ପେରିୟାରଙ୍କୁ ସେହି ଅବସରରେ ଶ୍ରମିକଙ୍କ ପଦକ୍ଷେପକୁ ସମର୍ଥନ କରୁଥିବାରୁ ଗିରଫ କରାଗଲା ।

◆ ପେରିୟାରଙ୍କ ସକ୍ରିୟ ସମର୍ଥନରେ ଡ.ପି. ସୁବ୍ରାୟଣଙ୍କ ସ୍ୱାଧୀନ ସରକାରର ମନ୍ତ୍ରୀ ମି. ଏସ ମୁଥାୟା (ମୁଦାଲିୟର) ଜଷ୍ଟିସ ପାର୍ଟିର ସଂରକ୍ଷଣ ନୀତିକୁ କାର୍ଯ୍ୟକାରୀ କଲେ ।

**୧୯୨୮-** "ରେଭୋଲ୍ୟୁଟୋ" ନାମରେ ଏକ ଇଂରାଜୀ ପତ୍ରିକା ୭.୧୧.୨୮ ରୁ ପେରିୟାର ପ୍ରକାଶ କଲେ ।

**୧୯୨୯-** ଫେବୃଆରୀ ୧୯୨୯ ରେ ଚେଙ୍ଗଲପାଟ୍ଟୁଠାରେ ପେରିୟାର ଆତ୍ମମର୍ଯ୍ୟାଦା ଆନ୍ଦୋଳନର ଏକ ରାଜ୍ୟ ସମ୍ମିଳନୀ ଆୟୋଜନ କଲେ । ଡବ୍ଲ୍ୟୁ.ପି.ଏ. ସୁନ୍ଦର ପଣ୍ଡିଆନ ସେହି ସମ୍ମିଳନୀରେ ସଭାପତିତ୍ୱ କରିଥିଲେ ।

- ପେରିୟାର ଆତ୍ମସମ୍ମାନ ବିବାହ ନାମରେ ଏକ ହେତୁବାଦୀ ବିବାହ ବ୍ୟବସ୍ଥା ଅୟମାରମ୍ଭ କଲେ । ଏହା କରିବାବେଳେ ସମସ୍ତ ଧାର୍ମିକ କର୍ମକାଣ୍ଡ, ବ୍ରାହ୍ମଣମାନଙ୍କର ସଂସ୍କୃତ ମନ୍ତ୍ରୋଚ୍ଚାରଣକୁ ଏଥିରେ ନିଷେଧ କରାଗଲା । ଏଠାରେ ବର କନ୍ୟା ପରସ୍ପରକୁ ଫୁଲମାଳ ଦେଇ ସ୍ୱାଗତ କରିବେ ଓ ଏକ ଦାଂପତ୍ୟ ଜୀବନ ଅତିବାହିତ କରିବାକୁ ନିଜ ମାତୃଭାଷାରେ ନିଜର ସ୍ୱୀକୃତି ଘୋଷଣା କରିବେ । କୌଣସି ଆଡମ୍ବର ନ ରଖି ଅତି ସାଧାରଣ ଭାବରେ ଏହି ବିବାହ ସଂପନ୍ନ କରାଯିବ । ବିବାହ ବନ୍ଧନରେ ଆବଦ୍ଧ ରହିବାକୁ ଯୁବକ ଯୁବତୀଙ୍କ ପାଇଁ ଏହିପରି ଏକ ବିବାହ ସଂସ୍କାରର ମୂଳଦୁଆ ସେ ପକାଇଥିଲେ । ଏହି ବ୍ୟବସ୍ଥା କରିଆରେ ସେ ବିବାହ କ୍ଷେତ୍ରରେ ଏକ କ୍ରାନ୍ତିକାରୀ ପରିବର୍ତ୍ତନ ଆଣିବାକୁ ଚାହିଁଲେ । ଯେ କୌଣସି ଧର୍ମର ବ୍ୟକ୍ତି ହୁଅନ୍ତୁ ନା କାହିଁକି, ବିବାହ କରି ପରିବାର ଗଠନ କରିବାକୁ ଚାହୁଁଥିବା ଯୁବକ ଯୁବତୀ ପରସ୍ପରକୁ ଫୁଲମାଳ ଦେଇ ସମ୍ବର୍ଦ୍ଧନା ଜଣାଇ ଜୀବନ ସାରା ଏକାଠି ଦାଂପତ୍ୟ ଜୀବନ ଅତିବାହିତ କରିବାକୁ ସେମାନେ ନିଜର ପ୍ରତିବଦ୍ଧତା ଘୋଷଣା କରିବେ ।

Digitized by srujanika@gmail.com

ବିବାହ କ୍ଷେତ୍ରରେ ଏହି ସଂସ୍କାର ସହ ପେରିୟାର ଆନ୍ତର୍ଜାତି ବିବାହ କରିବା ଓ ବିଧବା ବିବାହ କରାଇବାକୁ ଗୁରୁତ୍ୱ ଦେଇଥିଲେ ।

**୧୯୨୯- ଡିସେମ୍ବର ୧୫- ମାଳୟକୁ ପ୍ରଥମ ବିଦେଶ ଯାତ୍ରା**

ମାଳୟ ଦେଶର (ସଂପ୍ରତି ଏହା ମାଲେସିଆ) ତାମିଲମାନଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ନାଗପାର୍ଟିନମଠାରୁ ଏକ ଜାହାଜରେ ସେ ସେଠାକୁ ଯାତ୍ରା ଆରମ୍ଭ କଲେ । ତାଙ୍କ ସହ ତାଙ୍କ ପତ୍ନୀ ନାଗମ୍ମଲ ଓ ଅନ୍ୟ କେତେକ ସହଯୋଗୀ ବି ଯାତ୍ରା କରିଥିଲେ ।

**ଡିସେମ୍ବର ୨୦-** ପେନାଙ୍ଗ ବନ୍ଦରରେ ପ୍ରାୟ ପଚାଶ ହଜାରରୁ ଅଧିକ ତାମିଲ ମାଳୟ ଅଧିବାସୀ ପେରିୟାରଙ୍କ ଦଳକୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଇ ସ୍ୱାଗତ କରିଥିଲେ ।

**ଡିସେମ୍ବର ୨୩-** ମ୍ୟାଲେସିଆର ଇପୋଠାରେ ତାମିଲ ରିଫର୍ମେଟୋରୀ ସଂଗମ ଆନୁକୂଲ୍ୟରେ ଆୟୋଜିତ ତାମିଲ ସମ୍ମିଳନୀକୁ ସେ ଉଦ୍‌ଘାଟନ କରିଥିଲେ ।

**ଡିସେମ୍ବର ୨୬ -** ସିଂଗାପୁରଠାରେ ପେରିୟାର ଓ ତାଙ୍କର ସହଯୋଗୀଙ୍କୁ ଭବ୍ୟ ସମ୍ବର୍ଦ୍ଧନା ପ୍ରଦାନ କରାଯାଇଥିଲା । ମାଳୟ ଭାରତୀୟ କଂଗ୍ରେସ ଦ୍ୱାରା ଆୟୋଜିତ ସଭାରେ ସେ ଭାଷଣ ଦେଇଥିଲେ (ସେତେବେଳେ ମାଳୟ ରାଷ୍ଟ୍ରର ସିଂଙ୍ଗାପୁର ଏକ ପ୍ରଦେଶ ଥିଲା, ମାଳୟ ବ୍ରିଟିଶ ଉପନିବେଶର ଅଧୀନ ଥିଲା । ସଂପ୍ରତି ଏହା ଏକ ସ୍ୱାଧୀନ ସାର୍ବଭୌମିକ ରାଷ୍ଟ୍ର)

କୁଲାଲିମପୁର, ତେପଙ୍ଗ, ମାଲ୍ଲାକା, ସ୍ନହ୍‌ଗେଇପଟଣମ ଇତ୍ୟାଦି ସହରରେ ଆୟୋଜିତ ସଭାମାନଙ୍କରେ ସେ "ଆତ୍ମ-ସମ୍ମାନ ଆନ୍ଦୋଳନ" ବିଷୟରେ ଭାଷଣ ଦେଇଥିଲେ ।

**୧୯୩୦ ଜାନୁଆରୀ ୧୬-** ପେରିୟାର ଓ ତାଙ୍କ ସହଯୋଗୀମାନେ ମାଳୟରୁ ତାମିଲନାଡୁ ଫେରିଆସିଥିଲେ ।

Digitized by srujanika@gmail.com

◆ ପେରିୟାର ସନ୍ତାନ ଜନ୍ମ କ୍ଷେତ୍ରରେ ନିୟନ୍ତ୍ରଣ ପାଇଁ ପରିବାର ନିୟୋଜନକୁ ଗୁରୁତ୍ୱ ଦେଇ ଏକ ପୁସ୍ତକ ପ୍ରକାଶ କରିଥିଲେ । ଜନସଂଖ୍ୟାର ଚାପ କମାଇବା ପାଇଁ ପେରିୟାର ଭାରତର ପ୍ରଥମ ବ୍ୟକ୍ତି ଯେ ଛୋଟ ପରିବାର ବିଷୟରେ ସଚେତନତା ଆଣିବାକୁ ପ୍ରୟାସ କରିଥିଲେ । ଭାରତ ସରକାର ପରିବାର ନିୟୋଜନକୁ ଏକ ଜାତୀୟ କାର୍ଯ୍ୟକ୍ରମ ଭାବେ ଗ୍ରହଣ କରିବାର ବହୁ ପୂର୍ବରୁ ପେରିୟାର ଏହା ବିଷୟରେ ସଚେତନ ହୋଇ ଜନଚେତନା ସୃଷ୍ଟି କରିବାକୁ ଉଦ୍ୟମ କରିଥିଲେ ।

**ମେ ୧୦, ୧୧-** ପୁନେର ବିଶିଷ୍ଟ ହେତୁବାଦୀ ଏମ.ଆର.ଜୟକରଙ୍କ ସଭାପତିତ୍ୱରେ ଏରୋଡଠାରେ ପେରିୟାର ଆତ୍ମ-ସମ୍ମାନ ଆନ୍ଦୋଳନର ଦ୍ୱିତୀୟ ସମ୍ମିଳନୀ ଆୟୋଜନ କରିଥିଲେ । ଏହା ସହିତ ଯୁବ ସମ୍ମିଳନୀ, ମହିଳା ସମ୍ମିଳନୀ, ନିଶା ନିବାରଣ ସମ୍ମିଳନୀ, ତାମିଲ ସଂଗୀତ ପୃଷ୍ଠପୋଷକ ସମ୍ମିଳନୀ ଇତ୍ୟାଦି ମଧ୍ୟ ସେଠାରେ ଆୟୋଜିତ ହୋଇଥିଲା ।

ପେରିୟାର ଦେବଦାସୀ ପ୍ରଥାର ବିଲୋପ ପାଇଁ ଆଗତ ବିଲକୁ ପୂର୍ଣ୍ଣ ଭାବରେ ସମର୍ଥନ କରିଥିଲେ । ଗୋଟିଏ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଯୁବ-କନ୍ୟାମାନଙ୍କୁ ହିନ୍ଦୁ ମନ୍ଦିର ଭିତରେ ସଂଗୀତ ପରିବେଶଣ ପାଇଁ ଦେବଦାସୀ କରାଯାଉଥିଲା ।

ଜଣେ ମହିଳା ସଂସ୍କାରକ ଡ. ମୁଥୁଲକ୍ଷ୍ମୀ ରେଡ଼ି ମାଡ୍ରାସ ଲେଜିସ-ଲେଟିଭ କାଉନସିଲରେ ଦେବଦାସୀ ଉଚ୍ଛେଦ ବିଲ ଆଗତ କରିଥିଲେ । ରକ୍ଷଣଶୀଳ ବ୍ରାହ୍ମଣ ନେତାମାନଙ୍କର ବିରୋଧ ସତ୍ତ୍ୱେ ଏହି ବିଲଟି କାଉନସିଲରେ ଗୃହୀତ ହୋଇଥିଲା ।

**୧୯୩୧ ଡିସେମ୍ବର ୧୩-** ପେରିୟାର ଚେନାଇଠାରୁ ଜାହାଜରେ ୟୁରୋପ ଯାତ୍ରା ଆରମ୍ଭ କଲେ । ତାଙ୍କ ସହ ଏରୋଡର ଏସ ରାମନାଥନ ଓ ରାଜୁ ମଧ୍ୟ ଏହି ଯାତ୍ରାରେ ଯୋଗ ଦେଇଥିଲେ ।

**୧୯୩୨ -** ସେ ଇଜିପ୍ଟ, ଗ୍ରୀକ, ତୁର୍କି, ସୋଭିଏତ୍ ରୁଷ, ଜର୍ମାନୀ, ଇଂଲଣ୍ଡ, ଇଟାଲି, ସ୍ପେନ, ଫ୍ରାନ୍ସ, ପର୍ତ୍ତୁଗାଲ ଇତ୍ୟାଦି ୟୁରୋପୀୟ ରାଷ୍ଟ୍ରମାନଙ୍କୁ ପରିଦର୍ଶନରେ ଯାଇଥିଲେ ।

Digitized by srujanika@gmail.com

ଜର୍ମାନୀର ରାଜଧାନୀ ବର୍ଲିନରେ ବିଭିନ୍ନ ସମାଜବାଦୀ ସଂଗଠନ ଓ ପତ୍ରିକାର ଅଫିସମାନଙ୍କୁ ପରିଦର୍ଶନ କରିଥିଲେ ।

ରୁଷରେ ତାଙ୍କର ରହଣି ସମୟ ତିନିମାସକୁ ବଢିଥିଲା । ସେଠାରେ ବିଭିନ୍ନ ଶ୍ରମିକ ସଂଗଠନରେ ସେ ଭାଷଣ ଦେଇଥିଲେ । କାର୍ଲ ମାର୍କସଙ୍କର କମ୍ୟୁନିଷ୍ଟ ରାଷ୍ଟ୍ରର ପରିକଳ୍ପନା ଆଧାରରେ ବିଶିଷ୍ଟ ନେତା ଲେନିନ ରୁଷରେ ପ୍ରଥମ କରି କମ୍ୟୁନିଷ୍ଟ ରାଷ୍ଟ୍ର ପ୍ରତିଷ୍ଠା କରିଥିଲେ । ସେଠିକାର ବିକାଶର ଚିତ୍ର ପେରିୟାରଙ୍କୁ ବେଶ୍ ଅଭିଭୂତ କରିଥିଲା ।

**୧୯୩୨ ଜୁନ ୨୦-** ଇଂଲଣ୍ଡର ପଚାଶ ହଜାରରୁ ଊର୍ଦ୍ଧ୍ୱ ଏକ ଶ୍ରମିକ ସମାବେଶରେ ପେରିୟାର ଭାଷଣ ଦେଇଥିଲେ । ତାଙ୍କର ହେତୁବାଦ ଓ ସମାଜବାଦ ଭାବନା ବିଷୟରେ ସେ ସମବେତ ଜନତାଙ୍କୁ ଉଦ୍‌ବୋଧନ ଦେଇଥିଲେ ।

**ନଭେମ୍ବର ୧୧-** ୟୁରୋପ ଯାତ୍ରା ସମାପ୍ତ କରି ଶ୍ରୀଲଙ୍କାର ରାଜଧାନୀ କଲମ୍ବୋ ଦେଇ ଏରୋଡରେ ପହଞ୍ଚିଲେ ।

**ଡିସେମ୍ବର ୨୮-୨୯** ବିଶିଷ୍ଟ ଚିନ୍ତକ କମ୍ରେଡ ସିଙ୍ଗରାଭେଲୁ ସମାଜବାଦ ପ୍ରକଳ୍ପ ବିଷୟରେ ଏକ ଯୋଜନା ପ୍ରସ୍ତୁତ କରିଥିଲେ ଓ ଏରୋଡରେ ପେରିୟାରଙ୍କ ଆତ୍ମସମ୍ମାନ ଆନ୍ଦୋଳନର କର୍ମକର୍ତ୍ତାଙ୍କ ସହ ଏହି ବିଷୟରେ ପେରିୟାରଙ୍କ ଘରେ ଆଲୋଚନା ହୋଇଥିଲା ।

**୧୯୩୨-** ତାମିଲନାଡୁର ବିଭିନ୍ନ ସ୍ଥାନରେ ଏରୋଡ ସମାଜବାଦ ଯୋଜନା ନେଇ ବହୁ ସଭାରେ ପେରିୟାର ବକ୍ତୃତା ଦେଇଥିଲେ ।

**୧୯୩୩ ମେ ୧୧-** ପେରିୟାରଙ୍କ ପତ୍ନୀ ନାଗମଲଙ୍କର ଦେହାନ୍ତ ହେଲା । ତା ପରଦିନ ୧୩.୫.୩୩ ଦିନ ସେ ତିରୁଚିରାପଲ୍ଲୀ ଯାଇ ସେଠାରେ ଏକ ଆନ୍ତର୍ଧାର୍ମିକ ଆତ୍ମସମ୍ମାନ ବିବାହ ସମାପନ କରିଥିଲେ । ସେଠାରେ ଜାରି ଥିବା ୧୪୪ ଧାରା ଲଙ୍ଘନ କରି ଏହି ବିବାହ କରାଇଥିବାରୁ ତାଙ୍କୁ ଗିରଫ କରାଯାଇଥିଲା ।

Digitized by srujanika@gmail.com

**ନଭେମ୍ବର ୨୬-** ଆତ୍ମସମ୍ମାନ ଆନ୍ଦୋଳନ ଓ ସମାଜବାଦ ଉପରେ ଏକ ସମ୍ମିଳନୀ ଏରୋଡଠାରେ ଆୟୋଜନ କରିଥିଲେ।

**୧୯୩୩-** ବ୍ରିଟିଶ ପ୍ରଶାସନ ତାମିଲ ସାପ୍ତାହିକୀ "କୁଦୀ ଆରାସୁ' ର ପ୍ରକାଶନ ଉପରେ ନିଷେଧ ଆଜ୍ଞା ଜାରି କଲେ। ଫଳରେ ପୁରଚି (ବିପ୍ଳବ) ନାମରେ ଅନ୍ୟ ଏକ ପତ୍ରିକା ପ୍ରକାଶ କଲେ।

**୧୯୩୩ ଡିସେମ୍ବର ୩୦-** କୁଦୀ ଆରାସୁ ପତ୍ରିକାରେ ଏକ ସଂପାଦକୀୟ ଲେଖା ପାଇଁ ପେରିୟାର ଓ ତାଙ୍କ ଭଉଣୀ କାନାମ୍ମଲଙ୍କୁ ଗିରଫ କରି ଜେଲରେ ରଖାଗଲା।

**୧୯୩୪-** ବିଶିଷ୍ଟ ସମାଜବାଦୀ ନେତା ଜୟ ପ୍ରକାଶ ନାରାୟଣ ଏରୋଡଠାରେ ପେରିୟାରଙ୍କୁ ସାକ୍ଷାତ କରି ତାଙ୍କଦ୍ୱାରା ସ୍ଥାପିତ ସମାଜବାଦୀ ପାର୍ଟିରେ ଯୋଗ ଦେବାକୁ ନିବେଦନ କରିଥିଲେ।

**୧୯୩୪-** ତାମିଲ ଭାଷାରେ ଏକ ସାପ୍ତାହିକୀ ପଗୁତରିବୁ (ରେସନାଲିଜିମ) ୧୨.୧.୧୯୩୪ ରୁ ପ୍ରକାଶ କଲେ।

**୧୯୩୫-** ଜଷ୍ଟିସ ପାର୍ଟିକୁ ପେରିୟାର ତାଙ୍କର ସମର୍ଥନ ଦେଲେ। ଜଷ୍ଟିସ ପାର୍ଟିଦ୍ୱାରା 'ବିଦ୍ୟୁତଲାଇ" ନାମରେ ଏକ ତାମିଲ ସାପ୍ତାହିକୀ ୧.୦୬.୧୯୩୫ ରୁ ଆରମ୍ଭ ହେଲା। ଏହାପରେ ଏହି ପତ୍ରିକାଟିକୁ ଦୈନିକ କରାଗଲା ଓ ୦୧.୦୧.୧୯୩୭ ରୁ ଏହାର ପ୍ରକାଶନ ଦାୟିତ୍ୱ ପେରିୟାରଙ୍କୁ ଦିଆଗଲା।

ପେରିୟାର ତାମିଲ ଲିପିରେ ଏକ ସଂସ୍କାର ଆଣିଲେ ଓ ଏକ ପୁସ୍ତକ ପ୍ରକାଶ କଲେ। ସେହି ସଂସ୍କାରକୁ ସମସ୍ତ ତାମିଲ ସମ୍ବାଦ ପତ୍ର ୧୩.୧.୧୯୩୫ ରୁ ଗ୍ରହଣ କଲେ।

**୧୯୩୬-** କାଞ୍ଚିପୁରମ ସମ୍ମିଳନୀରେ ହିନ୍ଦୀ ଭାଷାକୁ ବିରୋଧ କରି ଏକ ପ୍ରସ୍ତାବ ଗୃହୀତ ହେଲା।

Digitized by srujanika@gmail.com

**୧୯୩୭-** ବିଦୁତଲାଇ ସମ୍ବାଦ ପତ୍ରକୁ ୧.୧.୧୯୩୭ ରୁ ପ୍ରକାଶ କରାଗଲା ଓ ତାହାର ସ୍ୱତ୍ୱ ତାଙ୍କ ଉପରେ ରହିଲା ।

ମାଡ୍ରାସ ପ୍ରୋଭିନ୍‌ସର ପ୍ରଧାନମନ୍ତ୍ରୀ ପଦରେ ସି. ରାଜଗୋପାଳଚାରୀ ମନୋନୀତ ହେବା ପରେ ସ୍କୁଲମାନଙ୍କରେ ହିନ୍ଦୀକୁ ଏକ ବାଧ୍ୟତାମୂଳକ ଭାଷା ଭାବେ ପଢାଇବାକୁ ଘୋଷଣା କଲେ ।

**୧୯୩୭ ଡିସେମ୍ବର ୨୬-** ତିରୁଚିରାପଲ୍ଲୀଠାରେ ତାମିଲ ସମ୍ମିଳନୀ ଆହୂତ ହେଲା । ତାମିଲମାନଙ୍କ ଉପରେ ଓ ଦ୍ରାବିଡ ଜନଗୋଷ୍ଠୀ ଉପରେ ହିନ୍ଦୀ ଭାଷାକୁ ଲଦି ନ ଦେବା ପାଇଁ ତାମିଲନାଡୁ ଏକ ସ୍ୱତନ୍ତ୍ର ସାର୍ବଭୌମ ରାଜ୍ୟ ହେବା ଏହାର ସମାଧାନ ବୋଲି କହିଲେ ।

**୧୯୩୮-** ତାଙ୍କ ରଚିତ ପୁସ୍ତକ "ଆଗାମୀ ବିଶ୍ୱ" ରେ ପେରିୟାର "ଟେଷ୍ଟ ଟ୍ୟୁବ ସନ୍ତାନ" ପରି ଅନେକ ବୈଜ୍ଞାନିକ ସମ୍ଭାବନାର କଳ୍ପନା କରିଥିଲେ ଯାହା ବର୍ତ୍ତମାନ ବାସ୍ତବତାରେ ପରିଣତ ହୋଇଛି ।

ମାଡ୍ରାସ ପ୍ରେସିଡେନସିର ପ୍ରଧାନମନ୍ତ୍ରୀ (ସେତେବେଳେ ଏକ ରାଜ୍ୟର ମୁଖ୍ୟଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା) ସି. ରାଜଗୋପାଳଚାରୀ ସ୍କୁଲମାନଙ୍କରେ ହିନ୍ଦୀ ଭାଷାକୁ ବାଧ୍ୟତାମୂଳକ କରିବାକୁ ୨୩.୪.୧୯୩୮ ରେ ଘୋଷଣା କଲେ । ଚେନାଇସ୍ଥିତ ହିନ୍ଦୁ ଥିଓଲଜିକାଲ ସ୍କୁଲ ଯେଉଁଠି ହିନ୍ଦୀକୁ ବାଧ୍ୟତାମୂଳକ କରାଯାଇଥିଲା ସେଠାରେ ପେରିୟାର ୪.୦୬.୧୯୩୮ ରୁ ତାଙ୍କର ଧାରଣା ଆରମ୍ଭ କଲେ । ଏଥିରେ ତାଙ୍କୁ ଗିରଫ କରାଗଲା ଓ ୬.୧୨.୧୯୩୮ ରେ ତାଙ୍କୁ ଦୁଇ ବର୍ଷ ଜେଲ ଦଣ୍ଡ ମିଳିଲା । ମାଡ୍ରାସ ଠାରେ ଥିବା ସରକାରୀ କେନ୍ଦ୍ରୀୟ ଜେଲରେ ତାଙ୍କୁ ରଖାଗଲା ଓ ପରେ ଆନ୍ଧ୍ରସ୍ଥିତ ବେଲାରି ଜେଲକୁ ତାଙ୍କୁ ସ୍ଥାନାନ୍ତରିତ କରାଗଲା ।

ସେହି ଆନ୍ଦୋଳନ ଆରମ୍ଭ କରିବା ସମୟରେ ସି.ଏନ. ଆନାଦୁରାଇ (ଯେ ପରେ ତାମିଲନାଡୁର ମୁଖ୍ୟ ମନ୍ତ୍ରୀ ହେଲେ) ହିନ୍ଦୀ ବିରୋଧୀ ଆନ୍ଦୋଳନର ନେତୃତ୍ୱ ନେବେ ବୋଲି ପେରିୟାର ଘୋଷଣା କଲେ ।

Digitized by srujanika@gmail.com

ପେରିୟାର ବେଲାରୀ ଜେଲରେ ବନ୍ଦୀ ଥିବାବେଳେ ୨୯.୧୨.୧୯୩୮ରେ ଜଷ୍ଟିସ ପାର୍ଟିର ସଭାପତି ଭାବେ ସେ ମନୋନୀତ ହେଲେ ।

ମାଡ୍ରାସ ୧୩.୧୧.୧୯୩୮ ରେ ହୋଇଥିବା ତାମିଲନାଡୁ ମହିଳା ସମ୍ମିଳନୀରେ ତାଙ୍କୁ "ପେରିୟାର" ଉପାଧିରେ ଭୂଷିତ କରାଗଲା । ବିଶିଷ୍ଟ ତାମିଲ ବିଦ୍ୱାନ ମାରାଇମଲାଇ ଆଦିଗଲଙ୍କ ଝିଅ ନୀଳମ୍ବିଗା ଆମ୍ମାୟାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ମହିଳା ସମ୍ମିଳନୀ ତାଙ୍କୁ 'ପେରିୟାର' ନାମରେ ଘୋଷଣା କଲେ ।

**୧୯୪୦-** ସେ ଉତ୍ତର ଭାରତ ଭ୍ରମଣରେ ଆସି ଡ.ବି.ଆର ଆମ୍ବେଦକର ଓ ମହମ୍ମଦ ଅଲି ଜିନ୍ନାଙ୍କୁ ସାକ୍ଷାତ କଲେ । ପେରିୟାରଙ୍କ ସହ ସି. ଏନ. ଆନାଦୁରାଇ ମଧ୍ୟ ଆସିଥିଲେ । (ଆନାଦୁରାଇଙ୍କୁ ଶ୍ରଦ୍ଧାରେ ଆନ୍ନା ବୋଲି ଲୋକମାନେ ଡାକିଥାନ୍ତି) ।

ଯେତେବେଳେ ସି. ରାଜଗୋପାଳଚାରୀ କଂଗ୍ରେସ ଦଳର ସରକାରଙ୍କ ଇସ୍ତଫା ଦେଲେ ମାଡ୍ରାସର ଗଭର୍ଣ୍ଣର ଆର୍ଥର ହୋପ ଜଷ୍ଟିସ ପାର୍ଟି ତରଫରୁ ସରକାର ଗଠନ କରିବାକୁ ପେରିୟାରଙ୍କୁ ଆମନ୍ତ୍ରଣ କଲେ । ପେରିୟାର ଯେହେତୁ ଜଷ୍ଟିସ ପାର୍ଟିର ସଭାପତି ଥିଲେ, ତେଣୁ ତାଙ୍କୁ ସରକାର ଗଠନ କରିବାକୁ ଅନୁରୋଧ କରାଗଲା ।

କିନ୍ତୁ ପେରିୟାର ଯେହେତୁ ସାମାଜିକ ସଂସ୍କାରକୁ ଅଧିକ ପ୍ରାଧାନ୍ୟ ଦେଉଥିଲେ ସେ ଏହି ସମ୍ମାନଜନକ ପଦବୀକୁ ଗ୍ରହଣ କଲେ ନାହିଁ ।

**୧୯୪୦-** ହିନ୍ଦୀଭାଷା ଓ ଉତ୍ତର ଭାରତୀୟ ପୁଂଜିବାଦୀ ହିନ୍ଦୁ ପ୍ରଭାବରୁ ଦ୍ରାବିଡ ଜନଗୋଷ୍ଠୀ ଓ ତାମିଲ ଭାଷାର ସ୍ୱତନ୍ତ୍ରତାକୁ ରକ୍ଷା କରିବାକୁ ପେରିୟାର ତିରୁବର ସମ୍ମିଳନୀରେ ଏକ ସ୍ୱତନ୍ତ୍ର ଦ୍ରାବିଡ ନାଡୁ ଗଠନ କରିବା ପାଇଁ ପ୍ରସ୍ତାବ ଦେଲେ ।

**୧୯୪୪-** ୨୭.୮.୧୯୪୪ ଜଷ୍ଟିସ ପାର୍ଟିର ନାମକୁ ଦ୍ରାବିଡ କାଜାଗମରେ ପରିବର୍ତ୍ତନ କରାଗଲା । ଜଷ୍ଟିସ ପାର୍ଟିର ରାଜ୍ୟସ୍ତରୀୟ ସମ୍ମିଳନୀ ସଲେମଠାରେ

Digitized by srujanika@gmail.com

ଅନୁଷ୍ଠିତ ହେବା ବେଳେ ଏହି ନିଷ୍ପତ୍ତି ହୋଇଥିଲା । ବ୍ରାହ୍ମଣବାଦୀ ଶୋଷଣରୁ ଦ୍ରାବିଡ ଜନଗଣଙ୍କୁ ରକ୍ଷା କରିବାକୁ ଦ୍ରାବିଡ କାଜାଗମ ନିର୍ବାଚନରେ ଅଂଶ ଗ୍ରହଣ ନକରି ସାମାଜିକ ସ୍ତରରେ କ୍ରାନ୍ତିକାରୀ ପରିବର୍ତ୍ତନ ଆଣିବାକୁ ପ୍ରୟାସ କରିବାକୁ ସ୍ଥିର ହେଲା ।

**୧୯୪୬-** ୧୧.୫.୧୯୪୬ ଦିନ ମଦୁରାଇଠାରେ ଭାଇଗାଇ ନଦୀ କୂଳର ସମ୍ମିଳନୀକୁ ବ୍ରାହ୍ମଣମାନଙ୍କ ପ୍ରରୋଚନାରେ ଗୁଣ୍ଡାମାନେ ନିଆଁ ଲଗାଇ ପୋଡିଦେଲେ । ପେରିୟାର ଓ ତାଙ୍କ ସମର୍ଥକ ମାନେ ଦିନସାରା ସେଠାରେ ଅଟକ ରହିଲେ । ଏହାର ପ୍ରତିବାଦ ସ୍ୱରୂପ ସେମାନେ ଏହା ପରଠାରୁ କଳା ପୋଷାକ ପରିଧାନ କରିବାକୁ ସ୍ଥିର କଲେ ।

**୧୯୪୭ ଅଗଷ୍ଟ ୧୫-** ୧୫ ଅଗଷ୍ଟ ୧୯୪୭ ଦିନ ସାରା ଭାରତ ସ୍ୱାଧୀନତା ଲାଭରେ ଉତ୍ସବ ମୁଖର ହୋଇଥିବା ବେଳେ ତାମିଲ ଜନଗଣଙ୍କ ପାଇଁ ଏହା ସେପରି ଆନନ୍ଦର ଦିନ ନୁହେଁ ବୋଲି ପେରିୟାର କହିଲେ । କାରଣ ତାମିଲନାଡୁ ଏକ ସ୍ୱତନ୍ତ୍ର ରାଜ୍ୟ ହେଲା ନାହିଁ । କେବଳ ବିଦେଶୀ ଶାସନ ହାତରୁ ଯାଇ ବ୍ରାହ୍ମଣ ଓ ଉତ୍ତର ଭାରତର ପ୍ରଭାବଶାଳୀ ଜାତି ହାତରେ ଶାସନଭାର ରହିଲା ।

୧୪.୦୯.୧୯୪୭ ଦିନ କୁଡାଲୋରଠାରେ ତାମିଲନାଡୁ ସ୍ୱତନ୍ତ୍ର ରାଜ୍ୟ ଗଠନ ଦାବି ନେଇ ଏକ ସମ୍ମିଳନୀ ଆହୂତ ହୋଇଥିଲା ।

**୧୯୪୮-** କଂଗ୍ରେସ ସରକାର କଳାପୋଷାକ ସ୍ୱେଚ୍ଛାସେବୀ ସଂଗଠନକୁ ନିଷେଧ କଲେ । ଅଷ୍ଟାଦଶ ଦ୍ରାବିଡ କାଜାଗମ ରାଜ୍ୟ ସମ୍ମିଳନୀ ଟୁଟୁକର୍ଣ୍ଣ ଠାରେ ମେ ମାସ ୮,୯ରେ ପେରିୟାରଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଜାତି ଧର୍ମ ନିର୍ବିଶେଷରେ ହଜାର ହଜାର ତାମିଲ ସେଥିରେ ଯୋଗ ଦେଇଥିଲେ ।

ମ୍ୟାରାମଲ୍ଲାଇ ଆଦିଗରଙ୍କ ନେତୃତ୍ୱରେ (ତାମିଲ ଭାଷାର ଶୁଦ୍ଧତାର ବଡ ପ୍ରବକ୍ତା) ହିନ୍ଦୀ-ବିରୋଧୀ ସ୍ୱେଚ୍ଛାସେବୀ ସମ୍ମିଳନୀରେ ପେରିୟାର ଓ ଆନ୍ନା ଯୋଗ ଦେଇଥିଲେ ।

Digitized by srujanika@gmail.com

୧୯୪୮ ଜାନୁୟାରୀ ୩୦ ଦିନ ଦିଲ୍ଲୀଠାରେ ପ୍ରାର୍ଥନା ସଭାକୁ ଗଲାବେଳେ ଜଣେ ମରାଠୀ ବ୍ରାହ୍ମଣ ନାଥୁରାମ ଗଡସେ ଗାନ୍ଧୀଙ୍କୁ ହତ୍ୟା କଲେ। ତାମିଲନାଡୁରେ ଗାନ୍ଧୀଙ୍କ ହତ୍ୟାକୁ ପେରିୟ୍ୟର ବିଭିନ୍ନ ସଭାରେ ନିନ୍ଦା କରିବାକୁ ଲାଗିଲେ। ସେ ପ୍ରସ୍ତାବ ଦେଲେ ଯେ ଭାରତକୁ ଗାନ୍ଧୀ ରାଷ୍ଟ୍ର (ନାଡୁ) ଭାବରେ ନାମିତ କରିବା ସହ ହେତୁବାଦ ଓ ଗାନ୍ଧୀବାଦ ଆଧାରରେ ଏକ ନୂତନ ଧର୍ମ ଗାନ୍ଧୀଧର୍ମ ହେବା ଆବଶ୍ୟକ। ଏହାଦ୍ୱାରା ଏହି ମହାନ ବ୍ୟକ୍ତିଙ୍କ ଶହୀଦତ୍ୱକୁ ସମ୍ମାନ ଦିଆଯାଇ ପାରିବ।

**୧୯୪୮ ଅଗଷ୍ଟ ୧୦-** କୁମ୍ବକୋନମଠାରେ ପେରିୟ୍ୟରଙ୍କ ନିର୍ଦ୍ଦେଶରେ ୧୦.୮.୧୯୪୮ ଦିନ ହିନ୍ଦୀ ବିରୋଧୀ ଆନ୍ଦୋଳନ ଆରମ୍ଭ ହେଲା।

**୧୯୪୮ ଅଗଷ୍ଟ ୨୨-** ଭାରତର ଗଭର୍ଣ୍ଣର ଜେନେରାଲ ସି. ରାଜଗୋପାଳଚାରୀଙ୍କର ମାଡ୍ରାସ ଆଗମନ ସମୟରେ ତାଙ୍କୁ କଳା ପତାକା ଦେଖାଇବାକୁ ସ୍ଥିର ହେଲା। ପେରିୟ୍ୟାରଙ୍କ ଅନୁଗାମୀମାନଙ୍କୁ ୨୨.୦୮.୧୯୪୮ରେ ଗିରଫ କରାଯାଇ ସେମାନଙ୍କୁ ମାଡ୍ରାସ କେନ୍ଦ୍ରୀୟ ଜେଲରେ ରଖାଯାଇ ସେମାନଙ୍କୁ ୨୭.୦୮.୧୯୪୮ ରେ ଖଲାସ କରାଗଲା।

**୧୯୪୯-** ପେରିୟ୍ୟାରଙ୍କ ସ୍ୱାସ୍ଥ୍ୟ ସୁରକ୍ଷା ତଥା ତାଙ୍କ ସଂସ୍କାରବାଦୀ ଆନ୍ଦୋଳନରେ ସଂପତ୍ତିର ଦେଖାଶୁଣା କରିବାକୁ ସେ ମଣି ଆମାଙ୍କୁ ବିବାହ କଲେ। ମଣିଆମା ପେରିୟ୍ୟରଙ୍କ ଆନ୍ଦୋଳନକୁ କ୍ରିୟାଶୀଳ କରାଇଲେ।

**୧୯୫୦-**୨୨.୦୧.୧୯୫୦ ଦିନ ତାଙ୍କର କେତେକ ଲେଖା ପାଇଁ ତାଙ୍କୁ ଗିରଫ କରାଗଲା। ଯେଉଁ ସଂରକ୍ଷଣ ନିୟମକୁ ସେ ସମର୍ଥନ କରୁଥିଲେ ତାହାକୁ ମାଡ୍ରାସ ହାଇକୋର୍ଟ ସମ୍ବିଧାନ-ବିରୋଧୀ କହିଲେ ଓ ମାଡ୍ରାସ ହାଇକୋର୍ଟର ରାୟ ବି ସୁପ୍ରିମ କୋର୍ଟଦ୍ୱାରା ସ୍ୱୀକୃତ ହେଲା। ପେରିୟ୍ୟର ଏହା ବିରୁଦ୍ଧରେ ତାମିଲନାଡୁ ସାରା ଗସ୍ତ କରି ଲୋକମାନଙ୍କୁ ଏହା ବିରୁଦ୍ଧରେ ସଚେତନ କରିବାକୁ ଲାଗିଲେ।

Digitized by srujanika@gmail.com

**୧୯୫୧-** ପେରିୟାରଙ୍କ ସାମାଜିକ ସଚେତନତା ନେଇ ଆନ୍ଦୋଳନ ତୀବ୍ର ହେବାର ଆଶଙ୍କା କରି ନେହେରୁ ସରକାର ଭାରତୀୟ ସମ୍ବିଧାନରେ ପ୍ରଥମ କରି ଏକ ସଂଶୋଧନ କଲେ। ସାମାଜିକ ଓ ଆର୍ଥିକ ଅନଗ୍ରସର ଶ୍ରେଣୀର ବିକାଶ ପାଇଁ ସେମାନଙ୍କୁ କେତେକ ସଂରକ୍ଷଣ ଦେବାକୁ ସମ୍ବିଧାନର ୧୫ ଧାରାର ଚତୁର୍ଥ ଉପଧାରାରେ ବ୍ୟବସ୍ଥା ରହିଲା।

**୧୯୫୨-** ସି. ରାଜଗୋପାଳଚାରୀ (ରାଜାଜୀ) ପ୍ରାଥମିକ ଶିକ୍ଷା ସ୍ତରରେ ପିଲାମାନଙ୍କୁ ସେମାନଙ୍କ ବଂଶାନୁଗତ ବୃତ୍ତି ବିଷୟରେ ଶିକ୍ଷା ଦେବାକୁ ଯେଉଁ ବ୍ୟବସ୍ଥା ମୁଖ୍ୟମନ୍ତ୍ରୀତ୍ୱ ସମୟରେ କରିଥିଲେ ପେରିୟାର ଏହାକୁ ବିରୋଧ କଲେ।

**୧୯୫୩-** ପିତୁଳା ପୂଜା ଯେ ଏକ କୁସଂସ୍କାର ଓ କୌଣସି ପିତୁଳା ଭିତରେ ଦୈବୀ ଶକ୍ତି ନାହିଁ ଏହା ଲୋକମାନଙ୍କୁ ବୁଝାଇବା ପାଇଁ ସେ ବିଭିନ୍ନ କାର୍ଯ୍ୟକ୍ରମ କରିଆରେ ଲୋକମାନଙ୍କୁ ସଚେତନ କରିବାକୁ ପ୍ରୟାସ କଲେ। ପେରିୟାର ଓ ତାଙ୍କ ସମର୍ଥକମାନେ ବିଭିନ୍ନ ସ୍ଥାନରେ ପିତୁଳାମାନଙ୍କୁ ଭାଙ୍ଗି ଏହା ଲୋକମାନଙ୍କୁ ଦେଖାଉଥିଲେ।

ରାଜାଜୀ ସ୍କୁଲ ସ୍ତରରେ ପିଲାମାନଙ୍କୁ ତାଙ୍କ ପୈତୃକ କୌଳିକ ବୃତ୍ତି ଶିକ୍ଷା ଦେବାକୁ ଯେଉଁ ନିୟମ କରିଥିଲେ ତାହା ବିରୁଦ୍ଧରେ ପେରିୟାର ଏପରି ଜନ ଆନ୍ଦୋଳନ ଗଢି ତୋଳିଲେ ଯଦ୍ୱାରା ରାଜଗୋପାଳଚାରୀ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ବାଧ୍ୟ ହେଲେ। ଏହା ସହିତ ଦ୍ରାବିଡ ଜନଗୋଷ୍ଠୀର ବିଧାୟକ (ଏମଏଲଏ) ମାନେ ବି ମୁଖ୍ୟମନ୍ତ୍ରୀଙ୍କ ନୀତି ବିରୁଦ୍ଧରେ ଏପରି ଅସନ୍ତୋଷ ବ୍ୟକ୍ତ କଲେ ଯେ ରାଜାଜୀ ଇସ୍ଥଫା ଦେବାକୁ ବାଧ୍ୟ ହେଲେ। ପରିଣାମ ସ୍ୱରୂପ କେ.କାମରାଜ ତାମିଲନାଡୁର ମୁଖ୍ୟମନ୍ତ୍ରୀ ହେଲେ। ରାଜାଜୀଙ୍କର ଶିକ୍ଷା ନୀତିର ଯେଉଁ ବିଧାନକୁ ପେରିୟାର ବିରୋଧ କରୁଥିଲେ କାମରାଜ ମୁଖ୍ୟମନ୍ତ୍ରୀ ହେବା ପରେ ତାହାକୁ ବାତିଲ କଲେ।

**୧୯୫୪-** ଏରୋଡଠାରେ ପେରିୟାର ବୌଦ୍ଧଧର୍ମ ଉପରେ ଏକ ସମ୍ମିଳନୀ ଆହୂତ କଲେ।

Digitized by srujanika@gmail.com

ପେରିୟ୍ୟର ତାଙ୍କର ପତ୍ନୀ ଓ କେତେକ ସହଯୋଗୀ ମିଆଁମାର (ବର୍ମା) ଓ ମାଲେସିଆ ଭ୍ରମଣରେ ଗଲେ। ମିଆଁମାରର ମଣ୍ଡଲେଠାରେ ସେ ବିଶ୍ୱବୌଦ୍ଧ ସମ୍ମିଳନୀରେ ଯୋଗଦେଲେ। ଏହି ଅବସରରେ ସେ ବୌଦ୍ଧ ବିଦ୍ୱାନ ମାଇଲ ଶେଖର ଓ ଡ.ବି.ଆର. ଆମ୍ବେଦକରଙ୍କୁ ସାକ୍ଷାତ କଲେ। ସେଠାରେ ତାଙ୍କର ଆମ୍ବେଦକରଙ୍କ ସହ ଦୀର୍ଘ ସମୟ ଆଲୋଚନା ହୋଇଥିଲା ଓ ଆଲୋଚନା ଭିତରେ ବୌଦ୍ଧଧର୍ମକୁ ଧର୍ମ-ପରିବର୍ତ୍ତନ ବିଷୟ ପ୍ରସଙ୍ଗ ଆସିଥିଲା। ହିନ୍ଦୁଧର୍ମ ପରିତ୍ୟାଗ ନ କରିବା ପାଇଁ ଆମ୍ବେଦକରଙ୍କୁ ପେରିୟ୍ୟର ପରାମର୍ଶ ଦେଇଥିଲେ। କାରଣ ଆମ୍ବେଦକର ବୌଦ୍ଧଧର୍ମ ଗ୍ରହଣ କରିବା ଦ୍ୱାରା ସେ ହିନ୍ଦୁଧର୍ମର ଅସ୍ପୃଶ୍ୟତାକୁ ସମାଲୋଚନା କରିବାର ଅଧିକାର ହରାଇବେ।

ପେରିୟ୍ୟର ଧର୍ମ ପରିବର୍ତ୍ତନ ସପକ୍ଷରେ ନଥିଲେ, କାରଣ ଧର୍ମ ପରିବର୍ତ୍ତନ ଦ୍ୱାରା ହିନ୍ଦୁଧର୍ମର ସକଳ ମନ୍ଦ ଓ ଅନୀତିଯୁକ୍ତ ବ୍ୟବସ୍ଥାକୁ ପରିବର୍ତ୍ତନ କରିବାର ଅଧିକାର ତାଙ୍କର ରହିପାରିବ ନାହିଁ।

**୧୯୫୪ ଡିସେମ୍ବର-** ପେରିୟ୍ୟର ଦ୍ୱିତୀୟବାର ମାଲେସିଆକୁ ଆସି ଅନେକ ସ୍ଥାନରେ ହେତୁବାଦୀ ଜୀବନ-ଦର୍ଶନ ଉପରେ ଭାଷଣ ଦେଇଥିଲେ।

**୧୯୫୫-** ତାମିଲନାଡୁରେ ହିନ୍ଦୀକୁ ବାଧ୍ୟତାମୂଳକ କରିବାର ଯୋଜନା ବିରୁଦ୍ଧରେ ସେ ପ୍ରତିବାଦ ସଭାମାନ ବିଭିନ୍ନ ସ୍ଥାନରେ କରିଥିଲେ।

ରାମାୟଣରେ ବର୍ଣ୍ଣିତ ନାନା ଘଟଣାରେ ଦ୍ରାବିଡମାନଙ୍କୁ ଆର୍ଯ୍ୟମାନେ ଯେପରି ନ୍ୟୂନ କରିଛନ୍ତି ଓ ଦ୍ରାବିଡମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରିଛନ୍ତି ତାହାକୁ ବିରୋଧ କରି ପ୍ରତୀକାତ୍ମକ ଭାବରେ ରାମଙ୍କ ଫଟୋରେ ନିଆଁ ଲଗାଇ ସାଧାରଣରେ ପୋଡିଥିଲେ। ଏଥିରେ ତାଙ୍କୁ ଗିରଫ କରାଯାଇଥିଲା।

**୧୯୫୭ ଜାନୁଆରୀ ୧୮-** ତିରୁଚିରାପଲ୍ଲୀଠାରେ ଭୂଦାନ ଆନ୍ଦୋଳନର ପ୍ରବକ୍ତା ବିନୋବା ଭାବେଙ୍କ ସହିତ ପେରିୟ୍ୟରଙ୍କ ସାକ୍ଷାତ ଆଲୋଚନା ହୋଇଥିଲା।

Digitized by srujanika@gmail.com

**୧୯୫୭-** ୩.୧୧.୧୯୫୭ ଦିନ ଆଞ୍ଜାବୁରଠାରେ ପେରିୟାରଙ୍କ ଜନ୍ମ ଦିବସ ଉପଲକ୍ଷେ ଏକ ସମ୍ମିଳନୀ ହୋଇଥିଲା ଓ ତାଙ୍କୁ ରୂପା-ମୁଦ୍ରାରେ ଓଜନ କରାଯାଇଥିଲା ।

*୧୯୫୮-* ଜାତିପ୍ରଥାକୁ ଦୂର କରିବାଂକୁ ପେରିୟାର ଏକ ବଡ ଜନ ଆନ୍ଦୋଳନ ଆରମ୍ଭ କଲେ । ସେତେବେଳେ ତାମିଲନାଡୁର ବିଭିନ୍ନ ହୋଟେଲ ସାମ୍ନାରେ 'ବ୍ରାହ୍ମଣ ହୋଟେଲ' ବୋର୍ଡ ଲେଖା ଯାଉଥିଲା ଯାହାର ଉଦ୍ଦେଶ୍ୟ ଜାତିଗତ ଶ୍ରେଷ୍ଠତା ପ୍ରକାଶ କରିବାର ମନୋଭାବ ରହିଥିଲା । ହୋଟେଲ ସାଇନବୋର୍ଡ ମାନଙ୍କରୁ 'ବ୍ରାହ୍ମଣ' ସୂଚକକୁ ଲିଭାଇବାକୁ ପେରିୟାର ନିବେଦନ କରିଥିଲେ । ପେରିୟାରଙ୍କ ସମର୍ଥକମାନଙ୍କର ଆନ୍ଦୋଳନ ଯୋଗୁଁ ସମସ୍ତ ହୋଟେଲ ସାଇନ ବୋଡମାନଙ୍କରୁ 'ବ୍ରାହ୍ମଣ' ଶବ୍ଦକୁ ଲିଭାଇ ଦିଆଯାଇଥିଲା ।

ଚେନାଇଠାରେ ପେରିୟାର ଓ ସମାଜବାଦୀ ନେତା ରାମ ମନୋହର ଲୋହିଆଙ୍କ ମଧ୍ୟରେ ସାକ୍ଷାତ ହୋଇଥିଲା ଓ ଉଭୟ ନେତା ରାଜନୈତିକ ଓ ସମାଜ ସଂସ୍କାର ବିଷୟରେ ଆଲୋଚନା କରିଥିଲେ ।

**୧୯୫୯-** ଉତ୍ତର ଭାରତର ବିଭିନ୍ନ ଜାଗାକୁ ଯାଇ କାନପୁର, ଲକ୍ଷ୍ନୌ, ନୂଆଦିଲ୍ଲୀ ଓ ଅନ୍ୟ ସ୍ଥାନରେ ପେରିୟାର ଲୋକମାନଙ୍କୁ ଭାଷଣ ଦେଇଥିଲେ ।

**୧୯୬୭-** ଡିଏମେକେ ଦଳ ସଂଖ୍ୟାଗରିଷ୍ଠ ଆସନ ବିଧାନ ସଭାରେ ନେବା ଯୋଗୁ ସି.ଏନ. ଆନାଦୁରାଇ ତାମିଲନାଡୁର ମୁଖ୍ୟମନ୍ତ୍ରୀ ହେଲେ । ସେ ତିରୁଚିରାପଲ୍ଲୀ ଯାଇ ପେରିୟାରଙ୍କୁ ସାକ୍ଷାତ କରି ତାଙ୍କର ସହଯୋଗ, ଶୁଭେଚ୍ଛା ଓ ପରାମର୍ଶ କାମନା କଲା । ପେରିୟାର ଡିଏମେକେ ସରକାରଙ୍କୁ ସମର୍ଥନ ଦେବାକୁ ମତ ବ୍ୟକ୍ତ କଲେ । ଆନ୍ନାଦୁରାଇ ରାଜ୍ୟ ବିଧାନ ସଭାରେ ପେରିୟାରଙ୍କ ଆଦର୍ଶ ପ୍ରତି ତାଙ୍କ ସରକାର ପ୍ରତିବଦ୍ଧ ରହିବା ଘୋଷଣା କଲେ । ଆତ୍ମମର୍ଯ୍ୟାଦା ବିବାହ ପଦ୍ଧତିରେ ବିବାହ ପାଇଁ ଆଇନଗତ ବ୍ୟବସ୍ଥା କରିବା ସହ ଏହି ଧାରାରେ ପୂର୍ବରୁ ବିବାହ କରିଥିବା ଦଂପତି ମାନଙ୍କର ବିବାହକୁ ସ୍ୱୀକୃତି ଦେଲେ ।

Digitized by srujanika@gmail.com

ପେରିୟାରଙ୍କର ଜଣେ ସମର୍ଥକ ଭାବେ ମାଡ୍ରାସ ରାଜ୍ୟର ନାମ ତାମିଲନାଡୁ କରିବା ପାଇଁ ଆନାଦୁରାଇ ବିଧାନସଭାରେ ବିଧାନ କଲେ। ସେହିପରି ଭାରତ ସରକାରଙ୍କ ତ୍ରିଭାଷା ନୀତି ପରିବର୍ତ୍ତେ ତାମିଲନାଡୁରେ ଦୁଇ ଭାଷା, ତାମିଲ ଓ ଇଂରାଜୀ ଶିକ୍ଷା କ୍ଷେତ୍ରରେ ବ୍ୟବହୃତ ହେବ ବୋଲି ବୈଧାନିକ ନିଷ୍ପତ୍ତି ନେଲେ। ଆନାଦୁରାଇଙ୍କ ସରକାର ପେରିୟାରଙ୍କର ଏହି ଦାବି ଗୁଡିକ ଗ୍ରହଣ କରି ତାହାକୁ ବିଧାନ ସଭାରେ ଆଇନଗତ ସ୍ୱୀକୃତି ଦେଲେ।

**୧୯୬୮-** ପେରିୟାରଙ୍କର ଜଣେ ହେତୁବାଦୀ ସମର୍ଥକ ଭାବେ ଆନା ସରକାରୀ ନିର୍ଦ୍ଦେଶ ଦେଲେ ଯେ କୌଣସି ସରକାରୀ କାର୍ଯ୍ୟାଳୟରେ କୌଣସି ଦେବ-ଦେବୀଙ୍କର ଫଟୋ ବା ମୂର୍ତ୍ତି ରହିପାରିବ ନାହିଁ।

**୧୯୬୯ ଫେବୃଆରୀ ୩-** ମୁଖ୍ୟମନ୍ତ୍ରୀ ଆନ୍ନାଙ୍କର ଦେହାନ୍ତ ହେଲା। ଆନ୍ନାଙ୍କର ଦେହାନ୍ତରେ ପେରିୟାର ଗଭୀର ମର୍ମାହତ ହେବା ସହ ଏହା ତାମିଲନାଡୁ ପାଇଁ ଏକ ଅପୂରଣୀୟ କ୍ଷତି ବୋଲି ବର୍ଣ୍ଣନା କଲେ।

**୧୯୬୯-** ସମସ୍ତ ମନ୍ଦିର ମାନଙ୍କରେ ସବୁ ଜାତିର ଲୋକମାନେ ପ୍ରବେଶ କରିବା ପାଇଁ ପେରିୟାର ଆନ୍ଦୋଳନ ଆରମ୍ଭ କଲେ। କେବଳ ବ୍ରାହ୍ମଣମାନେ ପୂଜକ ହେବା ଓ ସଂସ୍କୃତ ଭାଷାରେ ପୂଜା କରିବା ପରଂପରା ବିରୁଦ୍ଧରେ ଜନ-ଆନ୍ଦୋଳନ ଆରମ୍ଭ କଲେ। ଯେକୌଣସି ବ୍ୟକ୍ତି ମନ୍ଦିର ଭିତରେ ପ୍ରବେଶ କରିବା ଓ ତାମିଲ ଭାଷାରେ ବି ପୂଜା କରିବା ପାଇଁ ସଚେତନତା ସୃଷ୍ଟି କଲେ।

**୧୯୭୦-** ପେରିୟାର 'ଉନ୍‌ମଇ' (ସତ୍ୟ ବା ଟ୍ରୁଥ) ନାମରେ ଏକ ଦ୍ୱିମାସିକ ତାମିଲ ପତ୍ରିକା ତିରୁଚିରାପଲ୍ଲୀଠାରେ ପ୍ରକାଶ ଆରମ୍ଭ କଲେ। ଦ୍ରାବିଡ କାଜାଗମର ସଂପାଦକ ଡ.କେ.ବିରମଣୀ ଏହି ପତ୍ରିକାଟିର ଉନ୍ମୋଚନ କରିଥିଲେ।

ବିଶ୍ୱ ଜାତିସଂଘର ୟୁନେସ୍କୋ (UNESCO) ତରଫରୁ ପେରିୟାରଙ୍କୁ ସମ୍ମାନିତ କରାଗଲା। ତାଙ୍କୁ ପ୍ରଦାନ କରାଯାଇଥିବା ୟୁନେସ୍କୋ ମାନପତ୍ରରେ ଲେଖା ଯାଇଥିଲା- ଆପଣ ହେଉଛନ୍ତି ଆଗାମୀ ଯୁଗର ଦ୍ରଷ୍ଟା, ଦକ୍ଷିଣ-ଏସିଆର ସକ୍ରେଟିସ୍,

Digitized by srujanika@gmail.com

ସାମାଜିକ କ୍ରାନ୍ତି ଆନ୍ଦୋଳନର ଜନକ, ଅଜ୍ଞତା, କୁସଂସ୍କାର ଓ ଅର୍ଥହୀନ-କର୍ମକାଣ୍ଡର ବିରୋଧୀ । ୟୁନେସ୍କୋ ତରଫରୁ ଭାରତର ଶିକ୍ଷାମନ୍ତ୍ରୀ ତ୍ରିଗୁଣା ସେନ ପେରିୟାରଙ୍କୁ ଏହି ସମ୍ମାନ ଚେନାଇଠାରେ ୨୭.୬.୭୦ ଦିନ ପ୍ରଦାନ କରିଥିଲେ । ଏହି ସଭାରେ ମୁଖ୍ୟମନ୍ତ୍ରୀ କେ.ଏମ୍.କରୁଣାନିଧି ସଭାପତିତ୍ୱ କରିଥିଲେ।

ପେରିୟାର ଏକ ଅଣରାଜନୈତିକ ସାମାଜିକ ସଂଗଠନ ଆରମ୍ଭ କଲେ । ତାହାର ନାମ ଦେଲେ "ରେସନାଲିଷ୍ଟ ଫୋରମ" । ସରକାରୀ ବା ବେସରକାରୀ କର୍ମଚାରୀ ଓ ଯେଉଁମାନେ ହେତୁବାଦୀ ମୂଲ୍ୟବୋଧ ଜନିତ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦରେ ବିଶ୍ୱାସ ସ୍ଥାପନ କରନ୍ତି , ସେମାନେ ଏହାର ସଭ୍ୟ ହୋଇପାରିବେ ।

ସମସ୍ତ ପୂଜାପୀଠ ବା ମନ୍ଦିର ମାନଙ୍କରେ ଯେକୌଣସି ଜାତିର ଲୋକ ପୂଜକ ହୋଇପାରିବେ, ପେରିୟାରଙ୍କର ଏହି ଭାବନାକୁ ସରକାର ଆଇନରେ ପରିଣତ କଲେ। ସମାଜରୁ ଜାତିପ୍ରଥାର ବିଲୋପ ସହ ସମତାଭିତ୍ତିକ ସମାଜ ଗଠନ ପାଇଁ ଏହା ଥିଲା ଏକ ବଡ ପଦକ୍ଷେପ ।

ପେରିୟାର ଇଂରାଜୀରେ ଏକ ମାସିକ ପତ୍ରିକା ଆରମ୍ଭ କଲେ। ତାହାର ନାମ ଦେଲେ "ମଡର୍ଣ୍ଣ ରେସନାଲିଷ୍ଟ" ।

**୧୯୭୧ ମାର୍ଚ୍ଚ-** ମାର୍ଚ୍ଚ ୧୯୭୧ ନିର୍ବାଚନରେ ଡି.ଏମେ.କେ. ସଂଖ୍ୟାଗରିଷ୍ଠ ହୋଇ ସରକାର ଗଠନ କଲେ। କେ.ଏମ୍. କରୁଣାନିଧିଙ୍କ ନେତୃତ୍ୱରେ ସେଠାରେ ଡଏମେକେ ସରକାର ଶପଥ ନେଲେ। ଶପଥପାଠ ଉତ୍ସବରେ ସବୁ ମନ୍ତ୍ରୀମାନେ ଆସି ପେରିୟାରଙ୍କର ଶୁଭେଚ୍ଛା ନେଇଥିଲେ ଓ ପେରିୟାର ସେମାନଙ୍କୁ ଆନ୍ତରିକ ଶୁଭକାମନା ଜଣାଉଥିଲେ ।

**୧୯୭୧ ସେପ୍ଟେମ୍ବର ୧୭-** ପେରିୟାରଙ୍କ ଜନ୍ମପୀଠ ଏରୋଡଠାରେ ମୁଖ୍ୟମନ୍ତ୍ରୀ କରୁଣାନିଧି ପେରିୟାରଙ୍କର ଏକ ପ୍ରତିମୂର୍ତ୍ତି (ଷ୍ଟାଚୁ) ଉନ୍ମୋଚନ କଲେ ।

Digitized by srujanika@gmail.com

**୧୯୭୧ ନଭେମ୍ବର ୧୧-** ସାଲେମଠାରେ ଏକ ଭବ୍ୟ ଉତ୍ସବର ଆୟୋଜନ କରାଯାଇ ଜନ ସାଧାରଣଙ୍କ ତରଫରୁ ପେରିୟାରଙ୍କୁ ଏକ ରୁପା ଆସନ ଉପହାର ଦିଆଯାଇଥିଲା ।

**୧୯୭୨ ଅଗଷ୍ଟ ୧୩-** କୁଡାଲୋରଠାରେ ତାମିଲନାଡୁ ମୁଖ୍ୟମନ୍ତ୍ରୀ ଏମ୍.କରୁଣାନିଧି ପେରିୟାରଙ୍କର ଏକ ପ୍ରତିମୂର୍ତ୍ତି ଉନ୍ମୋଚନ କରିଥିଲେ । ଏହି ସଭାରେ ତାମିଲ ବିଧାନ ପରିଷଦର ସଭାପତି ସି.ପି. ଚିତ୍ରରାସୁ ସଭାପତିତ୍ବ କରିଥିଲେ ।

**୧୯୭୩ ସେପ୍ଟେମ୍ବର ୧୬,୧୭-** ପେରିୟାର ତାଙ୍କର ୯୫ ତମ ଜନ୍ମଦିନ ଉତ୍ସବରେ ଯୋଗ ଦେଇଥିଲେ । ସେଠାରେ ଏଡିଏମକେର ସଂପାଦକ ଜି. ରାମଚନ୍ଦ୍ରନ ପେରିୟାରଙ୍କୁ ସମ୍ମାନଜନକ ସନ୍ତକ (ଲରେଲ) ସହ ଅଭିନନ୍ଦିତ କରିଥିଲେ ।

**୧୯୭୩ ସେପ୍ଟେମ୍ବର ୩୦-** ସାମାଜିକ କ୍ରାନ୍ତି ଓ ଏକ ଭେଦଭାବ ରହିତ ସାମାଜିକ ବ୍ୟବସ୍ଥା ପାଇଁ ପେରିୟାର ସମର୍ଥକଙ୍କର ଏକ ବଡ ସମ୍ମିଳନୀ ମଦୁରାଇଠାରେ ଅନୁଷ୍ଠିତ ହୋଇଥିଲା । ତାମିଲନାଡୁର ମନ୍ତ୍ରୀ ଡ.ଭି.ଆର୍. ନେଦୁଞ୍ଚେଜିଆନ ମଦୁରାଇଠାରେ ପେରିୟାରଙ୍କର ଏକ ପ୍ରତିମୂର୍ତ୍ତି ଉନ୍ମୋଚନ କରିଥିଲେ ଓ ଏହି ସଭାରେ ମନ୍ତ୍ରୀ ପି.ଏସ. ରାମଚନ୍ଦ୍ରନ ସଭାପତିତ୍ୱ କରିଥିଲେ ।

**୧୯୭୩ ଡିସେମ୍ବର ୮,୯-** ସାମାଜିକ କ୍ରାନ୍ତି କର୍ମୀମାନଙ୍କର ଏକ ବଡ ସମ୍ମିଳନୀ ଚେନାଇସ୍ଥିତ ପେରିୟାର ଥାଇଡଲଠାରେ ଅନୁଷ୍ଠିତ ହୋଇଥିଲା । ଏଠାରେ ପେରିୟାର ଉପସ୍ଥିତ ରହି ସମାଜରୁ ସକଳ ଭେଦଭାବ, ଜାତିଆଣ ବୈଷମ୍ୟ ଓ ଉଚ୍ଚ ଜାତିର ଲୋକଙ୍କର ଜାତିଆଣ ମନୋଭାବ ଦୂର ପାଇଁ ଏକ ଆବେଗପୂର୍ଣ୍ଣ ଭାଷଣ ଦେଇଥିଲେ । ଏଠାରେ କେତେକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା ।

**୧୯୭୩ ଡିସେମ୍ବର ୧୯-** ଥିୟାଗରାଇ ନଗରଠାରେ ପେରିୟାରଙ୍କ ଶେଷ ପବ୍ଲିକ ଭାଷଣ ଥିଲା । ଏଠାରେ ସେ ତାଙ୍କ ସ୍ୱପ୍ନର ସମାଜ ବିଷୟରେ ଆବେଗଭରା ମନ୍ତବ୍ୟ ରଖିଥିଲେ ।

Digitized by srujanika@gmail.com

**୧୯୭୩ ଡିସେମ୍ବର ୨୦-** ଅସୁସ୍ଥ ହେବାରୁ ତାଙ୍କୁ ଚେନାଇସ୍ଥିତ ସରକାରୀ ଡାକ୍ତରଖାନାରେ ଭର୍ତ୍ତି କରାଗଲା । ତା ପରଦିନ ଭେଲୋରସ୍ଥିତ ଖ୍ରୀଷ୍ଟିଆନ ମେଡିକାଲ୍ କଲେଜକୁ ତାଙ୍କୁ ସ୍ଥାନାନ୍ତରିତ କରାଗଲା ।

**୧୯୭୩ ଡିସେମ୍ବର ୨୪-** ପେରିୟାରଙ୍କର ଦେହାନ୍ତ ହେଲା । ତାଙ୍କ ଦେହାନ୍ତ ଖବର ପାଇ ସାରା ତାମିଲନାଡୁରେ ଶୋକର ଛାୟା ଖେଳିଗଲା । ତାଙ୍କର ସମର୍ଥକ, ହେତୁବାଦୀ ବୁଦ୍ଧିଜୀବୀ ଓ ସାମାଜିକ ଆନ୍ଦୋଳନର ବହୁ ପ୍ରବୀଣ ବ୍ୟକ୍ତି ତାଙ୍କ ପାଇଁ ଶୋକାବାର୍ତ୍ତା ସାରା ଦେଶରୁ ଓ ବିଦେଶରୁ ପଠାଇଲେ ।

ମୁଖ୍ୟମନ୍ତ୍ରୀ ଏମ. କରୁଣାନିଧି ପେରିୟାରଙ୍କ ଦେହାନ୍ତରେ ରାଜ୍ୟରେ ଶୋକ ଦିବସ ଘୋଷଣା କଲେ । ରାଜ୍ୟ ସରକାରଙ୍କ ତରଫରୁ ରାଷ୍ଟ୍ରୀୟ ମର୍ଯ୍ୟାଦା ସହ ଚେନାଇଠାରେ ତାଙ୍କର ଶବସତ୍କାର କରାଗଲା । ପୂର୍ବତନ ମୁଖ୍ୟମନ୍ତ୍ରୀ କାମରାଜ ଓ ମୁଖ୍ୟମନ୍ତ୍ରୀ କରୁଣାନିଧି ତାଙ୍କ ଶବ ଶୋଭାଯାତ୍ରାରେ ରହିଥିଲେ । ଚେନାଇଠାରେ ହଜାର ହଜାର ଲୋକ ତାଙ୍କର ପ୍ରିୟ ନେତାଙ୍କୁ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଜଣାଇଥିଲେ ।



Digitized by srujanika@gmail.com